## ପ୍ରଫେସର ନିତ୍ୟାନନ୍ଦ ଶତପଥୀଙ୍କ
### ସାହିତ୍ୟ ଓ ସମାଲୋଚନା ପୁସ୍ତକ

- କବିତା ଯୁଗେ ଯୁଗେ
- ସବୁଜରୁ ସାମ୍ପ୍ରତିକ
- ଆଧୁନିକ ସାହିତ୍ୟ :ଚିନ୍ତା ଓ ଚେତନା
- ପ୍ରମୁଖ କବି କତିପୟ
- ଶବ୍ଦ ଓ ଶାବ୍ଦିକ
- କାବ୍ୟ ପ୍ରକରଣ
- ସାରଳାରୁ ସମ୍ପ୍ରତି
- ସତ୍ୟବାଦୀ :ସୃଷ୍ଟି ଓ ସ୍ରଷ୍ଟା (ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କୃତ ଓ ପ୍ରତ୍ୟାଖ୍ୟାତ)
- ସତୁରିରୁ ସହସ୍ରାବ୍ଦୀ
- କବିତା ସେତୁ

Digitized by PPRACHIN, SOA

ଗଳ୍ପ ସମଗ୍ର
ପ୍ରଫେସର ନିତ୍ୟାନନ୍ଦ ଶତପଥୀ

ଇସ୍ତାହାର ପ୍ରକାଶନୀ
ଡୁପ୍ଲେକ୍ସ-୯, ଶୈଳଶ୍ରୀ ବିହାର, ଭୁବନେଶ୍ୱର-୨୧

ପ୍ରଥମ ମୁଦ୍ରଣ- ଡିସେମ୍ବର, ୨୦୧୨
ପ୍ରଚ୍ଛଦ ସଜ୍ଜା- ବିଜୟ କୁମାର ପ୍ରଧାନ

ମୁଦ୍ରଣ: ନବଗୌରାଙ୍ଗ ପ୍ରେସ, ପଟିଆ
ମୂଲ୍ୟ: ଏକଶହ ପଚାଶ ଟଙ୍କା

GALPA SAMAGRA

Prof. Nityananda Satpathy

Published by
Istahar Publications
Duplex-9, Sailashri Vihar
Bhubaneswar-21

1st Edition: Dec, 2012

Cover design: Bijoy Kumar Pradhan
Printed at: Nabagourang Press, Patia

Price- Rs. 150/-

Digitized by PPRACHIN, SOA

# ଉତ୍ସର୍ଗ

*ଓଡ଼ିଶାର ଅବିସମ୍ବାଦିତ ଶ୍ରେଷ୍ଠ ଗାଳ୍ପିକ*
*ଅରବିନ୍ଦ ସାଧନା ତୀର୍ଥର ସାଧ୍ୱୀ ଅନ୍ତେବାସୀ*

ଶ୍ରୀ ମନୋଜ ଦାସଙ୍କୁ....

Digitized by PPRACHIN, SOA

# ସୂଚୀପତ୍ର

(କାଳ ଓ କର୍ଣ୍ଣିକା)





Digitized by PPRACHIN, SOA

# ସୂଚୀପତ୍ର

(ଯେ ନଦୀ ମରୁପଥେ)








Digitized by PPRACHIN, SOA

# ମୁଖବନ୍ଧ

କୃତବିଦ୍ୟ ସମାଲୋଚକ, ସୁସମ୍ପାଦକ, ସ୍ୱନାମଧନ୍ୟ ସାହିତ୍ୟିକ ପ୍ରଫେସର ନିତ୍ୟାନନ୍ଦ ଶତପଥୀଙ୍କ 'ଗଳ୍ପସମଗ୍ର'ର ପ୍ରକାଶନ ଆମ ସାହିତ୍ୟଜଗତର ଏକ ଉଲ୍ଲେଖ ଯୋଗ୍ୟ ଘଟଣା । ଉଲ୍ଲେଖଯୋଗ୍ୟ ଏଇଥିପାଇଁ ଯେ, ଏହି ସାରସ୍ୱତପୁରୁଷ ଆମ ସାହିତ୍ୟର ସୂଚୀପତ୍ରରେ ଗୋଟିଏ ସ୍ପର୍ଦ୍ଧିତ ଉଚ୍ଚାରଣ ଏବଂ ସମସାମୟିକ ସାହିତ୍ୟକର୍ମର ଜଣେ ନିଷ୍ପକ୍ଷ ତଥା ଦିଗ୍‌ଗଜ ଅନୁଶୀଳକ ।

ସଂକ୍ଷେପରେ କହିବାକୁ ଗଲେ ସେ ଆମ ସାମ୍ପ୍ରତିକ ସାହିତ୍ୟର ଏକ ମନୋହର ଏବଂ ମନ୍ମୟ ମୁଖବନ୍ଧ ସ୍ୱରୂପ ।

ଏଣୁ ତାଙ୍କ ଦ୍ୱାରା ଏଯାବତ୍ ଲିଖିତ ସମସ୍ତ ଗଳ୍ପର ଗ୍ରନ୍ଥରୂପ 'ଗଳ୍ପସମଗ୍ର' ଉପରେ କିଛି ଲେଖିବା ନିଶ୍ଚିତ ଭାବେ ଗୋଟିଏ ତଥ୍ୟନିଷ୍ଠ ମୁଖବନ୍ଧର ମୁଖବନ୍ଧ ଲେଖିଲାଭଳି । ସେ ଦୃଷ୍ଟିରୁ ଏହା କିଭଳି ଗୋଟିଏ ଦାୟିତ୍ୱସମ୍ପନ୍ନ କାର୍ଯ୍ୟ ଏବଂ ମୋ ଭଳି ଜଣେ ଲେଖକପକ୍ଷେ ମଧ୍ୟ କେଉଁ ପରିମାଣରେ ଦୁରୂହ - ଏହା ସରଳରେ ଅନୁମେୟ ।

ଏଇଠି କହିରଖେଁ, ତାଙ୍କର ଉଚ୍ଚକୋଟୀର ପ୍ରବନ୍ଧ, ସମାଲୋଚନା- ସାହିତ୍ୟ, କବିତା ଏବଂ ଗଳ୍ପକେତୋଟି ପାଠ କରି ଅବଶ୍ୟ ଏ ଲେଖକ ଅନେକ ସମୟରେ ବିମୋହିତ ହୋଇଛି । ତେଣୁ ମୁଁ ତାଙ୍କର ଜଣେ ରସଗ୍ରାହୀ ପାଠକ ମାତ୍ର; ସମାଲୋଚକ ତ ଆଦୌ ନୁହେଁ । ଅନ୍ୟ ପକ୍ଷରେ ତାଙ୍କ ସାହିତ୍ୟ ସୃଷ୍ଟିକୁ ତର୍ଜମା କଲାଭଳି ମୁଁ ମଧ୍ୟ ସେଭଳି ପ୍ରସିଦ୍ଧ କିମ୍ବା ପ୍ରବୀଣ ନୁହେଁ । ଏଣୁ ମୋ ଉପରେ ଏଭଳି ଗୋଟିଏ ଗୁରୁଦାୟିତ୍ୱ ନ୍ୟସ୍ତ କରି ସେ ମହାଶୟ ଯେ ମୋର ନିଦ ହଜାଇ ଦେଇଛନ୍ତି ଓ ମୋ ଭାବକେନ୍ଦ୍ରରେ ସୁତୀବ୍ର ଶିହରଣ ସୃଷ୍ଟି କରିଛନ୍ତି - ଏକଥା ନ କହିଲେ ସତ୍ୟର ଅପଳାପ ହେବ ।

ଏଭଳି ଗୋଟିଏ ସିଦ୍ଧାନ୍ତ ଗ୍ରହଣ କରିବା ପଛରେ ହୁଏତ ରହିଛି ତାଙ୍କ ଉଦାରତା ଓ ମହାନତା । ଏକଥା ମଧ୍ୟ ହୋଇପାରେ ଯେ ଆମ ସାହିତ୍ୟ ଜଗତକୁ ଏହା ତାଙ୍କର ଭିନ୍ନ ରୁଚିବୋଧ ନିହିତ ଏକ ମାର୍ମିକ ସଙ୍କେତ ।

କଥା ହେଲା, କୌଣସି ପୁସ୍ତକର ପାଣ୍ଡୁଲିପିକୁ ଆମୂଳଚୂଳ ପାଠ କରିବା ଏ ଲେଖକ ପାଇଁ ନୂତନ ଭୂଖଣ୍ଡଟିଏ ଆବିଷ୍କାର କରିବାଭଳି ଚମକପ୍ରଦ ଏବଂ ଉତ୍ତେଜନାପୂର୍ଣ୍ଣ । କିନ୍ତୁ ଅନ୍ୟ ପକ୍ଷରେ, ସେଇଟି ଯଦି କୌଣସି ପ୍ରିୟଜନ ଅଥବା ଗୁରୁଜନଙ୍କର ହୋଇଥାଏ, ତେବେ ସେଭଳି ପଠନାନନ୍ଦର ସ୍ଥାନ ପରିଗ୍ରହଣ କରେ ସଚେତନତା ଓ ସ୍ପର୍ଶକାତରତା ।

କହିବା ବାହୁଲ୍ୟ, ସାହିତ୍ୟ ଲାଗି ନିରନ୍ତର ଉତ୍ସର୍ଗୀକୃତ ଶ୍ରୀଯୁକ୍ତ ଶତପଥୀ ମୋର ପ୍ରିୟଜନ । ଏମିତି ଏକ ଧାରଣା ପଛରେ ରହିଛି, ମୋ ପ୍ରତି ତାଙ୍କର ରହିଥିବା ଗଭୀର ଶ୍ରଦ୍ଧା, ଯାହା ମୁଁ ଲକ୍ଷ୍ୟ କରିଆସିଛି ସୁଦୀର୍ଘ ପଚିଶ ବର୍ଷ ତଳୁ, ପ୍ରଥମେ ପ୍ରଥମେ ଇସ୍ତାହାର ପୃଷ୍ଠାରେ କବିତାସବୁ ଲେଖିଲାବେଳେ ପରବର୍ତ୍ତୀ ସମୟରେ ଅବଶ୍ୟ ଲେଖିଛି ଗଳ୍ପ । ସେ ତାକୁ



Digitized by PPRACHIN, SOA

ଯଥୋଚିତ ନ୍ୟାୟଦେଇ ଛାପିଛନ୍ତି ଏବଂ ଉଚ୍ଚମନ୍ତବ୍ୟ ଦ୍ୱାରା ମୋତେ ଅନୁଗୃହୀତ କରିଛନ୍ତି ।

ଥରେ ପଠେଇଥିଲି କବିତାଟିଏ । ସେତେବେଳେ ମୋ ଲେଖକ ଜୀବନର ପ୍ରାକ୍‌କାଳ । ଏଣୁ ମୁଁ ଥାଏ ସ୍ୱାଭାବିକ ଭାବରେ ଅନାମଧେୟ । ମୋତେ କିନ୍ତୁ ପ୍ରତ୍ୟୁତ୍ତରରେ ମିଳିଥିଲା ତାଙ୍କ ହସ୍ତାଙ୍କିତ ଚାରିଫର୍ଦ ସମ୍ବଳିତ ଗୋଟିଏ ଦୀର୍ଘ ଚିଠି । ଚିଠି ନୁହେଁ ତ ଗୋଟିଏ ସାରସ୍ୱତ ଆଲିଙ୍ଗନ । ତାହା ମୋତେ ଅନୁପ୍ରେରିତ କରିଥିଲା ସାହିତ୍ୟ ସାଧନା ପାଇଁ । ସେ ପ୍ରେରଣା ଅଦ୍ୟାବଧି ଉଜ୍ଜୀବିତ ।

ସେ ମୋର ଗୁରୁଜନ । ଏକା ମୋର କାହିଁକି, ଆମ ସମସାମୟିକ ଲେଖକ ମାନଙ୍କର ସେ ଗୁରୁସ୍ୱରୂପ । ସାହିତ୍ୟ ପ୍ରତି ତାଙ୍କ ନିଷ୍ଠାରେ ଯେ କୌଣସି ଛିଦ୍ର ନାହିଁ, ଏ କଥା ସର୍ବଜନ ସ୍ୱୀକାର୍ଯ୍ୟ । ଏଣୁ ତାଙ୍କ ଗ୍ରହଣୀୟତା ବ୍ୟାପକ । ସବୁଠୁଁ ବଡ଼ କଥା ହେଲା, ତାଙ୍କ ନଖଦର୍ପଣରେ ରହିଥାଏ ସମସ୍ତଙ୍କ ସାରସ୍ୱତ କୃତି ଏବଂ କୃତିତ୍ୱ । ଅନ୍ୟଭାଷାରେ କହିଲେ, ସେ ଆମ ସାରସ୍ୱତ ଅସ୍ମିତାର ଗୋଟିଏ ଚଳମାନ୍ ପ୍ରତିରୂପ ।

ଏ ପ୍ରସଙ୍ଗରେ ଆଉ ଗୋଟିଏ କଥା ମଧ୍ୟ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଯେଉଁ ଦୁଇଟି ନିରୁତା ସାହିତ୍ୟ ପ୍ରତ୍ରିକା ଓଡ଼ିଶାର ସାହିତ୍ୟ ଆକାଶକୁ ସମ୍ଭ୍ରାନ୍ତ ଦ୍ୟୁତି ଦେବାରେ ସମର୍ଥ ହୋଇଛନ୍ତି, ସେ ଦୁଇଟି ହେଲେ 'ଝଙ୍କାର' ଓ 'ଇସ୍ତାହାର' । କିନ୍ତୁ ପାର୍ଥକ୍ୟଟି ହେଲା, 'ଝଙ୍କାର' ପତ୍ରିକା ମନୀଷୀ ଶ୍ରୀଯୁକ୍ତ ହରେକୃଷ୍ଣ ମହତାବଙ୍କ ଦ୍ୱାରା ପ୍ରଜାତନ୍ତ୍ର ସମ୍ବାଦପତ୍ରର ଆନୁଷ୍ଠାନିକ ପୃଷ୍ଠଭୂମିରେ ପରିପାଳିତ; କିନ୍ତୁ 'ଇସ୍ତାହାର' ପରିପୋଷିତ, କେବଳ ଶ୍ରୀଯୁକ୍ତ ଶତପଥୀଙ୍କ ଉଭୟ ଅନ୍ତର୍ଦୃଷ୍ଟି ଏବଂ ଦୂରଦୃଷ୍ଟି ସମ୍ପନ୍ନ ବ୍ୟକ୍ତିଗତ ତତ୍ତ୍ୱାବଧାନରେ । ତାଙ୍କର ଏଭଳି ଅବିମିଶ୍ର ସାରସ୍ୱତ ପ୍ରତିବଦ୍ଧତା ପାଇଁ ସେ ଆମ ସାହିତ୍ୟ ପରିବାରର ଅଭିଭାବକ, ଅତଏବ ଗୁରୁଜନ ।

ସେହି ସାହିତ୍ୟଗୁରୁଙ୍କର ରହିଛି ଦୀର୍ଘଦିନର ସାରସ୍ୱତ ଅଭିଜ୍ଞତା । ରହିଛି ମଧ୍ୟ ପ୍ରଚୁର ଅଧ୍ୟବସାୟ ଏବଂ ଅନୁସନ୍ଧିତ୍ସା । ତେବେ 'ଗଳ୍ପସମଗ୍ର' ପ୍ରକାଶନର ପରିପ୍ରେକ୍ଷୀରେ ତାତ୍ପର୍ଯ୍ୟ ପୂର୍ଣ୍ଣ କଥାଟି ହେଉଛି, ଏଇ ଗ୍ରନ୍ଥଟିର ପ୍ରକାଶନ ଉତ୍ତାରେ ସେ ଜଣେ ବିଧିବଦ୍ଧ ଗଳ୍ପସ୍ରଷ୍ଟା ଭାବରେ ପ୍ରତିଭାତ ହେବେ ଓଡ଼ିଶାର ସାରସ୍ୱତ ପରିମଣ୍ଡଳରେ ।

ତେବେ, ପାଣ୍ଡୁଲିପିଟି ପଢ଼ିସାରିବା ପରେ ଯେଉଁ କଥାଟି ସୂକ୍ଷ୍ମଭାବରେ ଲକ୍ଷ୍ୟଣୀୟ, ତାହା ହେଲା-ପ୍ରଥମତଃ ଉକ୍ତ ସଂକଳନର ସମସ୍ତ ଗଳ୍ପ ଶ୍ରୀଯୁକ୍ତ ଶତପଥୀଙ୍କ ସମାଲୋଚନା ସାହିତ୍ୟର ଅଭିଯାତ୍ରା ସହିତ ତାଳ ଦେଇ ରଚିତ ହୋଇଆସିଛି । ଦ୍ୱିତୀୟତଃ ଏହା ମଧ୍ୟ ପରିଲିଖିତ ହୋଇଛି ସମୟର ଗୋଟାଏ ଖାମ୍‌ଖିଆଲୀ ବ୍ୟବଧାନରେ । ତୃତୀୟତଃ ଏହାସବୁ ଲେଖାଯାଇଛି ତୀବ୍ର ଅନୁଭୂତିର ତାଡ଼ନାରେ; କୌଣସି ପତ୍ର ପତ୍ରିକାରେ ପ୍ରକାଶିତ ହେବାର ବରାଦ କିମ୍ବା ବାଧ୍ୟବାଧକତାରେ ନୁହେଁ । ଏଣୁ ସେଗୁଡ଼ିକ ସ୍ୱତଃସ୍ଫୂର୍ତ୍ତ ।

ତେଣୁ ଏ ତିନୋଟିଯାକ କଥା ଜଣେ ଲେଖକ ଭାବରେ ସାହିତ୍ୟକ୍ଷେତ୍ରରେ ତାଙ୍କ ସବ୍ୟସାଚିତ୍ୱକୁ ହିଁ ଇଙ୍ଗିତ କରୁଛି ।



Digitized by PPRACHIN, SOA

ସାହିତ୍ୟର କ୍ଷେତ୍ର ବ୍ୟାପକ । ସାହିତ୍ୟିକଟିଏ କିନ୍ତୁ ସୀମିତ ଶକ୍ତିର ଅଧିକାରୀ- ଏହା ଅନେକାଂଶରେ ସତ୍ୟ । କିନ୍ତୁ କତିପୟ ଯୋଗଜନ୍ମା ସାହିତ୍ୟସ୍ରଷ୍ଟା ଅଛନ୍ତି, ଯେଉଁମାନଙ୍କୁ ନିର୍ଦ୍ଦିଷ୍ଟ କୌଣସି ପରିସୀମା ଭିତରେ ରେଖାଙ୍କିତ କରି ରଖିବା କଷ୍ଟସାଧ୍ୟ । ସେମାନେ ଦିଗବିଦିଗ ସ୍ପର୍ଶୀ । ସାହିତ୍ୟର ଯେ କୌଣସି ବିଭାଗରେ ସେମାନେ ତାଙ୍କ ସର୍ଜନଶକ୍ତିକୁ ଢ଼ାଳିଦେଇ ପାରନ୍ତି । ଦୃଷ୍ଟାନ୍ତ ଭାବରେ ଆମେ ସେମାନଙ୍କୁ ନେଇପାରିବା, ଯେଉଁ କେତେଜଣ ଏକାଧାରରେ ଗାଳ୍ପିକ, ଔପନ୍ୟାସିକ, କବି, ଗୀତିକାର, ସ୍ୱରକାର, ସ୍ତମ୍ଭକାର, ପ୍ରାବନ୍ଧିକ, ଆଧ୍ୟାତ୍ମିକ ଚିନ୍ତନ ପ୍ରକଟ କରିବା ଭଳି ମାର୍ଗଦର୍ଶକ । ସେମାନେ ସବୁ କ୍ଷଣଜନ୍ମା ଏବଂ ସାହିତ୍ୟର ପ୍ରତ୍ୟେକ ବିଭାଗରେ ସେମାନଙ୍କର ପରାକାଷ୍ଠା ସ୍ୱୀକୃତ ।

ଯେଉଁ ସାହିତ୍ୟିକ ପୃଷ୍ଠଭୂମି, ଅଭିନିବେଶ, ଅଧ୍ୟୟନ ଓ ଅଧ୍ୟବସାୟରୁ ଏଭଳି ପ୍ରତିଭା ନିଷ୍ପନ୍ନ ହୁଏ, ତାହା ଶ୍ରୀଯୁକ୍ତ ଶତପଥୀଙ୍କର ଅଛି । ତାଙ୍କର ତଥ୍ୟନିର୍ଭର ପ୍ରବନ୍ଧସବୁ ବିଶ୍ୱବିଦ୍ୟାଳୟ ସ୍ତରରେ ପାଠ୍ୟକ୍ରମର ସହାୟକ ଗ୍ରନ୍ଥ । ତାଙ୍କ ସମାଲୋଚନା ସାହିତ୍ୟ ଯେଉଁମାନେ ପଢ଼ିଛନ୍ତି, ସେମାନେ ସ୍ୱୀକାର କରିବେ ସାହିତ୍ୟ ପ୍ରତି ତାଙ୍କର ଦୃଷ୍ଟିକୋଣ କିଭଳି ପୀନବଦ୍ଧ । କେବେ କେବେ ତାଙ୍କ କବିତା ଓ ଗଳ୍ପ ଅବଶ୍ୟ ଆତ୍ମପ୍ରକାଶ କରିଛି ପତ୍ରିକା ପୃଷ୍ଠାରେ, ଯେଉଁଥିରୁ ତାଙ୍କର ମୌଳିକ ସୃଜନାତ୍ମକ ଶୈଳୀଟି ସୁସ୍ପଷ୍ଟ ହୋଇ ଦେଖାଯାଏ ଏବଂ ବିଶେଷ ଭାବରେ ଆଲୋଚିତ ହୋଇଥାଏ ପାଠକ ମହଲରେ ।

କିନ୍ତୁ ଏକକାଳୀନ ତାଙ୍କର ଏତେଗୁଡ଼ିଏ ଗଳ୍ପ ପାଠ କରିବା ଏ ଲେଖକ ପାଇଁ ଏକ ଭାବଗର୍ଭକ ଅଭିଜ୍ଞତା । ଭାବଗର୍ଭକ ଏଇଥିପାଇଁ, ତାଙ୍କ କଥାବସ୍ତୁ ଗୁଡ଼ିକର ଗଳ୍ପାନୁସାରୀ ଭାଷା ତାଙ୍କ ଦ୍ୱାରା ପରିପାଳିତ ଗଦ୍ୟଭାଷାର ବୌଦ୍ଧିକତା ଦ୍ୱାରା କୌଣସି ଦୃଷ୍ଟିରୁ ଆକ୍ରାନ୍ତ ନହେବା । ତାଙ୍କ ଭାଷା ଅନାଘ୍ରାତ ଏବଂ ଶାଣିତ ।

ତାଙ୍କ କଥାଭୂଣରେ ରହିଥିବା ଗଳ୍ପଧର୍ମିତାର ଗତି ମଧ୍ୟ ପ୍ରଖର ଏବଂ ସ୍ପନ୍ଦନଯୁକ୍ତ । ପ୍ରାରମ୍ଭର ଆକସ୍ମିକତା, ଉତ୍କଣ୍ଠାପୂର୍ଣ୍ଣ ମଧ୍ୟଭାଗ ଏବଂ ଯୌକ୍ତିକତାପୂର୍ଣ୍ଣ କଳାତ୍ମକ ପରିଣତି ଯାହା ଯେମିତି ରହିବା କଥା, ସେମିତି ସବୁ ରହିଛି ତାଙ୍କ ଗଳ୍ପରେ । ମାତ୍ର ତିନି ଚାରୋଟି ଗଳ୍ପକୁ ଛାଡ଼ିଦେଲେ, ଅନ୍ୟ ଗଳ୍ପଗୁଡ଼ିକ ଯେ ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଚିତ୍ରାଙ୍କନ - ଏଥିରେ ଦ୍ୱିମତ ହେବାର ଅବକାଶ ନାହିଁ ।

ଦୀର୍ଘକାଳ ବ୍ୟାପୀ ଓଡ଼ିଆ ଭାଷା- ସାହିତ୍ୟର ଅଧ୍ୟାପନା କରିବା, ପ୍ରାୟ ପଇଁତିରିଶ ବର୍ଷ ପର୍ଯ୍ୟନ୍ତ ଗୋଟିଏ ଆଗଧାଡ଼ିର ପତ୍ରିକାକୁ ସୁସ୍ଥ ସୁନ୍ଦର ଭାବରେ ବଞ୍ଚାଇ ରଖିବା ଭିତରେ ମଧ୍ୟ ତାଙ୍କ ସର୍ଜନଶୀଳ ସୁକୁମାର କାବ୍ୟାତ୍ମା ଓ ଗଳ୍ପାତ୍ମାକୁ ସେ ଯେ ବେଶ୍ ହେପାଜତ୍ କରିଆସିଛନ୍ତି ଏବଂ ନିଜର ସ୍ୱଭାବ ସୁଲଭ ସମାଲୋଚନାତ୍ମକ ସୃଷ୍ଟିଭଙ୍ଗୀର ଦନ୍ତାଘାତରୁ ଯେ ବଞ୍ଚାଇ ରଖି ପାରିଛନ୍ତି- ଏହା ହିଁ ଏ ଲେଖକ ପାଇଁ ମୁଖବନ୍ଧଟି ପ୍ରସ୍ତୁତ କରିବା ପର୍ଯ୍ୟାୟରେ ସବୁଠୁଁ ଅଧିକ ସୁଖକର ଉପଲବ୍ଧି ।

ଆଲୋଚ୍ୟ ଗଳ୍ପଗ୍ରନ୍ଥରେ ରହିଛି ସମୁଦାୟ ସଇଁତିରିଶଟି ଗଳ୍ପ ।

'ଗଳ୍ପ ପୂର୍ବରୁ' ଶୀର୍ଷକରେ ଯାହା ଶ୍ରୀଯୁକ୍ତ ଶତପଥୀ ଲେଖିଛନ୍ତି, ତାହା ଗଳ୍ପ



Digitized by PPRACHIN, SOA

ନହେଲେ ମଧ୍ୟ ଗଳ୍ପ ଲିଖନ ପ୍ରକ୍ରିୟାର ଗୋଟିଏ ରକ୍ତାକ୍ତ ଭାବଭୂମି ପରି ମନେହୁଏ, ଯାହା ଭିତରେ ଭରି ରହିଛି ପ୍ରଚୁର ଆବେଗ ଓ ଆର୍ଦ୍ରତା। ଏହା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ; କାରଣ ଏଥିରେ ରହିଛି ତାଙ୍କର କେତୋଟି ମାର୍ମିକ ସ୍ୱୀକାରୋକ୍ତି ଏବଂ ପାଠକସମାଜ ପାଇଁ ପ୍ରଶ୍ନାକୁଳ କେତୋଟି ଆନ୍ତରିକ ନିବେଦନ। ସେତିକ ମଧ୍ୟରେ ଅବଶ୍ୟ ନିହିତ ରହିଛି ତାଙ୍କର ଗଳ୍ପ ଲେଖିବାର ପ୍ରାସଙ୍ଗିକତା।

ସେ କହନ୍ତି, "ମୋତେ ଏଯାବତ୍ ଓଡ଼ିଆ ସାହିତ୍ୟର ପାଠକମାନେ କେବଳ ସମାଲୋଚକ ଭାବେ ଜାଣିଥିଲେ.... ମୁଁ ସୃଜନଶୀଳ ସ୍ରଷ୍ଟାର ଭୂମିକାରେ ଏଠି ଉପନୀତ ... ଅନେକ ଗଳ୍ପରେ ମୋର ସ୍ୱଚ୍ଛ ଓ ଅନ୍ତରଙ୍ଗ ଅନୁଭୂତି ରହିଛି... ମହାକାଳର ଜାଗତିକ ପ୍ରବାହ ମଧ୍ୟରେ ବ୍ୟକ୍ତିମଣିଷର ମନରେ ଅନବରତ ଭାସିଚାଲିଥିବା ଅଗଣିତ ଆହତ ଆତ୍ମିକ ସ୍ପନ୍ଦନ ହିଁ କ୍ଷୁଦ୍ରଗଳ୍ପ" ଇତ୍ୟାଦି।

ପ୍ରକୃତରେ ତାଙ୍କ ଗଳ୍ପଗୁଡ଼ିକରେ ଯେ ଲେଖକଙ୍କର ବ୍ୟକ୍ତିଗତ ସ୍ୱଚ୍ଛ ଓ ଅନ୍ତରଙ୍ଗ ଅନୁଭୂତିମାନ ରହିଛି... ଏହା ଆଦୌ ନିରାଧାର ନୁହେଁ। ସେଇ ପରିପ୍ରେକ୍ଷୀରେ ତାଙ୍କ ସୃଷ୍ଟିସମୂହକୁ ବିଚାରକଲେ ସେଗୁଡ଼ିକ ଭୂମିଷ୍ଠ ହେବାର ଯଥାର୍ଥତା ଅନୁଭବ କରିହେବ।

ସେଇସବୁ ଗଳ୍ପର ସାମଗ୍ରିକ ପୃଷ୍ଠଭୂମିରୁ ଯେଉଁ ଗୋଟିଏ କଥା ଫୁଟି ଦିଶୁଚି, ତାହା ହେଲା- ଜଣେ ସ୍ରଷ୍ଟା କିଭଳି ନିଜର ଚାରିପାଖର ବିଶ୍ୱ ପ୍ରତି ସର୍ବାନ୍ତକରଣରେ ଉନ୍ମୁଖ ଏବଂ ଆଖିଦେଖା, ଅଙ୍ଗେନିଭା କଥାଗୁଡ଼ିକ ପ୍ରତି କେଉଁ ପରିମାଣରେ ବିଶ୍ୱସ୍ତ, ଯତ୍ନବାନ୍ ଏବଂ ସ୍ଥଳବିଶେଷରେ ପ୍ରତିକ୍ରିୟାଶୀଳ।

କଲେରିଜ୍ କହିଥିଲେ A poet is an unacknowledged legistator of mankind. ଏ ଲେଖକର ଯାହା ମନେହୁଏ, Poetର ବ୍ୟବହାରିକ ଅର୍ଥ କେବଳ 'କବି' ନୁହେଁ, ଜଣେ ସୃଜନଶୀଳ ସ୍ରଷ୍ଟା। ସେ ହୁଏତ ଜଣେ କବି, ନାଟ୍ୟକାର, ଗାଳ୍ପିକ ଏପରିକି ପ୍ରାବନ୍ଧିକ ବି ହୋଇପାରନ୍ତି। ପ୍ରକୃତରେ ଯେଉଁ ପ୍ରବନ୍ଧରେ କାବ୍ୟିକତା ନଥାଏ, ତାହା କେବଳ ଏକ ସ୍ଥୂଳ ବିବରଣୀ ନୁହେଁ ତ ଆଉ କ'ଣ ? ସେଭଳି ଲେଖା ବ୍ୟକ୍ତିମାନସକୁ ମଥିତ କିମ୍ବା ସ୍ପନ୍ଦିତ କରେନାହିଁ। ସ୍ପନ୍ଦନ ଆସେ ସେଇଥିରୁ, ଯେଉଁଥିରେ ରହିଥାଏ ବ୍ୟକ୍ତିର ଭାବଭୂମି ପାଇଁ ଖୋରାକ। ଜଣେ ଲେଖକ Legistator ହୁଏ ସେତେବେଳେ, ଯେତେବେଳେ ସେ 'ସୁ' ଓ 'କୁ' ଭିତରେ ଥିବା ଝୀନ ପରିଦାଟିକୁ ଅଙ୍ଗୁଳି ନିର୍ଦ୍ଦେଶ କରି ଦେଖାଇଦେଇପାରେ ସମାଜକୁ।

ପ୍ରକୃତ ପକ୍ଷରେ ଦେଖିବାକୁ ଗଲେ ତାଙ୍କ ଗଳ୍ପଗୁଡ଼ିକରେ ସେହି ବିଭାଜନରେଖାଟି ଅତ୍ୟନ୍ତ ସ୍ୱଚ୍ଛ, ଆନ୍ତରିକ ଏବଂ ସ୍ଥଳ ବିଶେଷରେ ହୃଦୟ ବିଦାରକ ମଧ୍ୟ। ତାଙ୍କ ଗଳ୍ପଜଗତର ସୀମାରେଖା ନିର୍ଣ୍ଣୟ କଲାଭଳି ଗଳ୍ପ, ଦେଶାତ୍ମବୋଧ ପଟ୍ଟଭୂମିରେ ଲିଖିତ ଗଳ୍ପ, ଶିଶୁ ମନସ୍ତତ୍ତ୍ୱର ଗଳ୍ପ, ମାନବେତର ଚରିତ୍ରକୁ ଅନୁଶୀଳନ କଲା ଭଳି ଗଳ୍ପ, ପ୍ରେମଭାବନାର ପୃଷ୍ଠଭୂମିରେ ଲିଖିତ ଗଳ୍ପ, ପୌରାଣିକ ଆଖ୍ୟାନ ଭିତ୍ତିକ ଗଳ୍ପ, ମାନବବାଦର ଜୟଗାନ କରୁଥିବା ଗଳ୍ପ, ସମାଜ ସଂସ୍କାରଧର୍ମୀ ଗଳ୍ପ, ଅବଦମିତ ଯୌନେଚ୍ଛାକୁ ରୂପାୟିତ କରୁଥିବା ଗଳ୍ପ, ରାଜନୈତିକ ସଚେତନତା ସମ୍ବଳିତ ଗଳ୍ପକୁ ନେଇ ତାଙ୍କର ଗଳ୍ପସୃଷ୍ଟି ଅତ୍ୟନ୍ତ ସମୃଦ୍ଧ।



Digitized by PPRACHIN, SOA

ଭାଷା ପ୍ରୟୋଗରେ ସେ ମଧ୍ୟ ଅତ୍ୟନ୍ତ ସଚେତନ । ତାଙ୍କ ଭାଷା ଅଭିଜାତ ଓ କାହାଣୀକୁ ଗତିଶୀଳ କରାଇବା ପରି ତରଳ ତଥା ଭାବଦ୍ୟୋତକ । ବେଳେବେଳେ ମନେହୁଏ ତାଙ୍କର ଭାଷାଜଗତ ଗୋଟିଏ ସଚେତନତାର ପ୍ରାଚୀର ଦ୍ୱାରା ଦୁଇଭାଗରେ ବିଭକ୍ତ । ତାଙ୍କର ସମାଲୋଚନାର ଭାଷା ଗୋଟିଏ ଗୋଲାର୍ଦ୍ଧରେ ତ ସୃଜନାତ୍ମକ ଭାଷା ଅପର ଗୋଲାର୍ଦ୍ଧରେ । ଏଣୁ ତାଙ୍କ ଗଳ୍ପଭାଷା ଭିତରୁ ସମାଲୋଚକ- ନିତ୍ୟାନନ୍ଦଙ୍କୁ ଖୋଜି ପାଇବା ସମ୍ଭବ ହୁଏନାହିଁ ।

କେତୋଟି ଗଳ୍ପରୁ ଲାଗେ, ସ୍ୱୟଂ ଗାଳ୍ପିକ ସତେଅବା ବିସ୍ତାରିତ ପ୍ରେମ-ଭାବନାର ଏକ ଅବରୁଦ୍ଧ ଗନ୍ତାଘର । ସେ ମାନବବାଦର ଜଣେ ବେସାଲିସ୍ ଉଦ୍‌ଗାତା । ଯେହେତୁ ତାଙ୍କର ସାରସ୍ୱତ ଜୀବନଟି ସୁଦୀର୍ଘ ଏବଂ ସଂଗ୍ରାମପୂର୍ଣ୍ଣ, ତେଣୁ ଆତ୍ମାର ନୀରବ ଆହ୍ୱାନ ଏବଂ ସମୟର ଦାବିଗୁଡ଼ିକ ପ୍ରତି ସେ ଏକାନ୍ତ ଭାବେ ଉତ୍‌କର୍ଣ୍ଣ । ଲାଗେ, ସାମାଜିକ ବିଲକ୍ଷଣଗୁଡ଼ିକୁ ମୂଳପୋଛ କରିବା ପାଇଁ ସେ ପ୍ରତିଜ୍ଞାବଦ୍ଧ । ଶ୍ରୀଯୁକ୍ତ ଶତପଥୀଙ୍କ ରାଜନୈତିକ ଅଭିଜ୍ଞତାର ପର୍ଯ୍ୟାପ୍ତ ଝଲକ ମଧ୍ୟ ମିଳେ ତାଙ୍କ ଗଳ୍ପବସ୍ତୁରୁ ।

ତାଙ୍କ ଗଳ୍ପସୃଷ୍ଟିର ବୈଭିନ୍ନ୍ୟ ଦର୍ଶାଇବାକୁ କେତୋଟି ପୃଷ୍ଠଭୂମିର ଅତୋରଣା କରିବାର ଲୋଭ ସମ୍ବରଣ କରିପାରୁନାହିଁ ।

ନବବଧୂ ଗୀତାଲି ଯେମିତି ପ୍ରଚଳିତ ଲୋକକଥାର ବଶବର୍ତ୍ତୀ ହୋଇ ତାର ଗର୍ଭନଷ୍ଟ କରିବାକୁ ଆସିଛି ହସପିଟାଲ୍‌କୁ ଓ ସନ୍ତାନବତୀ ପ୍ରସୂତିମାନଙ୍କୁ ଦେଖି ବିରକ୍ତ ଓ ବିବ୍ରତ ହେବା ଭିତରେ ଉପଲବ୍ଧି କରିଛି, ମାତୃତ୍ୱ ହିଁ ନାରୀ ଜୀବନର ପୂର୍ଣ୍ଣତା, ତାହା ବର୍ଣ୍ଣିତ ହୋଇଛି 'କାଳ ଓ କର୍ଣ୍ଣିକା' ଗଳ୍ପରେ । 'ଚିଠି' ଗଳ୍ପରେ ଜଣେ ଅଳ୍ପପରିଚିତା ତରୁଣୀ କିଭଳି ଲେଖକଙ୍କ ଉପଦେଶ ଓ ଦିଗ୍‌ଦର୍ଶନକୁ ଅପେକ୍ଷା କରିକରି ଆତ୍ମହତ୍ୟାର ପଥ ବାଛିନେଇଛି- ତାର ବର୍ଣ୍ଣନା ରହିଛି । 'ଝିଅ' ଗଳ୍ପରେ ରହିଛି ବଡ଼ଭଉଣୀ ଅବିବାହିତା ରହିଥିବା ସତ୍ତ୍ୱେ ସାନଭଉଣୀର ବିବାହ ଅନୁଷ୍ଠିତ ହେବା ଓ ବଡ଼ଭଉଣୀର ମନସ୍ତାତ୍ତ୍ୱିକ ବିଚିତ୍ରତା ତଥା ଦ୍ୱନ୍ଦ୍ୱର ପ୍ରସଙ୍ଗ । 'ବୃଷଭ ଉପାଖ୍ୟାନ' ଗଳ୍ପରେ ରହିଛି ରାଜନୀତିରେ ଛଳନା ଓ କପଟତାର ଭୋଜବାଜି । 'ନବନୀତା' ଗଳ୍ପରେ ରହିଛି ଦୁଇଜଣ କାମୁକ ପୁରୁଷଙ୍କ ପଶୁସୁଲଭ ରିରଂସା ଓ ଆଦର୍ଶବାଦୀ ବାସୁଦେବର ବ୍ୟତିକ୍ରାନ୍ତ ଚରିତ୍ର । 'ଇତିଶ୍ରୀ' ଗଳ୍ପ ହେଉଛି ସମାଜର ନାଲିଆଖିକୁ ଉପ୍ରୋଧ ନକରି ଗୋଟିଏ କୁଷ୍ଠୀର କନ୍ୟାକୁ ଘରକୁ ଆଣି ଲାଳନପାଳନ କରିବାର ମାର୍ମିକ କାହାଣୀ । 'ଶ୍ୱାନ ଉପାଖ୍ୟାନ' ଗଳ୍ପଟି ବୁଲାକୁକୁର ମାନଙ୍କ ଉଚ୍ଛୃଙ୍ଖଳ ଯୌନସଂପର୍କ ଓ ଭୟଙ୍କର ଜିଘାଂସାର ନିଛକ ଚିତ୍ର । 'ଧୂସର ସୀମାନ୍ତ' ଗଳ୍ପରେ ରହିଛି ଯୁଦ୍ଧଭୂମିରେ ମଧ୍ୟ ମହାଭାରତୀୟ ସଂସ୍କୃତିର ଅବାଧ ଆତ୍ମପ୍ରକାଶ । 'ଶମ୍ଭୁନାଥର କାହାଣୀ'ରେ ରହିଛି ଏକ ଅଜବ ଚରିତ୍ରର ସଫଳ ଓ ଆବେଗ ପୂର୍ଣ୍ଣ ରୂପାୟନ । 'ସ୍ମୃତିରେ ସ୍ମୃତିରେ ମୀରା' ଗଳ୍ପଟି ଅମାନୁଷିକ ସ୍ୱାମୀ କର୍ତ୍ତୃକ ଅନ୍ତସତ୍ତ୍ୱା ହୋଇ ସୁନ୍ଦରୀ ପତ୍ନୀ ମୀରା ପୃଥିବୀ ପୃଷ୍ଠରୁ ବିଦାୟ ନେବାର କରୁଣ କାହାଣୀ ଏବଂ 'ଯେନଦୀ ମରୁପଥେ' ଆମ ସମାଜରେ ନାରୀ ନିର୍ଯ୍ୟାତନାର ସକରୁଣ ଚିତ୍ରପଟ ।



Digitized by PPRACHIN, SOA

ନା- ଗଳ୍ପଗୁଡ଼ିକୁ ବିଶଦ୍ ଭାବରେ ବ୍ୟବଚ୍ଛେଦ କରିବାର ଆବଶ୍ୟକତା ନାହିଁ। କାରଣ ସେପରି କରିବା ପାଠକମାନଙ୍କର ନାନ୍ଦନିକ ଉପଲବ୍ଧି ପଥରେ ଅନ୍ତରାୟ ହେବ ବୋଲି ଏ ଲେଖକର ଆଶଙ୍କା। ଏଣୁ ସେସବୁ ପାଠକମାନଙ୍କ ଅବବୋଧ ନିମନ୍ତେ ମହଜୁଦ୍ ରହୁ।

ଉକ୍ତ ଗଳ୍ପଗ୍ରନ୍ଥରେ ଥିବା ସମୁଦାୟ ସଇଁତିରିଶଟି ଯାକ ଗଳ୍ପ ଦୁଇଟି ପ୍ରମୁଖ ଭାଗରେ ସନ୍ନିବେଶିତ। ପ୍ରଥମ ଭାଗ 'କାଳ ଓ କର୍ଣ୍ଣିକା' ଏବଂ ଦ୍ୱିତୀୟ ଭାଗ 'ଯେନଦୀ ମରୁପଥେ'। ଉକ୍ତ ନାମକରଣରେ ମଧ ରହିଛି ଲେଖକଙ୍କ କାବ୍ୟିକତା ଏବଂ ପରିପକ୍ୱତା।

ମୋଟାମୋଟି ଭାବରେ ଆଲୋଚ୍ୟ 'ଗଳ୍ପସମଗ୍ର' ଗ୍ରନ୍ଥଟି ଲେଖକଙ୍କୁ ଜଣେ ପୂର୍ଣ୍ଣାଙ୍ଗ ଗଳ୍ପସ୍ରଷ୍ଟାର ମାନ୍ୟତା ପ୍ରଦାନ କରିବାରେ ଏକ ଉପଯୁକ୍ତ ଭୂମିକା ତୁଲାଇବ- ଏହା ନିଃସନ୍ଦେହ ।

ଶ୍ରୀଯୁକ୍ତ ଶତପଥୀ କ୍ଷୁଦ୍ରଗଳ୍ପଗୁଡ଼ିକରେ ମୂଳ ସମସ୍ୟାର ଉପସ୍ଥାପନା କରିବା ସହିତ ସମାଧାନର ସୂକ୍ଷ୍ମ ଇଙ୍ଗିତ ମଧ ଦେଇଛନ୍ତି। ବୃହତ୍ତର ଜୀବନ ଜିଜ୍ଞାସା ସହିତ ପରିସ୍ଥିତିରୁ ପରିତ୍ରାଣର ସଙ୍କେତ ମଧ ଠାଏ ଠାଏ ପ୍ରଦାନ କରିଛନ୍ତି। ଯେହେତୁ ଏଇ ଗଳ୍ପ ଶୈଳୀଟି ତାଙ୍କ ନିଜସ୍ୱ, ତେଣୁ ଗଳ୍ପସବୁ ଅତି ପ୍ରଭାବଶାଳୀ ହୋଇପାରିଛି।

ଗଳ୍ପମୋଦୀ ପାଠକଙ୍କ ପାଇଁ ଏହା କେବଳ ଯେ ଉପଭୋଗ୍ୟ ହେବ, ତାହା ନୁହେଁ, ଉକ୍ତ ଗ୍ରନ୍ଥଟି ମଧ ଏ ଶତାବ୍ଦୀର ସାହିତ୍ୟଶାଳା ପାଇଁ ସଂଗ୍ରହଣୀୟ ହେବ। ସର୍ବୋପରି ଏ ଲେଖକ ପ୍ରଚୁର ଆଶାବାଦୀ ଯେ ପାଠକଙ୍କ ଦରବାରରେ ଜଣେ ବରିଷ୍ଠ ଲେଖକଙ୍କର ଏଭଳି ଅର୍ଦ୍ଧନାରୀଶ୍ୱର ସାରସ୍ୱତ ଭାବମୂର୍ତ୍ତିଟି ରହସ୍ୟମୟ ଏବଂ ପ୍ରଣିଧାନଯୋଗ୍ୟ ମନେ ହେବ।

ଏ ଦିଗରେ ଏକ ସଂଯୋଗ ସେତୁର ଭୂମିକା ତୁଲାଇବା ପାଇଁ ଗଳ୍ପ ଲେଖକ ମୋତେ ଯେଉଁ ସୁଯୋଗଟି ଦେଇଛନ୍ତି, ତାର କେତେ ଶତାଂଶ ମୁଁ ପୂରଣ କଲି କିମ୍ୱା ଆଦୌ ଏକ ଶତାଂଶ ସୁଦ୍ଧା ପୂରଣ କରିପାରିଲି କି ନା- ସେ ବିଚାର ଆପଣମାନଙ୍କର । ହିଁ ଆପଣମାନେ, ଯେଉଁମାନେ ହିଁ ହେବେ ଏ ଗଳ୍ପସମଗ୍ରର ବିଦଗ୍ଧ ପାଠକ।

ଅବଶ୍ୟ ଏ ଲେଖକର କ୍ଷୁଦ୍ର ମତରେ ସେ ବିଚାରଟି ମଧ ସେଭଳି ଗୁରୁତ୍ୱପୂର୍ଣ୍ଣ ନୁହେଁ; ଯେଭଳି ଗୁରୁତ୍ୱପୂର୍ଣ୍ଣ, ନିଜ ଗଳ୍ପମନସ୍କତାର ମେଘମାଳା ଭିତରୁ ଗଳ୍ପଗନ୍ଧର୍ବ ଶ୍ରୀଯୁକ୍ତ ଶତପଥୀ ଆମ କଥା ସାହିତ୍ୟର ଭୂପୃଷ୍ଠକୁ ସଦର୍ପ ଓ ସଘୋଷ ଅବତରଣ କରିବା

ବିଷ୍ଣୁ ସାହୁ
(କଥାଶିଳ୍ପୀ)



Digitized by PPRACHIN, SOA

# ଗଳ୍ପ ପୂର୍ବରୁ...

କ୍ଷୁଦ୍ରଗଳ୍ପର ମୁଖବନ୍ଧ ପୁଣି ଗୋଟାଏ କଣ ? ଏ କବିତା ନୁହେଁ ଯେ ତା' ବିଷୟରେ କବି କିଛି ବକ୍ତବ୍ୟ ରଖିଯିବ । ତେବେ ମଧ ଦରକାର ପଡ଼ିଲା । କାରଣ ମୋତେ ଏ ଯାବତ୍ ଓଡ଼ିଆ ସାହିତ୍ୟର ପାଠକମାନେ କେବଳ ସମାଲୋଚକ ଭାବେ ଜାଣିଥିଲେ । ମୁଁ ଯେ ଅତୀତରେ ଗପ ଓ କବିତା ଲେଖୁଥିଲି ଓ ଏଇ କେତେବର୍ଷ ଭିତରେ ବର୍ଷକୁ ପ୍ରାୟ ତିନୋଟି ହାରରେ ଗଳ୍ପ ଲେଖୁଚି, ଏ ବିଷୟ କେହି କେହି ସଚେତନ ପାଠକ ନିଶ୍ଚୟ ଲକ୍ଷ୍ୟ କରିଥିବେ । ସେଇମାନଙ୍କ ମଧ୍ୟରୁ କେତେଜଣ ମୋ ଗପ ପଢ଼ି ମୋତେ ଉତ୍ସାହିତ ମଧ କରିଛନ୍ତି । କିନ୍ତୁ ପ୍ରତିଷ୍ଠିତ ଗଳ୍ପଲେଖକମାନଙ୍କଠାରୁ କୌଣସି ଉତ୍ସାହଦୀପ୍ତ ବାକ୍ୟ ଶୁଣି ନାହିଁ । ସେମାନେ କ'ଣ ନବାଗତମାନଙ୍କୁ ପଢ଼ନ୍ତି ନାହିଁ ? କିନ୍ତୁ ସେମାନେ ତ ନିଶ୍ଚୟ ଆଶା କରନ୍ତି ସେମାନଙ୍କ ଗଳ୍ପ ଅନ୍ୟମାନେ ପଢ଼ନ୍ତୁ । ଓଡ଼ିଶାର ନିର୍ବିବାଦୀୟ ଅବିସମ୍ବାଦିତ ଶ୍ରେଷ୍ଠ ଗାଳ୍ପିକ ଶ୍ରୀଯୁକ୍ତ ମନୋଜ ଦାସଙ୍କୁ ଏହି ଗଳ୍ପ ପୁସ୍ତକଟି ଉତ୍ସର୍ଗ କରି ମୁଁ ନିଜକୁ ଧନ୍ୟ ମନେକରୁଛି । ଅନ୍ତତଃ ସେ ଏ ଗଳ୍ପଗୁଡ଼ିକୁ ପଢ଼ି ମୋତେ ତାଙ୍କ ପ୍ରତିକ୍ରିୟା ଜଣାଇବେ, ଏଥିରେ ମୁଁ ନିଃସନ୍ଦେହ ।

"କାଳ ଓ କର୍ଣ୍ଣିକା" ନାମରେ ମୋର କେତେକ ପ୍ରକାଶିତ ଗଳ୍ପର ଏକ ସମାହାର ମୁଦ୍ରିତ ହେବ ବୋଲି କେତେବର୍ଷ ତଳେ ଘୋଷିତ ହୋଇଥିଲା । ଏଇ ଶୀର୍ଷକରେ ମୁଁ ପ୍ରାୟ ପନ୍ଦର ବର୍ଷ ତଳେ ଗୋଟିଏ ଗଳ୍ପ ତତ୍କାଳୀନ ଅଭିଜାତ ପତ୍ରିକା 'ସାମ୍ପ୍ରଖ୍ୟ'ରେ ଲେଖୁଥିଲି । ସେତେବେଳେ ଗୋଟିଏ ଅନାଗତ ଶିଶୁ ଓ ଆତଙ୍କିତା ଜନନୀ ମୋ ଆଖି ଆଗରେ କାଳ ଓ କର୍ଣ୍ଣିକା (ଫୁଲର ବୀଜକୋଷ) ଭାବେ ପ୍ରତିଭାତ ହୋଇଥିଲେ । ଆଜି କିନ୍ତୁ ଅନେକ ଅନୁଭୂତି ଓ ଅଭିଜ୍ଞତାର ପାହାଚ ଡେ଼ଇଁ 'କାଳ ଓ କର୍ଣ୍ଣିକା'ର ଏକ ଭିନ୍ନ ଅର୍ଥକୁ ମନରେ ଲାଳନ କରି ଚାଲିଛି । ଏ ସଂକଳନରେ ଗଳ୍ପଗୁଡ଼ିକ ତାହାର ପ୍ରତିଶ୍ରୁତି ବହନ କରନ୍ତି । **ଅନେକ ଗଳ୍ପରେ ମୋର ସ୍ୱଷ୍ଟ ଓ ଅନ୍ତରଂଗ ଅନୁଭୂତି ରହିଛି** । କେତେକ ସ୍ଥାନରେ ମୋର ଜଣେ ପ୍ରିୟ ବନ୍ଧୁଙ୍କ ଅନୁଭୂତିକୁ ଗଳ୍ପରୂପ ଦିଆଯାଇଛି । ଏଠାରେ 'କାଳ'କୁ ସମୟଖଣ୍ଡ ଓ 'କର୍ଣ୍ଣିକା'କୁ ଲେଖନୀଭାବେ ଗ୍ରହଣ କରିବା ମୁଁ ଅଧିକ ସମୀଚୀନ ମଣୁଚି । ସମୟର ପ୍ରବହମାନ ସ୍ରୋତରେ କବି ଓ ଗାଳ୍ପିକଙ୍କ ଲେଖନୀ କାହିଁକି ସ୍ପନ୍ଦିତ ହୋଇ ଉଠେ ତାହାହିଁ ଦୀର୍ଘ କୋଡ଼ିଏ ବର୍ଷର ବ୍ୟବଧାନରେ ରଚିତ ଅନେକ ଗଳ୍ପରେ ମୁଁ ଏକାନ୍ତଭାବେ ଅନୁଭବ କରିଚି । ମୋ ପାଇଁ ଗଳ୍ପର ଗତାନୁଗତିକ ସଂଜ୍ଞା ବଦଳିଯାଇଛି । **ମହାକାଳର ଜାଗତିକ ପ୍ରବାହ ମଧ୍ୟରେ ବ୍ୟକ୍ତିମଣିଷର ମନରେ ଅନବରତ ଭାସିଚାଲିଥିବା ଅଗଣିତ ଆହତ ଆତ୍ମିକ ସ୍ପନ୍ଦନହିଁ କ୍ଷୁଦ୍ରଗଳ୍ପ** । ବୁଦ୍‌ବୁଦ୍ ପରି ଅନେକ ସ୍ପନ୍ଦନ ଆକୃତି ନେବାମାତ୍ରେଇ ଫାଟି ମିଳେଇ ଯାଆନ୍ତି । କେତେକ ବୁଦ୍‌ବୁଦ୍ ଜଳସ୍ରୋତରେ ଭାସିଚାଲନ୍ତି କିଛି ସମୟ ଓ ଦୂରତା ପାଇଁ । ସେମିତି ଅବଚେତନ ଓ ସଚେତନ ସ୍ରୋତରେ କିଛି ସମୟ ପାଇଁ ଭାସି ଭାସି ନିଜ ସ୍ଥିତିକୁ ସାବ୍ୟସ୍ତ କରିଥିବା ସ୍ପନ୍ଦନ



Digitized by PPRACHIN, SOA

କେତୋଟିକୁ ମୁଁ ମୋ ଗଳ୍ପରେ ଧରି ରଖିବାକୁ ଚେଷ୍ଟା କରିଚି । ସେସବୁ ସ୍ପନ୍ଦନ ମୋତେ ଆଘାତ କରିଚନ୍ତି ବୋଲି ମୋର ଏତେ ଆପଣାର ହୋଇପାରିଛନ୍ତି । ଅନେକ ଭାବନା ଉଦୟ ହେବାମାତ୍ରେ ଅସ୍ତମିତ ହୋଇ ହାତଛଡ଼ା ହୋଇ ଯାଇଛନ୍ତି । ଅନେକ ଅଣ୍ଟାଳି ହୋଇଚି; ପାଇଚି ପୁଣି ହଜାଇଚି । ସ୍ୱାଭାବିକ ଆଳସ୍ୟରୁ ସେସବୁକୁ ରୂପ ଦେଇ ପାରିନି । ତେଣୁ **ଅନୁଭବ କରିଚି କାଳ ବା ସମୟ ପାଖରେ ଲେଖକର ଲେଖନୀ (କର୍ଣ୍ଣିକା) କେଡ଼େ ଅପାରଗ, କେଡ଼େ ଅସହାୟ** । ମୋର ଅଗ୍ରଜ ଓ ଅନୁଜ ଗଳ୍ପ ଲେଖକମାନଙ୍କୁ ମନେ ମନେ ଅନେକ ତାରିଫ୍ କରିଚି ସେମାନଙ୍କ ସାଧନା ପାଇଁ । ଫକୀରମୋହନଙ୍କ ଠାରୁ ରାମଚନ୍ଦ୍ର ବେହେରାଙ୍କ ପର୍ଯ୍ୟନ୍ତ – ସମସ୍ତଙ୍କୁ ତେଣୁ ମୋରି ପରିବାରର ଲୋକ ବୋଲି ଆଜି ଏକାନ୍ତ ଆବେଗର ସହିତ ଗ୍ରହଣ କରି ନେଉଛି । ବାରମ୍ବାର ନମସ୍କାର କରୁଛି ।

ଭାବିଥିଲି ଏଇ ଗଳ୍ପପୁସ୍ତକଟି ଛପାହେଲା ମାତ୍ରେ ପ୍ରଥମ କପିଟି ସେଇ ଧର୍ଷିତା ଅନ୍ଧୁଣୀଟିକୁ ଖୋଜି ଖୋଜି ତା' ହାତରେ ଦେଇ ଆସିବି ଯେ କି ଗୋଟିଏ ବୁଦ୍‌ବୁଦ୍ ପରି 'ବିଧାନସଭା' ଗଳ୍ପର ଶେଷକୁ ଆସି ମିଳେଇ ଯାଇଚି । କିନ୍ତୁ ନବନୀତାର ମୃତ୍ୟୁ ମୋତେ ଆହୁରି ବିଚଳିତ କରିଚି । ସେ ବଞ୍ଚିଥିଲେ ତାକୁହିଁ ଏ ପୁସ୍ତକଟିର ପ୍ରଥମ କପି ଦେଇ ଥା'ନ୍ତି । ସେ ତ ଏମିତି ଦୈନିକ ବଞ୍ଚି ମଧ୍ୟ ମରୁଥିଲା । ଏବେ ନିଆଁରେ ପୋଡ଼ିହୋଇ ନିସ୍ତାର ପାଇଗଲା । ତେବେ ଏଇ ଆକସ୍ମିକତା କ'ଣ ଆମ ସମାଜ ପାଇଁ ସମାଧାନ ? ନା ଆଉ କିଛି ଗଭୀର ଅର୍ଥଦ୍ୟୋତକ ଆଲୋଡ଼ନକାରୀ ସମାଧାନ ଆମେ ଲୋଡ଼ିବା ? ମୋର ଅନୁଜ୍ଞା ଯଦି ସତ୍ୟ ହୁଏ ତେବେ ସମାଧାନ ମଧ୍ୟ ସ୍ପଷ୍ଟ ହେବଇ ହେବ । ନଚେତ୍ 'ବିଧାନସଭା', 'ବିସର୍ଜନ', 'ସ୍କେଲିଟନ୍', 'ନବନୀତା' ପରି ଗଳ୍ପମାନେ କାହିଁକି ସ୍ରଷ୍ଟାର ମନ ଓ ପ୍ରାଣରେ ଆଘାତ କରିବେ ? ସ୍ରଷ୍ଟା କଣ କେବଳ ତାର ଆହତ ଆତ୍ମିକ ସ୍ପନ୍ଦନକୁ ନେଇ ଛଟପଟ ହେଉଥିବ ? କାଳ ଏହାର ସମାଧାନ କରିବ ନାହିଁ ? ଏହା ଗଭୀର ଚିନ୍ତାର ବିଷୟ ନିଶ୍ଚୟ ।

ପୁଣି ମୋ ଭିତରୁ ମୋ ସମୀକ୍ଷାପ୍ରବଣ ମାନସିକତା ଚିହିଁକି ଆସୁଚି । ମୁଁ ଭୁଲି ଯାଇଚି ଯେ ମୁଁ ସୃଜନଶୀଳ ସ୍ରଷ୍ଟାର ଭୂମିକାରେ ଏଠି ଉପନୀତ । ତେଣୁ ଭଲମନ୍ଦର ବିବେଚନା ବିବେକୀ ପାଠକ ଓ ସମାଲୋଚକମାନେ କରିବେ । ଗଢ଼ିଥୋଇବାହିଁ ମୋର ଏକମାତ୍ର କାମ । ତେବେ ଯେଉଁ ପତ୍ରପତ୍ରିକାମାନେ ଏକଦା ମୋର ଏଇ ଗଳ୍ପମାନଙ୍କୁ ସ୍ଥାନ ଦେଇଥିଲେ- ସମାବେଶ, ଇସ୍ତାହାର, ଶାମୁକା, ଗୋକର୍ଣ୍ଣିକା, ଶତାବ୍ଦୀ, ପ୍ରତିବେଶୀ, ପ୍ରଜାତନ୍ତ୍ର, ଝଙ୍କାର,ସାଗରିକା, ନବଲିପି, ଆରୋହଣ, ସେମାନଙ୍କୁ ମୋର ଗଭୀର ଆନ୍ତରିକ ଶ୍ରଦ୍ଧା ନିବେଦନ କରୁଛି । 'କାଳ ଓ କର୍ଣ୍ଣିକା'ଠାରୁ 'ଯେନଦୀ ମରୁପଥେ' ପର୍ଯ୍ୟନ୍ତ ଏ ପୁସ୍ତକରେ ପ୍ରକାଶିତ ଗଳ୍ପମାନଙ୍କରେ ନାରୀଜୀବନର ଯେଉଁ ବୈବିଧ୍ୟ ଓ ବୈଚିତ୍ର୍ୟ ଉଦ୍‌ଘାଟିତ ହୋଇଛି ତାକୁ ସହୃଦୟ ପାଠକମାନେ ଉପଲବ୍ଧି କଲେ ମୋର ଲେଖିବାର ସାର୍ଥକତା ଅନୁଭବ କରିବି ।

**ନିତ୍ୟାନନ୍ଦ ଶତପଥୀ**

ପୂଜା, ଅକ୍‌ଟୋବର, ୨୦୧୨



Digitized by PPRACHIN, SOA

# କାଳ ଓ କର୍ଣ୍ଣିକା

ପ୍ରସୂତିଭବନର ସମସ୍ତ ଶଯ୍ୟା ଉପରେ ମୁହୂର୍ତ୍ତକରେ ଗୀତାଲି ଆଖି ବୁଲେଇ ନେଲା । ନିରୁଦ୍‌ବେଗ ମରଣକୁ ଉପହାସ କରି ନବଜାତର ମୁହଁରେ ସ୍ତନର ଚୂଚୁକ ଦେଉ ଦେଉ ୪୦ ନମ୍ବର ବେଡ଼ ଉପରୁ ସେ ଯେଉଁ ତରୁଣୀ ଜଣକ ଗୀତାଲିକୁ ମୁଗ୍‌ଧ ଦୃଷ୍ଟିରେ ଚାହିଁ ରହିଲେ - ସେ ଜଣେ ମୁସଲମାନ ମହିଳା । ପାଞ୍ଚଟି ସନ୍ତାନର ଉଷ୍ମ ଆବେଗକୁ ବିଗତ ପାଞ୍ଚବର୍ଷରେ କ୍ରମେ ମନରେ ସମାଧି ଦେଇ ସେ ଷଷ୍ଠ ଗର୍ଭରେ ପାଇଚନ୍ତି ପୁତ୍ର ସନ୍ତାନ । ଆଖିରେ ତୃପ୍ତିର ପରିପୂର୍ଣ୍ଣତା, ମୁହଁରେ ମାତୃତ୍ୱର ସ୍ମିତି । ସମସ୍ତ ଅବୟବର ନିସ୍ତେଜ ମଳିନତାକୁ ଉପହାସ କରି ମୁହଁରେ ଲାଗି ରହିଚି ଏକ ସଂଜ୍ଞାହୀନ କୌତୁହଳ ।

ଗୀତାଲି ଅସହିଷ୍ଣୁ ହୋଇ ଉଠିଲା । ଇସ୍ - ସନ୍ତାନ, ମାଆ, ରବିସ୍ । ଆଉଟ୍ ଅଫ୍ ଡେଟ୍ । ଆଉ ଯେମିତି ଦୁନିଆରେ ନାରୀର କିଛି କାମ ନାହିଁ । ଖାଲି ଛୁଆ ଜନ୍ମ କରିବ, ମାଆ ହେବ । ଗୁହ ମୁତ ପୋଛିବ । ଇସ୍-ନାଷ୍ଟି ।

ପାଖ ସିଟ୍ ଉପରୁ ସେ ଯେଉଁ ବୟସ୍କ ମହିଳା ଜଣକ ଗୀତାଲିକୁ ପ୍ରଥମେ ସ୍ୱାଗତ ଜଣାଇଲେ ତାଙ୍କୁ ଗୀତାଲି ମୁହୂର୍ତ୍ତକ ପାଇଁ ବଡ଼ ଅବଜ୍ଞା ଦୃଷ୍ଟିରେ ଚାହିଁ ରହିଲା । ପ୍ରୌଢ଼ା ମହିଳାଙ୍କ ଦେହରେ ନଅ ମାସର ଏକ ଅଶ୍ଳୀଳ ଅତ୍ୟାଚାରର ସଂକେତ । ଚଳତ୍‌ଶକ୍ତିରହିତ ନାରୀ ନବଜାତର ଉଷ୍ମ ଆକାଙ୍‌କ୍ଷାରେ ତଥାପି ଅପେକ୍ଷମାଣ । ଦେହ ରକ୍ତ ଶୂନ୍ୟ, ଶେତା, ପାଣ୍ଡୁର । ଆଖିରୁ କ୍ରମେ ଜ୍ୟୋତି ଯେପରି ନିଭି ନିଭି ଆସୁଛି ।

ଗୀତାଲି ମନେ ମନେ ଅଶେଷ ବିରକ୍ତ ହେଲା । ଏଇ ତାର ପଡ଼ୋଶୀ ପ୍ରସୂତୀ । ତାର ଯେମିତି ହଠାତ୍ ମନେ ହେଲା ସେ ହୁଏତ ରାତିରେ ତା ସେଲ୍‌ଫ୍‌ରୁ ଫଳ ଓ ବିସ୍କୁଟ୍ ଚୋରି କରି ନେଇଯିବ । ତା ପାଇଁ ଘରୁ ଯେଉଁ ଖାଣ୍ଟି ଦୁଧ ଆସିବ, ତାକୁ ପିଇବାକୁ କାଳେ ଅନୁରୋଧ କରିବ । ତେଣୁ ସେଇ ବୟସ୍କା ନାରୀର ସମସ୍ତ ସାଦର ସମ୍ଭାଷଣ ଗୀତାଲି ପାଖରେ ମୁହୂର୍ତ୍ତକ ପାଇଁ ପ୍ରତାରଣା ପରି ବୋଧ ହେଲା । କ୍ଷଣକ ପାଇଁ ତା ଆଡକୁ ଗୀତାଲି ଘୃଣାବ୍ୟଞ୍ଜକ ଆଖିରେ ଚାହିଁ ସିଷ୍ଟର୍ ନର୍ସକୁ ବେଡ୍ ପରିବର୍ତ୍ତନ ପାଇଁ ଅନୁରୋଧ କଲା ।

ସମସ୍ତେ ଗୀତାଲିକୁ ଚାହିଁଛନ୍ତି । ସେ କେଉଁ ଭଞ୍ଜ ନାୟିକା ଲାବଣ୍ୟବତୀ, ଆସିଚି ରାଜପ୍ରାସାଦର ସୁରଭିରୁ ପୂତିର ନର୍କକୁ । ମନରେ ତାର ଅଭିସାରର ଦୁରନ୍ତ ଆନନ୍ଦ । ପାହାଡ଼ରେ ମେଘ ପରି ସେ ଚାହେଁ ଲୋଟିଯିବ ତା ପ୍ରିୟର ଦେହରେ । ମୁହଁରେ ଓ ଓଠରେ ହସି ହସି ସହିବ ପ୍ରୀତିର ପୀଡ଼ା । କିନ୍ତୁ ଦେହରେ-ଇସ୍, ଅସମ୍ଭବ, ଜଘନ୍ୟ । ନା ତା ହୋଇପାରେନା । ଜନନୀତ୍ୱ ତାର କାମ୍ୟ ନୁହେଁ, କାମ୍ୟ ନୁହେଁ ।



Digitized by PPRACHIN, SOA

ଗୀତାଲି ଉତ୍‌କ୍ଷିପ୍ତ ହୋଇ ଉଠିଲା । ନିଜର ବିଛଣା ସଜଡ଼ ସଜଡ଼ ହସ୍‌ପିଟାଲର ପୁରୁଣା ଚାଦର ଓ ତକିଆକୁ ତଳକୁ ଫିଙ୍ଗୁଥିଲା । ସେ ଚଦରରୁ ଏବେ ବି ରକ୍ତର ଦାଗ ନିଭିନି । କେଉଁ ଏକ ବିଗତ ପୁତ୍ରାତୁରା ଜନନୀର ଦୈହିକ ଯନ୍ତ୍ରଣାକୁ ନିଜର ନିର୍ଜୀବ ଦେହରେ ଏ ଚଦର ସାଇତି ରଖିଚି ।

ବୟୋହରା ଖ୍ରୀଷ୍ଟିୟାନ୍ ମହିଳାଟି ଗୀତାଲି ପାଖକୁ ଆସି ଆବେଗଜଡ଼ିତ କଣ୍ଠରେ ପଚାରିଲେ – "ମା, ତୁମ ନାମ କ'ଣ ?"

ଗୀତାଲି ଏପରି ଅଯାଚିତ ସ୍ନେହ ସହିପାରେନା । ହଠାତ୍ ଉତ୍‌କ୍ଷିପ୍ତ ହୋଇ ସେ ପ୍ରଶ୍ନକାରୀକୁ ନିରୀକ୍ଷଣ କଲା । ସେ ଦୃଷ୍ଟିରେ ଥିଲା ବହଳ ବିରକ୍ତିର ଧୂସର ଛାୟା ।

ପୁଣି ସେହି ଖ୍ରୀଷ୍ଟିୟାନ୍ ମହିଳାଟିର ଅସହିଷ୍ଣୁ ପ୍ରଶ୍ନ – "ତୁମ ଘର କେଉଁଠି ?" ଗୀତାଲି ଅସ୍ୱାଭାବିକ ଉତ୍ତେଜନାରେ କ୍ଷିପ୍ତ ହୋଇ ଉଠୁଥିଲା । ଏକାବେଳକେ ଏତେଗୁଡ଼ାଏ ପ୍ରଶ୍ନ । ପୁଣି ତା' ବ୍ୟକ୍ତିଗତ ସ୍ଥିତି ବିଷୟରେ । ନିହାତି ଅଭଦ୍ର ଏମାନେ । ଅନ୍ୟର ଏକାନ୍ତ ଆପଣାର ଜୀବନ ଉପରେ ଜୁଲମ୍ କରିବାକୁ ଏମାନେ ପଛାନ୍ତିନି । ସହରୀ ସଭ୍ୟତା ଏମାନଙ୍କୁ ଛୁଇଁନି ।

ଗୀତାଲି ନୀରବ ରହିଲା । ତାର ବିରକ୍ତି ମିଶା ଦୃଷ୍ଟିପାତରୁ ଖ୍ରୀଷ୍ଟିୟାନ୍ ତରୁଣୀ କିଛି ବୁଝି ମଧ୍ୟ ପାରିଲେନି । ପ୍ରଗଲ୍‌ଭ ଭାବରେ ନିଜ ଜୀବନର ଏକ ଅଦୂର ଅତୀତର ହଜିଲା କାହାଣୀ କହି ବସିଲେ ।

ଗୀତାଲି ଆହୁରି ଅସହିଷ୍ଣୁ ହୋଇପଡ଼ିଲା । ପ୍ରସୂତିଭବନର ପ୍ରହସନ ବିଷୟରେ ସେ ସଂପୂର୍ଣ୍ଣ ଅଜ୍ଞ । ପୁଣି ଜୀବନର ଚଲାବାଟରେ ସେ ସଂପୂର୍ଣ୍ଣ ନୂଆ, ନିତାନ୍ତ ଅନଭିଜ୍ଞା । ଏଇ ବୟୋହରା ଜନନୀର କରୁଣ କ୍ରନ୍ଦନ ତାକୁ ଏକ ରୁଗ୍‌ଣ ମାତୃତ୍ୱର ପଚମାନ ଜୁଗୁପ୍‌ସାରେ କ୍ଷୁବ୍‌ଧ କରୁଥିଲା ।

ଗୀତାଲି ଭାବୁଥିଲା- କେଡ଼େ ନିର୍ବୋଧ ଏମାନେ । ଛୁଆ ଜନ୍ମ କରନ୍ତି କାହିଁକି, ପୁଣି ଏମିତି ବ୍ୟସ୍ତ ହୁଅନ୍ତି ବା କାହିଁକି ?

ଗୀତାଲିର ପ୍ରକାଶ୍ୟ ଯୁକ୍ତି ଖ୍ରୀଷ୍ଟିୟାନ୍ ରମଣୀକୁ ସ୍ତବ୍‌ଧ କଲା । ସମସ୍ତ ଆଗ୍ରହକୁ ଅବଦମିତ କରି ଏକ ଆହତ ଅଭିମାନରେ ସେ ନୀରବରେ ଅପସରି ଗଲେ ।

କଣ ସିଟ୍‌ର ଶଯ୍ୟା ଉପରୁ ଚାଳିଶ ବର୍ଷୀୟା ଜଣେ ପ୍ରୌଢ଼ା ରମଣୀ ଅନବରତ ଚିତ୍କାର କରି ଉଠୁଛନ୍ତି । ତିନି ଦିନର ବେଦନା ପରେ ଏବେ ମଧ୍ୟ ଶିଶୁ ପୃଥିବୀର ଆଲୋକ ଦେଖି ପାରିଲାନି । ଶରୀରରେ ଅକଥନୀୟ ଯନ୍ତ୍ରଣା । ମରଣଠାରୁ ବଳି ଭୀମ ଓ ଭୟଙ୍କର । ଦେହକୁ ଦଳିତ କରି ମଥିତ କରି ସୃଷ୍ଟି ଲୋଡୁଚି ଆତ୍ମପ୍ରକାଶ । କିନ୍ତୁ ଦେହର ରକ୍ତପ୍ରବାହ କ୍ରମେ ମନ୍ଥର ହୋଇ ଆସୁଚି । ନାଡ଼ିର ଗତି କ୍ରମେ ଶିଥିଳ ହୋଇ ଆସୁଚି ।

ଗୀତାଲି ଧୈର୍ଯ୍ୟର ସୀମା ଏଥର ଲୋପ ପାଇ ଆସିଲା । ଇସ୍ କି ପାଟି । କାନ ଅତରା ପକଉଚି । ଅନ୍ୟମାନଙ୍କ ମାନସିକ ନିରାପତ୍ତା ପାଇଁ ଏମାନଙ୍କର ଏତେଟିକେ ବି ନିଘା ନାହିଁ । ଗୀତାଲି ପ୍ରୌଢ଼ା ରମଣୀଙ୍କ ଉପରେ ହଠାତ୍ ଉତ୍ତେଜିତ ହୋଇ ଉଠିଲା ।



Digitized by PPRACHIN, SOA

ଗୀତାଲି ଦେଖିଲା – ସମସ୍ତେ ତାରି ଆଡକୁ ଡ଼ିମା ଡ଼ିମା ଆଖିରେ ଚାହିଁ ରହିଛନ୍ତି । ସତେଅବା ଏଇ ପ୍ରସୂତିଗୁଡ଼ା ତାକୁ ଗିଳିଦେବେ । କିନ୍ତୁ ଗୀତାଲିର ଏଇ ରୁକ୍ଷ ଆଚରଣ ପାଇଁ ସମସ୍ତଙ୍କ ଆଖିରେ ବେଦନା ଓ ବିସ୍ମୟର ଚିହ୍ନ ସ୍ପଷ୍ଟ ହୋଇ ଉଠୁଥିଲା ।

ବେଡ୍ ପାଖ ଦୋଳିରେ ନିଜର ସାତ ଦିନର ଶିଶୁକୁ ଝୁଲଉ ଝୁଲଉ ମୁସଲମାନ ମହିଳା ଜଣକ ଗୀତାଲି ଆଡକୁ ଉଦ୍‌ବେଗଭରା ଆଖିରେ ଚାହିଁ ରହିଲେ । ବୋଧହୁଏ ତାଙ୍କର ଧୈର୍ଯ୍ୟର ସୀମା କ୍ରମେ ଅତିକ୍ରାନ୍ତ ହୋଇ ଆସୁଥିଲା । ସେ ହଠାତ୍ କହି ପକାଇଲେ – "ମଲାଲୋ, ଏ ଆଉ କଷ୍ଟ ପାଇବନି କି ଛୁଆଜନ୍ମ କରିବନି ! ସ୍ୱର୍ଗରୁ ଆସିଲା କୋଉ ଅପସରା !"

ଏଥର ଗୀତାଲି ଆହୁରି ଉତ୍‌କ୍ଷିପ୍ତ ହୋଇ ଉଠିଲା । ନାଗ ସାପର ଲାଙ୍ଗୁଡ଼ରେ ସତେ ଯେପରି କେହି ଦୁଷ୍ଟାମି କରି ହାତମାରି ଦେଇଛି । ତାକୁ ତା'ର ଦଂଶନ ସହିବାକୁ ହେବ ।

ସବୁ ସିଟ୍ ଉପରୁ ପ୍ରସୂତିମାନେ ଗୀତାଲିର ପ୍ରତିକ୍ରିୟା ଲକ୍ଷ୍ୟ କରୁଥିଲେ । ସମସ୍ତଙ୍କ ଭିତରେ ଚାପା ହସର ଏକ କଳରବ ଖେଳିଗଲା । ପରସ୍ପର ମଧ୍ୟରେ ଏଇ ମଣିଷଟି ବିଷୟରେ ବହୁ ଅସହିଷ୍ଣୁ ସମାଲୋଚନା ପ୍ରକାଶ୍ୟରେ ଘୃଣା ଓ ତାଚ୍ଛଲ୍ୟମିଶା ବିଦ୍ରୂପରେ ପରିଣତ ହେଉଥିଲା ।

ଗୀତାଲି ଚାହିଁଲା – ସମସ୍ତେ ଯେପରି ଅଳ୍ପ ସମୟ ମଧ୍ୟରେ ତାର ଶତ୍ରୁ ହୋଇପଡ଼ିଛନ୍ତି । ଅଥଚ ଏଇମାନଙ୍କ ଗହଣରେ ତାକୁ ଅନିର୍ଦ୍ଦିଷ୍ଟ ସମୟ କଟେଇବାକୁ ହେବ । କିନ୍ତୁ ଅନତିଦୂରର ମହିଳା ଜଣେ ତା' ଆଡକୁ ବଡ଼ ସହାନୁଭୂତିଭରା ଆଖିରେ ଚାହିଁ ରହିଚନ୍ତି । ସେ ଆଖିରେ କ୍ରୋଧ ଓ ଜୁଗୁପ୍‌ସା ପରିବର୍ତ୍ତେ ସ୍ନେହ ଓ ନିଶ୍ଛଳ ନୀରବତା ସ୍ପଷ୍ଟ ହୋଇ ଉଠୁଚି । ସେ ଜଣେ ସମବୟସୀ ତରୁଣୀ । ପୋଷାକପରିଚ୍ଛଦରୁ ବଂଶର ଆଭିଜାତ୍ୟ ବେଶ୍ ବାରି ହୋଇ ପଡୁଛି । ଗୀତାଲି ଆଶ୍ୱସ୍ତ ହେଲା । ନୀରବରେ ମୁହଁମାଡ଼ି ଶୋଇବାକୁ ଚେଷ୍ଟାକଲା । ଜୋରକରି ନିଜ କାନ ଦୁଇଟିକୁ ବନ୍ଦ କରି ଧରିଲା ।

ଗୋଧୂଳିର ଆଲୋକ କ୍ରମେ ଆସନ୍ନ ସଂଧ୍ୟାର ଅନ୍ଧକାରବୃତ୍ତରେ ସ୍ତିମିତ ହୋଇ ଆସୁଚି । ଦରୱାନର ସତର୍କ ଘଣ୍ଟି ଶୁଣି ପରିଦର୍ଶକମାନେ କ୍ରମେ ପ୍ରସୂତିଭବନ ଛାଡ଼ି ନିଷ୍କ୍ରାନ୍ତ ହେଉଚନ୍ତି । ଦେବଦାରୁ ଗଛର ବହଳ ଶୀର୍ଷକୁ ଦୋହଲେଇ ପବନ ବିଛାଡ଼ି ହୋଇ ପଡୁଚି । କେତୋଟି ଅଜଣା ବିହଙ୍ଗର ଅସ୍ପଷ୍ଟ କାକଳି ଏବେବି ଶୁଣାଯାଉଚି ।

ଗୀତାଲି ପ୍ରସୂତିଭବନର ଝରକା ପାଖରୁ ଆକାଶକୁ ଚାହିଁ ପୃଥିବୀର ଏଇ ବିବର୍ତ୍ତମାନ ସୌନ୍ଦର୍ଯ୍ୟରେ ଆତ୍ମହରା ହୋଇ ଉଠୁଥିଲା । ଧୀରେ ଦିନର ଆଲୋକ ରାତ୍ରିର ଅନ୍ଧକାରରେ ମିଶିଯାଉଚି । ପୁଣି ରାତି ଦିନର ଆଲୁଅରେ ନିଜର ସ୍ଥିତି ହରେଇ ବସିବ । ସକାଳ ହେବ । କିନ୍ତୁ ଏ ଦୀର୍ଘ ରାତି ! ଗୀତାଲି ଯେପରି ଗୋଟାଏ ଯୁଗପରି ମନେ କରୁଥିଲା । କେତେ ରାତି ତାକୁ ରହିବାକୁ ହେବ ? ଏଇମାନଙ୍କ ଗହଣରେ – ଯେଉଁମାନେ ସାଧାରଣ ଶିଷ୍ଟାଚାର ଜାଣନ୍ତିନି । ସ୍ୱାସ୍ଥ୍ୟରକ୍ଷାର ନିୟମ ଜାଣନ୍ତିନି । ପୁଣି ବେଳେବେଳେ ତା ବିରୁଦ୍ଧରେ ସଙ୍ଗଠିତ ଆକ୍ରମଣ ବି କରୁଚନ୍ତି ।



Digitized by PPRACHIN, SOA

ପୁଣି ଆଖି ପଡ଼ିଲା ସେଇ ସମବୟସୀ ତରୁଣୀଙ୍କ ଉପରେ । ଗୀତାଲି ଲକ୍ଷ୍ୟକଲା ସେ ହାତଠାରି ତାଙ୍କ ଶଯ୍ୟାଧାରକୁ ଡାକୁଚନ୍ତି । ଅନ୍ୟର ନିର୍ଦ୍ଦେଶ ଗୀତାଲିର ବ୍ୟକ୍ତିତ୍ୱ ଉପରେ ଗୋଟାଏ ଅତ୍ୟାଚାର । ବୋଧହୁଏ ଏଇ ପ୍ରଥମଥର ପାଇଁ ଅତି ବାଧ ଶିଶୁପରି ସେ ଏଇ ନିର୍ଦ୍ଦେଶ ଭିତରେ ଜଣେ ସମମର୍ମୀ ବନ୍ଧୁର ପ୍ରାଣଭରା ଆମନ୍ତ୍ରଣ ଲକ୍ଷ୍ୟ କଲା । ଯନ୍ତ୍ରଚାଳିତ ପରି ସେ ଅଗ୍ରସର ହେଉଥିଲା ।

ରାତ୍ରି କ୍ରମେ ଗଭୀରରୁ ଗଭୀରତର ହେଉଚି । ପ୍ରସୂତିମାନେ ସନ୍ତାନମାନଙ୍କୁ ସ୍ତନ୍ୟ ଦେଉଚନ୍ତି । କେତେକ ଅବୋଧ ଶିଶୁ ଅନବରତ କାନ୍ଦି ଉଠୁଚନ୍ତି । ପ୍ରସୂତିଭବନରେ କୋଳାହଳ - ଛୋଟ ଶିଶୁମାନଙ୍କ ଅବିଚ୍ଛିନ୍ନ କ୍ରନ୍ଦନରୋଳ ।

ଗୀତାଲି ସେଇ ସମବୟସୀ ତରୁଣୀଙ୍କ ଶଯ୍ୟାଧାରରେ ବସି ନିଜ ଜୀବନର ଛିନ୍ନ ପୃଷ୍ଠା ଉନ୍ମୋଚନ କରୁଥିଲା - ଗୀତାଲି ଜୀବନର କେତେ ଅସଜଡ଼ା କରୁଣ କାହାଣୀ, ଅତୀତର ପ୍ରଚ୍ଛଦପଟରେ ଯାହା ହଜିଯାଇଚି ଆଉ ବର୍ତ୍ତମାନର ସମସ୍ତ ସମ୍ଭାବନାକୁ ଅବଦମିତ କରି ଯାହା ତାର ନାରୀତ୍ୱ ପାଇଁ ଦେଇଯାଇଚି ଏକ ଦାରୁଣ ପରାଜୟ ।

ପାଖ ଦୋଳିରୁ ଛୋଟ ଶିଶୁଟିଏ ଅଧୈର୍ଯ୍ୟ ହୋଇ କାନ୍ଦି ଉଠିଲା । ଗୀତାଲି ଶଯ୍ୟା ପାଖରୁ ହଠାତ୍ ଉଠିଯାଇ ନିଦ୍ରିତା ଏଇ ତରୁଣୀ ଉପରେ ଅଚାନକ ଆକ୍ରମଣ କଲା । ଏବେ ମଧ ଦୈହିକ ବେଦନା ତାର ଉପଶମ ହୋଇନି । ତେଣୁ ଗଭୀର ନିଦ୍ରାରେ ସେ ନିଦ୍ରିତା ।

ଗୀତାଲି ସେଇ ତରୁଣୀଙ୍କୁ ପ୍ରତିନିଧି କର ସମସ୍ତଙ୍କୁ ଇଚ୍ଛାମତେ ଗାଳିଦେଲା । "ଛୁଆମାନଙ୍କୁ ଯଦି ସମ୍ଭାଳି ନ ପାରିବ ଅଯଥା ଜନ୍ମ କରି କାହିଁକି ? ଛୁଆଗୁଡ଼ା ଭୋକରେ ବିକଳ ହେଉଚନ୍ତି । ତାଙ୍କୁ କ୍ଷୀରଦେଇ ବୋଧ କରୁନ । ଆମକୁ ଟିକେ ଶୁଆଇବି ଦେଉନ ।"

ଏଥର ଗୀତାଲି କଥାରେ କେହି ପ୍ରତିବାଦ କଲେନି । ପ୍ରସୂତିଭବନର ଅର୍ଦ୍ଧେକ ସୁପ୍ତ, ଅର୍ଦ୍ଧେକ ଅର୍ଦ୍ଧସୁପ୍ତ । ରାତ୍ରିର ଏଇ ନୀରବ ପ୍ରହରରେ ଏଇ ଯୁଦ୍ଧଖୋର ଝିଅଟି ସହିତ ବଚସା କରିବାକୁ କେହି ବୋଧହୁଏ ପ୍ରସ୍ତୁତ ନଥିଲେ ।

ଗୀତାଲି ପୁଣି ସେଇ ସମବୟସୀ ତରୁଣୀଟିର ଶଯ୍ୟା ପାଖକୁ ଫେରିଆସିଲା । ପଞ୍ଚମୀ ଜହ୍ନପରି ରାତିର ଗତି ତାର ମନ୍ଥର ଓ ନିଷ୍କ୍ରାନ୍ତ ।

ତରୁଣୀ ଏଥର ଅତି ଗଭୀରଭାବରେ ଗୀତାଲିକୁ ନିରୀକ୍ଷଣ କଲେ । ସେ ଦୃଷ୍ଟିରେ ଥିଲା ଏକ ଜିଜ୍ଞାସାଜନିତ କୌତୁହଳ । ମଣିଷକୁ ବୁଝିବାକୁ ଏକ ପ୍ରାଣଭରା ଆଲୋଡ଼ନ ।

ତରୁଣୀ କହିଲେ - "କୁହ ଭଉଣୀ, ତୁମର କଣ ହୋଇଚି । ଦୁନିଆଁ ପ୍ରତି କାହିଁକି ତୁମେ ଏତ ଉଦାସୀନ ?"

ଏଥର ଗୀତାଲି ନିଜର ନିଷ୍ଠୁର ହୃଦୟରେ ଜଣେ ସମମର୍ମୀବନ୍ଧୁର ପ୍ରତିଘାତ ଅନୁଭବ କଲା । ସେ ଯେପରି ନିଜର ଅଜ୍ଞତାରେ ସବୁ କହିପକଉଚି, ନିଜକୁ ପ୍ରକାଶ କରିଦେଉଚି, ଅଥଚ ସେଥିପାଇଁ ତା' ମନରେ କେତେ ଉତ୍‌ଫୁଲ୍ଲିତା, କେତେ



Digitized by PPRACHIN, SOA

ଆଶ୍ୱାସନା । ଗୀତାଲି ନିଜକୁ ପ୍ରତିରୋଧ କରିପାରିଲାନି । ସତେ ଯେପରି ଚନ୍ଦ୍ରିକାର ସ୍ପର୍ଶରେ ସେ ଆଜି ଊର୍ମିମାଳୀ ହୋଇ ଉଠିଚି । ଉଦ୍‌ବାର ତାର ମନର ଗତି । କୂଳ ଲଂଘି ସେ ବହିଯିବାକୁ ଚାହେଁ । ମନର ରୁଦ୍ଧ ଆବେଗକୁ ନିଜ ଭିତରେ ଚାପି ରଖି ଦୀର୍ଘ ପାଞ୍ଚବର୍ଷ ଧରି ସେ ଅକଥନୀୟ ମର୍ମନ୍ତାପ ପାଇଚି ।

ଗୀତାଲି କହୁଥିଲା – ଏଇ ତାର ସ୍ୱାମୀ, ସଂଧ୍ୟା ପୂର୍ବରୁ ସେ ଆସି ଚାଲିଗଲେ– କଟକର ଖ୍ୟାତନାମା ଓକିଲ । ବିରାଟ ବି' ମହଲା କୋଠାରେ ସେ ରହେ । ତାର ଚାକର ଚାକରାଣୀ ଅଭାବ ନାହାନ୍ତି । କୁଟାଖଣ୍ଡକୁ ଦିଖଣ୍ଡ କଲେ ସ୍ୱାମୀ ତାର ସହି ପାରନ୍ତିନି । ସେ ଯେମିତି ଗୋଟାଏ ପୂଜାର ସାମଗ୍ରୀ । ବସି ବସି ଆସ୍ଥାନରେ ପୂଜା ପାଇବ, ଫୁଲ ଆଉ ଚନ୍ଦନରେ ତା' ଦେହ ସଜା ହେବ ।

"କେତେଜଣ ନାରୀଙ୍କ ଭାଗ୍ୟରେ ଏ ଅୟସ ମିଳେ ! ତୁମେ ତା'ହେଲେ ବଡ଼ ଭାଗ୍ୟବତୀ"– ତରୁଣୀ ମନ୍ତବ୍ୟ ଦେଲେ ।

"ଠିକ୍ ସେଇଆ ସମସ୍ତେ କହିଥା'ନ୍ତି । କିନ୍ତୁ ଏଇ ଭୋଗ ଆଉ ଭାଗ୍ୟର ଅତ୍ୟାଚାର ସହି ସହି ମୁଁ କ୍ରମେ ପଥର ପାଲଟି ଯିବି ।"

କିଛି ସମୟ ନୀରବ ରହି ଗୀତାଲି ପୁଣି କହିଲା – "ମୋ ସ୍ୱାମୀଙ୍କର ମୁଁ ତୃତୀୟ ପତ୍ନୀ । ଅବଶ୍ୟ ତାଙ୍କୁ ଦେଖିଲେ ତୁମେ ଏକଥା ବିଶ୍ୱାସ କରିପାରିବନି । ତାଙ୍କୁ ବି ସେତେ ଅଧିକ ବୟସ ନୁହେଁ । ସହରର ଏ କୋଠା, ଏ ଦୁନିଆଦାରୀ ତାଙ୍କ ହାତଗଢ଼ା ନୁହେଁ, ପୂର୍ବ ପୁରୁଷର । ତାଙ୍କର ପ୍ରଥମ ଦୁଇ ସ୍ତ୍ରୀ ତାଙ୍କରି ଘରେ ପ୍ରାଣ ହରେଇଚନ୍ତି । ଠିକ୍ ସ୍ୱପ୍ନପରି ଆସି ହଜିଯାଇଚନ୍ତି । ସମସ୍ତେ ସୂତିକା ରୋଗର ଶୀକାର ।" ଗୀତାଲିର କଣ୍ଠରୁଦ୍ଧ ହୋଇ ଆସିଲା ।

ତରୁଣୀ ସମବେଦନା ଜଣେଇଲେ ।

ଗୀତାଲି ପୁଣି କହିଲା – "ଏ ବଂଶ ପ୍ରତି କେଉଁ ଅପଦେବତାର ଅଭିଶାପ ଅଛି କେଜାଣି ତାଙ୍କ ବଡ଼ ଭାଇଙ୍କ ସ୍ତ୍ରୀ ମଧ ଏଇ ଦୁର୍ଦ୍ଦଶାରେ ପ୍ରାଣ ହରାଇଛନ୍ତି । କାହାରି କୋଳରେ ସୁନ୍ଦର ଶିଶୁ ହସିବାର କେହି ଦେଖି ନାହାଁନ୍ତି" ।

ଗୀତାଲି ଆଉ କହିପାରିଲାନି । କଣ୍ଠ ତା'ର କ୍ରମେ ବାଷ୍ପରୁଦ୍ଧ ହୋଇ ଆସୁଥିଲା । ସେ କୋହରେ ଫାଟି ପଡ଼ିଲା । ଏଇ ଗୀତାଲି ! ପ୍ରସୂତିଭବନରେ ସମସ୍ତଙ୍କର ଧାରଣା ସେ ଅଣ୍ଡିରୀଚଣ୍ଡୀ, ଫାଜିଲ । ନାରୀର ସ୍ନେହ, ଅନୁଭବ, ମନ–ତା'ଠାରେ ଶୂନ୍ୟ ।

ଗୀତାଲି ପୁଣି କହୁଥିଲା–"ସେ ବଂଶ ପ୍ରତି ଅଭିଶାପ ଅଛି । ଆଉ ସେ ବୋଧହୁଏ ସେଇ ଅଭିଶାପରୁ ବାଦ୍ ଯିବନି । ସେଇ ଭୟଙ୍କର ମୁହୂର୍ତ୍ତ ତା' ଆଖି ଆଗରେ ଦେଖାଯାଉଚି । ସେ ଯେମିତି ଜୀବନ ଆଉ ମୃତ୍ୟୁ ଭିତରେ ଏକ ପ୍ରାଣହୀନ ସମାଧାନ । ତା' ଗର୍ଭରେ ଦୁଇମାସର ଭ୍ରୂଣ । ସ୍ୱାମୀ ଶ୍ୱଶୁର ସମସ୍ତଙ୍କ ଇଚ୍ଛା – ସେ ଜରାୟୁକୁ ଦୁନିଆଁର ଆଲୋକକୁ ଆଣିବ । ତା ନିରାପତ୍ତା ପାଇଁ ସେମାନେ ନିଃସଙ୍କୋଚରେ ଅର୍ଥବ୍ୟୟ କରିବେ । କିନ୍ତୁ ଗୀତାଲି ସେଇ ଭୟଙ୍କର ମୁହୂର୍ତ୍ତର ଆଶଙ୍କାରେ ଅତିମାତ୍ରାରେ ସଙ୍କୁଚିତ ।



Digitized by PPRACHIN, SOA

ମୃତ୍ୟୁର ବରଫହ୍ରଦ ତଳେ ସେ ଏକ ଦିଗହଜା ସବ୍‌ମାରାଇନ୍ । ତାର ସ୍ଥିତି ନାହିଁ, ସ୍ଥିରତା ନାହିଁ ।

ସମବୟସୀ ତରୁଣୀ ଦୁଃଖରେ ବିଗଳିତ ହୋଇପଡ଼ିଲେ । ଫୁଲପରି ଏଇ ଜୀବନ । ତେଡ଼େ ସଦ୍ୟ, କେଡ଼େ କମନୀୟ । ଆଉ ତାର ପରିଣତି କେଡ଼େ ନିଷ୍କରୁଣ, କେଡ଼େ କର୍କଶ । ବୃନ୍ତରୁ ଛିଡ଼ି ସେ ହେବ ସ୍ଥିତିହରା । ଶୁଖି ଶୁଖି ହେବ ନିଶ୍ଚିହ୍ନ ।

ଗୀତାଲି କହିଲା–"ମୁଁ କିନ୍ତୁ ଆସିଚି ମୋ ଏଇ ଗର୍ଭ ନଷ୍ଟ କରିବାକୁ । ମୁଁ ସିଦ୍ଧାନ୍ତ କରିନେଇ ସାରିଚି । ମୁଁ ପଛେ ବନ୍ଧ୍ୟା ହୁଏ, କୁହ ଭଉଣୀ, ଜୀବନଠାରୁ ଲୋଭନୀୟ ଆକର୍ଷଣ ଆଉ କଣ ଅଛି ? ମୋର ମୃତ୍ୟୁ ପରେ ମୋ ଗର୍ଭର ଏଇ ଅନାଗତ ଶିଶୁ ! କ'ଣ ହେବ ତା'ର ଭବିଷ୍ୟତ ? କିଏ ତାକୁ ଦୁନିଆରେ ଲାଳନ ପାଳନ କରି ମଣିଷ ହେବାର ଗୌରବ ଦେବ ? କିଏ ତା ଆକୁଳ କ୍ଷୁଧାକୁ ସ୍ତନ୍ୟ ଦେଇ ବୋଧ କରିବ ? ନା- ମୁଁ ପାରିବିନି । ବରଂ ସେ ନ ଆସୁ । ମୋର ଦରକାର ନାହିଁ ।"

ଗୀତାଲି କଇଁ କଇଁ ହୋଇ କାନ୍ଦି ଉଠିଲା । ସମବୟସୀ ତରୁଣୀ ବିକଳ ହୋଇ ଗୀତାଲି ଆଖିରୁ ଲୁହ ପୋଛି ଦେଲେ । ତାଙ୍କ ଆଖିର ଲୁହ କୂଳ ଲଙ୍ଘି ବହିଯାଉଥିଲା ।

ଅନତି ଦୂରର ଶଯ୍ୟା ଉପରୁ ପ୍ରସୂତି ମହିଳା ଜଣକ ଆଖିରୁ ଲୁହ ପୋଛୁ ପୋଛୁ ଭାବୁଥିଲେ- "କେଡ଼େ ଦୁଃଖୀ ସତେ ।"

ପକ୍‌କା ଛାତରୁ ଝିଟିପିଟି ତିନିଥର ଲାଞ୍ଜ ବାଡ଼େଇ କହୁଥିଲା - "ଆହା, କେଡ଼େ ଦୁଃଖୀ ସତେ !"

ଗୀତାଲି ଆଖିର ଉଛୁଳା ଲୁହ ଆଉ ବୁକୁର କୋହକୁ ଚାପିରଖି ଭାବୁଥିଲା- ନାରୀର ପରିପୂର୍ଣ୍ଣତା ମାତୃତ୍ୱରେ । ଯାହା କୋଳରେ ଛୋଟ ଶିଶୁଟିଏ ହସି ଉଠିନି ପରିବାରରେ ଆଉ ସମାଜରେ ତାର ଜୀବନ ଦୁର୍ବିସହ । କିନ୍ତୁ ସେଇ ନାରୀ ଯଦି ଜାଣେ ତାର କୋଳର ଅନାଗତ ଶିଶୁ ହେବ ତା' ମୃତ୍ୟୁର କାରଣ, କିପରି ସେ ତାର ଆଗମନ ପାଇଁ ପୂଜା ବାଢ଼ିପାରିବ, କିପରିବା ସେ ଉଲ୍ଲାସରେ ଆତ୍ମହରା ହୋଇପାରିବ ?

"ତୁମେ ହୁଏତ ଭାବୁଥିବ ମୁଁ ଭୁଲ୍ କରୁଛି"– ଗୀତାଲି କହିଲା । ମୁଁ ନାରୀ ଜାତିର ଏକ ବ୍ୟତିକ୍ରମ । ମୁଁ ସମସ୍ତଙ୍କ ପରି ଜୀବନ ଚାହେଁ, ଏଇ ଦୁନିଆଁରେ ହସିକୁଦି ଝଡ଼ିଯିବାକୁ ଚାହେଁ । କିନ୍ତୁ ଅପମୃତ୍ୟୁ ଚାହେଁନା ।

ଏଥର ତରୁଣୀ ଜଣକ ଗୀତାଲି ପ୍ରାଣର ରୁଦ୍ଧ ବେଦନା ମର୍ମେ ମର୍ମେ ଅନୁଭବ କଲେ । ଏଇ ବ୍ୟଥାହତ ଜୀବନ ପାଇଁ ତାଙ୍କ ହୃଦୟର କାରୁଣ୍ୟ ଆହୁରି ସ୍ପଷ୍ଟ ହୋଇ ଉଠୁଥିଲା । କହିଲେ - "ପିଲାଛୁଆ ସ୍ୱର୍ଗକୁ ନେବେନି ଭଉଣୀ । ତୁମେ ସୁଖରେ ରୁହ । ସେଇ ଯଥେଷ୍ଟ ।"

ଗୀତାଲି ଆଶ୍ଚର୍ଯ୍ୟ ଭାବରେ ଏଇ ତରୁଣୀର ମୁହଁକୁ ଚାହିଁ ରହିଲା । ଏଇ ଦିନକର ପରିଚିତା ମହିଳା । ତା ଦୁଃଖସାଗରରେ ସେ ଯେମିତି ଯୁଗ ଯୁଗର ବେଳାଭୂମି । ତାରି



Digitized by PPRACHIN, SOA

ମନରେ ଜୁଆରର ଦାଗ, ଶୁଖିଲା ଫେଣ ଆଉ ପୋଡ଼ା କାଠର କେତେ ମୃତ୍ୟୁମଥିତ ଶୀତଳ ପଦଯାତ୍ରା ।

ଗୀତାଲି ଆଖିରୁ ଅଶ୍ରୁଧାର ଏଥର ଧୈର୍ଯ୍ୟର ବନ୍ଧ ଟପି ବହିଯିବାକୁ ଲାଗିଲା । ଗୀତାଲି ପ୍ରସୂତି ଭବନର ସବୁ ଶଯ୍ୟାକୁ ମୁହୂର୍ତ୍ତକରେ ଆଖି ବୁଲେଇ ନେଲା । ଆହା କେତେ ସୁନ୍ଦର ଶିଶୁ ଦୋଳିରେ ଶୋଇଚନ୍ତି । ମାଆମାନେ ଗଭୀର ତୃପ୍ତିରେ ନିଦ୍ରାମଗ୍ନ । ଦେହର ସମସ୍ତ ଯନ୍ତ୍ରଣା ଓ ବେଦନାକୁ ଭୁଲି ଗଭୀର ସ୍ୱପ୍ନରେ ସେମାନେ ଆବିଷ୍ଟ । ତା ଭାଗ୍ୟ ପୋଡ଼ିଯାଇଚି ।

ଗୀତାଲି ଆସ୍ତେ ଆସ୍ତେ ନିଜ ଶଯ୍ୟା ପାର୍ଶ୍ୱକୁ ଆଗେଇ ଯାଉଥିଲା । ତା' ଆଖିରେ ଲୁହର ଦାଗ ଏବେବି ବିଜୁଳି ଆଲୁଅରେ ସ୍ପଷ୍ଟ ଦିଶୁଥିଲା ।

ତରୁଣୀ ଜଣକ ଭାବୁଥିଲେ – "ଯେଉଁଠି କାନ ଅଛି ସେଠି ସୁନା ନାହିଁ, ଆଉ ଯେଉଁଠି ସୁନା ଅଛି ସେଠି କାନ ନାହିଁ ।"





Digitized by PPRACHIN, SOA

# ଅପହଞ୍ଚ ଦୂରତା

କଟକ ଯିବା ରାସ୍ତାରେ ହଠାତ୍ ଦେଖିଲି ଧଳା ରଙ୍ଗର ଟ୍ୟାକ୍ସିଟିଏ ରାସ୍ତାକଡ଼ ଢ଼ାବା ପାଖରେ ଅଟକିଚି । ଟ୍ୟାକ୍ସି ଭିତରେ ପଛ ସିଟ୍‌ରେ ବସିଛି ଶୋଭା । ନୂଆ ଚକ୍ ଚକ୍ ମାରୁଥିବା ସୁନା ଗହଣାରେ ସେ ମଣ୍ଡି ହୋଇଛି । ପିନ୍ଧିଛି ବନାରସୀ ପାଟ ଶାଢ଼ୀ, କପାଳରେ କୁଙ୍କୁମ ବିନ୍ଦୁ ଓ ଚନ୍ଦନର ଟୀକା । ମୋର ଆଖି ଝଲସି ଯାଉଥିବା ପରି ପ୍ରତିମାଟିଏ – ଉଜ୍ଜ୍ୱଳ ଶୁଭ୍ର ବର୍ଣ୍ଣା । ତାର ଦି' ପାଖରେ ଦୁଇଜଣ ଭଦ୍ର ମହିଳା – ଠିକ୍ ଦୁର୍ଗା ବା ଲକ୍ଷ୍ମୀ ପ୍ରତିମାଙ୍କ ଦି'ପାଖରେ ଦୁଇଟି ସଖୀ ପରି । ମୁଁ ହଠାତ୍ କିଛି ବୁଝିପାରିଲି ନାହିଁ । ବିଶ୍ୱାସ ବି କରିପାରିଲି ନାହିଁ ।

ସ୍କୁଟର ଅଟକିଗଲା ଛାଏଁ ଛାଏଁ । କାରଣ ଢାବା ମଧ୍ୟରୁ ତତ୍‌କ୍ଷଣାତ୍ ଶୋଭାର ବାପା ଓ ଭାଇ ବାହାରି ଆସୁଥିଲେ । ସେମାନେ ମୋତେ ଠିକ୍ ସେଇ ସ୍ଥାନରେ ଓ ସେଇ ଅବସ୍ଥାରେ କେବେ ମଧ୍ୟ ଦେଖିବାକୁ ଆଶା କରି ନଥିବେ । ତେଣୁ ସେମାନଙ୍କ ମନରେ ବିସ୍ମୟ ସ୍ୱାଭାବିକ ।

ମୁଁ ଦି' ଚାରିପଦ ସ୍ୱାଭାବିକ ଆଳାପ ହେଲି । ପଚାରି ବୁଝିଲି ସେମାନେ ପୁରୀ ଯାଉଛନ୍ତି । ଜଗନ୍ନାଥ ଦର୍ଶନ ଉଦ୍ଦେଶ୍ୟରେ ନିଶ୍ଚୟ । କିନ୍ତୁ ଶୋଭା ଏତେ ଆଭରଣ ବିମଣ୍ଡିତା କାହିଁକି ? ସେମାନେ କିଛି କହିଲେ ନାହିଁ, ମୁଁ ବି କିଛି ଅନ୍ଦାଜ ମଧ୍ୟ କରିପାରୁ ନଥିଲି । କେବଳ ଟ୍ୟାକ୍ସିର ପଛ ସିଟ୍‌ରୁ ମୋ ଆଡ଼କୁ ଚାହିଁରହିଥିବା ପ୍ରତିମାଟିକୁ ମୁଁ ନିରୀକ୍ଷଣ କରୁଥିଲି ।

ଏହି ଘଟଣାର ମାତ୍ର ଦଶଦିନ ତଳେ ଶୋଭା ଆମ ଘରକୁ ଆସିଥିଲା । ତା'ର ଚାକିରୀ ପାଇଁ ତାକୁ ସାଙ୍ଗରେ ନେଇ ମୁଁ ମନ୍ତ୍ରୀଙ୍କ ଘରକୁ ଯାଇଥିଲି । ଅଫିସରଙ୍କ ଦପ୍ତରକୁ ଯାଇଥିଲି ଓ ତା'ପରେ ଆମେ ଆମ ସହରରେ ନୂଆ ଖୋଲିଥିବା ଗୋଟିଏ କ୍ୟାଣ୍ଟିନ୍‌ରେ କଫି ଖାଇଥିଲୁ । ତା'ପରେ କିଞ୍ଚିତ ଦୂରରେ କୌଣସି କଲେଜ ହଷ୍ଟେଲରେ ରହୁଥିବା ତା'ଭାଇ ପାଖୁ ସେ ଯିବାକୁ ଚାହିଁବାରୁ ମୁଁ ସାଙ୍ଗରେ ନେଇଯାଇଥିଲି । ମୋ ସ୍କୁଟର ପଛରେ ବସି ଏକ ଅପରୂପ ରୂପସୀ ତରୁଣୀ ରାଜଧାନୀ ରାସ୍ତାରେ ଯିବା ନୂଆ କଥା ନିଶ୍ଚୟ; କିନ୍ତୁ ସେଦିନ କେଜାଣି କାହିଁକି ମୋର ସଙ୍କୋଚ ବା ଶଙ୍କା ନଥିଲା, ତା'ର ଯେଉଁଠିକୁ ଯିବାର ଥିଲା ସେଠାକୁ ତାକୁ ଅବିଳମ୍ବେ ବହିନେବା ହିଁ ଥିଲା ମୋର ଏକମାତ୍ର ଆନନ୍ଦ । ସେଥିପାଇଁ ମୋ ପତ୍ନୀ ମୋ ଉପରେ ପରେ ବେଶ୍ ବିରକ୍ତ ହୋଇଥିଲେ ବୋଲି ଆଜି ମନେପଡୁଚି ।



Digitized by PPRACHIN, SOA

ସେତେବେଳେ ହଷ୍ଟେଲ୍‌ରେ ତା'ର ସାନଭାଇ ନଥିଲା । କିନ୍ତୁ ଏତେବଡ଼ ପୁରୁଷ ଛାତ୍ରାବାସରେ ଏକ ପ୍ରକୋଷ୍ଠରେ ସେ ଓ ମୁଁ ଦୀର୍ଘ ଏକଘଣ୍ଟା ବ୍ୟାପୀ ବସିବା ଅବକାଶରେ କେବଳ ମାମୁଲି କେତୋଟି ପ୍ରଶ୍ନୋତ୍ତର ଛଡ଼ା ଆଉ କିଛି ଆଳାପ କରିପାରି ନଥିଲୁ । ବୋଧହୁଏ ସେ କୌଣସି ଏକ ବଡ଼ ସମସ୍ୟାରେ ଛନ୍ଦି ହୋଇ ଯାଇଥିଲା । ସେଥିପାଇଁ ସେ ନିର୍ବାକ୍ ରହୁଥିଲା । ମୁଁ ସହଜେ ଘୁଙ୍ଗୀ ବା ଘୁଙ୍ଗାମାନଙ୍କ ସହିତ ନିଜଆଡୁ ବେଶୀ କଥାବାର୍ତ୍ତା କରିପାରେ ନାହିଁ । ତେଣୁ ମୁଁ ନୀରବ ରହୁଥିଲି ।

ପରିସ୍ଥିତି ବିରକ୍ତିକର ଥିଲା । ଶୋଭା ଭାରୀ ଗପୁଡ଼ି ବୋଲି ଜାଣିଥିଲେ ବି ତା'ର ଏତେଟା ନୀରବତା ମୋତେ ଆଦୌ ଭଲ ଲାଗୁ ନଥିଲା । ତଥାପି ଏତେବଡ଼ ଛାତ୍ରାବାସଟାରେ ଆମେ ତା ସାନଭାଇ ଉଦ୍ଦେଶ୍ୟରେ ଅପେକ୍ଷା କରି ରହିଥିଲୁ- ସେ ଆସିବା ପର୍ଯ୍ୟନ୍ତ । ସେଦିନ ସେମାନଙ୍କୁ ବସ୍‌ଷ୍ଟାଣ୍ଡରେ ବିଦା କରି ଆସିବାବେଳେ ନିଜେ ଶୋଭା ମୋତେ ଅନୁରୋଧ କରି ତା'ପରଦିନ କଟକରେ ସାକ୍ଷାତ୍ କରିବାକୁ କହିଥିଲା ।

ମୁଁ ଅବଶ୍ୟ ତା'ପରଦିନ ଯାଇଥିଲି । ଶୋଭା ଯେଉଁ ଭଦ୍ରମହିଳାଙ୍କ ଘରେ ରହୁଥିଲା ସେଠାରେ ପହଞ୍ଚି ଦେଖିଲି ଆଭିଜାତ୍ୟର କଳେଇଛଡ଼ା ସ୍ୱପ୍ନ ଉପରେ ବିଚାରୀ ବଞ୍ଚିଥିବା ଭଦ୍ରମହିଳା ଜଣକ ଭାରି ମିଷ୍ଟ ଭାଷିଣୀ । ପରକୁ ଆପଣାର କରିନେବାରେ ଭାରୀ ଚତୁର ଆଉ ତତ୍ପର । ଶୋଭା ବୋଧହୁଏ ବାଥ୍‌ରୁମ୍‌କୁ ଯାଇଥିଲା-ପ୍ରଚଣ୍ଡ ଗ୍ରୀଷ୍ମରେ ତା'ର ଲହୁଣୀପରି କୋମଳ ଦେହ ଯେ ଏଇ ପୁରାତନ ନିବୁଜ୍ କୋଠା ଭିତରେ ତରଳି ଯାଉଥିବ- ମୁଁ ଅନୁଭବ କଲି । ନଚେତ୍ ଦିନ ତିନିଟାବେଳେ ସେ ଗାଧୋଉଥିଲା କାହିଁକି ? ସେ ଖୁବ୍ ଶୀଘ୍ର ଆସି ମୋତେ ସବୁଦିନ ପରି ଦେଖାକରି ପାରିଥାନ୍ତା । କାରଣ ମୁଁ ଅପେକ୍ଷା କରୁଥିଲି ଗୋଟାଏ ନୂଆଣିଆ ଆଟୁଘରେ । ପବନ ଯିବା ଆସିବାର ବ୍ୟବସ୍ଥା ନଥିବା ଏ ଘରଗୁଡ଼ିକରେ ଗ୍ରୀଷ୍ମ ଅପରାହ୍ନରେ ଅପେକ୍ଷା କରିବା ଯେ କି ଯନ୍ତ୍ରଣାଦାୟକ ମୁଁ ବୁଝିଥିଲି । ତଥାପି ଶୋଭାକୁ ଅପେକ୍ଷା କରିବାରେ ମୋର ଆନନ୍ଦ ଥିଲା- ମୋ ମତରେ ଶୋଭାଥିଲା ଏକ ଶାପଗ୍ରସ୍ତ କିନ୍ନରୀ । ଏତେ ସୌନ୍ଦର୍ଯ୍ୟ ଦେହ ଆଉ ମନରେ ଧରି ଚଳନ୍ତି ପୃଥିବୀରେ ଏକା ଏକା ପାଦ ଚାଲୁଥିବା ମଣିଷ ବିରଳ ନିଶ୍ଚୟ । ବୟସ ଉତ୍ତୀର୍ଣ୍ଣ ହୋଇଥିଲେ ବି କେହି ଜଣେ ହେଲେ ତା ପାଣିପାର୍ଥୀ ହୋଇ ନଥିଲେ । ସେ ମଧ୍ୟ ବିବାହ ଓ ଘର ସଂସାରର ସମସ୍ତ ସ୍ୱପ୍ନକୁ କ୍ରମେ ମନରୁ ନିର୍ବାସିତ କରି ବସିଥିଲା ।

ଆମେ ବସିଥିବା ଘର କବାଟ ଭିତରୁ ଖୋଲି ଶୋଭା ଆସିଲା – ଏଇମାତ୍ର ଗାଧୋଇଥିବାରୁ ମୁଣ୍ଡର ଘଞ୍ଚ କେଶରାଶିରେ ତଥାପି କେତେବିନ୍ଦୁ ଜଳ ଲାଗିରହିଥିଲା । ହାତରେ ଓଦାଲୁଗାକୁ ଜାକିଜୁକି ମୋତେ ନମସ୍କାର କରିବାକୁ ନଇଁ ପଡୁପଡୁ ମୁଁ ପ୍ରତି ନମସ୍କାର ଜଣାଇ ସାରିଥିଲି ।

ଆମେ ସେଦିନ ରୌଦ୍ରଦଗ୍ଧ ଅପରାହ୍ନରେ ସେଇ ଗମ୍ଭୀରା ଘରେ କିପରି ଏକଘଣ୍ଟା କାଳ ବସି ଗପସପ ହୋଇ ପାରିଥିଲୁ ତାହା ମୁଁ ସଠିକ୍ ମନେରଖି ନାହିଁ । ତେବେ ଶୋଭାର ଆଚରଣରେ ସେଦିନ କିଛି ପରିବର୍ତ୍ତନ ଲକ୍ଷ୍ୟ କରୁଥିଲି । ସେ ଯେପରି କାହା



Digitized by PPRACHIN, SOA

ଉଦ୍ଦେଶ୍ୟରେ ଅପେକ୍ଷା କରି ରହୁଥିଲା ଓ ବାରମ୍ବାର କନ କନ ହୋଇ ବାହାରକୁ ଚାହୁଁଥିଲା । କିଏ ହୁଏତ ଆସିବାର ଥିଲା । କିନ୍ତୁ ସେଦିନ ଆମେ ସମସ୍ତେ ସହରକୁ ଆସିଥିବା ସର୍କସ ଦେଖିଯିବାର ପୂର୍ବ ପ୍ରସ୍ତାବକୁ ବାତିଲ କରାଯାଇଥିଲା । ଏହା ଅସ୍ୱାଭାବିକ ହେଲେ ବି ମୁଁ କୌଣସି ଗଭୀର ଅର୍ଥ ଏଥିପ୍ରତି ଆରୋପ ନକରି ଘରକୁ ଫେରି ଆସିଥିଲି ।

ଏଇ ସାକ୍ଷାତର ଠିକ୍ ଦଶଦିନ ପରେ ରାସ୍ତାରେ ତାକୁ ଏପରି ଅବଗୁଣ୍ଠନବତୀ ଅବସ୍ଥାରେ ଦେଖି ମୁଁ କିଛି କଳନା କରି ପାରିଲି ନାହିଁ । ଏଇ ପନ୍ଦରଦିନ ମଧ୍ୟରେ ତାର ବିବାହ ପାଇଁ ମୁଁ ଅନ୍ୟୂନ ଦୁଇଟି ପ୍ରସ୍ତାବ ଆଣିଥିଲି । ତାର ବାପାଙ୍କ ପତ୍ର ଅନୁଯାୟୀ ଏହା ମୋର ପ୍ରଥମ କର୍ତ୍ତବ୍ୟ ବୋଲି ମୁଁ ଭାବି ନେଇଥିଲି ।

ଶୋଭାର ବାପା ଓ ଭାଇ ମୋତେ ବିଶେଷ କିଛି ଖୋଲି କହି ନ ଥିଲେ । ବୋଧହୁଏ କହିବା ଉଚିତ୍ ମନେକରି ନଥିଲେ । କିନ୍ତୁ ପରେ ଶୁଣିଲି ମୋତେ ସବୁକଥା ଜଣାଇବା ପାଇଁ ଶୋଭା ଜିଦ୍ ଧରିଥିଲା । ଏପରିକି ପୁରୀ ଯିବା ରାସ୍ତାରେ ମୋତେ ଡ଼ାକି ସାଙ୍ଗରେ ନେବାକୁ ସେ ତା'ବାପାଙ୍କୁ ପ୍ରସ୍ତାବ ମଧ୍ୟ ଦେଇଥିଲା । କିନ୍ତୁ ଅସ୍ୱାଭାବିକ କୌଣସି ଘଟଣା ପ୍ରତି ସବୁଦିନ ଗୁରୁଜନମାନେ ସ୍ପର୍ଶକାତର । ତା'ର ବାପା ମୋତେ ଖବର ନ ଦେବାକୁ ସିଦ୍ଧାନ୍ତ କରିଥିଲେ ।

ପରେ ଶୁଣିଲି ସେଇଦିନ ଶୋଭା ପୁରୀ ମନ୍ଦିରରେ ଗାନ୍ଧର୍ବ ମତରେ ବିବାହକଲା ଅନ୍ୟ ଏକ ପ୍ରଦେଶର ଓ ଭିନ୍ନ ଜାତିର ଜଣେ ଯୁବକକୁ । ସେଥିପାଇଁ ସେଦିନ ଶୋଭା ଘରେ ତୁମୁଳ କାଣ୍ଡ ହୋଇ ଯାଇଥିଲା । ପୁଅ ଘରେ ଉଠିଥିଲା ପ୍ରଚଣ୍ଡ ତୋଫାନ । ପୁଅର ବାପା ଓ ଭାଇ ମିଶି ତାକୁ ପ୍ରାୟ ପରିତ୍ୟଜ୍ୟ ବୋଲି ଘୋଷଣା କରିଥିଲେ । ପୁଅର ଆଲାଏଡ଼୍ ସର୍ଭିସ, ମୋଟା ଦରମା ଓ ଭବିଷ୍ୟତର ପ୍ରଚୁର ସମ୍ଭାବନାକୁ ସେମାନେ ସାମାଜିକ ଦାୟରେ ଉପେକ୍ଷା କରିଥିଲେ । ଶୋଭା ଯାହାକୁ ବାହାହେଲା ତାର ଅନ୍ୟତ୍ର ବିବାହ ପାଇଁ ଆଗରୁ ନିର୍ବନ୍ଧ ମଧ୍ୟ ହୋଇ ସାରିଥିଲା । କିନ୍ତୁ ସେ ବାପା ଭାଇ ସମାଜ ଓ ସାମାଜିକତା ସବୁକୁ ବଳିଦେଇ ଆଗେଇ ଆସିଥିଲା ତା'ର ନିଜସ୍ୱ ବିଶ୍ୱାସରେ ସମ୍ଭବତଃ- ଅଭିଶପ୍ତ ଗାନ୍ଧର୍ବୀ ଶୋଭାକୁ ଉଦ୍ଧାର କରିବା ପାଇଁ ସେ ଥିଲା କୃତସଂକଳ୍ପ । ପରବର୍ତ୍ତୀ ପଦକ୍ଷେପ ପାଇଁ ସେମାନେ ନିଷ୍ପତ୍ତି କରି ନେଇଥିଲେ ।

କେତେଜଣ ସାଥୀଙ୍କୁ ନେଇ ଶୋଭାର ପ୍ରେମିକ ପୁରୀ ମନ୍ଦିରରେ ଅପେକ୍ଷା କରୁଥିଲା । ଶୋଭାକୁ ବିବାହ କରିବା ଉତ୍ସବରେ ସ୍ୱାବିକଭାବେ ଉଭୟ ପକ୍ଷର ବନ୍ଧୁବାନ୍ଧବମାନେ ଥିଲେ ଅନାହୂତ । ଏ ସବୁ ବ୍ୟାପାରରେ ସମାଜ ସେମାନଙ୍କୁ ସମର୍ଥନ ନ ଦେବା ସ୍ୱାଭାବିକ ହେଲେ ବି ମୁଁ ମନେ ମନେ ଶୋଭାର ପ୍ରେମିକକୁ ବହୁତ ପ୍ରଶଂସା କରୁଥିଲି । କିନ୍ତୁ ମୋ ମନରେ ସ୍ୱତଃ ପ୍ରଶ୍ନ ଉଠୁଥିଲା-(ଅବଶ୍ୟ ଶୋଭାର ବିବାହ ପରଦିନ ଏସବୁ ସେହି ଭଦ୍ରମହିଳାଙ୍କଠାରୁ ଶୁଣିବାପରେ) ମୋତେ ଡକା ନଗଲା କାହିଁକି ? ମୁଁ ତ ସବୁଦିନେ ଏସବୁ ବ୍ୟାପାରର ସମର୍ଥକ ଓ ସାହାଯ୍ୟକାରୀ ? ପୁଣି ମୋତେ ଯଦି ଏପରି



Digitized by PPRACHIN, SOA

ଏକ ମାଙ୍ଗଳିକ ଉତ୍ସବକୁ ଡକା ନ ଯିବାର ନିଷ୍ପତ୍ତି ଶୋଭାର ବାପା ନେଇଥିଲେ ତେବେ ରାସ୍ତାରେ ଏପରି ଅକସ୍ମାତ୍ ସେଇ ଅବଗଣ୍ଠିତା ଅଭିଶପ୍ତ କିନ୍ନାରୀ ସହିତ ମୋର ସାକ୍ଷାତ ବା ହେଲା କାହିଁକି ? ଏହା କଣ ଥିଲା ଶୋଭାର ଏକାନ୍ତ ଇଚ୍ଛା ନା ବିଧି ନିର୍ଦ୍ଦିଷ୍ଟ ?

ମୁଁ ଅନେକଦିନ ଧରି ଏକଥା ଭାବିଛି- କୌଣସି ସିଦ୍ଧାନ୍ତରେ ପହଞ୍ଚି ପାରିନି । ଶୋଭାର ବିବାହ ପରେ ପନ୍ଦର ବର୍ଷ ବିତିଗଲାଣି- ଆଉ ତା ସହିତ ଦେଖା ମଧ୍ୟ ହୋଇ ନାହିଁ । ଦେଖା କରିବାର ଦୁର୍ବାର ଇଚ୍ଛାସତ୍ତ୍ୱେ ମନ ଭିତରେ ସ୍ୱତଃ ଅଭିମାନ ଆସିଛି ଏହି କପଟତା ପାଇଁ । ଏବେ ଶୋଭା ପୁଅ ଝିଅର ମାଆ- ଖୁବ୍ କୋଳାହଳ ଭିତରେ ତାର ସୁଖର ସଂସାର । ତାର ଆନନ୍ଦରେ ଭାଗ ନେବାର ଖୁବ୍ ବଳବତୀ ଇଚ୍ଛା ଥିଲେ ବି ମୁଁ ତାକୁ ଦେଖିବାକୁ ଯାଇପାରି ନାହିଁ । କାରଣ ମୋ ମନରେ ତଥାପି ଅଭିମାନ- ତାର ଜୀବନର ସବୁଠାରୁ ଶ୍ଲାଘ୍ୟ ଓ ସ୍ମରଣୀୟ ଦିବସଟି ପାଇଁ ମୋତେ ସେ ଜଣାଇ ନାହିଁ । ଅଥଚ ତାର ଦୁଃଖ ଓ ଦୁର୍ଗତିର ଅନେକ ପାହାଚରେ ମୁଁ ଡେରିହୋଇ ସେହିପରି ଠିଆହୋଇଛି- ତାକୁ ଉଠାଇବାକୁ ଚେଷ୍ଟା କରିଚି । ତା'ର ମଙ୍ଗଳକାମନା କରିଚି- ତାପାଇଁ ଭଲ ଚାକିରୀଟିଏର ସନ୍ଧାନରେ କର୍ତ୍ତୃପକ୍ଷଙ୍କୁ ବାରମ୍ବାର ଭେଟିଛି । ଦିନେ ଅଧେର କଥା ନୁହେଁ, ବର୍ଷ ବର୍ଷ ଧରି ମୁଁ ତାର ମଙ୍ଗଳ ହିଁ କାମନା କରି ଆସିଛି ।

ଆଶ୍ରମ ସ୍କୁଲର ଶିକ୍ଷୟିତ୍ରୀ ଶୋଭାରାଣୀ ପଟ୍ଟନାୟକ । ମୋ ଭାଷାରେ ସେ ଅଭିଶପ୍ତା କିନ୍ନରୀ । ଦେହରେ ଏତେ ରୂପ, ମନରେ ସମସ୍ତଙ୍କ ପାଇଁ ଏତେ ଦରଦ, ପରିବାର ପାଇଁ ବିଶେଷତଃ ଛୋଟ ଛୋଟ ଭାଇ ଭଉଣୀମାନଙ୍କୁ ମଣିଷ କରିବାର ଏତେ ସଂକଳ୍ପ ଓ ସାଧନା, ସେଥିପାଇଁ ସହରର ଅନେକ ଦୂରରେ କେଉଁ ନିଘଞ୍ଚ ଅରଣ୍ୟର ଆଶ୍ରମ ସ୍କୁଲରେ ଶିକ୍ଷୟିତ୍ରୀ ଶୋଭାରାଣୀ ପଟ୍ଟନାୟକ ଜୀବନ ପାଇଁ କୃଚ୍ଛ୍ର, ସାଧାନା ହିଁ କରି ଚାଲିଛି । ଆଶ୍ରମରେ ସତେଯେପରି ସେ କେଉଁ ବ୍ରତଚାରିଣୀ ତପସ୍ୱୀ । ମୁଁ ଯେଉଁଦିନ ତାକୁ ସେଠାରେ ପ୍ରଥମେ ଭେଟିଲି ଶୁଭ୍ରବାସନା ଉଜ୍ଜ୍ୱଳବରଣା ଶୋଭା ଅତି ସମ୍ଭ୍ରମର ସହିତ ମୋତେ ତା' କୋଠରୀ ଆଡକୁ ବାଟ କଢ଼େଇ ନେଇଥିଲା । ସନ୍ଧ୍ୟା ଆସନ୍ନ ପ୍ରାୟ । ଦୂର ପାହାଡର ପଶ୍ଚାତରେ ସୂର୍ଯ୍ୟ ଅସ୍ତ ଯାଉଥିଲେ ବୋଧହୁଏ । କିନ୍ତୁ ଆକାଶ ଥିଲା ମେଘାଚ୍ଛନ୍ନ- ତେଣୁ ଅଗ୍ନି ଗୋଲକ ସୂର୍ଯ୍ୟ ସେଦିନ ଦେଖାଯାଉ ନଥିଲେ ବି ପଶ୍ଚିମ ଦିଗ୍‌ବଳୟ ବେଶ୍ ରକ୍ତିମ ହୋଇ ଉଠିଥିଲା । ସେଦିନ ଥିଲା ଆଦ୍ୟ ଆଷାଢ଼ର ଗୋଟିଏ କ୍ଲାନ୍ତ ମୌସୁମୀ-ଅପରାହ୍ନ ।

ଆମେ ନାନାଦି ବିଷୟରେ କଥାବାର୍ତ୍ତା ହେଉଥିଲୁ । ବିଶେଷତଃ ମୁଁ ଯେ ଏପରି ନିଘଞ୍ଚ ଅରଣ୍ୟାଞ୍ଚଳରେ ପହଞ୍ଚି ଶୋଭାକୁ ଦେଖା କରିବି- ଏହା ତା' ପକ୍ଷେ ଥିଲା ସଂପୂର୍ଣ୍ଣ କଳ୍ପନାତୀତ । ତେଣୁ ବିସ୍ମୟ ସୁଲଭ ଆନନ୍ଦରେ ସେ ଯେପରି ବିଗଳିତ ହୋଇଯାଉଥିଲା । ମୋତେ ବସିବାକୁ ନିଜ କାନିରେ ଚେୟାରଟିକୁ ଝାଡ଼ିଦେଇ ସେ ମୋ ପାଇଁ ଚା' ଓ ଜଳଯୋଗରେ ଲାଗିଗଲା । ମୁଁ ଯେତେ ନାହିଁ କଲେ ବି ତାର ଏକା ଜିଦ୍- "ଆପଣ ତ ଏ ସ୍ଥାନ ପାଇଁ ଦୁର୍ଲଭ । ଏତେ ଦିନ ପରେ ଆପଣଙ୍କ ସହିତ ଦେଖା- ଚା'



Digitized by PPRACHIN, SOA

କପେ କରି ଦେଇ ପାରିବିନି ?"

ମୁଁ ଚାହୁଁଥିଲି ଶୋଭା କେବଳ ମୋ ଆଗରେ ବସିରହୁ ଏବଂ ମୁଁ ତାକୁ ନିରୀକ୍ଷଣ କରୁ କରୁ ତା' ସହିତ ଗପୁଥାଏ । ସେ ସମ୍ଭ୍ରମର ସହିତ ହଁ ନାହିଁ ଉତ୍ତର ଦେଉଥାଏ, ଖୁବ୍ ସଂକ୍ଷିପ୍ତ ଓ ସୀମିତ । କିନ୍ତୁ ଶୋଭା ଏତେ ବ୍ୟସ୍ତ ହୋଇ ପଡୁଥିଲା ଯେ ଆଶ୍ରମର ପିଅନ୍‌କୁ ଡାକି ବଜାରରୁ ଜଳଖିଆ ମଗେଇବା ପାଇଁ ନିଷ୍କ୍ରାନ୍ତ ହୋଇଗଲା । ମୁଁ ଏକା ବସିରହି କେତେବର୍ଷର ବ୍ୟବଧାନ ଭିତରେ ତା' ଜୀବନର ଘଟଣାବଳୀ ଜାଣିବାକୁ ଉତ୍ସୁକ ହୋଇ ଉଠିଥିଲି । ମୁଁ କଲେଜରୁ ପଢ଼ାସାରି ଆସିବାର ଅନେକବର୍ଷ ପରେ ସେ ସେଇ କଲେଜରେ ଆଡମିସନ୍ ନେଇଥିଲା । ମୋ ସାନଭଉଣୀ ସହିତ ଛାତ୍ରୀ ନିବାସରେ ସେ ଥିଲା ଅନ୍ତେବାସିନୀ । ତେଣୁ ସେତେବେଳେ ତା'ସହିତ ମଝିରେ ମଝିରେ ଦେଖା ହେଉଥିଲା ଖୁବ୍ କମ୍ ସମୟ ପାଇଁ ।

ଆଜି ପ୍ରାୟ ସାତବର୍ଷର ବ୍ୟବଧାନ ପରେ ମୁଁ ନିଜେ ଶୋଭାକୁ ଦେଖା କରିବାକୁ ଆସିଚି- ଏହା ତା' ପାଇଁ ନିଶ୍ଚୟ ଥିଲା ଏକ କଳ୍ପନାତୀତ ବ୍ୟାପାର । କିନ୍ତୁ କଳ୍ପନା ବି ବେଳେବେଳେ ସତ ହୁଏ । ମୁଁ ଆସିଥିଲି ଟୁର୍‌ରେ ସରକାରୀ କାମରେ । ଏଠି ଶୋଭାରାଣୀ ପଟ୍ଟନାୟକ ଶିକ୍ଷୟତ୍ରୀ ଅଛନ୍ତି ଶୁଣି ଦେଖାକରିବା ଯେପରି ମୋ ପାଇଁ ଥିଲା ଏକାନ୍ତ ବିଧି ନିର୍ଦ୍ଦିଷ୍ଟ । ଏକ ଅନବଦମିତ ଆବେଗରେ ମୁଁ ତାକୁ ଭେଟିଥିଲି । ମୋ ଜିପ୍ ଆଶ୍ରମ ସ୍କୁଲର ଅନତିଦୂରରେ ରାସ୍ତା ଉପରେ ଠିଆ ହୋଇଥିଲା । ମୁଁ ବିଶେଷ ଉଦ୍‌ବିଗ୍ନ ନ ଥିଲି- କାରଣ ଯେତେବେଳେ ଫେରିଲେ ବି କିଛି ଅସୁବିଧା ନଥିଲା ।

କିନ୍ତୁ ନିଘଞ୍ଚ ଅରଣ୍ୟରେ ବର୍ଷା ଆସିଲେ ହଠାତ୍ ପ୍ରକୃତି ଏତେ ଭୟଙ୍କର ହୋଇଉଠେ ବୋଲି ମୁଁ ଜାଣି ନଥିଲି । ସନ୍ଧ୍ୟାପରେ ପରେ ଖୁବ୍ ଜୋର୍‌ରେ ଅସରାଏ ବର୍ଷା କାଟିଦେଇଗଲା । ଚାରିଆଡୁ ଅନ୍ଧାର ମାଡ଼ିଆସିଲା । ଆଶ୍ରମ ସ୍କୁଲର ଛାତ୍ରୀ ନିବାସରେ ହାତ ଗଣତି ତିନି ଚାରିଜଣ ଛାତ୍ରୀ ଓ ସେମାନଙ୍କ ପରିଚାଳିକା ମିସ୍ ଶୋଭାରାଣୀ ପଟ୍ଟନାୟକ । ବୁଢା ପିଅନଟିଏ ବୋଲହାକ କରିବାକୁ । ଆଉ ଜଣେ ଦ'ଜଣ ଶିକ୍ଷୟିତ୍ରୀ ଅନ୍ୟ କୋଠରୀରେ । ଭଙ୍ଗାଦୁଟା ପୁରୁଣା ଘରେ ବର୍ଷା ଯେ ଏତେ ଅସମ୍ଭାଳ ଭାବେ ଆକ୍ରମଣ କରେ ମୁଁ ସେଦିନ ଅନୁଭବ କଲି । ଏତେ ଜୋର୍‌ରେ ବତାସୀ ପବନ ଓ ବର୍ଷା ଘର ଭିତରକୁ ତୁହାକୁ ତୁହା ପଶିଆସୁଥିଲା ଯେ ଶୋଭା ଝରକା ଓ କବାଟ ଦେବାକୁ ବାଧ୍ୟ ହେଲା । ତା' ରହିବା ଛୋଟ ମାଟିଘରର ଚାଳରୁ ବି ଠାଏ ଠାଏ ପାଣି ଗଳୁଥିଲା । ସେ ତା' ଖଟ ଉପରେ ବସି ବସି ଅରଣ୍ୟ ପ୍ରକୃତିର ଏଇ ଭୟଙ୍କାରିତା ବିଷୟରେ ମୋତେ କହୁଥିଲା ଓ ମୁଁ ଏଇ ପରିବେଶ ସହିତ ନିଜକୁ ମିଶାଇ ଦେବାକୁ ଚେଷ୍ଟା କରୁଥିଲି । ମନେ ହେଉଛି ଝରକା ପାଖ ଦେଇ ସର୍ ସର୍ ଶବ୍ଦରେ ସାପଟିଏ ବୋଧହୁଏ ଚାଲିଗଲା । ମୁଁ ସେ ଶବ୍ଦରେ ଆତଙ୍କିତ ହେବା ପୂର୍ବରୁ ସେ ମୋତେ ଜଣାଇଦେଲା ଯେ ଏସବୁ ଜାଗାରେ ସାପ, ଗୋଧି, କଙ୍କଡ଼ାବିଛା ଆଶ୍ରମବାସୀଙ୍କ ବନ୍ଧୁ ହୋଇ ଯାଇଛନ୍ତି । କାହାରି କିଛି ଅନିଷ୍ଟ କରିବେନି ।



Digitized by PPRACHIN, SOA

ମୁଁ ଆଶ୍ୱସ୍ତ ହେଲି । କିନ୍ତୁ ହଠାତ୍ ବିଜୁଳି ଆଲୋକ ବି ଲିଭିଗଲା । ଶୋଭା ବଡ ଅପ୍ରସ୍ତୁତ ହୋଇ ପଡୁଥିଲା ଓ ଲଣ୍ଠନଟି ଜଳାଇବାକୁ ଉଦ୍ୟମ ମଧ୍ୟ କଲା ।

ମୁଁ କହିଲି-"ଦେଖ ଶୋଭା, ଅନ୍ଧାରରେ ବି ଏ ଘର ଖୁବ୍ ଉଜ୍ଜ୍ୱଳ ଦିଶୁଚି- ତୁମେ ଥିବାରୁ । ତେଣୁ ପୁଣି କରେଣ୍ଟ ଆସିବାଯାଏ ଏଇ ଥଣ୍ଡା ଅନ୍ଧାର ରାତିରେ ବସି ବସି ଗପ ପରାଯାଇ ପାରେ ।"

ଶୋଭା କିଛି ଉତ୍ତରଦେବା ପୂର୍ବରୁ ମୁଁ ଅନୁଭବକଲି ଯେ ତା' ଲଣ୍ଠନରେ ତେଲ ନାହିଁ । ସନ୍ଧ୍ୟା ପୂର୍ବରୁ ସେ ପିଅନକୁ ପଠାଇ ତେଲ ସଂଗ୍ରହ କରି ନେବାର ଥିଲା- କିନ୍ତୁ ଆଜି ଭୁଲିଯାଇଛି । ଅଗତ୍ୟା ସେ ବାଧ୍ୟହୋଇ ଖଟ ଉପରେ ବସିରହିଲା ଓ ମୁଁ ଚୌକିରେ ବସି ବସି କେତେବେଳେ ନୀରବ ରହୁଥିଲି ତ କେତେବେଳେ ନୂତନ କୌଣସି ଆଳାପର ଖିଅ ଯୋଡ଼ି ବସୁଥିଲି । ଗୋଟାଏ ଅନ୍ଧାର ଘରେ ଜଣେ ଚାଳିଶ ବର୍ଷର ପ୍ରୌଢ଼ ଓ ଜଣେ ବତିଶ ବର୍ଷୀୟା ତରୁଣୀ- ପରିସ୍ଥିତି ବେଶ୍ ଉତ୍ତେଜନାପୂର୍ଣ୍ଣ ହେଲେ ବି ଆମେ ମଝିରେ ମଝିରେ ଗପ ଯୋଡି ସମୟ ଅତିବାହିତ କରୁଥିଲୁ ।

ବୋଧହୁଏ ବର୍ଷା ଛାଡ଼ି ଆସିବାରୁ ପିଅନ କିଛି ଜଳଖିଆ କିଣି ସେଇ ଅନ୍ଧାର ଭିତରେ ବଜାରରୁ ଫେରି ଆସିଥିଲା । ସେ କବାଟ ଖୋଲିବାକୁ ଡାକିବାରୁ ଶୋଭା ଖଟ ଉପରୁ ଉଠି କବାଟ ଖୋଲୁ ଖୋଲୁ ଅତି ସ୍ୱାଭାବିକ ସ୍ୱରରେ କହିଲା -"ଲଣ୍ଠନରେ ତେଲ ନାହିଁ, ମୁଁ କହିବାକୁ ଭୁଲିଯାଇଥିଲି । ବର୍ଷା ପବନରେ ଘର ଅଧା ଓଦା ।"

ଏ କୈଫିୟତ୍ ନ ଦେଇଥିଲେ ଚଳିଥାନ୍ତା; କିନ୍ତୁ ଆଶ୍ରମ ସ୍କୁଲକୁ ଆସିଥିବା ଜଣେ ଅପରିଚିତ ସରକାରୀ କର୍ମଚାରୀଙ୍କ ସହିତ ପ୍ରାୟ ଏକ ଘଣ୍ଟାରୁ ଅଧିକ କାଳ ନିବୁଜ କୋଠରୀ ମଧ୍ୟରେ ଅନ୍ଧାରରେ ରହିବାପରେ ଶୋଭାର କୈଫିୟତ ଦେବା ବ୍ୟତୀତ ଆଉ ବା କି ଚାରାଥିଲା ?

ମୁଁ ଓ ଶୋଭା ସାଙ୍ଗହୋଇ ସେଦିନ ଜଳଖିଆ ଖାଇଥିଲୁ । ମନେହେଉଚି ମୁଁ ଅଧାଖାଇ ରଖିଥିବା ମିଠାକୁ ସେ ଓ ତା ମିଠାର କିଛି ଅଂଶ ମୁଁ ଭୁଲରେ ଖାଇଦେଇଥିଲୁ । ଗୋଟିଏ ପ୍ଲେଟରୁ ଖାଇବାରେ ଏ ଅସୁବିଧା ବେଳେବେଳେ ହେବା ନିହାତି ସ୍ୱାଭାବିକ ।

ରାତି ପ୍ରାୟ ନ'ବାଜି ଯାଇଥିଲା । ମୁଁ ଫେରିବାକୁ ପ୍ରସ୍ତୁତ ହେଲି । କଥାହେଲା ମୋ ଜିପ୍‌ରେ ସେ ଆସନ୍ତାକାଲି ସକାଳେ ତା' ଗ୍ରାମକୁ ଯିବ । ରବିବାର ଓ ସୋମବାର ଦୁଇଦିନ ରହି ଫେରିଆସିବ । ମୁଁ ପାଖ ସହରର ଡାକବଙ୍ଗଳାକୁ ଫେରିଆସିଲି । ରାତିସାରା ଶୋଭା କଥା ହିଁ ଭାବୁଥିଲି । ଭଲ ଝିଅଟା, ଆଜିଯାଏ ବିଭା ହୋଇପାରୁନି । ଏ ସମାଜରେ କେହି ଜଣେ ଆଦର୍ଶ ଯୁବକ କ'ଣ ନାହିଁ ଯେ ଆଗେଇଆସି ଶୋଭାର ହାତ ଧରି ସ୍ୱର୍ଦ୍ଧାର ସହିତ ବାଟ ଚାଲିପାରିବ । ମୁଁ ମନେ ମନେ କେତେ ବୟସ୍କ ଅବିବାହିତ ବନ୍ଧୁଙ୍କ କଥା ଚିନ୍ତା କରୁଥିଲି । ଥଣ୍ଡା କାଲୁଆ ପବନରେ ରାତ୍ରିର ଶେଷଭାଗକୁ ନିଦ ଆସିଗଲା ଓ ସେଇ ନିଦ୍ରାବସ୍ଥାରେ କିଛି ଅସୁନ୍ଦର, କୁତ୍ସିତ ସ୍ୱପ୍ନ ବି ଦେଖିଥିଲି ଶୋଭାକୁ ନେଇ । ସକାଳକୁ ଭାବିଲି ବୋଧହୁଏ ତାହା ହିଁ ଥିଲା ମୋର ନିଜସ୍ୱ ବିକୃତ



Digitized by PPRACHIN, SOA

ଅବଚେତନ । ଶୋଭା ପରି ସୁନ୍ଦରୀ ଓ ରୁଚିସମ୍ପନ୍ନ ଝିଅକୁ ନେଇ କେତେ ଯୁବକ ହୁଏତ ସ୍ୱପ୍ନ ଦେଖିଥିବେ- କିନ୍ତୁ ଆଗେଇ ଆସି ଦାୟିତ୍ୱ ନେବାକୁ କେହି ପ୍ରସ୍ତୁତ ହୋଇନାହାନ୍ତି । କାରଣ ଶୋଭାର ସବୁ ସୌନ୍ଦର୍ଯ୍ୟ ଓ ସୁଗୁଣ ମଧ୍ୟରେ ତାର ଗୋଟିଏ ଗୋଡ଼ ଥିଲା ରିକେଟୀ । ସେ ଛୋଟେଇ ଛୋଟେଇ ଚାଲୁଥିଲା । ସେଇ ଗୋଡ଼ଟିକୁ ସେ ଲୁଗା ମଧ୍ୟରେ ପ୍ରାୟ ଲୁଚାଇ ରଖୁଥିଲା । ଗୋଟାଏ କିଛି ସ୍ଥିର ହୋଇଯିବାର ସମ୍ଭାବନା ଗଜୁରି ଆସିବାବେଳେ ସେଇ ଗୋଡ଼ଟି ପାଇଁ ବାରମ୍ବାର ବିଭାଘର ଭାଙ୍ଗି ଯାଉଥିଲା । ଆଜନ୍ମରୁ ଏଇ ଅସହାୟତା ପାଇଁ ତାର ସଚେତନ ଆତ୍ମା ବାରମ୍ବାର ଛଟପଟ ହେଲେ ବି କିଛି କରିବାର ନଥିଲା ।

ଆମେ ତା' ପରଦିନ ତାଙ୍କ ଗ୍ରାମକୁ ଆସିଲୁ । ବାଟରେ ଏକ ସ୍ଥାପତ୍ୟଭରା ମନ୍ଦିରରେ କିଛି ସମୟ କଟେଇଥିଲୁ । ବୋଧହୁଏ ପଞ୍ଚଦଶ ଶତାବ୍ଦୀର ଏକ ବରାହୀ ମନ୍ଦିର । ସେ କଣ ମନାସିଥିଲା ମୁଁ ଜାଣେନି- ମୁଁ ମନାସିଥିଲି ତା'ପରି ଭଲ ଝିଅଟିପାଇଁ ଗୋଟିଏ ସୁନ୍ଦର ପୁରୁଷ, ତା'ର ସୁନ୍ଦର ସୁଖୀ ବୈବାହିକ ଜୀବନ, ସ୍ୱାମୀ ସନ୍ତାନର ସୁଖୀ ସଂସାରଟିଏ । ସେଦିନ ବୋଧହୁଏ ଥିଲା ରାକ୍ଷୀପୂର୍ଣ୍ଣିମା । ତାଙ୍କ ଘରେ ସେ ମୋ ହାତରେ ରାକ୍ଷୀ ବାନ୍ଧିଦେଇଥିଲା । ମୁଁ ତାକୁ ବଢ଼େଇ ଦେଇଥିଲି କେତୋଟି ମୁଦ୍ରା ଓ ସରାଗରେ ତା'ର ମୁଣ୍ଡର ଘଞ୍ଚ ଉନ୍ମୁକ୍ତ କେଶରାଶିକୁ ଆଉଁଷି ଦେଇଥିଲି ।

ତା'ପରେ ମୁଁ ଅନେକଥର ଟୁର୍‌ରେ ସେଇଆଡେ ଯାଇଛି- କାମ ଥାଉ ବା ନ ଥାଉ ସେଇ ରାସ୍ତାରେ ମୋ ଜିପ୍ ମୁହାଇଁ ଯାଇଛି । ସେଇ ଆଶ୍ରମ ସ୍କୁଲର ସମସ୍ତ ଶିକ୍ଷକ ଓ ଶିକ୍ଷୟିତ୍ରୀ ମୋର ପ୍ରିୟ ଓ ପରିଚିତ ହୋଇଛନ୍ତି । ତା' ସହିତ ପାଖ ପାହାଡ଼, ଝରଣା, ଧାନବିଲ ଓ ଶାଳବନ ମଧ୍ୟ । ସେଇ ଘରେ ଆମେ ଅନେକ ସମୟ ଧରି ନୀରବରେ ବସିରହିଛୁ- ଗପିଚୁ ଅନେକ କଥା- କେତେ ସଂଲଗ୍ନ, କେତେ ଅସଂଲଗ୍ନ । ମୁଁ ଅନେକଥର ଶୋଭାକୁ କହିଛି ଯେ ସେ ଏକ ଶାପଗ୍ରସ୍ତ ସ୍ୱର୍ଗର ଅପ୍‌ସରୀ । ତା'ପାଇଁ ପୃଥିବୀରେ ସ୍ଥାନ ନାହିଁ । ଶୋଭା ବେଳେ ବେଳେ ତା'ର ଅସହାୟତା ପ୍ରକାଶ କରିଛି ଓ ନିଜର ଦୁର୍ବଳତାକୁ ଅତିକ୍ରମ କରିଯିବାକୁ ଶ୍ରୀ ଅରବିନ୍ଦଙ୍କ ଦର୍ଶନ ଉପରେ ପଢାପଢି ଆରମ୍ଭ କରିଛି । ତା'ର ମାନସିକ ନିଷ୍ଠା ଓ ନିଷ୍କଳଙ୍କ ଜୀବନଧାରା ପାଇଁ ମୁଁ ମନେ ମନେ ବହୁତ ଗର୍ବ କରିଛି ।

ଆଜି ଅନେକଦିନ ପରେ ଶୋଭା କଥା କାହିଁକି ଯେ ଏତେ ମନେପଡୁଚି ଜାଣେନାହିଁ । କ'ଣ ମୋତେ ସେ ପ୍ରତାରିତ କରିଚି ବୋଲି ? କିନ୍ତୁ କ'ଣ ମୁଁ ତା'ଠାରୁ ବା ଆଶା କରୁଥିଲି ? ସାନ୍ନିଧ୍ୟ, ଆନ୍ତରିକତା ? ମୁଁ ତ ଭାବୁଚି ଏ ଆନ୍ତରିକତା ଏବେ ବି ମୋ ମନରୁ ତୁଟିନାହିଁ । ମୁଁ ତାକୁ ବରାବର ଯେପରି ଦେଖୁଚି ଓ ପାଖରେ ଅନୁଭବ କରୁଚି । ଆଶ୍ରମ ସ୍କୁଲର ସେଇ କୋଠରୀଟି- ସେଇଠି ବସି ବସି ଓ ପରସ୍ପରକୁ ଚାହିଁଚାହିଁ ପ୍ରାୟ ଅଧା ଯୁଗଟିଏ ବିତିଯାଇଛି- ସେ ଗପିଚାଲିଚି ତା' ଜୀବନର ଅନେକ ଭଙ୍ଗାଭଙ୍ଗା ବେସୁରା କାହାଣୀ- ଆଉ ମୋ ଜୀବନ ଏକ ସ୍ଥିତିହୀନ ନୌକାପରି ଭାସି ଚାଲିଛି ତ ଚାଲିଛି- ନା



Digitized by PPRACHIN, SOA

କୂଳ ଅଛି, ନା ଥଳ ଅଛି । ମୋର କେବେ ଘରଦ୍ୱାର ଥିଲା, ସ୍ନେହ ସୋହାଗର ସଂସାରଟିଏ ଥିଲା, ସୋହାଗିନୀ ପତ୍ନୀ ଥିଲେ - ମୁଁ ଟୁର୍‌ରୁ ଫେରିବାଯାଏ ଅପେକ୍ଷା କରି ରହୁଥିଲେ, ଟିକିଏ ଟିକିଏ କଥାରେ ମାନ ଅଭିମାନରେ ଛଳଛଳ ହେଉଥିଲେ- ଆଜି ଷାଠିଏ ବର୍ଷ ବୃଦ୍ଧ ମୁଁ ଶ୍ରୀ ଅରବିନ୍ଦ ମହାନ୍ତି-ମୃତ୍ୟୁର ଶେଷ ପାହାଚରେ ପାଦରଖି ମୋର ଡାଇରୀ ପୃଷ୍ଠା ଓଲଟାଉଛି । ପୁରୁଣା ଡାଇରୀର ପ୍ରତିଟି ପୃଷ୍ଠାରେ ଶୋଭା ପଟ୍ଟନାୟକର ସ୍ମୃତି- କିନ୍ତୁ ସେ କ'ଣ ସେତିକି ପରିମାଣରେ ମୋତେ ବୁଝିଚି ନା ଉପଲବ୍ଧି କରିଚି ?

ଆଜି ଏ ବୟସରେ ଆଉ ଅଭିମାନର କିଛି ଅର୍ଥ ହୁଏନାହିଁ । ମୁଁ କେବେ ଶୋଭାକୁ ପଚାରି ନାହିଁ ବା ସେ ସୁଯୋଗ ମଧ୍ୟ ସେ ମୋତେ ଦେଇନାହିଁ । ସେ ଭଲରେ ଅଛି ବୋଲି ଶୁଣି ଆଜି ବି ମୁଁ କେତେ ଖୁସି ତା' ପ୍ରକାଶ କରିବାକୁ ମୋର ଭାଷା ନାହିଁ । ବେଳେବେଳେ ନିଃସଙ୍ଗ ଜୀବନରେ ବସି ବସି ଡାଏରୀ ଓଲଟାଇଲାବେଳେ ସେଦିନର ଘଟଣା ହିଁ ମୋତେ କିନ୍ତୁ ବେଶ୍ ଛଟପଟ କରିଦିଏ । ସେଇ ଧଳା ରଙ୍ଗର ଟ୍ୟାକ୍‌ସିର ପଛ ସିଟ୍‌ରେ ଏକ ଅପରୂପ ରୂପସୀ- ବରବଧୂ ବେଶରେ ଆଭରଣ ମଣ୍ଡିତା, ଶୋଭାରାଣୀ ପଟ୍ଟନାୟକ-ଆଉ ରାସ୍ତାରେ ଯାଉ ଯାଉ ହଠାତ୍ ତା'ସହିତ ମୋର ଦେଖା ଏକାନ୍ତ ଅପ୍ରତ୍ୟାଶିତ.... ସେ କ'ଣ ସତରେ ଚାହିଁଥିଲା ତାର ବିବାହ ପୂର୍ବରୁ ମୋ ସହିତ ଏଇ ସାକ୍ଷାତ ? ସେ ତ ସ୍ପଷ୍ଟ ଲେଖିପାରିଥାନ୍ତା ? ଯଦି ନ ଚାହିଁଥିଲା ତେବେ କାହିଁକି ଏ ଆକସ୍ମିକ ଦେଖା- କେହି କାହାକୁ ପଦେ ବି କଥା କହି ପାରିନାହୁଁ- କେବଳ କେତେ ମିନିଟ୍ ପାଇଁ ପରସ୍ପରକୁ ଚାହିଁରହିଚୁ- ତା'ପରେ ଆଉ ସାକ୍ଷାତ୍ ହୋଇନାହିଁ- ଜୀବନସାରା । ମୁଁ ଯଥାସମ୍ଭବ ନିଜକୁ ଦୂରେଇ ରଖିଛି ତାର ସୁଖୀ ସଂସାର ଠାରୁ । ଶୁଣିଛି ସେ ଆଶ୍ରମ ସ୍କୁଲରୁ ଚାକିରୀ ଛାଡ଼ିଦେଇଛି । ମୁଁ କିନ୍ତୁ କେବେ ଅକସ୍ମାତ୍ ସେଇ ରାସ୍ତାରେ ଗଲେ ସେଇ ସ୍କୁଲ ଭିତରକୁ ପଶି କାହାକୁ କାହାକୁ ପଚାରିବସିଛି ଶୋଭାର ଇତିବୃତ୍ତ । ପୁରୁଣା ପିଅନଟି ଆଉ ନାହିଁ । ନୂଆ ଲୋକେ ମୋତେ ସବୁଥର ଉତ୍ତର ଦେଇଛନ୍ତି, "ସେପରି କେହି ଦିଦି ଏଠି ନାହାନ୍ତି ।" ମୁଁ ଜାଣିଛି ଏହାଠାରୁ ଭିନ୍ନ କିଛି ଉତ୍ତର ମୁଁ ପାଇବି ନାହିଁ । କାରଣ ସେ ଶାପଗ୍ରସ୍ତା କିନ୍ନରୀ ମୋଠାରୁ ବହୁ ଦୂରରେ- କେବଳ ସେତେବେଳେ ନୁହେଁ; ଆଜି ବି ଅନେକ ଅପହଞ୍ଚ ଦୂରତାରେ ।





Digitized by PPRACHIN, SOA

# ସେମିମ୍ୟାଡ

ପ୍ରତ୍ୟେକ ଆଘାତର ମୁଁ ପ୍ରତିଘାତ, ପ୍ରତ୍ୟେକ ଧ୍ୱନିର ମୁଁ ପ୍ରତିଧ୍ୱନି, ପ୍ରତ୍ୟେକ କ୍ରିୟାର ମୁଁ ପ୍ରତିକ୍ରିୟା-ଯେହେତୁ ମୁଁ ସାଧାରଣ ମଣିଷଟିଏ ମାତ୍ର- ସ୍ନେହ, ମମତା, ଆକାଙ୍କ୍ଷା ଓ ଆକୁଳତାର । ମୁଁ ନିଜକୁ ଅନ୍ୟ ଭାବେନି- ମୁଁ ଯୋଗଜନ୍ମା ନୁହେଁ, ମୁଁ ଦେବତା ମଧ ନୁହେଁ । ମୁଁ କୌଣସି ଆଘାତକୁ ସହି ନେଇ ପାରେ ନାହିଁ - ମୁଁ ମୂକ, ନିର୍ବେଦ ଶିଳାଖଣ୍ଡ ନୁହେଁ । ମୋର ପୁଅଝିଅ, ମୋର ପତ୍ନୀ ଓ ପୁତ୍ରବଧୂର ସଂସାର - ମୋର ପୁଅମାନେ ଏତେ ମେଧାବୀ, ଏତେ କର୍ମଠ- କିଏ ଇଂଜିନିୟର ତ କିଏ ଡାକ୍ତର - ପୁତ୍ରବଧୂ ଅଧ୍ୟାପିକା - ଉଚ୍ଚବେତନ ଭୋଗୀ ସରକାରୀ କର୍ମଚାରୀ । ପତ୍ନୀ ସ୍ୱାୟତ୍ତଶାସନ ସଂସ୍ଥାର ସର୍ବୋଚ୍ଚ କର୍ମଚାରୀ - କଣ ଅଭାବ ? ଘର, ଗାଡ଼ି, ଟେଲିଭିଜନ, ରାଜଧାନୀର ବିପୁଳ ବନ୍ଧୁମହଲ, ରାଜନୈତିକ ବିପୁଳ ସଫଳତା, ଥରେ ମନ୍ତ୍ରୀତ୍ୱର ଅଧିକାର- କଣ ମୋର ଅଭାବ ?

ଆପାତ ଅର୍ଥରେ କିଛି ଅଭାବ ନାହିଁ । ଅର୍ଥର ବିପୁଳ ସ୍ରୋତରେ ଭାସି ଭାସି ମୁଁ ଯେପରି ଗୋଟାଏ ଅନର୍ଥର ପାହାଡ଼ ଉପରକୁ ଚଢ଼ି ଯାଇଛି । ଜନସେବା କରିବାର ବ୍ୟାଜଧରି ନିଜ ସ୍ୱାର୍ଥର କିଞ୍ଚିତ ମଧ ତ୍ୟାଗ କରିନାହିଁ । ମୋର ଘରେ ସବୁବେଳେ ମୋର ରାଜନୈତିକ ଜୀବନ ଓ ଘରର ଶାନ୍ତିକାମୀ ଅନ୍ୟମାନଙ୍କ ମଧରେ ବିରାଟ ସଂଘର୍ଷ । ମୋର ଜନସମ୍ପର୍କ, ମୋର ଭାଇବନ୍ଧୁ ପରିବାର; ଏମାନେ କ୍ରମେ ମୋ ଘରେ ଘୋର ଶତ୍ରୁତାରେ ରୂପାନ୍ତରିତ । ପ୍ରତିଦିନ ଝଡ଼- ଅନେକ ସମୟରେ ଚା' କପ୍‌ରେ ଝଡ଼- କାରଣ ଓ ଅକାରଣରେ ଅନେକ ଛୋଟ ବଡ଼ କିୟା-ପ୍ରତିକ୍ରିୟା- ବାଦବିସମ୍ବାଦ- ସମସ୍ୟା ଓ ସଂଘର୍ଷ ।

ପତ୍ନୀ କୁହନ୍ତି ମୁଁ ଘର ପାଇଁ ସଂପୂର୍ଣ୍ଣ ଅଦରକାରୀ- ବେକାର ମଣିଷଟିଏ । ମୁଁ ହାଟରୁ ପରିବା ଆଣି ଦିଏ ନାହିଁ, ବଜାରରୁ ମାଛ ଆଣି ଦିଏ ନାହିଁ, ପିଲାଙ୍କୁ ସିନେମା ନିଏ ନାହିଁ, ପିଲାଙ୍କ ପାଠପଢ଼ା ବୁଝେ ନାହିଁ, ମୋତେ କହିବା ମାତ୍ରେ ଫିକିନା ଛୁଟିଯାଇ ତାଙ୍କ ଚାହିଦା ପୂରଣ କରେ ନାହିଁ ।

ଆଉ କରେ କଣ ? ଏସବୁ କିଛି ନ କଲେ କଣ ପରିବାରରେ ଜଣେ ସଭ୍ୟ ଭାବରେ ରହିବାର ଅଧିକାର ପାଇବ ? ଘରେ ତାକୁ ସୁସ୍ୱାଦୁ ମିଷ୍ଟ ବ୍ୟଞ୍ଜନ ଦିଆ ଯାଇ ପାରିବ ? କେବଳ ସେ ରୋଜଗାର କରେ ବୋଲି ତା'କଥା ଟିକ୍‌କଣ କରି ବୁଝା



Digitized by PPRACHIN, SOA

ଯାଇପାରିବ ? ନା- ଏକଦା ମନ୍ତ୍ରୀ ଥିଲା ବୋଲି ଓ ଏବେ କିଛି ବ୍ୟବସାୟ ବା କିଛି ଉପାୟ କରି ବେଳେବେଳେ କିଛି ରୋଜଗାର କରି ପାରୁଛି ବୋଲି ?

ମୁଁ ସ୍କୁଟର ଚଢ଼େ, କଲେଜ ଗଢ଼େ, ଜନସାଧାରଣଙ୍କ ସମସ୍ୟାରେ ପରିବାରର ସମସ୍ତ ଅଙ୍କକସା ସମୟକୁ ଏପଟ ସେପଟ କରି ତିନିଚାରି ଦିନେ ଘରକୁ ଆସିଲେ ଅଭିଯୋଗର ପାହାଡ଼ ନଦି ହୋଇପଡ଼େ ମୋ ମୁଣ୍ଡରେ ।

ପତ୍ନୀ ବଡ଼ କଡ଼ା କଡ଼ା କଥାରେ ଶୁଣାଇ କୁହନ୍ତି- କାହିଁକି ଆସିଲ ? ଆସିବାର କଣ ବା ଦରକାର ଥିଲା ? ପିଲାର ପରୀକ୍ଷା, ତାକୁ କଲେଜରେ ଛାଡ଼ି ଆସିବ ନାହିଁ । ବଡ଼ ଝିଅର କେତେ ଖଣ୍ଡ ବହି କିଣାଯିବା କଥା- ସେଥିପାଇଁ ଧ୍ୟାନ ନାହିଁ । ଏଠିକି ଆସିଲ ତୁମକୁ ରୋଷେଇବାସ କରି ଆମେ ବାଢ଼ିବୁ ।

ପତ୍ନୀ ବେଶ ରୋଜଗାର କରନ୍ତି । ମୁଁ ବି କେବେ ଭଲ ରୋଜଗାର କରୁଥିଲି- ଯେତେବେଳେ ଡାକ୍ତର ଥିଲି । ମନ୍ତ୍ରୀ ହେଲାପରେ ରୋଜଗାର କମିଲା, ଖର୍ଚ୍ଚ ବଢ଼ିଲା । ଏ ଚାକିରୀ ବି କୋଉ ସ୍ଥାୟୀ ହେଲା ? ଦଳକୁ ଓ ଦଳର ନେତାଙ୍କ ବିକଟ ଆଁକୁ ମୁଁ ଆହାର ଯୋଗାଇ ପାରିଥିଲେ ବେଶ୍ ଆଉ ଗୋଟିଏ ଦୁଇଟି ଟର୍ମ ରହିପାରିଥାନ୍ତି । କିନ୍ତୁ ଦଳର ସାଧାରଣ ଗ୍ରାମ୍ୟ କର୍ମୀଠାରୁ ମୁଖ୍ୟମନ୍ତ୍ରୀଙ୍କ ପର୍ଯ୍ୟନ୍ତ ସମସ୍ତଙ୍କୁ ତୋଷାମୋଦ କରିବା ଯେ କି ଯନ୍ତ୍ରଣାଦାୟକ କଠିନ ବ୍ୟାପାର- ସେଥିପାଇଁ ଚେଷ୍ଟା କରିବା ଥିଲା ମୋ ବ୍ୟକ୍ତିତ୍ୱ ପାଇଁ ଏକ ଅସ୍ୱାଭାବିକ ପ୍ରକ୍ରିୟା । ସତେ ଯେପରି କୁମ୍ଭୀର କବଳରେ ଗଭୀର ଗଣ୍ଡରେ ଛଟପଟ ହେବାର ଯନ୍ତ୍ରଣା । ନା- ପାରିଲି ନାହିଁ, ପାରି ନ ଥାନ୍ତି ।

ଘରେ ସମସ୍ତଙ୍କ ଆସ୍ଥା ହରେଇ ବସିଛି- କାରଣ କେତେ ବର୍ଷ ଧରି ଘରେ ମୁଁ ବଡ଼ ଅଦରକାରୀ । ବିଶେଷତଃ ପୁଅ ଝିଅର ସଂସାର ଧରି ପତ୍ନୀ ବେଶ୍ ଖୁସିରେ ଅଛନ୍ତି । ଦୁଇଟି ପୁଅ ପଢାପଢ଼ିରେ ସୁନାମ କରୁଛନ୍ତି- ସେଥିପାଇଁ ତାଙ୍କର ବହୁତ ଗର୍ବ । ମୋର ବି କିଛି କମ୍ ନୁହେଁ ? କିନ୍ତୁ ମୋର ଗର୍ବ କରିବାର ବା କ'ଣ ଅଛି ? ମୁଁ କ'ଣ ତାଙ୍କ ପଢ଼ା କଥା ଜାଣେ ନା ବୁଝେ ? ବର୍ଷେ ସବୁ ପରୀକ୍ଷାଦିନ ସ୍କୁଟରରେ ନେଇ କଲେଜରେ ଛାଡ଼ି ଆସିଥିଲି- ଦିନେ ମାତ୍ର ନେଇ ଯାଇ ପାରିଲି ନାହିଁ ବୋଲି ବଡ଼ ଝିଅ କହିଲା - "ବାପା ବଡ଼ ସ୍ୱାର୍ଥପର- ନିଜ ଅଞ୍ଚଳ, ଗ୍ରାମ, ନିଜ ସୁନାମ ଓ ପ୍ରତିଷ୍ଠାରେ ବିଶ୍ୱାସୀ- ଆମ କଥା ବୁଝିବାକୁ ତାଙ୍କର ବେଳ ନାହିଁ ?"

ସେଦିନ ପତ୍ନୀ ବଡ଼ ଝିଅ କଥାରେ ମୋ ଉପରକୁ କ୍ଷୁଧିତା ବ୍ୟାଘ୍ରିଣୀ ପରି କୁଦି ପଡ଼ିଥିଲେ । "ବେକାର ମଣିଷଟା ହେଲେ ମରିଯା'ନ୍ତା । ଥାଇ ନଥିଲା ପରି ।" ଓଃ କି କଡ଼ା କଥା । "କାହିଁକି ମଲ ନାହିଁ ? ଏଠିକି କାହିଁକି ଆସୁଚ ? ତୁମେ ଏଠି ନ ଥିଲାବେଳେ ଆମେ ବେଶ୍ ଚଳୁଛୁ । ଜାଣିବୁ ଆମର କେହି ନାହିଁ ।"

ମୁଁ ବହୁତ ବୁଝେଇବାକୁ ଚେଷ୍ଟା କରିଥିଲି ଯେ କଲେଜ କମିଟି ମିଟିଂ ଭାରି ଜରୁରୀ ଥିଲା । ନ ଯାଇଥିଲେ ଚଳି ନ ଥାନ୍ତା । ମୋତେ ସମସ୍ତେ ଅପେକ୍ଷା କରି ରହିଥିଲେ । "ଓ ଏତେ ବଡ଼ ନେତା ଯଦି ଭୋଟ ଦେଲେ ନାହିଁ କାହିଁକି ? ସେଗୁଡ଼ା ଶଠ ଜନତା ।"



Digitized by PPRACHIN, SOA

ଓଃ ସେ କଥା କୁହ ନାହିଁ- ମୋର ଯଥେଷ୍ଟ ଟଙ୍କା ନଥିଲା । ମୁଁ ସାଧାରଣ ଖର୍ଚ୍ଚ ବି ତୁଲେଇ ପାରି ନଥାନ୍ତି- କିପରି ନିର୍ବାଚନ ଜିତିଥାନ୍ତି ? ଲୋକଙ୍କୁ ଦୋଷ ଦେଇ ଲାଭ କଣ ?

ପତ୍ନୀ କାନ୍ତିମୟୀ କିନ୍ତୁ ପିଲାଙ୍କ ପ୍ରତି ମୋର ସାମାନ୍ୟ ଅବହେଳା ପାଇଁ କ୍ଷମା ଦେବାକୁ ପ୍ରସ୍ତୁତ ନଥିଲେ । ସେ ଏତେ ରାଗିଯାଇଥିଲେ ଯେ ମୋ ସପ୍ତପୁରୁଷ ଉଦ୍ଧାର କରିବସିଲେ । ତାଙ୍କ ମତରେ ମୁଁ ଯେପରି କୁଣିଆ ପରି ଚାଲି ଆସୁଚି ଓ ଚାଲି ଯାଉଚି । କୌଣସି ଦାୟିତ୍ୱ ମୁଣ୍ଡକୁ ନେଉ ନାହିଁ । ସେ ଚାକିରୀ କରି ମୋଟା ଅଙ୍କର ଅର୍ଥ ଆଣି ଘର ଚଳାଉଛନ୍ତି । ବଡ଼ ପୁଅ ଓ ବୋହୂ ଦୂରରେ । ସେମାନଙ୍କ ଆୟ ତାଙ୍କୁ ନିଅଣ୍ଟ । ସାନ ପୁଅର ଅନେକଦିନୁ ଚିଠିପତ୍ର ନାହିଁ । ସେ କଣ କରୁଚି ସେ ଜାଣେ । ଘରେ ଦି'ଟି ଝିଅ ଓ ପରିବାରର ବୋଝ ଧରି କାନ୍ତିମୟୀ ଏକୁଟିଆ ଦହଗଞ୍ଜ ହେଉଛନ୍ତି ।

ମୁଁ ବିରକ୍ତ ହୋଇ କହିଲି-"ଓଃ ଏଥିରେ ଏତେ ବିଚଳିତ ହେବାର କ'ଣ ଅଛି ? ମୁଁ ନଗଲେ କ'ଣ ପରୀକ୍ଷା ହେଲା ନାହିଁ ନା ବସ୍ ଓ ରିକ୍‌ସା ସବୁ ଏ ସହରରୁ ଉଭାନ୍ ହୋଇ ଯାଇଥିଲା ? ଏ ପିଲାମାନେ ନିଜ କାମ ନିଜେ କରିବା ଉଚିତ୍ । ତାଙ୍କୁ ଏତେ ବେଶୀ ସୁଯୋଗ ଦେବା ଠିକ୍ ନୁହେଁ; ଜୀବନରେ ସବୁବେଳେ ଏତେ ସୁଯୋଗ ମିଳେ ନାହିଁ । ରାସ୍ତାରେ ଚାଲି ଚାଲି ତୁମେ ପାଠ ପଢ଼ିଚ- ମୁଁ ଟିଉସନ କରି ମାଗିଯାଚି ପାଠ ପଢ଼ିଚି । ସେମାନେ ଜୀବନର ସଂଗ୍ରାମ କ'ଣ ବୁଝନ୍ତୁ ।"

ତୁମ ପରି କଣ ସେମାନେ ମାଗିଖିଆ ହେବେ ? ତୁମ ପରି ସେମିମ୍ୟାଡ଼୍ ପୁରୁଷକୁ ଆଉ କେଉଁ ସ୍ତ୍ରୀ ହୋଇଥିଲେ କେଉଁଦିନୁ ଛାଡପତ୍ର ଦେଇ ସାରନ୍ତାଣି ।"

"କଣ କହିଲ-ଆଉ ଥରେ ସ୍ପଷ୍ଟ କରି କୁହ- ମୁଁ ସେମିମ୍ୟାଡ୍- ଆଉ ସମସ୍ତେ ସ୍ଥିର ଓ ସ୍ଥିତପ୍ରଜ୍ଞ !"

ମୋ ମୁଣ୍ଡକୁ ରକ୍ତ ଚହଲିଗଲା । ଚିହିଁକି ଯାଇଥିଲି କାନ୍ତିମୟୀଙ୍କ ଆଡ଼େ । ତାଙ୍କଠାରୁ ଏ କର୍କଶ ମନ୍ତବ୍ୟର ତର୍ଜମା ଚାହୁଁଥିଲି, କୈଫିୟତ୍ ଲୋଡୁଥିଲି । କିନ୍ତୁ ମୁଁ କ'ଣ ଜାଣିଥିଲି ସମଗ୍ର ପରିବାରଟି ମୋ ଅଲକ୍ଷ୍ୟରେ ମୋ ବିରୁଦ୍ଧରେ ଏକ ବିରୋଧୀ ଶିବିରଭୁକ୍ତ ହୋଇ ସାରିଛି ଅନେକଦିନୁ । ମୋର ତ୍ୟାଗ, ପ୍ରତିଷ୍ଠା, ଗ୍ରାମସେବା ଓ ନିଜ ଅଞ୍ଚଳରେ ମୁଁ ଯେତିକି ଯେତିକି ହୋଇ ଉଠିଛି ଜନପ୍ରିୟ- ସେତିକି ସେତିକି ପରିବାରର ଶତ୍ରୁ । ଏଥର ଟିକଟ୍ ପାଇନାହିଁ ବୋଲି ଏମାନେ କ'ଣ ମୋ ପ୍ରତି ଆନୁଗତ୍ୟ ହରାଇ ବସିଛନ୍ତି ? ପତ୍ନୀଙ୍କର ବିଦ୍ରୂପର ଶରରେ ମୁଁ ବେଳେ ବେଳେ ଆହତ ହୋଇଛି ?

ମୋର ବଡ଼ ଝିଅ ସାହସ କରି କହିପାରିଲା- ଗୋଟାଏ ପୁଅପିଲା ପରି ନିଶମୋଡ଼ି, ନାକଫୁଲେଇ, ବାହାସ୍ଫୋଟ ମାରି, ଆଖି ଦେଖେଇ ଧମକ୍ ଦେଲା – "ବୋଉକୁ କ'ଣ ଧମକଉଚ ? କଣ ତୁମେ ଭାବୁଚ କି ? କ'ଣ ତୁମେ କରିପାରିବ ?"

ମୁଁ ହଠାତ୍ ସ୍ଥାଣୁ ପାଲଟି ଯାଉଥିଲି । ମୋର ସମସ୍ତ କୈଫିୟତ୍ ଏ ଭଣ୍ଡ ସଂସାର ପାଖରେ ଅରଣ୍ୟରୋଦନ ପରି । ଏ ସଂସାର ମୋତେ ଚିପୁଡ଼ି ଚିପୁଡ଼ି ଶେଷ ରସତକ



Digitized by PPRACHIN, SOA

ନିଗାଡ଼ି ନେବାକୁ ଚାହେଁ । ମୁଁ ନପାରିଲେ ମୁଁ ଗୌଣ, ମୁଁ ଅପାଙ୍କ୍ତେୟ । ଗତ ଦଶବର୍ଷ ମଧ୍ୟରେ ପତ୍ନୀଙ୍କଠାରୁ ହସଖୁସିରେ ସ୍ନେହସୋହଗରେ ଭଲ କଥା ପଦେ ଶୁଣିଥିବା ପରି କାହିଁ ମନେ ପଡୁନି ତ ? ସବୁବେଳେ ରାଗ, ରୋଷ, ତମ ଓ କର୍କଶତା । ଚିକ୍‌କଣ, ସ୍ନେହସାର ଜାତୀୟ ଖାଦ୍ୟ ଖାଇବା ସେ ଅନେକଦିନୁ ଛାଡ଼ିଛନ୍ତି । ସେ ସବୁ ଦେହପାଇଁ ଅତିସାର ବୋଲି ତାଙ୍କର ଧାରଣା । କିନ୍ତୁ ମନଟାରୁ ଯେ ସବୁ ତୈଳାକ୍ତ ଚିକ୍‌କଣ ଅଂଶ ତୁଟି ଗଲାଣି- ସବୁ ପାଉଁଶିଆ ଆଉ ଫାଣ୍ଡରା, ଏକଥା ମୁଁ ଜାଣି ମଧ୍ୟ ଜାଣି ପାରୁ ନଥିଲି ।

ମୁଁ ଲମ୍ବି ଯାଇଥିବା ଖଣ୍ଡେ ରବର ରଜ୍ଜୁପରି ପୁଣି ସଙ୍କୁଚିତ ହୋଇଗଲି । ଏ ପତ୍ନୀ ନା ପ୍ରଳୟଙ୍କରୀ ଝଡ଼- ଦଶବର୍ଷ ଧରି ଯେ ଭଲ କରି କଥା ପଦେ କହିନାହିଁ- ହଁ, କାରଣ ଅନେକ ହୁଏତ ଥାଇପାରେ-କିନ୍ତୁ ସଂସାରଟା ତ ଏମିତି ପୁରୁଣା ଘସାମଜା ବୁଝାମଣା ଓ ଲୁଆରଭଙ୍ଗା ଭିତରେ ଚାଲିଥାଏ- ତା ବୋଲି ସେ ମୋତେ କହିବେ ସେମିମ୍ୟାଡ଼୍ -

କାନ୍ତିମୟୀଙ୍କ କଥା ଶୀତଳକଟୁରି ପରି- ରକ୍ତ ବୋହିଲା ବୋଲି ଦେଖାଇ ହେବ ନାହିଁ- କିନ୍ତୁ ଭିତରେ ଭିତରେ ଏତେ ରକ୍ତସ୍ରାବ- ଏତେ ଯନ୍ତ୍ରଣା ଯେ- ବୁଝାଇ ହେବ, ନା ଦେଖାଇ ହେବ ? ସନାତନ ଶର୍ମା କବାଟ କିଳି ଘରେ ପଶି ବିଛଣାରେ ଲୋଟି ପଡ଼ିଥିଲେ । ଆଖିର ଅବାରିତ ଲୁହଧାରାରେ ତକିଆଟା ତିନ୍ତି ଯାଉଥିଲା । କେବଳ ମଝିରେ ମଝିରେ ଘରେ କାମ କରୁଥିବା ପରିଚାରିକାର କୋମଳ ସ୍ୱର ଶୁଭୁଥିଲା "କବାଟ ଖୋଲ, ଗାଧେଇବ ନାହିଁ ? ଖାଇବ ନାହିଁ ? କିଏ ବାହାରେ ଡାକୁଚନ୍ତି ପରା- କବାଟ ଖୋଲ ।"

ସତରେ ଏଇ ପିଲାଟି ନଥିଲେ ବଞ୍ଚିବା କି ଦୁର୍ବିସହ ହୋଇ ଉଠନ୍ତା । ଗୁଡ଼ିଏ ଆତ୍ମୀୟ ସ୍ୱାର୍ଥର ପନ୍ଝା ତାଙ୍କ ଆଡକୁ ଲମ୍ବି ଆସୁଛି । ସେମାନଙ୍କ ମେଳରେ ସନାତନ ଶର୍ମା ଏକାନ୍ତ ଅସହାୟ, ଏକାନ୍ତ ଏକାକୀ । ତାଙ୍କୁ ଚାରିଆଡୁ ଶଣ୍ଢୁଆସୀ ଆକ୍ରମଣ- ସେ କ୍ରମେ ଘର ପାଇଁ ଅଦରକାରୀ- ତାଙ୍କ ସାମାଜିକ ପ୍ରତିପତ୍ତି, ସୁନାମ ତୁଲିକି ଯାଇଚି । ସେ ଖାଲି ତାଙ୍କ ଗ୍ରାମ ଜନତାଙ୍କୁ ଭଲ ପଆନ୍ତି- ଘରଲୋକ ତାଙ୍କର କେହିନୁହନ୍ତି ବୋଲି ସେମାନଙ୍କ ଧାରଣା । ପତ୍ନୀ କାନ୍ତିମୟୀ ସବୁବେଳେ ବାରୁଦ ପାହାଡ଼ ଉପରେ ବସିରହିଛନ୍ତି । ଯେ କୌଣସି ସମୟରେ ବିସ୍ଫୋରଣ ହୋଇପାରେ ।

ସନାତନ ଶର୍ମାଙ୍କ ମୁଣ୍ଡ ଉଠ୍‌ପଡ ଭିତରେ ବିଭ୍ରମି ଯାଉଥିଲା । ରାଗରେ କାହୁରେ ମୁଣ୍ଡଟା ସମସ୍ତଙ୍କ ଆଗରେ ପିଟି ଦେଇଥିଲେ- ହାତରେ ଦି'ଚାରି ଚାପୁଡ଼ା କପାଳରେ କୁଟି ଦେଇଥିଲେ-ମୁଣ୍ଡଟା ଝିମ୍ ଝିମ୍ ହୋଇଗଲେ ବି ସେଇ ପିଲାଟି ଛଡ଼ା ଆଉ କିଏ ପଚାରିବେନି । କ୍ଷତ ସ୍ଥାନରେ ମଲମ ଲଗେଇ ଦେବେନି ।

ସନାତନ ଶର୍ମା କବାଟ କିଳି ଭିତରେ ଶୋଇ କାନ୍ଦୁଛନ୍ତି । କିଏ ଦେଖୁ ବା ବୁଝୁ ବୋଲି ତାଙ୍କର ଆଉ ଆଗ୍ରହ ନାହିଁ । କାହାକୁ ଆଉ ମନର ଜଖମ ଦେଖେଇ ମାଲିସ୍ କରି ଦେବାକୁ କହିବେ ? ଏ ସଂସାର ଘୋର ସ୍ୱାର୍ଥର ସଂସାର । ସାମାନ୍ୟ କଥାରେ ଆର ଶିବିରରୁ ଗୋଳା ବାରୁଦ ଛୁଟୁଚି- ଏଠି ଦେହସାରା ଚରିଯାଉଚି ଯନ୍ତ୍ରଣାର ବିଷ । ଆଖି



Digitized by PPRACHIN, SOA

ଆଗରେ ଥାକେ ନୋଟ- ହଁ କୌଣସି ଜରୁରୀ ଦରକାର ପାଇଁ ଥୋଇଚନ୍ତି- କଲେଜ ପାଇଁ କିଛି ବହି ଦେବେ ବୋଲି ସେ ପ୍ରତିଶ୍ରୁତିବଦ୍ଧ । ଏ ଟଙ୍କା ତାଙ୍କ ନିଜର କମେଇ । ଚିରି ଦେବେ କି ଆଉ ? ଏଇ ଅର୍ଥ ପତ୍ନୀଙ୍କୁ ଉପରମୁହାଁ କରିଛି । ଉପରେ ପଙ୍ଖା ଝୁଲୁଚି- ଶକ୍ତ ଦଉଡ଼ିଯାଏ ମିଳିବନି ? ଔଷଦ ଶିଶିଗୁଡା କ'ଣ ସବୁ ମିଠା ଟନିକ୍ ? ସେମିମ୍ୟାଡ୍ ମଣିଷର ଆଉ କି ପରିଚୟ, କି ସଙ୍ଗତି ? ବଞ୍ଚିବାରେ ବି ତା'ର କେଉଁ ଅଭିଳାଷ ?

ଟେଲିଫୋନ୍ ଦୁଇ ତିନିଥର ରିଙ୍ଗ୍ କଲେ ବି ତାକୁ ଉଠେଇବାକୁ ତାଙ୍କର ଆଜି ସ୍ପୃହା ନାହିଁ । ସବୁ ଜରୁରୀ ଓ ସାଧାରଣ କାମ ବାତିଲ୍ ହେଉ । ବହୁତ କାମ ହେଲାଣି- କିଏ ବୁଝୁଚି କାମର ଗୁରୁତ୍ୱ ? କିନ୍ତୁ ପତ୍ନୀଙ୍କର ସେଇ କଥା ପଦକ ଧାରୁଆ ଛୁରୀ ପରି ଗଳି ଯାଇଚି ଛାତିର କେଉଁ ଗଭୀରତାକୁ- ବାହାର କରି ହେଉନି, ଚାପିଧରି ବି ହେଉନି । ସତେ ଯେପରି ରକ୍ତର ସ୍ରୋତ ହାବୁକା ମାରି କେଉଁ ଗହୀରରୁ ଉଠୁଚି । ଛାତିକୁ ଯେତେ ଚିପି ଧରିଲେବି ସେ ହାବୁକା ପ୍ରଶମିତ ହେଉନାହିଁ ।

ସନାତନ ଶର୍ମା ଡ୍ରେସିଂ ଟେବୁଲ ପାଖରେ ଠିଆ ହେଲେ- ତାଙ୍କ ନିଜ ଛବି ବି ତାଙ୍କୁ ଯେପରି ଉପହାସ କରୁଚି- ଅର୍ଦ୍ଧ ପାଗଳ ସନାତନ ଶର୍ମା- ସେମିମ୍ୟାଡ୍- ଏ ଇଂରାଜୀ ଶବ୍ଦର ଭୁସିଲା ଶିଙ୍ଘ ଗଳିଯାଇଚି ଭିତରକୁ । ସନାତନ ଶର୍ମା ମୁହଁରେ କୁଙ୍କୁମ ଓ ମେଞ୍ଚାଏ କଳା ବୋଳି ଆରିସିରେ ନିଜକୁ ଆଉଥରେ ଦେଖିଲେ । କାହିଁ ଅର୍ଦ୍ଧପାଗଳ ମଣିଷଟାକୁ ଦେଖି ହସ ମାଡୁନାହିଁତ ? ଗାଁ କାଳିସୀନାଚର ଦୃଶ୍ୟ ପରି ମୁହଁଟାକୁ ରଙ୍ଗେଇ ନାଲିଶାଢ଼ୀଟିଏ ପିନ୍ଧିଲେ । ହାତରେ ପଡିଲା ପାଖରେ ଥୁଆ ହୋଇଥିବା ବ୍ରିଫ୍‌କେଶ । ବେଶ୍ ଏଥର ଚମତ୍କାର ଦୃଶ୍ୟ । ବୁଝିହେବ, ବୁଝାଇ ହେବ ।

କବାଟ ଖୋଲି ଦି'ଝିଅଙ୍କ ଆଗରେ ଠିଆହେଲେ ସନାତନ ଶର୍ମା । "କିରେ ଠିକ୍ ମାନୁଚିତ ? ସେମିମ୍ୟାଡ୍- ନା ଫୁଲ୍ ମ୍ୟାଡ୍- କିପରି ଦେଖାଯାଉଚି ତୁମ ବାପା ? ବୋଉଙ୍କ ସାର୍ଟିଫିକେଟ୍ ଅନୁସାରେ ଚେହେରା ମିଳେଇ ଦେଖ ।"

କିଚିନ୍‌ରୁ ପରିଚାରିକା ଧାଇଁ ଆସି ଏ ବେଶ ଦେଖି ଭୋ' କିନି କାନ୍ଦି ଉଠିଲା । ସନାତନ ବି କୋହ ସମ୍ଭାଳି ପାରୁ ନ ଥିଲେ । କିରେ ମୁଁ ସେମିମ୍ୟାଡ୍ ହେଲେ ତୁମର ଆଉ କି ଗର୍ବ ରହିବ ପିଲାଏ ? ଦେଖ ତୁମ ବୋଉ ସାର୍ଟିଫିକେଟ୍ ଦେଇଚି- ତା'ର ପରିଚୟ କେତେ ତୀବ୍ର । କଳ୍ପନାଠାରୁ ବାସ୍ତବ କେଡ଼େ ଯନ୍ତ୍ରଣାଦାୟକ । କ'ଣ ମାନୁଚିଟି ? ଉତ୍ତର ଦିଅ ।

ସନାତନ ଭୋ ଭୋ କାନ୍ଦୁଥିଲେ- ସତେ ଯେପରି ମାଡ଼ଖିଆ ସାନ ପିଲାଟିଏ । କଥା କହି ପାରୁ ନଥିଲେ । ସାନଝିଅ କାନ୍ଦି ଉଠିଲା ଅକସ୍ମାତ- ବୁଝିପାରିଲା ବୋଧେ କେଉଁଠି ଫୁଟିଛି କଣ୍ଟା । ବଡ଼ ଝିଅ ନିଜର ମାନ ଓ ଗମ୍ଭୀରପଣିଆ ଦେଖାଉ ଦେଖାଉ କଇଁ କଇଁ ହୋଇ କୋହରେ ଫାଟିପଡ଼ିଲା । ସତରେ କ'ଣ ବାପା ପାଗଳ ହୋଇ ଗଲେ ? ପଦିଏ ମାତ୍ର କଥା ? ଏତେ ତାର ବିଷଜ୍ୱାଳା ?

କିରେ କାନ୍ଦୁଛ କ'ଣ ? ସେମିମ୍ୟାଡ୍‌କୁ ଦେଖି କ'ଣ କେହି କାନ୍ଦନ୍ତି ? ହସିବାର



Digitized by PPRACHIN, SOA

କଥା ସିନା । ପାଗଳକୁ ଦେଖି କାନ୍ଦିବା ମଧ୍ୟ-ପାଗଳାମି । ହସ ପିଲାଏ, ହସ । ବାସ୍ତବକୁ ସାମ୍ନା କର । ଇଆବି ହୋଇପାରେ ଜୀବନର ଆକସ୍ମିକ ପରିଣତି । ସନାତନ ଶର୍ମା ଆଉ ସମ୍ଭାଳି ପାରୁ ନ ଥିଲେ । ତାଙ୍କର ଏଇ ପାଗଳ ଚେହେରା ଯେ ଦେଖିବା ଉଚିତ ଥିଲା ସେ କିନ୍ତୁ ସତେବେଳକୁ ଶୀତତାପନିୟନ୍ତ୍ରିତ ଅଫିସ୍ ଘରେ ଫାଇଲ୍ ବିଡ଼ା ମଝିରେ ବସିଥିବ; ଆଉ ନିଶ୍ଚୟ ଭାବୁଥିବ ଏ ଅଦରକାରୀ ଲୋକଟା ହେଲେ ମରିଯାନ୍ତା କି କୁଆଡ଼େ ଚାଲିଯାନ୍ତା । ତା'ହେଲେ ସେ ତା ଜଞ୍ଜାଳରୁ ମୁକ୍ତି ପାନ୍ତା । ତା'ପରେ ହୋଇଯାନ୍ତା ମୁକ୍ତ ଓ ନିରାଲମ୍ବ ।

ସନାତନଙ୍କ ଏ ଅଭିନୟ ଇଚ୍ଛାକୃତ ନଥିଲା- ଥିଲା ଏକାନ୍ତ ଆକସ୍ମିକ । ସମଗ୍ର ପରିବାର ସ୍ତବ୍ଧ ହୋଇ ଯାଇଥିଲା । ସନାତନ ବିଛଣାରେ ଆଖି ବୁଜି ଶୋଇବାକୁ ଚେଷ୍ଟା କରୁଥିଲେ । ଅନୁଭବ କଲେ ଧୀରେ ଧରେ ପରିଚାରିକାଟି ମୁହଁର କଳା ଓ ନାଲି ଦାଗକୁ ତେଲକନାରେ ପୋଛି ପୋଛି ସଫା କରି ଦେଉଚି । ମନର ହାବୁକା ହାବୁକା ଦୁଃଖ ବିଗଳିତ ଅଶ୍ରୁଧାରରେ ଅତି ନିଃଶବ୍ଦରେ ବୋହିଯାଉଥିଲା । ଜୀବନର ସମସ୍ତ ଧାବମାନ ଗତି, ସବୁ ଉଦ୍ୟମ, ସବୁ ଆଶା ଓ ଆକାଙ୍କ୍ଷା, ସବୁ ସମ୍ଭାବନା ଓ ପ୍ରତିଯୋଗିତା ମନେ ହେଉଥିଲା ନିହାତି ଅଳୀକ ଓ ଅର୍ଥହୀନ । ସବୁ ପ୍ରତିଷ୍ଠା ଓ ପରିଚୟର ଉପରେ ଯେପରି କିଏ ମେଞ୍ଚାଏ କଳା ବୋଳି ଦେଇଚି- ଲଦି ଦେଇଚି ତାର ନିଜର ସିଦ୍ଧାନ୍ତ- ସେ ଅମଣିଷ, ଅଦରକାରୀ, ଅର୍ଦ୍ଧପାଗଳ- ସେମିମ୍ୟାଡ୍ । ଏଇ ଏକତରଫା ସିଦ୍ଧାନ୍ତ ବିରୁଦ୍ଧରେ ତାଙ୍କର କହିବାର କ'ଣ ଅଛି ? କେଉଁ କୋର୍ଟରେ ବା ନାଲିସ କରି ସେ ବିଚାର ଲୋଡ଼ିବେ ?





Digitized by PPRACHIN, SOA

# ବିଧାନସଭା

କେଜାଣି କାହିଁକି ନେତାମାନଙ୍କ ପ୍ରତି ମୋର ଆଜିକାଲି ଭରସା ଆସୁ ନାହିଁ । ମୁଁ ଭାବେ ଏମାନେ ଉପରେ ଯାହା ଭିତରେ ଠିକ୍ ସେୟା ନୁହଁନ୍ତି । ଜଣେ ନେତାଙ୍କୁ ଅନେକ ଦିନପରେ ବିଧାନସଭା ବାରଣ୍ଡାରେ ଦେଖି ନମସ୍କାର କଲି । ସେ ଟିକେ ଅନେଇ ଦେଲେ ସିନା ମୁହଁରେ ଧାରେ ହେଲେ ବି ହସ ଫୁଟିଲା ନାହିଁ । ସତେ ଯେପରି ସମଗ୍ର ପୃଥିବୀଟାର ଗୁରୁଭାର ତାଙ୍କ ମୁଣ୍ଡ ଉପରେ ନଦି ହୋଇ ରହିଛି । ଟିକେ ହସିବାକୁ ବି ବେଳ ନାହିଁ । ମୋତେ ସବୁଠାରୁ ବିଚିତ୍ର ଲାଗେ ଏତେ ବଡ଼ ବଡ଼ ନେତାଏ ବିଧାନସଭା କକ୍ଷରେ ଏପରି ବିଡ଼ମ୍ବିତ ଅବସ୍ଥାରେ କାହିଁକି ବସିରହନ୍ତି ? କିଏ ମୁହଁକୁ ତଳକୁ କରିଛି ତ କିଏ କ୍ୟାଟ୍‌କଲ କରୁଛି । କିଏ ଗୀତର ସ୍ୱର ଧରିଚିତ କିଏ ବାରମ୍ବାର ଉଠି କହୁଚି-"ସ୍ପିକର ସାର୍, ଆପଣ ଯାହା କହୁଛନ୍ତି ଆମେ ସେଥିରେ ଏକମତ ।" ବ୍ୟକ୍ତି ବିଶେଷଟି କିପରି ବହୁବଚନର ସର୍ବନାମ ହୋଇଯାଏ ମୁଁ ବୁଝି ପାରେନି । ସ୍ପିକର କ'ଣ ଶୁଣିପାରୁ ନାହାଁନ୍ତି ? ସଭ୍ୟଜଣକ ବାରମ୍ବାର ସେଇ ବିରକ୍ତିକର ବାକ୍ୟ ଉଚ୍ଚାରଣ କରୁଛନ୍ତି .-"ଆମେ ଏକମତ ।" କିନ୍ତୁ କାହିଁକି ଏକମତ, କେଉଁଥିପାଇଁ ଏକମତ, ସମସ୍ୟାଟି କ'ଣ, କେହି ଗଭୀରତାକୁ ଯିବାକୁ ଚାହାନ୍ତି ନାହିଁ । କିନ୍ତୁ ସେପଟରୁ ପାଟିଗୋଳ ହଲ୍ଲାଗୁଲ୍ଲା ସେତେବେଳକୁ ଏକ ନହବତ୍ ସୃଷ୍ଟି କରି ସାରିଥାଏ । ବଡ଼ ବଡ଼ ନେତାମାନେ ସମସ୍ୟା ସାମାଧାନ କରିବା ଦୂରେଥାଉ ତରୁଣମାନଙ୍କୁ ସାମ୍ନା ମଧ୍ୟ କରିପାରୁ ନଥାନ୍ତି । କେତେଜଣ ନେତା ମୁନି ପାଲଟି ଯାଇଥାନ୍ତି । ମୌନୀ ଶବ୍ଦରୁ ବୋଧହୁଏ ମୁନି ହେବ- ନା ମୁନିରୁ ମୌନୀ ? ଯାହା ହେଲେ ବି ଏକା କଥା । "ଲଜ୍ଜା" "ଲଜ୍ଜା"ର ସମବେତ ଧ୍ୱନିରେ ବିଧାନସଭା କକ୍ଷଟି ଫାଟି ପଡୁଥାଏ । ନେତାମାନେ ନୀରବ କାହିଁକି ? କ'ଣ ସେମାନଙ୍କର ଅପରାଧ ଯେଉଁଥିପାଇଁ ଆକ୍ରମଣକାରୀ ଶିବିରରୁ ଏତେ ବାକ୍ୟବାଣ ଛୁଟୁଥିଲେ ବି ସେମାନେ ମୁହଁକୁ ତଳକୁ ପୋତି ବସି ରହିଛନ୍ତି । ଅଥଚ ସେମାନେ ବାହାରେ କେତେ କ୍ଷିପ୍ର, କେତେ ପ୍ରଗଳ୍‌ଭ । ପାଟିରେ ବାଟୁଳି ବାଜେ ନାହିଁ । ସତେକି ମାଇକ୍ ଫାଟିଯିବ । ସେଠି କେତେ ଉଲ୍ଲାସ, ଫୁଲମାଳ; ଅଥଚ ଏଠି କି କରୁଣ ବିଷଣ୍ଣତା । ସ୍ପିକର ପୁଣି ଏତେ ଅସହାୟ ହୋଇ ପଡ଼ନ୍ତି- ତାଙ୍କ ହାତରେ କ'ଣ କିଛି କ୍ଷମତା ନାହିଁ ? ନା ପରିସ୍ଥିତି କ୍ରମେ ସେ ବି ସବୁକଥାରେ ବିମନା ଓ ନିଷ୍ପୃହ ହୋଇ ପଡ଼ିଛନ୍ତି । ତାଙ୍କ ଟେବୁଲ୍ ଉପରେ ଜଣେ କିଏ ସଭ୍ୟ ବସି ପଡ଼ିଛି ତ ଆଉ ଜଣେ ସଭ୍ୟ ଚେୟାର ଟାଣୁଛି । ଆଉ ଜଣେ ମାଇକ୍ ଛଡ଼ାଇ ନେଇ ଭାଙ୍ଗି ଦେବାର ଉପକ୍ରମ କରୁଛି ।



Digitized by PPRACHIN, SOA

ଏକ ସଭ୍ୟ ସ୍ୱାଧୀନ ଦେଶର ବିଧାନସଭା କକ୍ଷଟିମାନ ଚମତ୍କାର ଏକ ରଣକ୍ଷେତ୍ର । ଦଳେ ବିଧାୟକ ବସି ରହିଛନ୍ତି ଧାରଣା ଦେଇ । ସେମାନେ ଧରି ବସିଛନ୍ତି ଯେ ବିଧାନସଭା କାର୍ଯ୍ୟ କରେଇ ଦେବେନି । ଅଧକ୍ଷ ତାଙ୍କୁ ଅଧିବେଶନରେ ଅବଶିଷ୍ଟ ସମୟ ପାଇଁ ସସ୍‌ପେଣ୍ଡ କରିଛନ୍ତି । ତେଣୁ ସେମାନଙ୍କର ଏତାଦୃଶ ଆଚରଣ । ଅଧକ୍ଷ ସସ୍‌ପେଣ୍ଡ କଲାବେଳେ ଗୃହର ନିରାପତ୍ତା ରକ୍ଷୀମାନଙ୍କର କ'ଣ କିଛି କାମ ନ ଥାଏ ? ସେମାନେ ମଧ କ'ଣ ନାମକୁ ମାତ୍ର ? କେବଳ ବେତନଭୋଗୀ ?

ବିଧାନସଭା ଗ୍ୟାଲେରୀରେ ଏଇ କେତେ ବର୍ଷର ଅନୁଭୂତି ଏକ ତିକ୍ତ ଅବସାଦରେ ମୋତେ ଆଚ୍ଛନ୍ନ କରି ଦେଉଥିଲା । ମୁଁ ମନ୍ତ୍ରୀଙ୍କ ଚ୍ୟାମ୍ବରକୁ ଆସିଲି । ସେଇ ସର୍ବଶକ୍ତିମାନ ମନ୍ତ୍ରୀଙ୍କୁ ତ ଅନୁସରଣ କରି ଏକରକମ ହାଓ୍ୱାରେ ଶୁଖିଲାପତ୍ରପରି ଠେଲିହେଇ ଏଠିକି ଆସିଯାଇଛି । ବ୍ୟକ୍ତିଗତ କାମପାଇଁ ବୋଧହୁଏ କେବେ ଯାଇ ନଥା'ନ୍ତି । କିନ୍ତୁ ମୋ ଗ୍ରାମରଏକ ସମୂହ ସ୍ୱାର୍ଥପାଇଁ ମୁଁ ଦଉଡ଼ି ଦଉଡ଼ି ନୟାନ୍ତ ହେଲିଣି । ଥରେ ନୁହେଁ, ପାଞ୍ଚଥର ନୁହେଁ, ପ୍ରାୟ ଚାଳିଶଥର । ମନ୍ତ୍ରୀମାନେ ବୋଧହୁଏ ଗ୍ରାମବାସୀଙ୍କୁ ଏମିତି ଦଉଡ଼େଇ ଆନନ୍ଦ ପା'ନ୍ତି । ଏହାହିଁ ବୋଧହୁଏ କ୍ଷମତାର କରାମତି । ସମୟର ମୂଲ୍ୟ, ଶ୍ରମ ଶକ୍ତି, ଅଯଥା ନଷ୍ଟ ହେଉଥିବା ଶ୍ରମହୀନ ଦିବସ- ଏସବୁ ଉପରେ ମନ୍ତ୍ରୀ କେତେ ସରସ ଓ ସୁନ୍ଦର ଭାଷଣ ଦିଅନ୍ତି । ସେପରି ଭାଷଣ ଆଉ କେହି ଏପରିକି ଅଧ୍ୟାପକମାନେ ମଧ ଦେଇ ପାରିବେନି । ବିନା ପ୍ରସଙ୍ଗ ଓ ପ୍ରସ୍ତୁତିରେ ଅଧ୍ୟାପକଟିଏ କ'ଣ ବା କହି ପାରିବ ? କିନ୍ତୁ ମନ୍ତ୍ରୀ ନିଶ୍ଚୟ ସାରଗର୍ଭକ ଓଜସ୍ୱିନୀ ବକ୍ତୃତାଟିଏ ଦେଇ ବସିବେ । ଜନତାର ପ୍ରତିନିଧି ଭାବେ ତାଙ୍କର ଅଧିକ ଅଭିଜ୍ଞତା ।

ମୋର ସମୟର ମୂଲ୍ୟ ନାହିଁ । ମୋ ଦେଶ, ମୋ ଜାତି ଅତି ଅଳସୁଆ ବୋଲି ଦୁର୍ନାମ ଅଛି । ଆମେ ପଖାଳଖିଆ ଜାତି । ଦୁଃଖ ନାହିଁ । କିନ୍ତୁ ମୋ ଦେଶର ମନ୍ତ୍ରୀ- ଜନତା ଜନାର୍ଦ୍ଦନର ପ୍ରତିନିଧି- ତାଙ୍କ କଥାରେ ଯେ କିଛି ମୂଲ୍ୟ ରହିବ ନାହିଁ, ତାଙ୍କ ପ୍ରତିଶ୍ରୁତିର ମୂଲ୍ୟ ନାହିଁ, ଜନସାଧାରଣଙ୍କ ସ୍ୱାର୍ଥ ପାଇଁ ସେ ପ୍ରତିବଦ୍ଧ ନୁହଁନ୍ତି- ଏକଥା ମୋର ବିଶ୍ୱାସ ହୁଏ ନାହିଁ । କିନ୍ତୁ ନିରୁପାୟ ମନ୍ତ୍ରୀ ପ୍ରତିଶ୍ରୁତି ଦେଇ ପ୍ରତିଶ୍ରୁତି ରଖି ପାରୁ ନଥିବା ଗ୍ଲାନିରେ ମୋତେ ବାରମ୍ବାର ଦଉଡ଼ାଉ ଥିଲେ । କିନ୍ତୁ ସମାଧାନ କରି ପାରୁ ନ ଥିଲେ । ବୋଧହୁଏ ସମାଧାନର ସୂତ୍ରଟି ତାଙ୍କ ହାତରେ ନ ଥିଲା ।

ମୁଁ ସେଦିନ ବିଧାନସଭା, ଆସିଥାଏ ମୋ ଧୈର୍ଯ୍ୟର ଶେଷ ପରୀକ୍ଷା ଦେବାକୁ । ଶୁଣିଛି "ସଓ୍ୱାର ଗଛରେ ମେଓ୍ୱା ଫଳେ ।" ମେଓ୍ୱା ଫୁଲ ଧରିଛି- ଫଳିବ ନିଶ୍ଚୟ । ବିଶ୍ୱାସ ନେଇ ତ ଆମେ ବଞ୍ଚି ରହୁ । କିନ୍ତୁ ମନ୍ତ୍ରୀଙ୍କ ମୁହଁରୁ ଛୁଟିଥିବା ଶବ୍ଦ ଯେ ଏପରି ଅଚଳ ହୋଇଯିବ, ଏହା ମୁଁ କିପରି ବା ଜାଣନ୍ତି । ଏତେ ଶବ୍ଦର କାରବାର ଯେଉଁଠି, ଏତେ ଧ୍ୱନି ଓ ପ୍ରତିଧ୍ୱନି- ସେଠି ଶବ୍ଦମାନେ ପୁଣି ଏତେ ଘସରା ଓ ଅଚଳନ୍ତି ହୋଇଯାଆନ୍ତି- ଏକଥା ଆମେ ଗାଁ ଲୋକମାନେ ବିଶ୍ୱାସ କରୁନାହିଁ ।

ମୁଁ ମନ୍ତ୍ରୀଙ୍କ ଚ୍ୟାମ୍ବରରେ ବସି ବସି ଶବ୍ଦର ବାଚାଳତା ଶୁଣୁଥାଏ । ବାତୁଳି ପରି



Digitized by PPRACHIN, SOA

ବିଧାନସଭା କକ୍ଷରେ ଶବ୍ଦମାନେ ଛୁଟୁଥାନ୍ତି, କିନ୍ତୁ କେହି ଲକ୍ଷ୍ୟବିଦ୍ଧ କରିପାରୁ ନଥା'ନ୍ତି । କୋଳାହଳ ଭିତରେ ଶବ୍ଦମାନେ ବ୍ୟର୍ଥ ଓ ବିପନ୍ନ ହୋଇ ପଡିବାର ଯୁଗପତ୍ ହାସ୍ୟ ଓ କାରୁଣ୍ୟ ସମସ୍ତଙ୍କ ମୁଖମଣ୍ଡଳକୁ ଅସମ୍ଭବ ଗମ୍ଭୀର ଓ ରକ୍ତହୀନ କରି ଦେଇଥାଏ । ମୁଁ କେଇଘଣ୍ଟାର ପ୍ରତୀକ୍ଷା ମଧ୍ୟରେ ଶବ୍ଦମାନଙ୍କର କୋଳାହଳ ଶୁଣି ଶୁଣି ଅସ୍ଥିର ହୋଇ ପଡୁଥିଲି । ଏଇ ବିଧାନସଭା ପାଇଁ ଦିନେ ମୋ ମନରେ ବି କେତେ ଆକାଂକ୍ଷା ଥିଲା । ଦରଖାସ୍ତଟିଏ ଧରି ପ୍ରାର୍ଥୀ ଦେବାପାଇଁ ନେତାଙ୍କ ପାଖକୁ ଧାଇଁଥିଲି । କିନ୍ତୁ ଆଜି ଏହାର ଅସଲ ରୂପଟି ଦେଖିଲା ପରେ ଭାବୁଥିଲି ରାଜଧାନୀକୁ ଗାଁ ଗହଳର ଲୋକେ ଆସି ଫେରିଲା ବେଳେ କି ବାର୍ତ୍ତା ନେଇ ଫେରିଯା'ନ୍ତି ?

ତଥାପି ସେତେବେଳକୁ ଶବ୍ଦର କୋଳାହଳ କମି ନଥିଲା । ବାରମ୍ବାର ବିଧାନସଭା ମୁଲତବୀ ରଖି ମଧ୍ୟ ବାଚସ୍ପତି ଶାନ୍ତି ଶୃଙ୍ଖଳା ଫେରାଇ ଆଣି ପାରୁ ନଥିଲେ । ମହୁଫେଣାରୁ କ୍ରୁଦ୍ଧ ମହୁମାଛିମାନଙ୍କ ପରି ଶବ୍ଦମାନେ ଅନବରତ ଇତସ୍ତତଃ ଛୁଟୁଥିଲେ । କିଛି ହେଉ ନଥିଲା । କିଛି ଆଗଉ ନଥିଲା । କିଛି ଶୁଭୁ ନଥିଲା ବା ନୂଆ କିଛି ଘଟୁ ନଥିଲା । ସବୁ ଥିଲା ଲକ୍ଷ୍ୟହୀନ, ନିରୁଦ୍ଦେଶ୍ୟ ଓ ନିରୁତ୍ତର । ନେତା ତଥାପି ପାଟି ଖୋଲୁ ନଥିଲେ । ଯୁବକମାନେ ପାଟି କରି କରି ହାଲିଆ ହୋଇ ପଡ଼ିଥିଲେ । ଅଧ୍ୟକ୍ଷଙ୍କ ନିର୍ଦ୍ଦେଶକୁ କେହି ମାନିବାକୁ ପ୍ରସ୍ତୁତ ନଥିଲେ । କେହି କିଛି ଶୁଣୁ ନଥିଲେ ।

ଏ ଅଦ୍ଭୁତ ଅବସ୍ଥା ମଝିରେ କେହି ଜଣେ ଭଦ୍ର, ଧୀରସ୍ଥିର ଚିନ୍ତାଶୀଳ ସଭ୍ୟ ଉଠି ପ୍ରସ୍ତାବ ଦେଲେ - "ଏପରି ପରିସ୍ଥିତିରେ ବିଧାନସଭା ଚାଲି ନପାରେ । ଆମେ ଏସବୁର ନୀରବଦ୍ରଷ୍ଟା ହୋଇ ରହି ପାରିବୁ ନାହିଁ । ଆମେ ଗୃହ ନେତା ଓ ବିରୋଧୀଦଳ ନେତାଙ୍କ ଠାରୁ ଜବାବ୍ ଚାହୁଁ । ଆମର ସାମ୍ବିଧାନିକ ଅଧିକାର, ଆମେ ତାଙ୍କଠାରୁ ଉତ୍ତର ଚାହୁଁ । ଆଜି ଏତିକିରେ ବିଧାନ ସଭା ବନ୍ଦ ରହୁ । କାଲିଠାରୁ ଆଉ ଏ ଦୃଶ୍ୟର ପୁନରାବୃତ୍ତି ନହେଉ ।"

ବାଚସ୍ପତି ବୋଧହୁଏ ଏହିପରି ଏକ ଜୋର୍‌ଦାର ଅପିଲର ଅପେକ୍ଷାରେ ଥିଲେ । ପାଟି କରି କରି ତାଙ୍କ ଗଳା ବସି ଯାଇଥିଲା । ସେ ତେଣୁ କାଳ ବିଳମ୍ବ ନ କରି ବିଧାନସଭା ଆଜି ପାଇଁ ମୁଲତବୀ ରହିଲା ବୋଲି ଘୋଷଣା କରିଦେଲେ ।

ସେତେବେଳକୁ ମୁଁ ଓ ମୋର ବନ୍ଧୁ ବିଧାନସଭା କ୍ୟାଣ୍ଟିନ୍‌ରେ ବରା ଓ ପିଆଜି ଅପେକ୍ଷାରେ ବସି ରହିଥାଉ । ଅନେକ ଖଦଡ଼ ପିନ୍ଧା ଲୋକ ଯା'ଆସ କରୁଥା'ନ୍ତି । ଟେବୁଲଗୁଡ଼ିକ ଅଧିକାର କରି କେହି କେହି ଗପ ଜମେଇ ଦେଇଥା'ନ୍ତି । ବିଧାନସଭା ଗୃହରେ ପାଟିଗୋଳ, ମାଡ଼ ମରାମରିରେ ଜଣେ କେହି ଆହତ ହେବାପରେ ଡାକ୍ତର ଆସି ଚିକିତ୍ସା କରିବା ଓ ଏହିପରି ଯେତେକ ତାଜା ଘଟଣାର ବର୍ଣ୍ଣନା ଓ ତର୍ଜମାରେ କ୍ୟାଣ୍ଟିନ୍‌ର ବାତାବରଣ ବେଶ୍ ଉଷୁମ ହୋଇ ଉଠିଥାଏ ।

ମୁଁ ବସିଥିବା ଟେବୁଲ ସାମ୍ନାରେ ଜଣେ ଖଦଡ଼ ପିନ୍ଧା ଯୁବକ ମୋତେ ନମସ୍କାର କରି ଚା' ଓ ଜଳଖିଆ ଉଦ୍ଦେଶ୍ୟରେ ବସିରହିଲେ । ମୁଁ ଦୋ' ଦୋ' ଚିହ୍ନା ହେଲି,



Digitized by PPRACHIN, SOA

ଅନେକ ସ୍ମରଣ କଲି । କିଛି ଖିଅ ପାଇଲି ନାହିଁ । ପ୍ରଥମରୁ ଭାବିନେଲି କେହି ଜଣେ ଖଦଡ଼ ପିନ୍ଧା ଗ୍ରାମ୍ୟକର୍ମୀ, କିମ୍ବା ସରପଞ୍ଚ । କାହାକୁ ଚାକିରୀ କରେଇ ଦେବାକୁ, କାହାକୁ ବଦଳି କରିଦେବାକୁ ପ୍ରତିଶ୍ରୁତି ଦେଇ ବୋଧହୁଏ ରାଜଧାନୀକୁ ଆସିଛନ୍ତି । ମନ୍ତ୍ରୀଙ୍କ ପିଛା ନେଇ ନେଇ ନିଶ୍ଚୟ ହାଳିଆ ହୋଇ ଯିବେଣି ।

ପ୍ରଥମରୁ ମୋ ମନରେ ତାଙ୍କ ପ୍ରତି କେମିତି ଗୋଟାଏ ଅନାଦର ଓ ଅବିଶ୍ୱାସର ଭାବ ଆସିଯାଇଥିଲା । ମୁଁ ପ୍ରଥମରୁ ହିଁ ଭାବିନେଲି ବୋଧହୁଏ ମୋ ଟେବୁଲ୍‌ରେ ବସି ସେ ଜଳଖିଆ, ଚା' ଖାଇବେ ଓ ଶେଷକୁ ଉଠି କହିବେ, "ସାର୍, ମୁଁ ଗାଆଁରୁ ତିନିଦିନ ହେଲା ଆସିଲିଣି । ଯାହା ପଇସାପତ୍ର ଆଣିଥିଲି ପକେଟ୍‌ମାରୁ ହୋଇଗଲା । ଦୟାକରି ମୋ ବିଲ୍‌ଟା ଯଦି ନେଇ ଦିଅନ୍ତେ....." ।

ଏ ରାଜଧାନୀରେ ଏପରି ଘଟଣା ନୂଆ ନୁହେଁ । ବହୁ ଶିକ୍ଷିତ ଲୋକ ଭଦ୍ରତାର ମୁଖାପିନ୍ଧି ଭେକ ଦେଖେଇ ଭିକ ନାମରେ ମୋଠାରୁ ବେଶ୍ ମୋଟା ଅଙ୍କର ଅର୍ଥ ଝଡ଼େଇ ନେଇଛନ୍ତି । ଏକାଧିକ ତିକ୍ତ ଅନୁଭୂତିକୁ ମୁଁ ସାଇତି ରଖିଛି । ମୋର ବନ୍ଧୁ ବି ଜାଣନ୍ତି ଅପରେସନ୍ ହେବ ବୋଲି ଗୋଡ଼ରେ ମୋଟା ପଟି ବାନ୍ଧି ଛୋଟେଇ ଛୋଟେଇ ଚାଲୁଥିବା ଦୀର୍ଘକାୟ ଲୋକଟି ନିଜକୁ ଜଣେ ଦୁଃସ୍ଥ ପ୍ରାଇମେରୀ ସ୍କୁଲର ଶିକ୍ଷକ ବୋଲି କହି ମୋଠାରୁ ଶହେଟଙ୍କାର ନୋଟ୍‌ଟିଏ ଖସେଇ ନେଇଥିଲା । ବନ୍ଧୁ ବିସ୍ମିତ ହୋଇ ମୋତେ ନାନା ଭାବରେ ବୋକା ବୋଲି ପ୍ରତିପାଦନ କଲେବି ମୁଁ ସେଦିନ ଖୁବ୍ ମାନସିକ ଶାନ୍ତି ଅନୁଭବ କରିଥିଲି । ବହୁ ଦିନଯାଏ ବନ୍ଧୁ ଏକଥା କହି ବୁଲିଲେ ଓ ମୋର ବହୁତ ବହୁତ ତାରିଫ୍ ବି କଲେ । ବେଳେବେଳେ ଅର୍ଥର ମାତ୍ରାଠୁ ତାଙ୍କ ତାରିଫ୍‌ର ମାତ୍ରା ଅତିକ୍ରାନ୍ତ ହୋଇ ଯାଉଥିଲା । କିନ୍ତୁ ପରେ ଯେତେବେଳେ ଜାଣିଲି ଭେକ ଦେଖେଇ ଭିକ ମାଗିବା ହେଉଛି ତାର ବୃତ୍ତି ପୁଣି ରାଜଧାନୀରେ ସେ ବହୁତ ଲୋକଙ୍କୁ ଏହିପରି ପ୍ରତାରିତ କରିଛି... ଖୁବ୍ ବଡ଼ ଏକ ନୈରାଶ୍ୟରେ ମୁଁ ଭାଙ୍ଗି ପଡ଼ିଥିଲି ।

ଆଉଦିନେ.....କଚେରୀ ପାଖରେ ପ୍ୟାଣ୍ଟ ସାର୍ଟ ପିନ୍ଧା ଯୁବକଟିଏ ଆସି ଠିଆ ହେଲା । କଥା କହୁ କହୁ କାନ୍ଦି ପକେଇଲା ଦୁଇଦିନ ହେବ କିଛି ଖାଇ ନାହିଁ, ଘରୁ ତା ଭାଇ ଭାଉଜ ତାକୁ ତଡ଼ି ଦେଇଛନ୍ତି । ବାପା ମାଆ ନାହାନ୍ତି । ଯେକୌଣସି କାମ କରି ପେଟ ପୋଷିବାକୁ ତାର ଝୁଙ୍କ୍ ଦେଖି ମୁଁ ସତକୁ ସତ ତରଳି ଯାଇଥିଲି । ଗାଡ଼ିରେ ବସେଇ ଘରକୁ ଆଣି ତାକୁ ପେଟଭରି ଖାଇବାକୁ ଦେଲାପରେ ତାକୁ ନେଇ ସ୍ୱପ୍ନ ବି ଦେଖିଥିଲି- ରାସ୍ତାକଡ଼ରୁ ସାଉଁଟା ଏ ପିଲାଟି ଦିନେ ଖୁବ୍ ବଡ଼ ମଣିଷ ହେବ, ଭଲ ମଣିଷ ହେବ, ମହତ କାମ କରିବ । ତାକୁ ତା' ପରଦିନ ଜଣେ ସୁପରିଟେଣ୍ଡିଂ ଇଂଜିନିୟରଙ୍କ ଘରେ କାମରେ ଲଗେଇ ଦେଲି । ଭଲ କାମ କଲେ ଓ ତାଙ୍କ ମନ ନେଇ ପାରିଲେ ସେ ହୁଏତ ଚାକିରୀଟିଏ କରେଇ ଦେବେ । କେତେ ଭରସା ରଖି ଫେରି ଆସିଲି । କ'ଣ ତା ନାମଟି ? ହଁ - ଜଳଧର ସାହୁ ।

କିନ୍ତୁ ତା'ପରଦିନ ଫୋନ୍ କରି ଇଂଜିନିୟର କହିଲେ ଯେ ଜଳଧର ଘଣ୍ଟା ଓ



Digitized by PPRACHIN, SOA

ଗ୍ରାଜିଷ୍ଟରଟିଏ ଚୋରିକରି ଫେରାର ହୋଇଯାଇଛି । ମୋ ସ୍ତ୍ରୀ ଓ ପିଲାମାନଙ୍କଠାରୁ ସେଦିନ ମୁଁ ଯେଉଁଗାଳି ଶୁଣିଛି ତାହା ବୋଧହୁଏ ମୋର ପ୍ରାପ୍ୟ ଥିଲା । ସେମାନେ ସମସ୍ୱରରେ ମୋତେ ଆକ୍ରମଣ କରି ଅଭିଯୁକ୍ତ କରି ସାରିଥିଲେ । "ତୁମେ ତୁମ ଭାବପ୍ରବଣତା ଓ ନିର୍ବୋଧତା ପାଇଁ ବନ୍ଧୁବାନ୍ଧବଙ୍କୁ ମଧ୍ୟ ଶେଷକୁ ହରେଇ ବସିବ । ସେମାନେ ଭଲଲୋକ ବୋଲି ମୁହଁ ଉପରେ ସିନା କିଛି କହିବେନି, ମନେ ମନେ ତୁମକୁ ଖୁବ୍ ତାରିଫ୍ କରିବେ ନା ?" ମୁଁ ସେମାନଙ୍କୁ କି ଉତ୍ତର ବା ଦେଇଥାନ୍ତି ?

କିନ୍ତୁ ବିଧାନସଭା କ୍ୟାଣ୍ଟିନ୍‌ରେ ମୋ ସାମ୍ନାରେ ଏଇ ଅପରିଚିତ ଗ୍ରାମ୍ୟ ଯୁବକ ? ମୁଁ ଜଳଧର ପ୍ରତିଛବି ତାଙ୍କଠାରେ ଦେଖୁଥିଲି । ମୋତେ ଯେପରି ମନେ ହେଉଥିଲା ସମଗ୍ର ରାଜଧାନୀ ଜଳଧରମୟ ହୋଇ ଉଠିଚି । ଜଳଧରମାନେ ହିଁ ବୁଲୁଛନ୍ତି । ଚାରିଆଡ଼େ ଆତଯାତ ହେଉଚନ୍ତି, ଅଭିନୟ କରୁଚନ୍ତି, କଥାରେ କଥାରେ ମନ କିଣି ନେଉଚନ୍ତି, ପୁଣି ବିଶ୍ୱାସ ଉପରେ ପ୍ରଚଣ୍ଡ ପାହାର ଦେଇ ସ୍ୱଇଚ୍ଛାରେ ଅନ୍ତର୍ହିତ ହୋଇ ଯାଉଛନ୍ତି ।

ତାଙ୍କ ବରାଦ ମୁତାବକ ଆସିଥିବା ଜଳଖିଆ ସେ ଖାଇସାରି ଚା' ପାଇଁ ଅପେକ୍ଷା କରିଥାନ୍ତି । ବୟ ଚା' କପେ ତାଙ୍କୁ ଦେଇଗଲା । ଆଶ୍ଚର୍ଯ୍ୟ ହେଲି ସେ ଚା'ନପିଇ ଆମ ପାଇଁ ଅପେକ୍ଷା କରୁଛନ୍ତି । ଆମକୁ ସେତେବେଳକୁ ଚା' ସର୍ଭ ହୋଇ ନଥାଏ ଯଦିଓ ଜଳଖିଆ ଖାଇ ସାରିଥାଉ । ଆମେ ଚା' ପିଇଲା ବେଳକୁ ତାଙ୍କ ଚା'ପ୍ରାୟ ଥଣ୍ଡା ହୋଇ ଯାଇଥାଏ । ଯା' ମଧ୍ୟରେ ଆମକୁ ଚା' ଦେବାକୁ ସେ ବୟକୁ ଥରେ ଦି'ଥର ତାଗିଦା ବି କରି ସାରିଥାନ୍ତି ।

ଏ ଅଯାଚିତ ବନ୍ଧୁତାର ଅନ୍ତରାଳରେ ମୋ ଠାରୁ କିଛି ଅର୍ଥ ଝଡ଼େଇବା ତାଙ୍କର ଉଦ୍ଦେଶ୍ୟ ବୋଲି ମୁଁ ଧରିନେଲି । ମୋ ଚିନ୍ତାରେ ଜଳଧର ଓ ମୋ ସାମ୍ନାର ଯୁବକ ସେତେବେଳକୁ ଏକାକାର ହୋଇ ଯାଇଥାନ୍ତି । ଏତେ ଅନାହୂତ ଆତ୍ମୀୟତାକୁ ମୁଁ ସାଧାରଣ ସରକାରୀ କର୍ମଚାରୀଟିଏ କିପରି ବା ସହଜ ମନରେ ବହନ କରି ପାରିଥା'ନ୍ତି ?

ଯୁବକ ଚା'ପରେ ଯଥାରୀତି ଉଠିଗଲେ ଓ କାଉଣ୍ଟରରେ ବିଲ୍ ପେମେଣ୍ଟ କରି ବସିଲେ । ମୁଁ ରକ୍ଷା ପାଇଗଲି । ଜଳଧର ପରି ସେ ଯଦି ମୁହଁ ଶୁଖେଇ କହିଥାନ୍ତେ ଯେ ସେ କାଲିଠାରୁ ଖାଇ ନାହାନ୍ତି, ଚାକିରୀ ପାଇଁ ଆସିଛନ୍ତି, ମୁଁ ତ ସତକୁ ସତ ଫାଟି ପଡ଼ିଥାନ୍ତି ଓ ବୋହି ଯାଇଥାନ୍ତି । ଅନ୍ତତଃ ସେ ମୋତେ ଏପରି ଅସୁବିଧାରେ ପକାଇ ନାହାଁନ୍ତି ବୋଲି ମୁଁ ଆଶ୍ୱସ୍ତ ହେଉଥିଲି ।

ଚା' ଖାଇ ପେମେଣ୍ଟ କରିବାକୁ କାଉଣ୍ଟରକୁ ଗଲାବେଳେ ସେ ହଠାତ୍ ଆସି ମୋ ପଥରୋଧ କଲେ ଓ ଅତି ବିନୀତ ଭାବେ କହିଲେ, "ସାର୍ ମୁଁ ଆପଣ ଦୁହିଁଙ୍କ ବିଲ୍ ପେମେଣ୍ଟ କରି ଦେଇଛି ।" ମୁଁ ବିସ୍ମିତ ହୋଇ ତାଙ୍କୁ ଚାହିଁ ରହିଲି । ସ୍ୱଭାବିକଭାବେ ପଚାରିଲି, ଆପଣ କାହିଁକି ଦେଲେ ? ଏକଥା ଠିକ୍ ହେଲା ନାହିଁ । ଆପଣଙ୍କ ସହିତ ଚିହ୍ନା ପରିଚୟ ନାହିଁ । ତା'ପରେ ଆମେ ଦୁଇଜଣ ଅଛୁ । ଆମ ପାଖରେ ବିଲ୍ ପେମେଣ୍ଟ ପାଇଁ ପଇସା ମଧ୍ୟ ଅଛି ।



Digitized by PPRACHIN, SOA

"କିନ୍ତୁ ଆପଣଙ୍କୁ ମୁଁ ଚିହ୍ନିଚି ସାର୍ । ଆପଣ ସେଦିନ କୋରାପୁଟ ଟାଉନ୍ ହଲରେ ପଣ୍ଡିତ ଗୋଦାବରୀଶ ଶତବାର୍ଷିକ ଉତ୍ସବରେ ଭାଷଣ ଦେଉଥିଲେ । ମୁଁ ସେଦନ ଅଡିଆନ୍‌ସରେ ଥିଲି । ପାଞ୍ଚମାସ ପରେ ଦେଖା । ଆପଣଙ୍କ ଭାଷଣ ଶୁଣି ଏକପ୍ରକାର ଆପଣଙ୍କ ସହିତ ମାନସିକ ଆତ୍ମୀୟତା ହୋଇ ଯାଇଛି । ନମସ୍କାର ସାର୍ । କିଛି ମନେ କରିବେନି ?"

ସେ କ୍ଷିପ୍ର ପଦପାତରେ କ୍ୟାଣ୍ଟିନ୍‌ରୁ ନିଷ୍କ୍ରାନ୍ତ ହୋଇଗଲେ । ବୋଧହୁଏ କୌଣସି ଜରୁରୀ କାମ ଥିଲା । ଚଳତ୍ ଶକ୍ତିହୀନ ସ୍ଥାଣୁ ଶିଳାଖଣ୍ଡଟିଏ ପରି ସେଇଠି ଠିଆ ହୋଇ ତାଙ୍କ ବାଟକୁ ଚାହିଁ ରହିଥିଲି । ଭାବୁଥିଲି- ଦେଶ ତଥାପି ମଣିଷଶୂନ୍ୟ ହୋଇନାହିଁ ।

ତଥାପି ଭାରତବର୍ଷ ତା'ର ଆତ୍ମାକୁ ନେଇ ଗର୍ବ କରିବ- ଯଦିଓ ତା' ଦେହ ଏକ ଗଳିତ କୁଷ୍ଠରୋଗୀପରି ବ୍ୟାଧିଗ୍ରସ୍ତ, ଗୋଦର ରୋଗୀପରି ତା' ହାତ ଓ ଗୋଡ଼ରେ ଅନାବଶ୍ୟକ ମାଂସରଭାର, ତା'ର ମୁଷ୍ଟିମେୟ ବାହାପିଆ ପିଲାମାନେ ଚତୁରତାରେ ତାକୁ ଠକି ଭଣ୍ଡି ବିପନ୍ନ କରି ଚାଲିଛନ୍ତି, ମାଡ଼ଖିଆ ଗାଈ ପରି ତା' ଆଖିରୁ ଧାର ଧାର ଲୁହ ବୋହି ଚାଲିଚି । ତଥାପି ତା' ଆତ୍ମା ସତେଜ ଓ ସୁନ୍ଦର, ଶତଦଳପରି ଢ଼ଳଢ଼ଳ ଓ ପବିତ୍ର । ମୁଁ ଦୀର୍ଘ ପ୍ରତୀକ୍ଷାର ବିରକ୍ତିରୁ ଦ୍ରୁତ ମୁକ୍ତି ଲୋଡୁଥିଲି । ସେତେବେଳକୁ ବିଧାନସଭାର ସଭ୍ୟମାନେ ବାରଣ୍ଡାରେ ଜମି ସାରିଥିଲେ । ମନ୍ତ୍ରୀ ଚ୍ୟାମ୍ବରକୁ ଆସି ଯାଇଥିଲେ । କିନ୍ତୁ କେହି ମୁକୁଳି ପାରୁ ନଥିଲେ- କାରଣ ଫାଟକ ପାଖରେ ପାଗଳୀ ଅନ୍ଧୁଣୀ ଝିଅଟିଏ ପଥରୋଧ କରି ଶୋଇ ରହିଥିଲା । ରାଜ୍ୟର ସମସ୍ତ ପୋଲିସ ଶକ୍ତି ଅବିଶ୍ରାନ୍ତ ଉଦ୍ୟମ କଲେ ବି ତାକୁ ହଟାଇ ଦେଇପାରୁ ନଥିଲେ । ସେ ଧର୍ଷିତା, କିନ୍ତୁ ଥାନାବାବୁ ତା' ଏତଲା ଗ୍ରହଣ କରୁନାହାନ୍ତି । ଦୋଷୀକୁ ଦଣ୍ଡମିଳିବା ଦରକାର କିନ୍ତୁ ଥାନା ହେଉଚି ସେଥିପାଇଁ ପ୍ରଥମ ପ୍ରତିବନ୍ଧକ । ଅନ୍ଧୁଣୀ ଝିଅଟି ବିଧାନସଭା ଆଗରେ ପ୍ରତିବାଦ କରିବାକୁ ଶୋଇରହିଛି; ଯଦି କୌଣସି ବିଧାୟକଙ୍କ ମନ ତରଳେ..... ତେବେ ଅବା...... ।





Digitized by PPRACHIN, SOA

# ବିସର୍ଜନ

ଯେମିତି ସେ ସାତ ଦିନ ହେବ ତା'ଛୋଟ କ୍ୟାବିନ୍‌ଟିରେ ବସିରହିଚି । କେହି ଗୋଟିଏ ହେଲେ ଗରାଖ ଆସି ନାହାନ୍ତି । ତଥାପି ତା'ର ପ୍ରତୀକ୍ଷାର ଶେଷ ନାହିଁ । କାଳେ କିଏ ଜଣେ ଅଧେ କଦବା ଅସମୟରେ ଆସିଯିବ । ଦୁଇ ଦିନ ହେବ ଘରେ ଚୁଲି ପ୍ରାୟ ଅଜଳା । ମୁଢ଼ି ଓ ଚୁଡ଼ା କିଣି ଖାଇବାକୁ ବି ଆଉ ସମ୍ବଳ ନାହିଁ । ଚୁଲିରେ ପାଣି ପଶି ପବନରେ ଲହଡ଼ି ଖାଉଛି ।

ତଥାପି ଧନୀ ମୋଚି ତାର ଅମେଣ୍ଟା ଆଶା ନେଇ ଛୋଟ କ୍ୟାବିନ୍‌ଟିରେ ବସି ରହିଚି । ଗୋପ ବଜାରର ଆଉ ପାଞ୍ଚ ସାତଟି ଛୋଟ ବଡ଼ ଦୋକାନ ସାଙ୍ଗରେ ତାର ବି ଏ ଗୋଟିଏ ଦୋକାନ । "ଏଠି ଜୋତା ମରାମତି ହୁଏ"ର ବିଜ୍ଞାପନ ଝୁଲୁ ନାହିଁ, ଦରକାର ମଧ୍ୟ ନାହିଁ । କେତେହଳ ଛିଣ୍ଡା ଜୋତା ଓ ଚପଲ, ସାଇକେଲ ଓ ମଟର ଟାୟାରର କଟା ଅଂଶ, ଟ୍ୟୁବ୍ ଆଉ ରଙ୍ଗ ଥିବା ବା ନଥିବା କେତୋଟି ବିଲି ମାର୍କା ଡବା ଓ ନାଲି ରଙ୍ଗ ପାଣି ବୋତଲରୁ ବେଶ୍ ଜଣାଯାଏ ଯେ ଏଠାରେ ଜୋତା ମରାମତି ହୁଏ । ନାଁ ଧନୀ-ପିତୃମାତୃଦତ୍ତ ଏ ନାମ ତା ଜୀବିକା ପାଇଁ ଉପହାସ ମାତ୍ର ।

ସାତ ଦିନ ହେବ ଅନବରତ ବର୍ଷା ଗାଳୁଚି । ନଈରେ ଆସିଚି ପ୍ରବଳ ବଢ଼ି-ଗାଁ ଗଣ୍ଡା କେତେ ବୁଡ଼ିଗଲାଣି- ତଳପଟେ ଭାଙ୍ଗିଚି ଘାଇ-ସୁଅ ପଡ଼ିଚି ଯେ ସାପ ମୁଣ୍ଡ ଦି'ଖଣ୍ଡ ହୋଇଯିବ । ଧନୀ ମୋଚି ଶୁଣିଚି ବାବୁମାନେ କଥାବାର୍ତ୍ତା ହେଉଥିଲେ-"ସୋମୁଦ୍ରରେ ଲଘୁ ଚାପ ହେଇଚି- ଏ ବର୍ଷ ଖଣ୍ଡପ୍ରଳୟ ନ କରି ଛାଡ଼ିବନି ।" ରେଡ଼ିଓ କହିଚି ଏକ ଶହ କୋଡ଼ିଏ କିଲୋମିଟର ବେଗରେ ବତାସ ହେବ-କେଉଟମାନଙ୍କୁ ବିଶେଷ ସତର୍କ କରି ଦିଆଯାଇଚି ।

ଗୋପ ବଜାର ରାସ୍ତା ଉପରେ ପାଣି ଛ'ଇଞ୍ଚରେ ଛୁଟିଚି । କିଏ ଏ ଦୁର୍ଦ୍ଦିନରେ ଜୋତା ପଲିସ୍ କରିବାକୁ ବା ମରାମତି କରିବାକୁ ଆସିବ । ନିଜ ରକ୍ଷଣ ଅସମ୍ଭାଳ । ଦୋକାନ ବଜାରକୁ କେବଳ ଖାଦ୍ୟସାମଗ୍ରୀ ସଂଗ୍ରହ ପାଇଁ କେହି କେହି ଆସୁଛନ୍ତି । ପରିବା ଦୋକାନରେ ବି ବିଶେଷ ଭିଡ଼ ନାହିଁ । ତେଜରାତି ଦୋକାନରେ ସାମାନ୍ୟ ଭିଡ଼ ଦେଖାଯାଉଚି । ନଚେତ୍ ବଜାରରେ ଥିବା ଅନ୍ୟାନ୍ୟ ଦୋକାନଗୁଡ଼ିକ ପ୍ରାୟ ବନ୍ଦ ରହିଚି କହିଲେ ଚଳେ । ବୁଢ଼ା ବୁଢ଼ା ଲୋକେ କହୁଛନ୍ତି ଦ୍ୱାପର ଯୁଗରେ ଏମିତି ସାତ ଦିନ ବୃଷ୍ଟି ହେଲା ଯେ ଗୋପପୁର ଭାସି ଯାଇଥା'ନ୍ତା-ହେଲେ ଗିରି ଗୋବର୍ଦ୍ଧନ ଟେକି ଧରିଲେ



Digitized by PPRACHIN, SOA

ଗୋପର ସବୁଠାରୁ ବିପୁଳକର୍ମା କିଶୋର ଶ୍ରୀକୃଷ୍ଣ । ଲୋକମାନେ ରକ୍ଷା ପାଇଲେ । କାହିଁ ଗୋପପୁର କାହିଁ କଳିକାଳର ଗୋପ ବଜାର ।

ଧନୀ ମୋଚି ତଥାପି ସକାଳୁ ସକାଳୁ ଆସି ଅଭ୍ୟାସବଶତଃ କ୍ୟାବିନ୍‌କୁ ସଫାସଫି କରି ବସିରହିଛି ଗରାଖମାନଙ୍କ ପ୍ରତୀକ୍ଷାରେ । କିନ୍ତୁ କେହି ଜଣେହେଲେବି ଆସୁନାହାନ୍ତି । କିଏ ବା ଏ ବର୍ଷାରେ ଜୋତା ପିନ୍ଧୁଚି ? ଜୋତା ସଜଡ଼ା ଏତେ ଜରୁରୀ କାମ ନୁହେଁ । ପାଞ୍ଚ ସାତ ଦିନ ବିଳମ୍ବ ହେଲେ ବି ଚଳିବ ।

କିନ୍ତୁ ଧନୀ ମୋଚିର ପରିବାରକୁ ମହା ଅନ୍ଧକାର ଯେପରି ଛାଇ ରହିଛି । ଘରେ ତା'ର ଭାରିଜା ମୋତି ଆଉ ଛୋଟ ପୁଅ ଚେମା । ସଞ୍ଚୟର ସମସ୍ତ ସମ୍ବଳ ପରି ଆସୁଚି । ଚୂଡ଼ା ଆଉ ମୁଢ଼ି କିଣି ଗଣ୍ଡାଏ ଗଣ୍ଡାଏ ଖାଇ ପାଣି ପିଇ ସମଗ୍ର ପରିବାର କେତେ ଦିନ ବା ରହି ପାରିବେ ? ଧାର ଉଧାର ମଧ୍ୟ ଏ ସମୟରେ ମିଳିବା କଷ୍ଟ । ତା'ର ବା କି ପତିଆରା ଅଛି କେଉଁ ଭରସାରେ ତାକୁ କିଏ ଧାର ଦେବ !

ଧନୀ ବସି ବସି ହାଲିଆ ହୋଇଗଲେ ବି ଭାଗ୍ୟର ଏ ବିଡ଼ମ୍ବନାରୁ ଯେପରି ତାର ମୁକ୍ତି ନାହିଁ । ପାଗ ବେଳୁବେଳ ଖରାପ ହେବାରେ ଲାଗିଚି । ବଙ୍ଗୋପସାଗର ଲଘୁଚାପ କି ଗୁରୁଚାପ ହେଲେ ତାର ଯାଏ ଆସେ କେତେ ? ସେସବୁ ପାଠପଢ଼ୁଆ ଲୋକେ ବୁଝିବେ । ସେ ବୁଝେ ତା'ର ଛୋଟ କ୍ୟାବିନର କେତୋଟି ସରଞ୍ଜାମ କଥା ।

ଗୋପ ବଜାର ମଝି ରାସ୍ତାରେ ପାଣି ଛୁଟିଚି । ଗୋରୁ ଗାଈ ଘରେ ଘରେ ବନ୍ଧା ହୋଇ ପଡ଼ିଛନ୍ତି- ଚରାଭୂଇଁ ବି ପାଣିରେ ବୁଡ଼ିଚି । ଏବର୍ଷ ଧାନଫସଲର ଆଉ ଆଶା ନାହିଁ । ପ୍ରାୟ ପାଞ୍ଚଦିନ ହେବ ପାଣିରେ ବୁଡ଼ି ରହିଛି ଧାନବିଲ । ଚାଷୀର ଫସଲ ବାଇଗଣ, ଅମୃତଭଣ୍ଡା ଓ କାଙ୍କଡ଼ । ଆଳୁ ପିଆଜ ହୋଇଛି ଦୁର୍ମୂଲ୍ୟ । ରାସ୍ତା ଉପରେ ଲୋକଙ୍କର ଗତାଗତ ପ୍ରାୟ ନାହିଁ । କେବଳ କୁକୁରମାନଙ୍କ ରଡ଼ି ଶୁଣିବାକୁ ମିଳୁଚି ଓ ଗୋଟିଏ ଗୋଟିଏ କୁତୀ ପଛରେ ମତୁଆଳ କୁକୁରମାନେ ଧାଉଁଥିବା ଓ ବେଳେବେଳେ ବିପୁଳ ଅହଙ୍କାରେ କାମୁଡ଼ା କାମୁଡ଼ି ହୋଇ ରକ୍ତାକ୍ତ ହେବାର ଦୃଶ୍ୟ ବଜାର ରାସ୍ତାରେ ବେଶ୍ ସୁଲଭ ହୋଇ ଉଠିଚି । ରାସ୍ତା ଉପ୍‌ରେ ସେମାନଙ୍କର ଅବାଧ ମୈଥୁନକ୍ରିୟାର ଉତ୍‌ପୀଡ଼ନ ।

ଧନୀ ସେମିତି ତା' ଛୋଟ କ୍ୟାବିନ୍‌ଟିରେ ବସି ବସି ଆକାଶ ପାତାଳ ଚିନ୍ତାରେ ମଜ୍ଜି ଯାଇଚି । ଘରେ ସ୍ତ୍ରୀ ଓ ପିଲା – ଚାଳ ଘର ମଥାନରୁ ଅନବରତ ପାଣି ଗଳି ଘର ସାରା ପାଣି- କାଦୁଗୁଡ଼ା ସନ୍ତସନ୍ତେଇ ଯାଇଚି । ଛିଣ୍ଡା ପାଲକୁ ବା ଏ ଝଡ଼ ବର୍ଷା କେତେ ସମ୍ଭାଳିବ ?

ଧନୀ ମନକୁ ହଠାତ୍ ଗୋଟିଏ ବୁଦ୍ଧି ଜୁଟିଗଲା । ସେ ମନେ ମନେ ସ୍ଥିର କରିନେଲା ଆଉ ସାତଦିନ ପରେ ଗଣେଶ ପୂଜା । ସେ ଯଦି କେତୋଟି ମୂର୍ତ୍ତି ଗଢ଼ି ପାରେ ତେବେ ବେଶ୍ ଦି' ପଇସା ଲାଭ ହେବ । ଖର୍ଚ୍ଚ ବାର୍ଚ୍ଚ ଯାଇ ଅନ୍ତତଃ ମାସକ ପାଇଁ ଚଳିଯିବାର ପାଥେୟ ମିଳିଯିବ । ମେଘ ଛାଡ଼ି ଯିବାର ସୁଯୋଗ ନେଇ ଘର ପାଖରୁ କିଛି



Digitized by PPRACHIN, SOA

ହୁଙ୍କା ମାଟି ସଂଗ୍ରହ କଲା ଧନୀ । ଜୋତା ତିଆରି ସରଞ୍ଜାମ ଗୁଡ଼ିକୁ ଯତ୍ନରେ ଆଡ଼େଇ ରଖି ସେଇଠି ମାଟି ଓ ପାଳକୁଟା ଜମେଇ ରଖିଲା । ସେ ଦେଖିଛି ଗଣେଶ ମୂର୍ତ୍ତି-ପେଟୁଆ, ବଡ଼ ଦାନ୍ତ, ହାତୀ ଶୁଣ୍ଢ ଓ କାନ- ଯାବତ ଅସୁନ୍ଦର ଓ କୁତ୍ସିତ । ସରସ୍ୱତୀ, ଗଜଲକ୍ଷ୍ମୀ ବା କାର୍ତ୍ତିକେୟଙ୍କ ପରି ସୁନ୍ଦର ନୁହଁନ୍ତି ଗଣେଶ । ତେଣୁ ଯେଉଁପରି ଗଢ଼ି ଦେଲେ ବି ସେ ଗଣେଶ ହୋଇଯିବ । ବେଶୀ କିଛି ବୁଦ୍ଧି ବୃତ୍ତି ବା ଶିଳ୍ପକଳା ଦରକାର ନାହିଁ ।

ଧନୀ ମୋଚିର କ୍ୟାବିନ୍ ଘରେ ଗୋଟିଏ ପରେ ଗୋଟିଏ ଚାରୋଟି ଗଣେଶ ମୂର୍ତ୍ତିର ପରିକଳ୍ପନା କ୍ରମେ ସାକାର ହୋଇ ଉଠିଲା । ଅସୁନ୍ଦର କୁତ୍ସିତ ବେଢ଼ଙ୍ଗ ଚାରୋଟି ମାଟିର ମୂର୍ତ୍ତି- କିନ୍ତୁ ଧନୀ ମୋଚି ତାର କଳ୍ପନା ଓ କଳାର ସମସ୍ତ ସୌନ୍ଦର୍ଯ୍ୟକୁ ରସାଣିତ କରି ଏଇ ମୂର୍ତ୍ତି ଚାରୋଟି ଗଢ଼ିଚି ବୋଲି ଭାବେ । କିନ୍ତୁ ରଙ୍ଗ ଓ ପୁଟ ପାଇଁ ପାଖରେ ପଇସା ନାହିଁ- ଧନୀ ନିରୁତ୍ସାହିତ ହୁଏ ନାହିଁ । ଅନ୍ତତଃ ତାର ସାଧୁତା ଉପରେ ଏ ଛୋଟ ବଜାରରେ ସମସ୍ତଙ୍କର ଭରସା ଅଛି । ଧନୀ ଯୋତା ମରାମତି କରି ଦିଏ ଯେ ସହଜେ ସେ ଛିଡ଼େ ନାହିଁ । ମଟର ଟାୟାରରେ ତିଆରି କରିଥିବା ଚପଲ ପିନ୍ଧି ରିକ୍ସା ଚାଳକମାନେ ତାକୁ ସଲାମ୍ ମାରନ୍ତି । ସେ କଟାଳ କରେନି- ଛୋଟପିଲାର ମଧ୍ୟ ଠକି ହୋଇ ଯିବାର ଆଶଙ୍କା ନ ଥାଏ । ବଜାରର ଗୋଟିଏ ମୋଚି ବୋଲି ନୁହେଁ, ଭଲ ମଣିଷ ହିସାବରେ ଧନୀର ନାମ ଅଛି ।

ରଙ୍ଗ ଓ ପୁଟ କିଣିବା ପାଇଁ ତେଣୁ ତାକୁ ସମ୍ବଳ ଅଭାବ ହେଲା ନାହିଁ । ବିଶେଷରେ ଠାକୁରଙ୍କ କାମ । ଧାରଧୁରା କରି ସେ ଆବଶ୍ୟକତା ମୁତାବକ ରଙ୍ଗ କିଣି ଆଣି ମୂର୍ତ୍ତି ଚାରୋଟିକୁ ରଙ୍ଗେଇ ଦେଲା । ବେଶ୍ ଏଣିକି ଗୋଟାଏ ବାଗକୁ ଆସିଲା ମୂର୍ତ୍ତିଗୁଡ଼ା । ଧନୀ ଆଉ କିଛି ସମୟ ନିରୀକ୍ଷଣ କରି ରହିଲା ମୂର୍ତ୍ତିଗୁଡ଼ାକୁ । ତା' ବିଚାରରେ ସେ ସବୁ ବେଶ୍ ଲୋଭନୀୟ । ଖର୍ବଂ ସ୍ଥୂଳଂ ତନୁଂ ଗଜେନ୍ଦ୍ର ବଦନଂ ଲମ୍ବୋଦର ସୁନ୍ଦରମ୍- ପେଟା ଓ ଦାନ୍ତୁରା ମଣିଷ ଓ ହାତୀ ମୁଣ୍ଡ ମିଶା ଅଦ୍ଭୁତ ସୃଷ୍ଟିଟିଏ । ଇଏ ପୁଣି ଗଣନାଂ ଈଶ- ଦେବତା ଶ୍ରେଷ୍ଠ ପୂଜନୀୟ ଗଣେଶ ।

ଗଣେଶ ପୂଜା ପୂର୍ବଦିନ ଅପରାହ୍ଣ ସୁଦ୍ଧା କେହି ଗରାଖ ଆସିଲେ ନାହିଁ । ଧନୀ ଭାବିଲା ପାଗ ଖରାପ ଥିବାରୁ କେହି ଆସୁନାହାନ୍ତି । ନିଶ୍ଚୟ ପୂଜାଦିନ ସକାଳୁ ସକାଳୁ ଆସି ଭିଡ଼ ଲଗେଇବେ । ରାତିରେ ମୂର୍ତ୍ତି ଚାରୋଟିଙ୍କୁ ଜଗି ସେଇ କ୍ୟାବିନ୍‌ରେ ସେ ଶୋଇ ରହିଲା ।

ସ୍ୱାଭାବିକ୍ ଭାବେ ସକାଳ ହେଲା । କୁକୁର ମାନଙ୍କ ବିକଳ କାତର ଆର୍ତ୍ତନାଦରେ ଗୋପବଜାର ନିଦ କ୍ରମେ ଭାଙ୍ଗୁଥିଲା । ସକାଳୁ ସକାଳୁ କେତୋଟି ଟ୍ରେକର୍ ଓ କାର କୋଣାର୍କରୁ ଛୁଟି ବଜାର ରାସ୍ତା ଦେଇ ଅତିକ୍ରମ କରିଗଲା । ବ୍ରାହ୍ମ ମୁହୂର୍ତ୍ତରୁ ଉଠି ଧନୀ ମୋଚି ନିତ୍ୟକର୍ମ ସାରି ଦେଇଥିଲା । ସକାଳୁ ସକାଳୁ ଗରାଖ ଆସିଯିବେ । ସେ ପ୍ରସ୍ତୁତ ନ ଥିଲେ ଫେରିଯାଇ ପାରନ୍ତି ।

କିନ୍ତୁ ସକାଳ କ୍ରମେ ଦିନ ପ୍ରହରରେ ପରିଣତ ହେଲା । କଅଁଳ ଗାଧୁଆବେଳ



Digitized by PPRACHIN, SOA

ଅତିକ୍ରାନ୍ତ ହୋଇ ମଧ୍ୟାହ୍ନ ଆସିଲା । ତଥାପି ମଧ ଗୋଟିଏ ହେଲେ ଗରାଖର ଦେଖା ନାହିଁ । ଧନୀ କ୍ରମେ ନିରାଶ ହୋଇ ପଡୁଥିଲେ ବି ତା'ର ଶେଷ ଆଶା ତଥାପି ନିର୍ବାପିତ ହୋଇ ନଥିଲା । କିନ୍ତୁ ପାଖ ସ୍କୁଲ ପିଲାମାନେ ସହରରୁ ଆଣିଥିବା ଗଣେଶ ପୂଜା ସାରି ତା' କ୍ୟାବିନ୍ ଦେଇ ଦଳ ଦଳ ହୋଇ ଗଲାବେଳେ ଧନୀ ବୁଝିପାରିଲା ଯେ ପୂଜା ଓ ପୁଷ୍ପାଞ୍ଜଳି ସରି ଗଲାଣି । ଆଉ ମୂର୍ତ୍ତି ବିକ୍ରୀ ହେବାର ଆଶା ନାହିଁ । ଗାଁ କ୍ଲବ୍‌ରୁ ବା ପାଖହାକ ଗାଁରୁ ଆଉ କେହି ଆସିବେ ନାହିଁ । ତା' ହାତଗଢ଼ା ଗଣେଶ ବିକ୍ରୀ ତ ହେବେ ନାହିଁ, ପୂଜା ମଧ ପାଇବେ ନାହିଁ ।

ମୂର୍ତ୍ତି ଗଢ଼ିବା ତାର କୂଳର ଦେଉସା ନୁହେଁ, ସେ ଅପରାଧ କରିଚି- ହୁଏତ ଏ ପାପରେ ସେ ନର୍କରେ ପଡ଼ିବ । ଠାକୁର ଅପୂଜା ରହିଲେ ତାର ପରିବାରର ଅମଙ୍ଗଳ ହେବ । ତାର ଭାରିଜା ଓ ପୁଅ କେତେବେଳୁ ତା କ୍ୟାବିନ୍ ପାଖରେ ପହଞ୍ଚି ଗଣେଶ ଚାରୋଟିକୁ ଚାହିଁ ରହିଛନ୍ତି । ମୋତି କହିଲା-"ତୁ କାହିଁକି ଏ ଧନ୍ଦାରେ ମୁଣ୍ଡ ଦେଲୁ ? ଏବେ ସମ୍ଭାଳ । ପୂଜା ନ ହେଲେ ପାପ ।"

କିନ୍ତୁ କି ପୂଜା ବା ସେ କରିବ ? ନା ମନ୍ତ୍ର ନା ବିଧି ବିଧାନ କିଛି ତାକୁ ଜଣା ଅଛି ? କେହି ବ୍ରାହ୍ମଣ ମଧ ତା' କ୍ୟାବିନ୍‌ରେ ପଶି ମୂର୍ତ୍ତି ପୂଜା କରିବେ ନାହିଁ । ତଥାପି ସେ ଅବଦମିତ ବେଦନା ଓ ରୁଦ୍ଧ ଉଚ୍ଛ୍ୱାସ ନେଇ ସେ ବଜାରରୁ ଭୋଗ ଓ ଧୂପ ଦୀପ କିଣି ଆଣିଲା । ମୋତି ଓ ଚେମା ତୋଳି ଆଣିଲେ କିଛି ଫୁଲ । ମୋତି ଯତ୍ନରେ ଚାରୋଟି ହାର ପ୍ରସ୍ତୁତ କଲା ଓ ଧନୀ ସେ ହାର ଚାରୋଟିକୁ ନେଇ ମୂର୍ତ୍ତି ଚାରୋଟି ଗଳାରେ ଲମ୍ୱେଇ ଦେଲା । ଝୁଣା ଧୂଆଁ ଓ ଧୂପ ଗନ୍ଧରେ କ୍ୟାବିନ୍‌ଟି ମହକି ଉଠିଲା । ଗୋଟିଏ କଦଳୀ ପତ୍ରରେ ଉଖୁଡ଼ା ଓ କାକୁଡ଼ିଗୁଡ଼ିକୁ ଏକାଠି ରଖି ସେ ଠାକୁରଙ୍କ ଆଡକୁ ମୋହିଁ ଦେଲା । ଘଣ୍ଟି, ଘଣ୍ଟା ବା ଶଙ୍ଖ କିଛି ଧ୍ୱନିତ ହେଲାନି । କେହି ପୂଜା ପାଠ କଲେନି । ସେମାନେ ତାଙ୍କ ମନର ପୁଞ୍ଜୀଭୂତ ଅସନ୍ତୋଷ ଓ ଆର୍ତ୍ତି ଠାକୁର ଚାରିଜଣଙ୍କୁ ଜଣାଉ ଜଣାଉ ଅଞ୍ଜୁଳାଏ ଲେଖାଁ ଫୁଲ ସେମାନଙ୍କ ମୁହଁ ଓ ଛାତିକୁ ଛାଟି ଦେଲେ । ଲଙ୍ଗଳା ଫୁଙ୍ଗୁଳା ଠାକୁର ମୂର୍ତ୍ତିମାନଙ୍କ ଦେହରେ ଠାଏ ଠାଏ ସେ ଫୁଲରୁ କେତୋଟି ଲାଗି ରହିଲା । କେତେ ଫୁଲ ଖସି ତଳେ ପଡ଼ିଗଲା ।

ଘୋର ତୃପ୍ତିରେ ସେମାନେ ଭୋଗ ଖାଇଲେ । କ୍ୟାବିନ୍ ପାଖୁ ଲାଗିଆସିଥିବା କୌତୂହଳୀ କେତେଜଣ ପିଲାଙ୍କୁ ଭୋଗ ବାଣ୍ଟିଲେ । ପାଖ ପଡ଼ୋଶୀ ଦୋକାନରେ ଭୋଗ ଦେଇ ଆସିଲେ । ଏସବୁ ସରିଲା ବେଳକୁ ପ୍ରାୟ ସନ୍ଧ୍ୟା ଆସିଯାଇଥିଲା । ସନ୍ଧ୍ୟାରେ ଧୂପ ଦୀପ ଦେଇ ପୁଣି ଥରେ ଆଳତି କରିବା ବିଧି ବୋଲି ଧନୀ ଜାଣିଥିଲା । ସ୍ତ୍ରୀ ମୋତି ନଥିଲେ ବି ଚେମା ସେଦିନ ତା ପାଖ ଛାଡୁ ନଥିଲା । ତା ପାଇଁ ଏହା ଥିଲା ଏକ ଅପୂର୍ବ ଅନୁଭୂତି । ଧନୀ ପାଇଁ କିଛି କମ୍ ଅନୁଭୂତି ନୁହେଁ । ମୂର୍ଖ ହେଲେ ବି ଶୁଣାଶୁଣିରେ ମନେ ରଖିଥିବା ଭାଗବତର ପଦ୍‌ଟିଏ ତା' ପାଟିରୁ ଉଚ୍ଚୁରି ପଡ଼ିଥିଲା-

"କର୍ମୁ ଅଧିକ ଯେ ଲୋଡ଼ନ୍ତି



Digitized by PPRACHIN, SOA

ଚୋର ସମାନ ଦଣ୍ଡ ପାନ୍ତି ।"

ଧନୀ ଭାବୁଥିଲା- କାହିଁକି ତା ନିଜସ୍ୱ ବୃତ୍ତି ଛାଡ଼ି ଏଥିରେ ମନବଳେଇଲା ? କେଉଁ ଗ୍ରହର ପ୍ରଭାବରୁ ତା ମନରେ ଏ ଅଦ୍ଭୁତ ଖିଆଲ ଆସିଲା ? ମୂର୍ତ୍ତି ତିଆରି କରିବା ପାଇଁ ଏପରି ନିଶା ଘାରିଲା ? ଦୁଃଖ ଅଭିମାନ ଓ କୋହରେ ମନ ତାର ନରମି ଆସୁଥିଲା । ସନ୍ଧ୍ୟା ଆଳତି ଠାକୁରଙ୍କ ଆଡକୁ ମୋହିଁ ଦେଉ ଦେଉ ସେ ନିଜର ଦୁଃଖ ଜଣାଇ ସାରିଥିଲା ସେମାନଙ୍କୁ ।

କିନ୍ତୁ ତା ପରଦିନ ମଧ୍ୟାହ୍ନ ପୂର୍ବରୁ ତାରି କେବିନ୍ ବାଟେ ହାଇସ୍କୁଲ ଓ ବାଳିକା ସ୍କୁଲର ମେଢ଼ ସାଜସଜ୍ଜାରେ ଗଲାବେଳେ ଧନୀ ତା ହାତ ଗଢ଼ା ଠାକୁରମାନଙ୍କ ସମ୍ମାରେ ତାର ଉତ୍କଟ ଦାରିଦ୍ର୍ୟର ଭେକ ଦେଖାଇ ଅଭିଯୋଗ ବାଢ଼ିଥିଲା- ତା'ର ବି ସମ୍ବଳ ଥିଲେ ସେ ଖୁବ୍ ଯାକଯମକରେ ମେଢ଼ କରି ପାରିଥାନ୍ତା । ଠାକୁରଙ୍କୁ ପ୍ରସେସନ୍‌ରେ ନେଇ ପାରିଥାନ୍ତା । କିନ୍ତୁ ସେ କ'ଣ ବା କରି ପାରିବ? ଯେମିତି ଦିଅଁକୁ ସେମିତି ପୂଜା । ଠାକୁରମାନଙ୍କୁ ଯାହିତାହି ବିସର୍ଜନ କରି ସେ ତାର କୌଣସି ଜଣାଶୁଣା ଟ୍ରଲି ରିକ୍‌ସାଚାଳକଠାରୁ ଟ୍ରଲିଟିଏ ମାଗି ଆଣିଲା । ରାସ୍ତାରେ ଯାଉଥିବା କେତେଜଣ ଚିହ୍ନା ଜଣା ଲୋକଙ୍କୁ ଡାକି ଠାକୁରମାନଙ୍କୁ ଟଣାଭିଡ଼ା କରି ଟ୍ରଲି ଉପରକୁ ଉଠାଇ ଦେଲେ । ଖୁବ୍ ଶକ୍ତ ଭାବରେ ବାନ୍ଧିଦେଲା କେତୋଟି ଦଉଡ଼ି । ତା' ପରେ ସେ ଆଗେ ଆଗେ ଓ ତା ପୁଅ ଚେମା ପଛେ ପଛେ ଟ୍ରଲିକୁ ଠେଲି ନଦୀ କୂଳକୁ ଚାଲିଗଲେ । ବାଟରେ ଚେମା ଅବଶ୍ୟ କଟାଳ କରୁଥିଲା ଗୋଟାଏ ଗଣେଶ ଘରେ ରଖିବ ବୋଲି । କିନ୍ତୁ ଧନୀ ତାକୁ ଭଲ ଭାବରେ ବୁଝେଇ ଦେଇଥିଲା ଯେ ବିସର୍ଜନ ପରେ ଠାକୁରଙ୍କୁ ଘରେ ରଖିଲେ ପାପ ହେବ । ଠାକୁର ରାଗିବେ । ଚେମା ପାପ ପୁଣ୍ୟର ତାତ୍ପର୍ଯ୍ୟ ନ ବୁଝିଲେ ବି ବାପା ମନର ଉଦ୍‌ବେଗ ବୁଝିଥିଲା । ଆଠ ବର୍ଷର ଶିଶୁ ହେଲେ ବି ସେ ଦେଖିଚି ସବୁ ଠାକୁରେ ପୂଜା ପରେ ପାଣିରେ ପଡ଼ନ୍ତି । କେହି ଟ୍ରକରେ ବୁହା ହୋଇଯାନ୍ତି ତ କେହି କାନ୍ଧରେ । କେହି ଟ୍ରଲିରେ ବି । ନଈ କୂଳରେ ସୁନ୍ଦର ମେଢ଼ଗୁଡ଼ାକ ଦାନ୍ତ ନିକଟି ପଡ଼ିରହନ୍ତି । ମାଟି ଠାକୁର ପାଣିରେ ବୁଡ଼ି ଖାଲି ପାଳ ଚେହେରା ଧରି କିଛି ସମୟ ପରେ ଭାସିଉଠନ୍ତି ଓ କୂଳରେ ଲାଗନ୍ତି । ନଈକୂଳରେ କେତେ ସେମିତି ବତା ଓ ଦଉଡ଼ିବନ୍ଧା ପାଳ ମୂର୍ତ୍ତି ପଡ଼ିରହେ । ସେଗୁଡ଼ିକୁ ଦେଖିଲେ କେହି କଳ୍ପନା କରିବେନି ଯେ ଦିନେ ସେମାନେ ମାଟି ମେଦରେ ମଖା ହୋଇ ରଙ୍ଗ ବେରଙ୍ଗ ପୁଟ ପିନ୍ଧି କେଡ଼େ ସୁନ୍ଦର ରମଣୀୟ ଦିଶୁଥିଲେ । ଧନୀ ଭାବୁଥାଏ ପାଣିରେ ପଡ଼ିଲା ପରେ ସବୁ ଠାକୁରେ ଏକାକାର । କାହା ଠାକୁର କିଏ ଚିହ୍ନିବା ବି ସମ୍ଭବ ହେବନି । ଭଲମନ୍ଦର ତାରତମ୍ୟ ବା ଆଉ କଣ ? ସବୁ ଭଲ ଆଉ ମନ୍ଦର ଅନ୍ତିମ ଇତିକଥା ହେଲା ମରଣ ।

ଠାକୁର ଚାରିଜଣଙ୍କୁ ନଈକୂଳକୁ ଆଣି ଗୋଟିକ ପରେ ଗୋଟିଏ ପାଣିରେ ଫିଙ୍ଗୁଥିଲା ଧନୀ ମୋଚି । ନିଜ ହାତ ଗଢ଼ା ମୂର୍ତ୍ତିଙ୍କୁ ପୂଜା କଲାବେଳେ ତା' ମନରେ ସେମାନଙ୍କ ପ୍ରତି ଏକ ପ୍ରକାର ମମତା ଆସି ଯାଇଥିଲା । ଏବେ ସେମାନଙ୍କୁ



Digitized by PPRACHIN, SOA

ଫିଙ୍ଗିଲାବେଳେ ସେଇ ମମତାର ହାବୁକାରେ ତା'ମନ ତରଳିଗଲା । ଶେଷ ମୂର୍ତ୍ତିକୁ ଫୋପାଡ଼ିଲା ପୂର୍ବରୁ କେତେ ମିନିଟ୍ ଖୁବ୍ ନିବିଡ଼ ଭାବରେ ସେ ତାକୁ ଜାବୁଡ଼ି ଧରିଲା, ଗେହ୍ଲା କଲା, ଚୁମା ଦେଲା; ଆଉ ପରେ ପରେ କଇଁ କଇଁ, ଶକ ଶକ ହୋଇ କାନ୍ଦି ଉଠିଲା । ପାଖରେ ଚେମା ତା' ବାପାର ଏ ଅଦ୍ଭୁତ ପରିବର୍ତ୍ତନରୁ କିଛି ବୁଝିନପାରିଲେ ବି କାବା ହୋଇ ଚାହିଁ ରହିଥାଏ । ତା'ପରେ ଦେହର ସମସ୍ତ ଶକ୍ତି ସଞ୍ଚୟ କରି ଧନୀ ଶେଷ ମୂର୍ତ୍ତିଟାକୁ ନଈକୁ ଠେଲି ଦେଲା ଓ ତା ସହିତ ନିଜେ ବୁଡ଼ଟିଏ ପକେଇଲା । ସେମିତି ଓଦା ସରସର ଲୁଗା ପିନ୍ଧି ଓ ଦେହରେ ଗାମୁଛା ଜଡ଼େଇ ଟ୍ରଲିଟିକୁ ଚଲେଇ ଫେରି ଆସିଲା ଘରକୁ । ଚେମା ଟ୍ରଲି ଉପରେ ବସିଥାଏ । ତାକୁ ଭୁଲ୍‌ରେ ଗଣେଶ ନାମରେ ଥରେ ଦି'ଥର ଡାକି ଦେଇଥିଲା ଧନୀ ମୋଚି ।

ତା' ପରଦିନ ଗୋପ ବଜାରରେ ରାଷ୍ଟ୍ର ହୋଇଗଲା ଧନୀ ମୋଚି ତା ପୁଅ ଓ ଭାରିଜାକୁ ନେଇ ସହରରୁ ଚାଲି ଯାଇଚି । ବିଚରା ଦୁଇଦିନ ଚୁଲି ଅଜଳା ଓ ଅନାହାରରେ ଥିଲା ବୋଲି କେହି କେହି ଦୁଃଖ କଲେ । କେହି କେହି କହିଲେ ଖାଣ୍ଟି ମଣିଷଟେ ଥିଲା ଧନୀ । ଗରିବ ହେଲେ କଣ ହେବ ଠାକୁରଙ୍କ ପ୍ରତି ତା'ର ଅଚଳା ଭକ୍ତି । କିଏ ଜଣେ କହିଲା କାଲି ରାତିସାରା ତା' ପୁଅ ନାମକୁ ଭୁଲି ସେ ଗଣେଶା ଗଣେଶା ହୁରି ପକାଉଥିଲା । ଯାଉ ବଡ ସହରରେ ହେଲେ ଭଲ ଦି' ପଇସା ରୋଜଗାର କରିବ । ଏଠି ଭୋକ ଉପାସରେ କେତେଦିନ ପଡ଼ି ରହିଥାନ୍ତା ?





Digitized by PPRACHIN, SOA

# ପିତାମହ

ପିତାମହ ମହାମୃତ୍ୟୁଞ୍ଜୟ ମନ୍ତ୍ର ଜପ କରୁଥିଲେ- 'ଓଁ ତ୍ର୍ୟମ୍ବକଂ ଯଜାମହେ ସୁଗନ୍ଧିଂ ପୁଷ୍ଟିବର୍ଦ୍ଧନମ୍'; କିନ୍ତୁ ଅଶୀତି ବର୍ଷୀୟ ବୃଦ୍ଧ ପିତାମହଙ୍କର ଏଇ କ୍ଷଣଭଙ୍ଗୁର ସଂସାରରୁ ସହଜ ମୁକ୍ତି ନଥିଲା । ସେ ବହୁ କୁଟୁମ୍ବୀ ପରିବାରରେ କେବଳ ଛଟପଟ ହେଉଥିଲେ । ଜୀବନସାରା ବଞ୍ଚିବାର ଖୁଦକଣିକା ସାଉଁଟିବା ସମସ୍ୟାରୁ ତାଙ୍କର ତଥାପି ନିଷ୍କୃତି ନଥିଲା ।

ଏଣେ ବିବାହ ଉତ୍ସବର ସମସ୍ତ ଆୟୋଜନ ଶେଷପ୍ରାୟ । ନିମନ୍ତ୍ରିତ ଭଦ୍ରବ୍ୟକ୍ତିମାନେ ସେଇମାତ୍ର ଆସିବାକୁ ଆରମ୍ଭ କରିଥା'ନ୍ତି । ଝିଅ ମଙ୍ଗୁଳା ସରିଥାଏ । ସମସ୍ତେ ଉତ୍ସୁକଭାବେ ବରକୁ ହିଁ ଅପେକ୍ଷା କରୁଥାନ୍ତି ।

ସବୁ ନିର୍ବିଘ୍ନରେ ସମାପ୍ତ ହେଉ, ପିତାମହ ଦୁଇଆଣ୍ଠୁ ସନ୍ଧିରେ ଭାଙ୍ଗିପଡ଼ିଥିବା ମୁଣ୍ଡଟିକୁ ଗୁଞ୍ଜି ପିଣ୍ଡାରେ ସେମିତି ବସିଥାନ୍ତି ଓ ବାରମ୍ବାର ମହାମୃତ୍ୟୁଞ୍ଜୟ ମନ୍ତ୍ର ଜପ କରୁଥା'ନ୍ତି । ମନରେ କିଛି ଆଶଙ୍କା ଉପୁଜିଲେ ସେ ବରାବର ତାହାହିଁ କରନ୍ତି ।

ସେଦିନ ତାଙ୍କ ମନରେ ଯଥେଷ୍ଟ ଆଶଙ୍କା ଦେଖାଦେଇ ସାରିଥିଲା; କାରଣ ନିର୍ଦ୍ଧାରିତ ସମୟ ଯଥେଷ୍ଟ ଅତିକ୍ରମ ହୋଇଥିଲେ ବି ବର ଓ ବରଯାତ୍ରୀମାନଙ୍କର ତଥାପି ଦେଖା ନଥିଲା । ପଡ଼ୋଶୀ ଓ ବନ୍ଧୁବାନ୍ଧବମାନେ ବାରମ୍ବାର ଗ୍ରାମ ମୁଣ୍ଡକୁ ଯାଇ ଚାହିଁ ଆସୁଥାନ୍ତି- ଦୂର ଗହୀର ବିଲ ରାସ୍ତାରେ କାଳେ ପାଲିଙ୍କି ଆସୁଥିବ, ଦୂରରୁ ଗଉଡ଼ମାନଙ୍କ ଡାକ ଶୁଭିବ; କିନ୍ତୁ ସେମିତି କିଛି ସମ୍ଭାବନା ତଥାପି ଦେଖାଯାଉ ନଥାଏ ।

ହଠାତ୍ କିଏ ଆସି ଖବର ଦେଲା ବର ଆସିବନି । ପାଲିଙ୍କି ଫେରି ଆସିଚି । ବର ବେଶବାସ ହୋଇ ପାଲିଙ୍କିରେ ବସିଲା ବେଳକୁ ବାପ ପୁଅର ବରବେଶ ଦେଖୁ ଦେଖୁ ଅତ୍ୟଧିକ ଆନନ୍ଦରେ ହଠାତ୍ ହୃତ୍‌କ୍ରିୟା ବନ୍ଦ ହୋଇଯିବାରୁ ଟଳିପଡ଼ିଛନ୍ତି ।

ଦୂର ଗାଆଁର ଆକାଶରେ ସେତେବେଳ ସଞ୍ଜର ବିଷଣ୍ଣ ମଳିନ ରେଖା ନଇଁ ଆସୁଥିଲା । ହଠାତ୍ ବିବାହର ନହବତ ସ୍ତବ୍‌ଧ ହୋଇଗଲା । ବିବାହ ଶୋଭାଯାତ୍ରା ପରିଣତ ହୋଇଗଲା ଶବ ଶୋଭାଯାତ୍ରାରେ । ଗାଁ ସାରା ସମସ୍ତଙ୍କ ଆଖିରେ ଲୁହ; ପୁଅ ବରବେଶ କାଢ଼ିପକାଇ କାନ୍ଧରେ ନାଲି ଗାମୁଛାଟିଏ ଛନ୍ଦି ହାତରେ ଢ଼ାଳ, କଟୁରୀ ଓ ନିଆଁ ଧରିଆ ଧଣି ଶବ ଆଗେ ଆଗେ ଚାଲିଥାଏ । 'ରାମନାମ ସତ୍ୟ ହାଏ'ର କରୁଣ ମୂର୍ଚ୍ଛନାରେ ଗାଆଁର ଆକାଶ ଏକାନ୍ତ ଶୋକାଚ୍ଛନ୍ନ । ପୋଷା କୁକୁରଟା ବାରମ୍ବାର କାନ୍ଦିଲା



Digitized by PPRACHIN, SOA

କାନ୍ଦିଲା ସ୍ୱରରେ ଲହରେଇ ଲହରେଇ ଭୁକିବାକୁ ଲାଗିଥାଏ । ଅତି ସାନ ପିଲାମାନଙ୍କୁ ମାଆ ମାନେ ଘରେ ରହିବାକୁ ଆକଟ କରୁଥା'ନ୍ତି । ବଡ଼ମାନଙ୍କ ମୁହଁରୁ ଶବ୍ଦଟିଏ ବି ଉଚ୍ଚାରିତ ହେଉ ନଥାଏ । ତେଣେ ଖନ୍ଦାଶାଳରେ ବରଯାତ୍ରୀଙ୍କ ପାଇଁ ଆୟୋଜିତ ବଳକା ଖାଦ୍ୟ ସାମଗ୍ରୀକୁ ନିଃଶଙ୍କ ଭାବରେ ଗଡ଼େଇ ଗୁଡ଼େଇ କେତୋଟି କୁକୁର ଖାଇବାରେ ବ୍ୟସ୍ତ ଥା'ନ୍ତି । ତାଙ୍କ ଆଡକୁ କାହାରି ଧ୍ୟାନ ନଥାଏ, ସମସ୍ତେ ଆସି ଦାଣ୍ଡରେ । ଘରେ ମାଇପିଲୋକମାନେ ମୁହଁମାଡ଼ି କନ୍ଦାକଟା କରୁଥା'ନ୍ତି । ବରର ବୋଉ ସତେ ଯେପରି କତରାଲଗା । ତା'ର ଉଠିବାକୁ ଜ୍ଞ' ନଥାଏ । ରୋଷେଇୟା ଗ୍ରାମବାସୀମାନେ ଖଞ୍ଜାଶାଳ ଛାଡ଼ି ଶବଯାତ୍ରାରେ ଯୋଗ ଦେଇଥା'ନ୍ତି ।

ପିତାମହ ଦାଣ୍ଡପିଣ୍ଡାରେ ପଥର ପରି ବସି ରହିଥିଲେ । ସତେ ଯେପରି ସେ କୌଣସି ଶବ୍ଦ ବା ଦୃଶ୍ୟ ବାରି ପାରୁନାହାନ୍ତି । ତାଙ୍କୁ ଅନ୍ୟମାନେ ବୁଝେଇଲାବେଳେ ମୁଁ ଓ ଡାକ୍ତର ସୋମନାଥ ଦୁଇଟି ସାଇକେଲଧରି ଦାଣ୍ଡକୁ ବାହାରି ପଡ଼ିଲୁ । ପିତାମହଙ୍କୁ ଚାହିଁଲି ସେ ଅତି ଅସହାୟଭାବେ ମୋରି ଆଡ଼କୁ ଚାହିଁଛନ୍ତି । ତାଙ୍କର ସବୁଦିନ ଧାରଣା ଯେ ମୁଁ ଅସାଧ୍ୟ କାମକୁ ବି ସାଧନ କରିପାରିବି । ତାଙ୍କର ସେଥିପାଇଁ କମ୍ ଗର୍ବ ମଧ୍ୟ ନଥିଲା । ଆମ ପାଞ୍ଚ ଭାଇଙ୍କ ମଧ୍ୟରେ ମୁଁ ତୃତୀୟ ହୋଇଥିବାରୁ ମୋତେ ସେ ଅର୍ଜୁନ ବୋଲି କହୁଥିଲେ । ମୁଁ ବାହାରି ପଡ଼ିବାରୁ ଲକ୍ଷ୍ୟକଲି ତାଙ୍କ ବିଷଣ୍ଣ ଶୋକାତୁର ମୁହଁରେ ଆଶାର କ୍ଷୀଣ ସୂଚନାଟିଏ ସଞ୍ଚାରିତ ହୋଇଗଲା । ନିମନ୍ତ୍ରିତ ଭଦ୍ରବ୍ୟକ୍ତିମାନେ ତାଙ୍କୁ ବୁଝାଉଥା'ନ୍ତି ଧୈର୍ଯ୍ୟଧରିବା ପାଇଁ । କେହି କେହି ଧୀରେ ଧୀରେ ନିଷ୍କ୍ରାନ୍ତ ମଧ୍ୟ ହୋଇ ଯାଉଥା'ନ୍ତି । ପିତାମହ କିନ୍ତୁ ଅସ୍ୱାଭାବିକଭାବେ ମୌନ । ତାଙ୍କର କଥା କହିବାକୁ ବି ସାମର୍ଥ୍ୟ ନଥାଏ । ଏତେବଡ଼ ଧକ୍କାରେ ସେ ପ୍ରାୟ ମୂକ ପାଲଟି ଯାଇଥାନ୍ତି ।

ଆମେ ଖୁବ୍ କ୍ଷିପ୍ର ଗତିରେ ସାଇକେଲ୍ ଚଳେଇ ପ୍ରାୟ ବାରମାଇଲ ରାସ୍ତାକୁ ମାତ୍ର ତିରିଶ ମିନିଟ୍ ମଧ୍ୟରେ ଅତିକ୍ରମ କରିଥିଲୁ । ଗ୍ରାମରେ ପହଞ୍ଚିଲା ବେଳକୁ ପରିବେଶ ଅସ୍ୱାଭାବିକଭାବେ ନୀରବ ଓ ଶୋକାଚ୍ଛନ୍ନ ଥିଲା । ବର ଘର ସ୍ତ୍ରୀଲୋକମାନେ ଗଳା ଫଟେଇ ବାହୁନିବାରେ ଲାଗିଥିଲେ । ପଡ଼ୋଶୀ ଘର ଦାଣ୍ଡ ପାହାଚରେ ଠିଆ ହୋଇଥିବା କିଶୋରୀଟିଏ କହିଲା ଯେ ଶବ ଶ୍ମଶାନକୁ କେତେବେଳୁ ଗଲାଣି ।

ମୋର ସବୁ ଦମ୍ଭ ତୁଟି ଯାଉଥିଲା । ଯଦି ବର ମୁଖାଗ୍ନି ଦେଇ ସାରିଥିବ ତେବେ କଥା ସରିଲା । ମୋର ସବୁ ଶ୍ରମ ପଣ୍ଡ ହୋଇଯିବ । ମୁଁ ଓ ଡାକ୍ତର ସୋମନାଥ ମୁହୂର୍ତ୍ତେ ବି ନଷ୍ଟ ନ କରି ଶ୍ମଶାନକୁ ସାଇକେଲ ଚଳେଇ ନେଲୁ । ସେତେବେଳକୁ ଶବକୁ ଜୁଇରେ ଲଦି ଦିଆଯାଇଥାଏ ଓ ତା'ର ମୃତପିଣ୍ଡ ଉପରେ ବେଶ୍ କେତୋଟି ଓଜନିଆ କାଠ ଲଦା ସରିଥାଏ । କେବଳ ଅପେକ୍ଷା ଥାଏ ମୁଖାଗ୍ନି ପାଇଁ । ଖଣ୍ଡେଦୂରରେ ଗୋଟିଏ କିଆବୁଦା ମୂଳେ ମୁହଁମାଡ଼ି ପଡ଼ି ଧକେଇ ଧକେଇ କାନ୍ଦୁଥାଏ ବର । ବାପାର ବଡ଼ପୁଅ ଭାବ ସେ ହିଁ



Digitized by PPRACHIN, SOA

କ୍ରିୟା ଧରିବାକୁ ବାଧ- ସେ ଦେବ ମୁଖାଗ୍ନି ।

ଶ୍ମଶାନରେ ସମସ୍ତେ ମୋତେ ଦେଖି ଏକ ପ୍ରକାର ବିସ୍ମିତ ହୋଇଗଲେ । ମୁଁ ମୁହୂର୍ତ୍ତେ ବି ନଷ୍ଟ ନକରି ହାତଯୋଡ଼ି ଠିଆହୋଇ ଗୁହାରି କଲି- "ଆପଣମାନେ ଆମ ସମାଜର ବିଶିଷ୍ଟ ବ୍ୟକ୍ତି- ମୋର ସାମାନ୍ୟ ମାଗୁଣି ଅଛି । ଆପଣମାନଙ୍କୁ ମୁଁ ଆଉଜଣେ ଅଶି ବର୍ଷର ବୃଦ୍ଧ ମୋର ପିତାମହଙ୍କ ପାଇଁ ହାତଯୋଡ଼ି ମାଗୁଣି କରୁଛି । ବରର ସାନଭାଇ ମୁଖାଗ୍ନି ଦିଅନ୍ତୁ-ପଣ୍ଡିତ ଓ ଶାସ୍ତ୍ରଜ୍ଞ ମାନଙ୍କୁ ଡାକି ପଚାରିବା-ଯଦି କିଛି ବ୍ୟବସ୍ଥା ଥାଏ ସେ କହିବେ- ଏଇ ଧକ୍‌କାରେ ପିତାମହ ଯଦି ଟଳି ପଡ଼ନ୍ତି- ଅପଣମାନେ ତାଙ୍କ ଜୀବନ ରକ୍ଷା କରନ୍ତୁ-ମୁଁ ଆସିବା ବେଳେ ସେ ପିଣ୍ଡାରେ ବେହୋସ ହୋଇ ପଡ଼ିଥିଲେ- ସେ ବଞ୍ଚିବେ କି ନାହିଁ ସନ୍ଦେହ । ମଙ୍ଗୁଳା କନ୍ୟାର ବିଭାଘର ନହେଲେ ଆମ ସମାଜରେ ତାର ଅବସ୍ଥା କ'ଣ ହେବ ? ଏତେବଡ଼ ଆନନ୍ଦ ପାଇଁ ବରର ବାପ ଅପେକ୍ଷା କଲେ ନାହିଁ, ବର୍ତ୍ତମାନ କନ୍ୟାର ବୁଢ଼ା ବାପାଙ୍କୁ ରକ୍ଷା କରିବା ଦାୟିତ୍ୱ ଆପଣମାନଙ୍କର" ।

ମୁଁ କିପରି ଏତେ କଥା ସରଳ ତରଳ ଭାବରେ ଓ ଶୋକାୟିତ ଛନ୍ଦରେ ସେଦିନ କହିପାରିଥିଲି ଆଜି ଭାବିଲେ ପ୍ରକୃତରେ ବିସ୍ମିତ ହୁଏ । ଅନ୍ୟ ଗ୍ରାମର ମଶାଣିରେ ପଶି ମୁଁ ଯେ ଅନଧିକାର ପ୍ରସଙ୍ଗ ଉତ୍‌ଥାପନ କରୁଛି ଏଥିପାଇଁ ଜଣେ ଦି'ଜଣ ଉତ୍‌କ୍ଷିପ୍ତ ହୋଇ ଉଠିଥିଲେ । ବରର ମାମୁଁ ହଠାତ୍ ଉତ୍ତେଜିତ ହୋଇ କହିଲେ-" ମୋ ଭିଣୋଇ ମରି ଜୁଇରେ ଲଦା ହେଲାଣି; ଭଉଣୀ ହାତର କାଚ ଭାଙ୍ଗି ବେହୋସ ହୋଇ ପଡ଼ିଚି । କେଉଁ ସରାଗରେ ଏ ବିଭାଘର ହେବ ?"

କିଏ ଜଣେ କହିଲେ- ବଡ଼ପୁଅ ଭାବରେ ରବି ପ୍ରେତକୃତ୍ୟ କରିବାକୁ ବାଧ୍ୟ । ତା' କାନ୍ଧରେ ବର୍ତ୍ତମାନ ପ୍ରେତ ବସିଚି ଓ ବର୍ଷକ ଯାଏ ଯେ କୌଣସି ଶୁଭ କର୍ମ ନିଷେଧ । ବିଭାଘର ପ୍ରଶ୍ନ ଉଠୁଚି ବା କାହିଁକି ?

ତେଣେ ଶବ ସଂସ୍କାର ବିଳମ୍ବିତ ହେଉଚି ବୋଲି କେହି କେହି ବିରକ୍ତ ହୋଇ ଉଠୁଥାନ୍ତି । ମୁଁ କିନ୍ତୁ ଅବିଚଳିତ ଭାବରେ ଶ୍ମଶାନରେ ସେହିପରି ହାତ ଯୋଡ଼ି ଠିଆ ହୋଇଥାଏ ଓ ଧୈର୍ଯ୍ୟର ପରୀକ୍ଷା ଦେଉଥାଏ ।

ଜଣେ ବୟସ୍କ ମୁରବୀ ଲୋକ କହିଲେ ସବ୍ୟସାଚୀ ବାବୁ ଯାହା କହୁଚନ୍ତି, ତାହା ହିଁ ହେଉ । ଆମର ସେଥିରେ କ୍ଷତି କେଉଁଠି ? ବରର ସାନଭାଇ ମୁଖାଗ୍ନି ଦେଉ । ତେଣିକି ପଣ୍ଡିତଙ୍କୁ ପଚାରି ଶାସ୍ତ୍ର ବିଚାର ଅନୁସାରେ ଯଦି ବିଭାଘର ହୋଇପାରେ ତେବେ ଦୁଇକୁଳକୁ ହିତ ।

ମୋ ଆଖିରୁ ଦୁଇଧାର ଆନନ୍ଦାଶ୍ରୁ ନିଗିଡ଼ି ପଡ଼ିଲା । ସତେ ଅବା ମା' ସରସ୍ୱତୀ ମୋ ଗୁହାରି ଶୁଣି ଏକ ଅପରିଚିତ ବୃଦ୍ଧଙ୍କ କଣ୍ଠରେ ବସିଗଲେ- ମୋର ଇଚ୍ଛା ଓ ମାଗୁଣି ଚରିତାର୍ଥ ନ ହେବା ପାଇଁ ଆଉ ବାଟ ନଥିଲା । ଏକ ପ୍ରକାର ନିଷ୍ପତ୍ତି ହୋଇଗଲା ଓ ମୁଁ



Digitized by PPRACHIN, SOA

ଗ୍ରାମ ମୁରବୀ ମାନଙ୍କ ପରାମର୍ଶ ମତେ ବରକୁ ଶ୍ମଶାନରୁ ଉଠେଇ ଧରି ଧରି ଗ୍ରାମ ଦାଣ୍ଡକୁ ଆସିଲି । ପଣ୍ଡିତଙ୍କୁ ଡକାଗଲା । ଶାସ୍ତ୍ରବିତ୍ ବୃଦ୍ଧ ପଣ୍ଡିତଙ୍କ ନିଷ୍ପତ୍ତି ଓ ବ୍ୟବସ୍ଥା ସେ ଗ୍ରାମ କାହିଁକି ସେ ଅଞ୍ଚଳ ପାଇଁ ଥିଲା ଅପରିହାର୍ଯ୍ୟ । ମୋତେ ପଣ୍ଡିତେ ମଧ୍ୟ ବହୁ ଆଗରୁ ଜାଣିଥିଲେ । ମୋର ପିତାମହଙ୍କ ପ୍ରତି ତାଙ୍କର ଥଲା ଅସୀମ ସମ୍ମାନ । ଆମ ଅଞ୍ଚଳରେ ପିତାମହ ଥିଲେ ଜଣେ ଜଣାଶୁଣା କର୍ମକାଣ୍ଡବିତ୍ ବୈଦିକ ବ୍ରାହ୍ମଣ । ଉଚ୍ଚ ଉଦାର ମାନବିକତାରେ ସେ ଚହଟି ଉଠୁଥିଲେ । ଆମମାନଙ୍କ ପାଇଁ ସେ ଥିଲେ ପ୍ରେରଣାର ଉତ୍ସ । ଅଶିବର୍ଷରେ ମଧ୍ୟ ଜନସାଧାରଣ ତାଙ୍କ ନିଷ୍ପତ୍ତିକୁ ନ୍ୟାୟ ନିଶାପରେ ଅଭ୍ରାନ୍ତ ବୋଲି ସମ୍ମାନ ଦେଉଥିଲେ ।

ପଣ୍ଡିତ ମହାଶୟ ଶାସ୍ତ୍ର ଘାଣ୍ଟିଲେ । ସେତେବେଳକୁ ରାତି ଚାରି ଘଡ଼ି ହେବ- ଗ୍ରାମସାରା ଅନ୍ଧାର ହେଲେ ବି ବର ଘରର ଦାଣ୍ଡରେ ଦିକିଦିକି ହୋଇ ଜଳୁଥିବା ବିଜୁଳିବତୀ ତଳେ ଶାସ୍ତ୍ରର ପୃଷ୍ଠାପରେ ପୃଷ୍ଠା ଓଲଟାଉଥିଲେ ପଣ୍ଡିତ ମହାଶୟ । ମନୁ, ପରାଶର, ଯାଜ୍ଞବଲ୍କ- କେତେ ସଂହିତା ପ୍ରଣେତା, କେତେ ପରସ୍ପର ବିପରୀତ ଚିନ୍ତା ଓ ତର୍ଜମାର ସମାହାରରେ ଭାରତୀୟ ସଂସ୍କୃତିର ଅନନ୍ତ ସ୍ରୋତ କେଉଁ ବିସ୍ମୃତ ଅତୀତରୁ ଗଡ଼ି ଆସିଚି- କ୍ଷୀଣସ୍ରୋତ କ୍ରମେ ମହାସ୍ରୋତରେ ହୋଇଛି ରୂପାନ୍ତରିତ । ବେଦରୁ ବ୍ରାହ୍ମଣ, ବ୍ରାହ୍ମଣରୁ ଉପନିଷଦ, ସଂହିତା, ଆରଣ୍ୟକ କେତେ ନଜିର, କେତେ ସମସ୍ୟା ଓ କେତେ ସମାଧାନର ପ୍ରଚେଷ୍ଟା ।

ପଣ୍ଡିତ ମହାଶୟ ଅତି ହତାଶ ସ୍ୱରରେ କହିଲେ "ନା, ସେପରି କୌଣସି ବ୍ୟବସ୍ଥା ମୋର ସ୍ମରଣକୁ ଆସୁନାହିଁ । ପିତାର ମୃତ୍ୟୁରେ ସମସ୍ତ ମଙ୍ଗଳ କର୍ମ ସ୍ଥଗିତ ହେବା ହିଁ ଶାସ୍ତ୍ର-ସମ୍ମତ ।"

ମୁଁ କ୍ଷୀଣ ପ୍ରତିବାଦର ଗୁଞ୍ଜରଣଟିଏ ଉଠାଇଥିଲି । କୋମଳ କଣ୍ଠରେ ନିବେଦନ କଲି- "ପଣ୍ଡିତ ମହାଶୟ, ଆପଣ ମୋର ପିତୃପ୍ରତିମ । ଆପଣ ନିଶ୍ଚୟ ଜାଣନ୍ତି ସମାଜରେ ଯେଉଁଠି ଯେତେବେଳେ ସମସ୍ୟା ସୃଷ୍ଟି ହୋଇଛି ଆମର ସ୍ମୃତିକାରମାନେ ତାର ସମାଧାନର ପନ୍ଥା ନିରୂପଣ କରି ଯାଇଛନ୍ତି । ଏପରି କୌଣସି ସମସ୍ୟା ନାହିଁ ଯାହା ଶାସ୍ତ୍ରରେ ବିଧିସମ୍ମତ ସମାଧାନର ଅଙ୍ଗୀକାର ପାଇନାହିଁ । ଆପଣ ହୁଏତ ଏଇ ମୁହୂର୍ତ୍ତରେ ସେ ଶ୍ଳୋକକୁ ସ୍ମରଣ କରି ପାରୁନାହାନ୍ତି- କିନ୍ତୁ ନିଶ୍ଚୟ କୌଣସି ନା କୌଣସି ସ୍ମୃତିକାର ଏପରି ସମସ୍ୟା ସମାଧାନ କରି ଯାଇଥିବେ । ଆପଣ ଆହୁରି ମନେ ପକାନ୍ତୁ- ନିଶ୍ଚୟ ଆପଣଙ୍କ ସ୍ମରଣକୁ ଆସିବ ।"

ପଣ୍ଡିତ ମହାଶୟ କିଛି କହିବା ପୂର୍ବରୁ ସେ ଅଞ୍ଚଳର ବିଶିଷ୍ଟ ସମ୍ମାନାସ୍ପଦ ବ୍ୟକ୍ତି ସେଖ୍ ସଲିମ୍ ମୋ ପକ୍ଷ ଅତି ପ୍ରବଳ ଭାବେ ସମର୍ଥନ କରି ବସିଲେ । ମୁଁ ବିସ୍ମିତ ହୋଇ ତାଙ୍କ ମୁହଁକୁ ଚାହିଁଲି । ସେ ମୋ ପାଇଁ ସେତେବେଳେ ଓ ସେଇ ଅବସ୍ଥାରେ



Digitized by PPRACHIN, SOA

ମନେହେଲେ ଜଣେ ଦୁର୍ଲଭ ଦେବଦୂତ । ତାଙ୍କ ଗୌର ମୁଖଶ୍ରୀରେ କୃଷ୍ଣଶ୍ମଶ୍ରୁ ମୋତେ ବେଶ୍ ଅଭିଭୂତ କରି ଦେଇଥିଲା ।

ପଣ୍ଡିତ ମହାଶୟ ବର୍ତ୍ତମାନ ବିଧାନ ଦେଲେ- ଅତି ଅଶାଜନକ ଭାବେ ମୋର ପ୍ରାଣର ପ୍ରତିଧ୍ୱନି ତାଙ୍କରି ମୁହଁରେ ଫିଟିପଡ଼ିଲା -"ବର ସଦ୍ୟ ଶୌଚ ହେବ, କ୍ଷୌର କର୍ମ ସମାପନାନ୍ତେ ସ୍ନାନ ଓ ମାର୍ଜ୍ଜନ ସାରି ନୂତନ ବସ୍ତ୍ର ଓ ଉପବିତ ପରିଧାନ କରିବ-କିନ୍ତୁ ବେଶ ହେବ ନାହିଁ । ସାଧାରଣ ନୂତନ ବସ୍ତ୍ର ପରିଧାନ କରି ବାରିକ ଓ ପୁରୋହିତଙ୍କ ସହିତ ତୁମ ଗ୍ରାମକୁ ଯାତ୍ରା କରିବ- ସେଠାରେ କୌଣସି ମହିଳା (ଯେ ତୁମର ସମ୍ପର୍କୀୟା ନୁହନ୍ତି) ସେ ବରକୁ କୋଡ଼ରେ ବସେଇ ଦଧିଭାତ ସମାପନାନ୍ତେ ବର ବେଦୀକୁ ଯାତ୍ରା କରିବ । ଏଣିକି ଏ ସବୁ ତୁମ ଦାୟିତ୍ୱ । ବର ଘରୁ କେହି ଯିବେ ନାହିଁ। ପ୍ରଭାତ ପୂର୍ବରୁ ଆଜି ତିଥିରେ ବିଭାଘର ନ ହେଲେ ଅମଙ୍ଗଳ ହେବ ।"

ମୁଁ ଆନନ୍ଦରେ ବିଗଳିତ ହୋଇ ପଡୁଥିଲି । କିନ୍ତୁ ରାତ୍ରି ସେତେବେଳକୁ ଦୁଇପ୍ରହର ଅତିକ୍ରମ କରିସାରିଥିଲା । ଦୀର୍ଘ ବାର ମାଇଲ ରାସ୍ତା- ସାଇକେଲ୍‌ରେ ଆସିବା ହୁଏତ ଦିନବେଳେ ସମ୍ଭବ । କିନ୍ତୁ କୃଷ୍ଣ ତ୍ରୟୋଦଶୀର ଘନଅନ୍ଧକାର ମଧ୍ୟରେ ଏ ମୋ ପାଇଁ ଥିଲା ଏକ ଅନତିକ୍ରମଣୀୟ ଆହ୍ୱାନ ।

କିନ୍ତୁ ପିତାମହଙ୍କୁ ମନେ ପକାଇ ମୋ ଭିତରେ ଯଥେଷ୍ଟ ଶକ୍ତି ସଞ୍ଚାରିତ ହେଉଥିଲା । ସେ ସବୁବେଳେ କହୁଥିଲେ ମୋ ପାଇଁ ଅସାଧ୍ୟ କିଛି ନାହିଁ । ଏହା ମୋ ପାଇଁ ପରୀକ୍ଷା ନୁହେଁ ତ ଆଉ କ'ଣ ? ମନେ ପଡ଼ିଲା ମୋର ପିଲାଦିନ । ପିଳେହୀପେଟା, ମେଲେରିଆ ରୋଗାକ୍ରାନ୍ତ ଚଉଦ ବର୍ଷର କିଶୋରକୁ କାଖେଇ ସେ ଛ'ମାଇଲ ରାସ୍ତା ଅତିକ୍ରମ କରିଥିଲେ । ମୋର ସ୍କୁଲ ମେସ୍‌ରୁ ଗ୍ରାମ- କି ଅଦ୍ଭୁତ ମାନସିକ ବଳ ତାଙ୍କର । ଆଜି ଜରାଜୀର୍ଣ୍ଣ ଅସ୍ଥି କଙ୍କାଳସାର ଅଶୀତି ବର୍ଷୀୟ ବୃଦ୍ଧ ପିତାମହ- ବସୁଛନ୍ତି ବେକ ଓ ମୁହଁଭାଙ୍ଗି-ସତେ ଯେପରି କ୍ଳାନ୍ତଶ୍ରାନ୍ତ ବୃଦ୍ଧ ଶକୁନଟିଏ ତାର ନିଜ ମୁହଁ ଓ ଅଣ୍ଟାକୁ ତାର ଡେଣା ଭିତରେ ଗୁଞ୍ଜି ଦେଇଚି- କଥା ନାହିଁ, ଆଳାପ ନାହିଁ- ନିଶବ୍ଦ ଭାବରେ ଚିନ୍ତା କରୁଚି ପରିବାର କଥା, ପିଲାମାନଙ୍କ ଭବିଷ୍ୟତ । ଜୀବନ ପ୍ରଦୀପରୁ ଆୟୁଷର ତୈଳ ସରି ସରି ଆସୁଚି ।

ରାତ୍ରି ଅର୍ଦ୍ଧେକରୁ ଅତିକ୍ରାନ୍ତ ହୋଇ ଯାଇଥାଏ । ଏଇ ପ୍ରହରରେ କେଉଁଠୁ କି ବ୍ୟବସ୍ଥା କରି ମୁଁ ବରକୁ ନେଇ ପାରିବି, ପୁଣି ବର ସାଙ୍ଗରେ ବାରିକ ଓ ପୁରୋହିତ। ସାଇକେଲ୍‌ରେ କଣ ବରକୁ ନିଆଯାଏ ? ଅନେକ ବେଳୁ ଦିନ ଥାଉଁ ଥାଉଁ ଗଉଡ଼ ଓ ପାଲିଙ୍କି ଫେରିଯାଇଛନ୍ତି । ଶଗଡ଼ ଗାଡ଼ି ବୁଲାଣି ରାସ୍ତାରେ ଗଲେ ଦିନ ନଟା ପୂର୍ବରୁ ପହଞ୍ଚିବନି । ମୁଁ ନିରୁପାୟ ହୋଇ ପଡୁଥିଲି, କିନ୍ତୁ ଭାଙ୍ଗି ପଡ଼ି ନଥିଲି । ରାତି ସେତେବେଳକୁ ୨ଟା ହେବ । ଆମେ ଦୁହେଁ ପ୍ରାୟ ଛ'ମାଇଲ ଦୂରବର୍ତ୍ତୀ ବ୍ଲକ ଅଫିସକୁ



Digitized by PPRACHIN, SOA

ଯାଇ କ୍ଳାନ୍ତ ହୋଇ ପଡ଼ିଥିଲୁ । ରାତିର ଏଇ ପ୍ରହରରେ ମୋତେ ଦେଖି ମୋର ପରିଚିତ ବି.ଡ଼ି.ଓ ବ୍ୟସ୍ତ ହୋଇ ପଡ଼ିବା ସ୍ୱାଭାବିକ । ବିନା ଦ୍ୱିଧାରେ ସେ ତାଙ୍କ ଜିପ୍ ଓ ସେଥିରେ ଆବଶ୍ୟକ ପରିମାଣ ଇନ୍ଧନ ଦେଇଥିଲେ । କିନ୍ତୁ ତାଙ୍କ ନିଜ ଡ୍ରାଇଭର ସେଦିନ ଷ୍ଟେସନରେ ନଥିବାରୁ ଗୋଟିଏ ଡ୍ରାଇଭର ଯୋଗାଡ଼ କରିବାକୁ ଆମକୁ ବେଶ୍ କିଛି ସମୟ ଲାଗିଥିଲା । ମୁଁ ଖାଲି ଭଗବାନଙ୍କୁ ଡାକୁଥାଏ, ତାଙ୍କର ଇଚ୍ଛା ବିନା ଏ ସବୁ ଅସାଧ କାର୍ଯ୍ୟ ଯେ ସାଧନ ହେବା ଅସମ୍ଭବ । କିନ୍ତୁ ମନେ ମନେ ଉଲ୍ଲସିତ ହେଉଥାଏ ଭଗବାନଙ୍କ ଅସୀମ ଦୟାର ପ୍ରକାଶମାନ ସ୍ୱରୂପକୁ ଉପଲବ୍ଧି କରି । ଚରାଚର ସମସ୍ତ ଜୀବ ଓ ଜଗତକୁ ଯେ ପରିଚାଳିତ କରୁଛନ୍ତି ଏ ରାତ୍ରିରେ ସେ ବି ଶୋଇ ନାହାଁନ୍ତି । ସେ ନିଶ୍ଚୟ କେଉଁଠି ଆମ ଅଲକ୍ଷ୍ୟରେ ରହି ମୋତେ ଓ ମୋ ପିତାମହଙ୍କୁ ପରୀକ୍ଷା କରୁଛନ୍ତି- ପରୀକ୍ଷା କରୁଛନ୍ତି ଆମର ଧୈର୍ଯ୍ୟ ଓ ସାହସକୁ । ଗୋଟିକ ପରେ ଗୋଟିଏ ଅସୁବିଧାକୁ ଅତିକ୍ରମ କରି ଗଲାବେଳେ ମୁଁ ତାଙ୍କରି ସର୍ବମୟ ସତ୍ତାକୁ ଅଧିକରୁ ଅଧିକ ଉପଲବ୍ଧି କରୁଥାଏ ଓ ମୋ ମନର ସଂକଳ୍ପ ଅଧିକ ଦୃଢ଼ୀଭୂତ ହେଉଥାଏ ।

ବରକୁ ନେଇ ଆମେ ଆମ ଗ୍ରାମ ମୁଣ୍ଡରେ ପହଞ୍ଚିଲା ବେଳକୁ ଖୁବ୍‌ଜୋର ଅସରାଏ ବର୍ଷା କାଟିଦେଲା । ଏଇ ବର୍ଷା ଯଦି ଅଧଘଣ୍ଟାଏ ପୂର୍ବରୁ ହୋଇଥାନ୍ତା ତେବେ ନାଳବନ୍ଧ ମାଟି ରାସ୍ତାରେ ଜିପ୍ ହୁଏତ ଆସିପାରି ନଥା'ନ୍ତା । ମୁଁ ଆଉଥରେ ସେଇ ଅଦୃଶ୍ୟ ସର୍ବମୟ କର୍ତ୍ତାଙ୍କ ଉଦ୍ଦେଶ୍ୟରେ ମୋର ନୀରବ ଆତ୍ମ ସମର୍ପଣ ଜ୍ଞାପନ କଲି । କୁମ୍ଭାଟୁଆ ଓ କୁଆଙ୍କ ରଡ଼ି ଶୁଣିବାକୁ ମିଳିଲା ଓ ପୂର୍ବ ଦିଗ୍‌ବଳୟ କ୍ରମେ ଫର୍ଚ୍ଚା ହୋଇ ଆସିଲା । ରାତି ପାହି ଆସୁଚି, ପୂର୍ବ ଆକାଶର ପାହାନ୍ତିଆ ତାରା ଦାଉ ଦାଉ ଝଟକୁଛି । ଗ୍ରାମବାସୀମାନଙ୍କର ତଥାପି ନିଦ ଭାଙ୍ଗିନାହିଁ । ଗ୍ରାମ ସୀମାକୁ ଜିପ୍‌ଟା ଆସିବାର ଶବ୍ଦରେ କେହି କେହି ହୁଏତ ଉଠି ପଡ଼ିଛନ୍ତି । ମୁଁ ଗ୍ରାମର ଜଣେ ସମ୍ପର୍କୀୟଙ୍କ ଘରେ ବର, ବାରିକ ଓ ପୁରୋହିତ ରହିବା ବ୍ୟବସ୍ଥା କରି ଆମ ଘରକୁ ଆସିଲା ବେଳକୁ ଦେଖେତ ପିତାମହ ଠିକ୍ ସେଇ ପିଣ୍ଡାରେ ଓ ସେଇ ସ୍ଥାନରେ ବସି ମହା ମୃତ୍ୟୁଞ୍ଜୟ ମନ୍ତ୍ର ଜପୁଛନ୍ତି । ମୋ ମୁହଁରୁ ବର ଆସିଥିବା ବାର୍ତ୍ତାଟି ଶୁଣିବାମାତ୍ରେ ତାଙ୍କର ଅନ୍ତର ଆନନ୍ଦରେ ସେ କୁରୁଳି ଉଠୁଥିଲା ମୁଁ ତାଙ୍କ ମୁହଁର ରେଖାବଳୀରେ ସ୍ପଷ୍ଟ ଅନୁଭବ କରିପାରିଲି । ମାତ୍ର କେତେ ମିନିଟ୍ ମଧ୍ୟରେ ବାଜାବାଲା ବାଜା ବଜାଇ ବର ଆଗମନର ବାର୍ତ୍ତା ଘୋଷଣା କରିଦେଲେ । ଗୋଟିଏ ନଡ଼ିଆ ଚାଞ୍ଚଡ଼ା ଉପରେ ଶୋଇ ଯାଇଥିବା ଶଙ୍ଖୁଆଟି ମଙ୍ଗଳ ଶଙ୍ଖ ଫୁଙ୍କିବାରେ ଲାଗିଗଲା । ବିବାହର ଆୟୋଜନରେ ସମସ୍ତ ପରିବାର ମୁଖର ହୋଇ ଉଠିଲେ । + + +

ଅନେକ ଦିନ ପରେ ପିତାମହଙ୍କ ସ୍ମୃତିମନ୍ଦିର ପାଖରେ ଠିଆ ହୋଇ ନୀରବରେ ଅଶ୍ରୁ ବିସର୍ଜନ କରୁଥିଲି । ସମୟର ଦନ୍ତାଘାତରେ ସ୍ମୃତି ମନ୍ଦିରର କାଷ୍ଠସ୍ତୂପଟି କ୍ରମେ ନଷ୍ଟ ହୋଇ ଯାଉଥିଲା- ଦିନେ ହୁଏତ ଉଇ ଓ ମାଟି ଦ୍ୱାରା ସମ୍ପୂର୍ଣ୍ଣ କବଳିତ ହେବ- ପିତାମହଙ୍କ



Digitized by PPRACHIN, SOA

ଶେଷସ୍ମୃତି ନିଭିଯିବ । ତାଙ୍କ ମୃତ୍ୟୁ ବାର୍ଷିକୀରେ ମୁଁ ବରାବର ସହରରୁ ଆସି ଶ୍ମଶାନର ଏଇ କାଷ୍ଠସ୍ତୂପ ପାଖରେ ଘଡ଼ିଏ ଠିଆ ହୋଇଥାଏ- ଆଜି ବି ଠିଆ ହୋଇଛି ଆଉ ଭାବୁଛି ତାଙ୍କର ଅସୀମ ବିଶ୍ୱାସର କି ପତିଆରା ମୁଁ ବହନ କରିପାରିଛି ? ଆଖିର ଧାର ଧାର ଅଶ୍ରୁ ନିବେଦନ କରି ମୁଁ ଯେପରି ତାଙ୍କୁ ଓ ତାଙ୍କ ଅଶରୀରୀ ଆତ୍ମାକୁ ଜଣାଇ ଦେବାକୁ ଚାହୁଁଥିଲି- ପିତାମହ, ଦେଖ ମୁଁ କେଡ଼େ ଦୁର୍ବଳ, କେଡ଼େ ଅଶକ୍ତ, କେଡ଼େ ବିଷଣ୍ଣ । ସଂସାର ମୋର ସମସ୍ତ ଶକ୍ତି, ସାମର୍ଥ୍ୟକୁ ଚିପୁଡ଼ି ନେଇଛି, ଆଉ ଦିନକୁଦିନ ମୁଁ ମୋର ସାହସ, ପ୍ରତ୍ୟୟ, ଧୈର୍ଯ୍ୟ ଓ ବିଶ୍ୱାସ ହରେଇ ବସୁଚି । ମୁଁ କେଡ଼େ ସଙ୍କୁଚିତ । କଇଁଛପରି ନିଜ ଖୋଳପା ଭିତରେ ଆତ୍ମଗୋପନ କଲେବି ତଥାପି ପରିପାର୍ଶ୍ୱର ଆଘାତରୁ ରକ୍ଷା ପାଉନି । ଆଉ ପ୍ରତିରୋଧ ବି କରିପାରୁନି । ଦେଖ ପିତାମହ, ତୁମ ତୃତୀୟ ନାତି ପ୍ରିୟ ସବ୍ୟସାଚୀ ଆଜି କେତେ ଭୟଭୀତ, କେତେ ବିବ୍ରତ, କେତେ ନିରୁପାୟ ।

ସିଦ୍ୟନ୍ତି ମମ ଗାତ୍ରାଣି........

ତୁମେ କେଉଁଠି ଅଛ ପିତାମହ- କେତେ ଦୂରରେ- ମୋତେ ପାଖକୁ ନିଅ । କୋଳକୁ ନିଅ ।

ରାତି ବାରଟାବେଳେ ମୋତେ ଶ୍ମଶାନର ସ୍ମୃତିସ୍ତମ୍ଭ ପାଖରୁ କେହି ଜ୍ଞାତି ଓ ପ୍ରିୟଜନ ଘରକୁ ଉଠାଇ ଆଣିଥିଲେ । ସମସ୍ତେ କହୁଥିଲେ ବୃଦ୍ଧ ସବ୍ୟସାଚୀ ବାବୁ ବୋଧହୁଏ ପାଗଳ ହୋଇଯିବେ । ଅବସ୍ଥା ସଂକଟାପନ୍ନ । ତୁରନ୍ତ ଚିକିତ୍ସା ନହେଲେ ହୁଏତ ଏହିପରି ସଂଜ୍ଞାହୀନ ଅବସ୍ଥାରେ ତାଙ୍କର ମୃତ୍ୟୁ ହୋଇ ଯାଇ ପାରେ ।





Digitized by PPRACHIN, SOA

# ସ୍କେଲିଟନ୍

ସୁମତୀ ହାତ ପାତୁଛି- ଯାହାକୁ ଦେଖୁଛି ତା' ପାଖରେ କାକୁତି କରି ମାଗୁଚି କେତୋଟି ଟଙ୍କା- ତାର ରୁଗ୍ଣ ସ୍ୱାମୀ ପାଇଁ ଔଷଧ ଦରକାର, ପଥ୍ୟ ଦରକାର । ରକ୍ତ କିଣିବା ପାଇଁ ତା'ପାଖରେ ସମ୍ବଳ ନାହିଁ । ରୋଗ ଶଯ୍ୟାରେ ବାମଦେବ ଛଟପଟ ହେଉଛି । ଭୟଙ୍କର କାମଳ ରୋଗ । ଦେହରୁ ରକ୍ତ ଶୁଖି ଶୁଖି ଯାଉଛି, ଆଉ ତା' ସହିତ ତ୍ୱକ୍‌ରୁ ସମସ୍ତ ଦୀପ୍ତି । ଦେହସାରା ପାଣ୍ଡୁର, ଆଖି ଓ ହାତ ପାପୁଲି ହଳଦିଆ । ଗୋଡ଼ ଫୁଲିଲା ଫୁଲିଲା ।

ସୁମତୀର ଶେଷ ସମ୍ବଳତକ ଅନେକ ଦିନୁ ସରି ଯାଇଛି । ସାହାଯ୍ୟ କରିବାକୁ ତାର ଏକାନ୍ତ ଆତ୍ମୀୟ କେହି ନ ଥିଲେ । କାହାକୁ ଚାହିଁ ଚାହିଁ ସେ ଆଶାର ଆଶାବରୀ ଶୁଣି ଥାଆନ୍ତା ? ଭାଇ; ସେ ତ ଅନେକ ଦିନୁ ସେ ପୁରକୁ ଚାଲି ଗଲେଣି । ଭାଉଜ ସେ ତ ଦ୍ୱିତୀଅ ହୋଇ ଯାଇଚନ୍ତି । ବାପା ବୋଉ, ସେମାନେ ଆଜି କେଉଁଠି ? ସ୍ମୃତିର ପାଉଁଶ ମଧ ନିଃଶେଷ ହୋଇଗଲାଣି । ଗ୍ରାମ ଲୋକେ- ସେ ବା କାହାର ସାହା ହେବେ ? ନିଜ ଦୁଃଖଧନ୍ଦା ସେମାନଙ୍କୁ ବଳେଇଚି । ଅଭାବ ଅନାଟନର ସଂସାର ଭିତରେ ଉବୁଟୁବୁ ଏଇ ମଣିଷଗୁଡ଼ାକ କୁଟା ଖିଅକୁ ଆଶ୍ରା କରି ପଡ଼ି ରହିଛନ୍ତି । ଭିଟାମାଟିକୁ କାମୁଡ଼ି ରହିବାରେ ଏତେ ପୁଣି ଉତ୍ତେଜନା ! କେହି କେହି ଆସିଥିଲେ, ପଚରାଉଚରା କରିଥିଲେ ଦିନେ ଦି'ଦିନ ଯାଏ, ଆହା କହିଥିଲେ, କିଛି କିଛି ସାହାଯ୍ୟ ବି ଦେଇଥିଲେ । ଘର ଡ଼ିହକୁ ବନ୍ଧା ପକେଇ ଆଣିଥିବା କେତେଟା ଟଙ୍କା- ସେ ବା କେତେ ଦିନ ଯାଆନ୍ତା ? ଡାକ୍ତର ବାବୁମାନେ କ'ଣ ପାଉଣା ବିନା ସେବା କରିଥା'ନ୍ତେ ? ସେ ଗରିବ ବୋଲି କଣ ଡାକ୍ତରୀ ପାଠ ମୂଲ୍ୟହୀନ ହୋଇଯିବ ? ପାଠର ମୂଲ୍ୟ ଦେଇ ଦେଇ ତାର ସେ ସମ୍ବଳତକ ସରିଯାଇଛି, କିନ୍ତୁ ବାମଦେବର ଭଲ ହେବାର କୌଣସି ଲକ୍ଷଣ ତଥାପି ଦେଖାଯାଇନି । ସମସ୍ତେ ଆଶ୍ୱାସନା ଦେଇଛନ୍ତି, ଭରସା ଦେଇଚନ୍ତି । ବଡ଼ ଡାକ୍ତରଙ୍କ ପଛେ ପଛେ ସୁମତୀ ଅନେକ ବାଟ କାନ୍ଦି କାନ୍ଦି ଗୋଡ଼େଇ ଗୋଡ଼େଇ ଯାଇଚି, ତା'ର ଆଉ ଦୁନିଆରେ କି ଭରସା ଅଛି ଯେ ? ଏଠି ତା'କୁ ବା ପଚାରେ କିଏ ? କେଉଁ ନିପଟ ମଫସଲର ସାଧାରଣୀ ସୁମତୀଟିଏ; କର୍ମ ତାର ପୋଡ଼ି ଯାଇଚି । ଏଠି ତ କଥା କହିଲେ ପଇସା ଦରକାର ।

ସୁମତୀ ବାମଦେବର ଶେଯ ପାଖରେ ଘଡ଼ିଏ ବସି ରହେ । ଦେହରେ ମୁଣ୍ଡରେ ହାତମାରେ । ଗୋଡ଼ ଚିପିଦିଏ । ପାଟିରେ ପାଣି ବା ବାର୍ଲି ଦିଏ । କିଛି ଫଳରସ ବି ।



Digitized by PPRACHIN, SOA

ତା'ପରେ ସେଇ ଓ୍ୱାଡ଼ର ଦୟାଶୀଳ ଲୋକଙ୍କୁ ପତାଏ ହାତ । ପୁଣି ଓ୍ୱାଡ ବାହାରେ ଡାକ୍ତର ଦୋକାନୀ, ଆଗନ୍ତୁକ ଭଦ୍ରଲୋକ ଯାହାଙ୍କୁ ଭେଟେ ପ୍ରଚଣ୍ଡ ପ୍ରତ୍ୟୟରେ ହାତ ତାର ଲମ୍ବିଯାଏ । ପୁଣି କେତେବେଳେ ବା ବିଦ୍ରୂପ ଓ ଲାଞ୍ଛନାରେ କଇଁଚ ମୁହଁ ପରି ଆପେ ଆପେ ସେ ହାତ ସଂକୁଚିତ ହୋଇ କାନି ତଳେ ଛପିଯାଏ । ପ୍ରଥମେ ପ୍ରଥମେ ଅନଭ୍ୟସ୍ତ ସୁମତୀ ସଂକୋଚରେ ଫାଟି ପଡୁଥିଲା । ତା' ବୟସ ପ୍ରତି କେତେ ଦାନଶୀଳ ଦାତାଙ୍କ ଆଖିରେ ସେ ବେଳେବେଳେ ବିଚିତ୍ର ପରିହାସର ପ୍ରଚ୍ଛନ୍ନ ଇଙ୍ଗିତ ଲକ୍ଷ୍ୟ କରେ । ବେଳେବେଳେ ଥଟ୍ଟା ଓ ଟାପରା । କେହି କେହି ତା' ଇତିବୃତ୍ତ ବି ଲୋଡ଼ି ବସନ୍ତି । ସୁମତୀ ନିରୁପାୟା ହୋଇ ତାର ଦୁଃଖ କେବଳ ବଖାଣିଯାଏ । ତା' ରୁଗ୍ଣ ସ୍ୱାମୀଙ୍କ ପାଇଁ ରକ୍ତ ଦରକାର । ରକ୍ତ ପାଇଁ ତା ପାଖରେ ପଇସା ନାହିଁ ।

ସୁମତୀର ପାଣ୍ଠି ବଢ଼ି ବଢ଼ି ଆସେ, କିନ୍ତୁ ତାହା ଦୈନିକ ପଥ୍ୟ ଓ ଔଷଧ ପାଇଁ ନିଅଣ୍ଟ । ରକ୍ତଦାମ୍ ତ ବହୁତ ବେଶୀ । ସୁମତୀ ଭାବେ ଓଳିଏ ନଖାଇ ସେ କିଛି ସଞ୍ଚିପାରିବ । ତା'ବି ହୁଏ । ସବୁଦିନେ କ'ଣ ଦି'ଓଳି ଖାଇବାକୁ ମିଳେ ?

ବାମଦେବ ଅସ୍ଥିର କଙ୍କାଳଟିଏ ପରି ବିଛଣାରେ କଡ଼ ଲେଉଟାଉଛି । ପିଠିସାରା ଘା- ବେଡ୍ ସୋର୍ । ଦିନେ ନୁହେଁ, ମାସେ ନୁହେଁ, ସେ ଯେ ଛ'ମାସ ହେଲାଣି ଏଇ ଶେଯରେ ପଡ଼ିଛି । ଆଖି ଭିତରକୁ ପଶିଯାଇ ମୁହଁର ହନୁହାଡ଼ ବାହାରି ଆସିଛି- ବାମଦେବ ଦେଖାଯାଉଛି ସତେ ଯେପରି ସେ ଗୋଟାଏ ନରକଙ୍କାଳ- ଭୟଙ୍କର ତା' ଚେହେରା । ସୁମତୀ କିନ୍ତୁ ତାକୁ ହେପାଜତ୍ କରିବାରେ ହେଳା କରିନି । ତାର ସମସ୍ତ ବିଶ୍ୱାସ, ଧର୍ମ ଆଉ ପତିଆରା- ଏଇ ବାମଦେବ । ଜୀବନ ଓ ମୃତ୍ୟୁ ମଧ୍ୟରେ ବାମଦେବ ଏକ ସାଙ୍ଘାତିକ ସାଲିସ୍‌ହୀନ ସର୍ତ୍ତ । ସୁମତୀ ମନରୁ ବିଶ୍ୱାସ ତୁଟେ ନାହିଁ । ସେ ନିଶ୍ଚେ ବଞ୍ଚିବ । ଏତେ ଠାକୁର ମନାସ, ଏତେ ସେବା ଓ ଯତ୍ନ, ପରମାନଙ୍କଠାରେ ଏତେ ହାତ ପାତ଼ିବା, ଏସବୁ କ'ଣ ବ୍ୟର୍ଥ ହେବ ? ଡାକ୍ତରମାନଙ୍କ ପଛରେ ଖଣ୍ଡେ ଦୂର ଧାଇଁ ଯାଇ ସୁମତୀ ଆଶା ନେଇ ଫେରି ଆସେ । ନର୍ସମାନଙ୍କୁ କେତେ କାକୁସ୍ଥ ହୋଇ ପଚାରେ । ଔଷଧ ଦେବାକୁ ଅଳିକରେ ।

ସେଦିନ ବିଳମ୍ବିତ ଅପରାହ୍ନ । ବର୍ଷାଋତୁରେ ବି ଆକାଶରେ ମେଘର ସତ୍ତା ନାହିଁ । ଅସମୟରେ ଆକାଶରେ ଶରତ ଋତୁ ପରି ଛିଣ୍ଡା ଛିଣ୍ଡା ଧଳା ବଉଦ ଭାସି ଚାଲିଛନ୍ତି । ପ୍ରଥମ ଉତ୍ତାପରେ ଗଛର ସବୁଜଶ୍ରୀ ଝାଉଁଳି ପଡ଼ିଛି । ଚାରିଆଡ଼େ ମରୁଡ଼ିର ଆଶଙ୍କା । ଗାଁରୁ ଖବର ଆସିଛି ଧାନଗଛ ଜଳିଗଲାଣି । ବିଲ ଫାଟି ଆଁ କରିଛି । ଚିଡା ଘିନିବାକୁ ବି ବିଲରେ ପାଣି ନାହିଁ । ଶ୍ରାବଣର ଏ କି କୁଟିଳ ପରିହାସ ! ଅବିରାମ ବାରିପାତ କାହିଁ ? ଗୋଟିଏ ଦିନର ବର୍ଷା ବିରତିରେ ଲକ୍ଷେ ପଉଟି ଧାନ ନଷ୍ଟ ହେବ । କ୍ରମାଗତ ଦିନ ପରେ ଦିନ ବର୍ଷା ନାହିଁ । ଚାଷୀମାନେ ହାହାକାର କଲେଣି । ବ୍ୟବସାୟୀମାନେ ମହଜୁଦ କରିବାରେ ବ୍ୟସ୍ତ- ନିଶ୍ଚେ ମରୁଡ଼ି ପଡ଼ିବ । ଚାଉଳ ଦର ହୁହୁ ବଢ଼ିଯିବ । ଲୋକେ ପେଟ ବିକଳରେ ଭିଟାମାଟି ଛାଡ଼ି ଛିନ୍ନଛତ୍ର ହେବେ । ରାଜନୈତିକ



Digitized by PPRACHIN, SOA

ନେତାମାନେ ରିଲିଫ୍ ବାଣ୍ଟିବା ପାଇଁ ସଜବାଜ ହେଉଛନ୍ତି ।

ସୁମତୀ ଭାବେ ମାଳିକା କଥା ମିଛ ନୁହେଁ । ଗାଁରେ ଥିଲାବେଳେ ଶୁଣିଥିଲା ହାଡ଼ିଦାସଙ୍କ ମାଳିକା- ଦେଶରେ ମରୁଡ଼ି ପଡ଼ିବ । ଲକ୍ଷ ଲକ୍ଷ ଲୋକ ପୋକ ମାଛି ପରି ମରିବେ । ଗାଁ ଦାଣ୍ଡ ନିଶୂନ ହେବ । ଲୋକେ ପ୍ରାଣରକ୍ଷା ପାଇଁ ଆତ୍ମୀୟମାନଙ୍କୁ ଛାଡ଼ି ଦୂର ଦୂରାନ୍ତରକୁ ପଳେଇବେ । ଆପେ ବଞ୍ଚିଲେ ସିନା ଦୁନିଆ ବଞ୍ଚିବ । ପେଟର ଦାଉରେ ମମତାର ଧାରା ଶୁଖି ଶୁଖି ଯିବ । ଘୋର ଅନ୍ଧାରରେ ସମସ୍ତେ ଆଟୁ ପାଟୁ ହେବେ ।

ସୁମତୀ ଭାବିଲା ଏଇ କଣ ସେଇ ବେଳ ! ଏତେ ଟାଣ ଖରା, ଶ୍ରାବଣମାସ, ଏତେ ତାତି ପୁଣି ଏଇ ମୃତ୍ତିକାରେ ! ଗଛ ପତ୍ର ହଲୁନାହିଁ, ପାଣିପବନର ସତ୍ତା ନାହିଁ । କାହାକୁ ସେ ମାଗିବ ପଥି ପାଇଁ ପଇସା ? କାହା ପାଖରେ ସେ ହାତ ପାତିବ ? ଅଧିକାଂଶ ତ ଏଇ ମଫସଲ ଲୋକ ? ସମସ୍ତଙ୍କ ମୁହଁରେ ବିଷାଦର କଳା ବଉଦ । କିଏ ତା' ଦୁଃଖରେ ତାକୁ ସାହାଯ୍ୟ କରିବ ? ନିଜ ନିଜ ଦୁଃଖତ ସମସ୍ତଙ୍କୁ ବୁଡ଼େଇ ଦେବାକୁ ବସିଲାଣି । ସୁମତୀ ଥଳକୂଳ ପାଇଲାନି । ଚାରିଆଡ଼ ତାକୁ ଅନ୍ଧାର ଦେଖାଗଲା । ମାଗିବ ସରକାରଙ୍କୁ ? ସେ କିଏ, କଳା ନା ଗୋରା ? ସେ କଣ ତାଙ୍କୁ ଚିହ୍ନିଚି ? ସେ ପୁଣି ରାଜଧାନୀରେ ବସିଛନ୍ତି ? ସେ କିପରି ରୋଗୀକୁ ଛାଡ଼ି ଯାଇପାରିବ ? ଦିନେ ଓଳିଏ ପାଇଁ ଆସି ପାରିଲେ ବି ସେ ବା କେଉଁ ସରକାରଙ୍କୁ ଚିହ୍ନିଚି ? ଦି'ଧାଡ଼ି କାହାକୁ କହି ଗାରେଇ ଦରଖାସ୍ତ ପକେଇ ଦେବ ? ସେ କଣ ସରକାରଙ୍କ ପାଖରେ ପହଞ୍ଚି ପାରିବ ?

ସୁମତୀ ଜଣକୁ ପଚାରିଲା । ଯାହା ଶୁଣିଲା ସେଥିରେ ତା'ର ପ୍ରାଣ କାନ୍ଦି ଉଠିଲା । ବିଦ୍ରୂପର ପୁଣି ଏତେ ମୁନିଆଁ ଦାନ୍ତ ! ତା ଦେହର ସମସ୍ତ ମାଂସ ପେଶୀକୁ ସେ ଦାନ୍ତ ଯେପରି ଝୁଣି ପକାଉଛି । ତାକୁ କିନି କିନା କରି ମିଶେଇ ଦେଉଛି ମାଟିରେ । ତାରି କଥାକୁ ସରକାର ଏଇଲାଏ ବୁଝିବେ ? ତେଣେ ଭୋଟ ଚିନ୍ତାରେ ସରକାରଙ୍କ ମୁଣ୍ଡ ବଥଉଚି । ସେ ଶୁଣିବେ ସୁମତୀର ବିଳାପ ? ତାକୁ ଲାଜ ନାହିଁ ଯାହା ।

ଲାଜ ତ ସେ ପୋଡ଼ି ଖାଇଚି ଅନେକ ଦିନୁ । ହାତ ପାତିପାତି ସେ ଭିକାରୀଟିଏ । ତା'ର ଆଉ ସମ୍ଭ୍ରମ କ'ଣ , ସରମ ବା କାହାକୁ ? ସୁମତୀ ଭାବିଲା, ଭିକାରୀ ହୋଇ ସାରି ବି ତା' ମନରେ ଏ ଅପମାନର ଅଭିମାନ କାହିଁକି ? ସେ ତ ଆରଥର ସରକାରଙ୍କୁ ଭୋଟ ଦେଇଗଲା ତାଙ୍କୁ ସେ ନକହି ପାରିବ କାହିଁକି ? ସେ'ବି କାହିଁକି ଶୁଣିବେନି ? ପହଞ୍ଚି ପାରିବନି ମୂଳରୁ ? କି କଥା ଏ ? ଦୁଃଖୀ ରଙ୍କୀଙ୍କ ଆପଦ ବିପଦକୁ ଆଉ କିଏ ସାହା ହେବ ଯେ ? ଜଗନ୍ନାଥେ ? ସେ କ'ଣ ଆଉ ଅଛନ୍ତି ? ଥିଲେ ଦୁଇଟି ପିଲା ତାର ଅସମୟରେ ପୋଡ଼ି ମରି ନଥାନ୍ତେ ? ପୁଣି ତାର ଏ ଦଶା । ବାମଦେବ କଣ ସତେ ବଞ୍ଚିବ ଠାକୁରେ ? ତୁମେ ଜାଣ ।

ସୁମତୀ ଗଛ ମୂଳେ ଘଡ଼ିଏ ବସି ପଡ଼ିଲା । ଶୋଷରେ ଛାତି ଫାଟି ଯାଉଚି । ଶୁଖି ଯାଉଚି ଜିଭ । କଳ ପାଖକୁ ଯାଇ ଢ଼କ୍ ଢ଼କ୍ କରି ଆଞ୍ଜୁଳାରେ ପାଣି ପିଉ ପିଉ ସୁମତୀ ଭାବୁଥିଲା- ହେ ପ୍ରଭୁ ତୁମେ ହିଁ ସାହା । ଆଜି ପାଇଁ ତଥାପି ସମ୍ବଳ ମିଳିନାହିଁ । କଣ ସେ



Digitized by PPRACHIN, SOA

କରିବ ? ଆକାଶକୁ ଚାହିଁଲା ସୁମତୀ । କେଜାଣି କାହିଁକି ତା ଛାତିରେ ଆକାଶଟା ଫାଟି ପଡ଼ିଲା ପରି ତାକୁ ଲାଗିଲା । ଏ କ'ଣ ଶ୍ରାବଣମାସ ନା ଅଶିଣ ? ନୀଳ ଆକାଶରେ ଧୀରେ ଧୀରେ ଧଳା ବଉଦର ଛିଟିକା ଭାସି ରହିଛି । ସୁମତୀ କୋହରେ ଫାଟି ପଡ଼ିଲା । ଅଧୀର ଶିଶୁଟି ପରି କଇଁ କଇଁ ହୋଇ କାନ୍ଦି ଲାଗିଲା ସୁମତୀ । କିଏ ବା ତାର ଦୁଃଖ ବୁଝିବ ? କେତେ ଦିନ ଏମିତି ସେ ମାଗିଯାଚି ବଞ୍ଚେଇ ପାରିବ ତାର ରୁଗ୍ଣ ସ୍ୱାମୀକୁ ?

ୱାର୍ଡକୁ ଫେରି ସୁମତୀ ଦେଖିଲା ଡାକ୍ତର ଓ ନର୍ସ କ୍ଷିପ୍ର ଗତିରେ ବାମଦେବର ହାତରେ ଛୁଞ୍ଚି ଭର୍ତ୍ତି କରି ବୋତଲରୁ ନିଗାଡ଼ି ଦେଉଛନ୍ତି ଟୋପାକୁ ଟୋପା ରକ୍ତ । କେଉଁଠୁ ଆସିଲା ଟଙ୍କା ? ସୁମତୀ ଭାବି ପାରିଲାନି । ନାକରେ ଅକ୍‌ସିଜେନ୍ ନଳୀ, ବାମଦେବର ଆଖି ବନ୍ଦ ।

ସୁମତୀ ଭୋ କିନା କାନ୍ଦିଉଠିଲା । ଡାକ୍ତର ହାତ ଦେଖେଇ ବାରଣ କଲେ । ବାମଦେବ କିନ୍ତୁ ଚାହିଁଲାନି । ତାର ପ୍ରାଣର ସୁମତୀ କାନ୍ଦି କାନ୍ଦି ମୁଣ୍ଡ କୋଡ଼ି ଦେଉଛି । ଆଖି ଫିଟାଇ ଦେଖୁନାହିଁ । ଖାଲି ଦାନ୍ତ ନେଫେଡ଼ି ଆଖି ତରାଟି ପଡ଼ିଛି ନରକଙ୍କାଳ ବାମଦେବ। ସୁମତୀ ଡ଼ାକିବ ଡାକିବ ହେଲା । ଟୋପାଏ ପାଣି ହେଲେ ପାଟିରେ ଦିଅନ୍ତା । ଡରିଗଲା ସୁମତୀ । ତାକୁ ପାଟି କରିବାକୁ ମନା । ନର୍ସ ଆଖି ଦେଖାଇ ବିରକ୍ତି ପ୍ରକାଶ କଲେ ।

ସୁମତୀ ସେମିତି ବିଛଣା ପାଖରେ ଠିଆ ହୋଇରହିଲା- ଘଣ୍ଟାଏ ଦି'ଘଣ୍ଟା ପାଞ୍ଚଘଣ୍ଟା । ଆଉ ରକ୍ତ ଯାଉନିତ, ନାକରେ ସେମିତି ଅମ୍ଳଜାନ ନଳୀ ଭର୍ତ୍ତି ହୋଇଛି । ପାଖରେ ମେଲ୍ ନର୍ସ । ସୁମତୀ ବାମଦେବର ଆଖି ଡ଼ୋଳା ତା ଡାହାଣ ହାତରେ ତରାଟି ବାମଦେବକୁ ଖୋଜିବାରେ ଲାଗିଲା । ମେଲ୍ ନର୍ସ ନଳୀ ଖୋଲି ଦେଲେ । ଧଳା ଚାଦରଟି ମୁହଁରେ ଢ଼ାଙ୍କିଦେଲେ । ଉନ୍ମାଦିନୀ ସୁମତୀ ବାରମ୍ବାର ଚାଦରଟାକୁ ଖୋଲି ଦେଲା ଆଉ ସେଇ ଶୁଖିଲା କୋରଡ଼ା ମୁହଁରୁ ବାମଦେବକୁ ଖୋଜିବାକୁ ଲାଗିଲା । ବାମଦେବ କାହିଁ ? ତା ମୃତଛୁଆର ପିତା ବାମଦେବ କେଉଁଠି ? ଏତ ନରକଙ୍କାଳ ? ଯାହାକୁ ସେ ଗ୍ରାମ ସ୍କୁଲର କାନ୍ଥରେ ଟଙ୍ଗା ହୋଇଥିବାର ଦେଖିଥିଲା । ତାକୁ କେତେ ସାକୁଲେଇଚି ସେଇ ୱାର୍ଡର ମେହେନ୍ତରାଣୀ । "ମା' ବ୍ୟସ୍ତ ହ ନା- ସେ କଣ ଆଉ ବଞ୍ଚିବ । ଦୁନିଆରେ କେହି ସବୁଦିନେ ବଞ୍ଚି ରହିନାହିଁ । କାମଳ ରୋଗ, ପୁଣି ପେଟରେ ତାର ପଚିଗଲାଣି ସବୁଯାକ ଯନ୍ତ୍ର । ତୁ ବି କେତେ ମାଗିଯାଚି ତାକୁ ବଞ୍ଚେଇବୁ । ତୋର ନିଜ ବଞ୍ଚିବା ତ ମୁସୁକିଲ । ଚାରିଆଡ଼େ ଏଇଲାଏ ମରୁଡ଼ି । ତୁ ଅବୋଧ ହନା । କିଛି ଟଙ୍କା ମୋଠୁ ନେ । ସେ ମଲାପରେ ମୁଁ ତା କଥା ବୁଝିବି । ନେଇ ଫୋପାଡ଼ି ଦେଇ ଆସିବି । ତୁ ଘରକୁ ଚାଲିଯିବୁ ।"

ସୁମତୀ ସେତେବେଳେ ଏକଥାର ତାତ୍ପର୍ଯ୍ୟ ବୁଝିନଥିଲା । ଆଖି ଆଗରେ ଶୋଇରହିଚି ସେ ନରକଙ୍କାଳ । ଗାଁ ସ୍କୁଲର କାନ୍ଥରେ ଟଙ୍ଗା ହୋଇଥିବା କଙ୍କାଳ । କୂଅରୁ ପାଣି ଆଣି ଗଲାବେଳେ ଝରକା ବାଟେ କେତେଥର ସେ କୌତୁହଳରେ ସେଇ



Digitized by PPRACHIN, SOA

କଙ୍କାଳଟାକୁ ଦେଖି ଚମକି ପଡ଼ିଛି । ରାତିରେ ଦେଖିଛି ଭୟଙ୍କର ସ୍ୱପ୍ନ ।

ମେହେନ୍ତରାଣୀ ହାତରେ ପଚାଶ ଟଙ୍କା ଧରି ସୁମତୀକୁ ତଥାପି ଯାଚୁଚି । 'ନେ ମା । ଗାଁକୁ ଚାଲିଯା । ମୁଁ ତା' କଥା ବୁଝିବି ।' ସେତେବେଳେ ହେଲେ ଏତିକି ଟଙ୍କା ନେଇଥା'ନ୍ତୁ । ସେ ରକ୍ତଟାଏ ନେଇଥା'ନ୍ତା ଠିକ୍ ବେଳରେ । ସୁମତୀ ମୁଣ୍ଡ ଝାଇଁ ମାରିଯାଉଚି । ଆଖିରୁ ଛୁଟୁଚି ଲୁହର ଧାର । ସବୁ ଚେଷ୍ଟା ତାର ବିଫଳ ହେଲା । ଭଗବାନ ବି ତା' କଥା ଶୁଣିଲେନି ।

ଝରକା ଦେଇ ସୁମତୀ ଚାହିଁଲା ଆକାଶକୁ । ମେଘ ଦି'ପହରୁ ଧରିଚି । ଘୋଟି ରହିଚି ଆକାଶରେ । ବିଛଣାରେ ସେମିତି ଧଳା ଚାଦର ଘୋଡ଼େଇ ହୋଇ ଶୋଇଚି ବାମଦେବ । ଏଇ ବୋଧେ ବର୍ଷା ହେବ । ଧାନ ବଞ୍ଚି ଯିବ । ଚାଉଳ ମିଳିବ । ଲୋକେ ଥଳ ପାଇବେ । ସୁମତୀ ଆକାଶକୁ ସେମିତି ଚାହିଁଚି । ଆକାଶରୁ ମେଘ ପୁଣି ଉଭାନ୍ ହୋଇଗଲା । ଆକାଶ ହୋଇଗଲା ସୁନୀଳ ଆଉ ତେଜୀଆନ୍ । ଅସ୍ତ ସୂର୍ଯ୍ୟ କିରଣ ପ୍ରଖର ହୋଇ ଝରକା ବାଟେ ଘରକୁ ଛୁଟିଲା ଠିକ୍ ନଈର ବନ୍ୟା ସ୍ରୋତ ପରି । ନଈ ଶୁଖି ବାଲି ଚାହିଁଚି- ଏ କଣ ବୈଶାଖ ମାସ ନା ଜ୍ୟେଷ୍ଠମାସ । ସୁମତୀ ଭାବିଲା ସାହାହୀନ, ସମ୍ବଳହୀନ ଲୋକଟିଏ ସେ ମାଇପି ଲୋକ । କିଏ ତାର ଅଛି ? କେଉଁଠି ସେ ଆଶ୍ରା ନେବ, ମୁଣ୍ଡ ଗୁଞ୍ଜିବ । ଏ ଡହ ଡହ ଖରାରେ ଆଉଟୁ ପାଉଟୁ ହୋଇ ସେ ବି ମରି ଶୋଇବ ବାମଦେବ ପରି । ଆଗରେ ପଦୀ ମେହେନ୍ତରାଣୀ କେତେବେଳୁ ଟଙ୍କାକୁ ଖୋସଣିରେ ଖୋଷି ଠିଆ ହୋଇଚି- ସେ ନରକଙ୍କାଳ କିଣିନେବ । ସୁମତୀ ଆଉ ବିଳମ୍ବ ନ କରି ହାତ ବଢ଼େଇ ଦେଲା । ତାକୁ ଲାଗିଲା ବାମଦେବର ହାତଟା ଲମ୍ବି ଆସି ତା ମୁଠାରେ ଗୁଞ୍ଜି ଦେଉଚି ପଚାଶଟଙ୍କା । ସେ ଟଙ୍କା ତାର କେତେ ଦିନର ଆହାର । ବହୁ ଦିନରୁ ସେ ପେଟପୂରା ଖାଇନାହିଁ । ଏଣିକି ତାର ଛୁଟି । କିଏ ତାକୁ ଆଉ ବାନ୍ଧି ରଖିବ ?





Digitized by PPRACHIN, SOA

# ନବନୀତା

ସେ ସେମିତି ଏକ ବେପଥୁହୀନ କାଠଗଡ଼ ପରି ପଡ଼ି ରହିଥିବ । ତା' ଉପରେ ଦୁଇଜଣ ବିଭିନ୍ନ ବୟସର ଲୋକ ଫୁଙ୍ଗୁଳା ଲଙ୍ଗଳା ହୋଇ ଚଢ଼ି ଯାଉଥିବେ । ତା'ର ହଲଚଲ ନ ଥିବ । ପ୍ରତିକ୍ରିୟା ନଥିବ । ପ୍ରତିରୋଧ ବି ନଥିବ । ସଂପୂର୍ଣ୍ଣ ନୀରବ ଓ ନିଷ୍କମ୍ପ ଅଜବ ମଣିଷଟାଏ -ମଣିଷ ସୃଷ୍ଟିର ବ୍ୟତିକ୍ରମ ବି ହୋଇପାରେ । ସାମାନ୍ୟ ପବନରେ ହଲଚଲ ହେଉଥିବା ପତ୍ରଟାଏ ବି ସେ ନୁହେଁ । ଅଯତ୍ନ ଅସମ୍ଭାଳ ଲୁଗାପଟାକୁ ସଜାଡ଼ି ଉଠି ସେ ପୁଣି ତାର ଖାଦ୍ୟ ଚିନ୍ତାରେ ବ୍ୟସ୍ତ ରହିବ । କାରଣ ଖାଇବାହିଁ ତାର ଏକମାତ୍ର ଚିନ୍ତା - ଏକ ଅନାପେକ୍ଷିକ ପ୍ରକୃତି କହିଲେ ଚଳେ । ତାର ତିରିଶ ବର୍ଷ ଦେହରେ ଲାବଣ୍ୟ ଉକୁଟି ଉଠୁଥିବ - କିନ୍ତୁ ସବୁବେଳେ ମୁଣ୍ଡରେ ହାତ - ଉକୁଣିଗୁଡ଼ାକ ତାକୁ ବ୍ୟତିବ୍ୟସ୍ତ କରୁଥିବେ । ବେଳେବେଳେ କାଠ ପାନିଆ ବା ଭଙ୍ଗା ପ୍ଲାଷ୍ଟିକ୍ ପାନିଆରେ ମୁଣ୍ଡକୁଣ୍ଡାଇ ସେ ରଡ଼ସଡ଼ କରି ମୁଣ୍ଡରୁ ମେଞ୍ଚାଏ ବାଳ ରାମ୍ପୁଡ଼ି ଆଣିବ । ବାଳ ସାଙ୍ଗରେ ଛୋଟ ବଡ଼ ମେଞ୍ଚାଏ ଉକୁଣୀ । ଚଟାଣରେ କେତେଟା ଡ଼ିଙ୍ଗା ପଡ଼ିବା ମାତ୍ରେ ଡ଼ଗ ଡ଼ଗ ଚାଲିବାକୁ ଆରମ୍ଭ କରିଦେବେ । ତାଙ୍କୁ ସେ ବୁଢ଼ା ଆଙ୍ଗୁଠି ନଖରେ ଟକ୍ ଟକ୍ କରି ଫୁଟାଇବ । ଉକୁଣୀଗୁଡ଼ାଙ୍କ ଦେହରୁ ପୂଜରକ୍ତ ପିଚ୍‌କିନି ବାହାରି ଯିବ ଓ ଚେପା ହୋଇ ସେମାନେ ମାଟିରେ ଲାଗି ରହିବେ । ଏ ଅଭିଜ୍ଞତା ତାକୁ ଖୁବ୍ ଅନନ୍ଦ ଦିଏ । କିନ୍ତୁ ତା' ମୁହଁରେ ହସ କି କାନ୍ଦ କିଛିର ଚିହ୍ନ ବି ଫୁଟି ଉଠେ ନାହିଁ ।

ପିତୃମାତୃହୀନା ନବନୀତାର ଏଇ ଅବସ୍ଥା । ଦୁଇଟା ଲୋକ ତାକୁ ଯାହା ପାରିବେ ଖାଇବା ଜିନିଷ ଦେଇଯିବେ । ବିଭିନ୍ନ ବୟସର ଦୁଇଜଣ ଲୋକ । କିନ୍ତୁ ଫଳମୂଳ, ଶୁଖିଲା ଖାଦ୍ୟ, ବେଳେବେଳେ ମିଠା, ମୁଢ଼ି, ଚୁଡ଼ା, ଛତୁଆ- ଏମିତି କିଛି ଖାଇବା ଜିନିଷ । ସେ ନିଦକରେ ସାରିଦେଇ ଅପେକ୍ଷା କରିବ ପୁଣି ଆଉ କିଛି ଖାଇବା ଜିନିଷ ପାଇଁ ।

ପଚାଶ ବର୍ଷର ହରିସାହୁ ଦୋକାନ ବନ୍ଦ କରି, ହମହମ ହେଉଥିବ । ଅଫିମ ଟେଳାଏ ପକାଇ ସାରିଥିବ କେତେବେଳୁ । ନିଶା ଧରୁ ଧରୁ ସେ ମୁଢ଼ି ମେଞ୍ଚାଏ ଠୁଙ୍ଗାରେ ଧରି ନବନୀତା ଘରେ ଆସି ହାଜର ହୋଇଯିବ । ବେଳ ହେବ ଦି'ପହର । ତା ପାଇଁ ଏ ବେଳଟି ଭାରୀ ସୁବିଧା ସମୟ । କାରଣ ତା' ହିସାବ ଅନୁସାରେ ଏ ସମୟରେ ନବନୀତାର ଭାଇ, ତିନିଚାରିଟା ଲଫଙ୍ଗା ଟୋକାଙ୍କ ସାଙ୍ଗରେ ହାଟ ଛକରେ ଦାଦାଗିରି କରୁଥିବ । କିଛି ଟଙ୍କା ହାତ ପଇଠ ହେବା ପରେ ଦେଶୀ ମଦ ଦି'ଗ୍ଲାସ ପିଇ ପାଖ



Digitized by PPRACHIN, SOA

ହୋଟେଲରେ ମାତାଲ ଅବସ୍ଥାରେ ଖାଇବା ଜିନିଷ ପାଇଁ ବରାଦ ଦେଉଥିବ । ହୋଟେଲ ମାଲିକ ତାକୁ ଯେତେ ଅଧିକ ଅବହେଳା ଓ ଅବଜ୍ଞା କରୁଥିବ ସେତିକି ସେତିକି ତାର କ୍ରୋଧ ବଢୁଥିବ । ଅଶ୍ଳୀଳ ଭାଷାରେ ଗୁଣୁଗୁଣୁ ହୋଇ କ'ଣ ଏଣୁତେଣୁ ଗୁଡ଼ାଏ ବକି ସେଇ ଖାଇବା ଟେବୁଲ ଉପରେ ଶେଷକୁ ସେ ମୁଣ୍ଡ ଓ ବେକକୁ ମାଡ଼ି ଢ଼ୋଳେଇ ପଡ଼ିବ । ନିଦ ଭାଙ୍ଗିଲା ବେଳକୁ ହୋଟେଲରୁ ଭିଡ଼ କମି ଆସିଥିବ । ଯାହା ବଳକା ଜିନିଷ ଥିବ ସଂଧ୍ୟାକୁ ନଷ୍ଟ ହୋଇଯିବାଠାରୁ କିଛି ତା' ଆଡ଼କୁ ମୁହାଁଇ ଦେଇ ହୋଟେଲ ମାଲିକ ତାକୁ କୃତକୃତ୍ୟ କରିଦେବ । ହୁଣ୍ଡା ମହନାର ଅଜସ୍ର ପ୍ରଶସ୍ତି କରିବ । ଉଭୟଙ୍କର ଲକ୍ଷ୍ୟ ସାଧିତ ହୋଇଯିବ ବିନା ଉପଦ୍ରବରେ ।

ଠିକ୍ ସେତିକିବେଳେ ଆସିବ ହରିସାହୁ । ମୁଢ଼ି ଠୁଙ୍ଗାକୁ ନବନୀତା ଆଗରେ ଥୋଇଦେବ । ସେତେବେଳକୁ ତାକୁ କେତେ ଭୋକ । ସକାଳୁ କିଛି ନଖାଇ ଅପେକ୍ଷା କରିଥିବ ନବନୀତା । କିନ୍ତୁ ସେ ଅଧପେଟେ ମୁଢ଼ି ଖାଉଣୁ ନ ଖାଉଣୁ ଅସମ୍ଭାଳ ହରିସାହୁ ତାକୁ ସେଇ ମାଟି ଚଟାଣରେ ଲଙ୍ଗଳା କରି ଶୁଆଇ ଦେବ । ଭାଲୁପରି ତା ଦେହସାରା ଶୁଙ୍ଘିଯିବ । କିଛି ଅଂଶ ଚାଟି ପକେଇବ ବଣଭାଲୁପରି । ସତେ ଯେପରି ସେ ନବନୀତା ଛାତିର ଚମଡ଼ା ଉତାରି ଦେବାକୁ ଚାହେଁ । ଧଇଁସଇଁ ହୋଇ ହରିସାହୁ ତା ଉପରୁ ଉଠି ଆସିଲାବେଳକୁ ନବନୀତା ତଥାପି କାଠଗଡ଼ ପରି ପଡ଼ି ରହିଥିବ । ସେ ଉଠିଲା ବେଳକୁ ହରିସାହୁ ସାଇକେଲ ମାରି ଚମ୍ପଟ୍ । ଘୁଙ୍ଗୀ ନବନୀତା ଉଠି ଅବଶିଷ୍ଟ ମୁଢ଼ି ଖାଇ ବସିବ । ଭାଇ ଫେରୁ ଫେରୁ ରାତି ବାର କି ଗୋଟାଏ ।

ସଂଧ୍ୟା ହେଉଁ ନ ହେଉଁଣୁ ଆସି ପହଞ୍ଚିଯିବ ଲକ୍ଷ୍ମଣ ସାମଲ । ଚାଳିଶ ବର୍ଷର ମଜଭୂତ ମର୍ଦ୍ଦ । ଦୁଇଟା ପିଲାର ବାପ । କୋଇଲା ଲୋଡ଼ିଂ ଅନ୍‌ଲୋଡ଼ିଂ ସେଡ୍‌ରେ ସେ କୁଲି ସର୍ଦ୍ଦାର । ମୁହଁରେ ଭଣଭଣ ଦେଶୀମଦ ଗନ୍ଧ । ଲକ୍ଷ୍ମଣ ସାମଲ ପାଟିରେ ବାଡ଼ବତା ନଥାଏ । କାହାକୁ ଶଳା କାହାକୁ ବେହିପୋ- ଯାହାକୁ ଯାହା ପାରିଲା ଶୋଧି ଦେଇଯିବ–କାରଣରେ ବା ଅକାରଣରେ । ହାତକୁ ଛିଞ୍ଚାଡ଼ି ପିଠିରେ ଓ ଗୋଡ଼ ଭଣ୍ଡାରେ ନାଲି ଗାମୁଛା ବାଡ଼େଇ ବାଡ଼େଇ ଏଇ ଆସି ପହଞ୍ଚି ଯିବ ଲକ୍ଷ୍ମଣ ସାମଲ । ବେପରୁଆ ବେଖାତିର୍ ମଣିଷ । ତାର ମୁଣ୍ଡରେ ଯେତେ ଯାକ ଗୋବର ଥିଲେ ବି ଦେହ ବଳରେ ସେ ବିଶ୍ୱାସୀ । ମଜଭୁତ୍ କଳା ମଚ୍‌ମଚ୍ ଚେହେରା–ତ୍ରିପଣ୍ଡ କଳା ମଇଁଷିଟାଏ । ସୂକ୍ଷ୍ମ ଚିନ୍ତା ତା ଜୀବନରେ ନାଇଁ । ଢକଢକ କରି ଅଧବାଲିଟିଏ ପାଣି ପିଇଯିବ । ଠୁଙ୍ଗା ଭିତରୁ ବରା ଗୁଲୁଗୁଲା, ପକୁଡ଼ି ମେଞ୍ଚାଏ ବାହାର କରି ନବନୀତା ଆଗରେ ଥୋଇ ଦେଉଁ ଦେଉଁ ରସିକତା କରି କୋଡ଼କୁ ଟାଣି ଆଣିବ ଓ ବଳିଷ୍ଠ ଲୁହା ମୁଦ୍‌ଗର ପରି ବାହୁ ଦି'ଟାରେ ଜାକି ହେବ । ମରୁ କି ରହୁ ତାର ସେଥିପାଇଁ ଖାତିର ନାହିଁ । ନବନୀତା ଦେହ ଓ ହାତ ମେଞ୍ଚା ମେଞ୍ଚା ହୋଇ କଡ଼ କଡ଼ ଡାକିଲେବି ଲକ୍ଷ୍ମଣ ସାମଲ ତାକୁ ଛାଡ଼ିବନି । ନବନୀତା ପ୍ରତିବାଦ କରିବନି । ଘୁଙ୍ଗି ନବନୀତାକୁ ଅନ୍ଧାର ଘରକୁ ଏକ ପ୍ରକାର ଟାଣି ନେଇଯିବ ଓ ଜୋର କରି ଶୁଆଇ ଦେଇ ତା ଛାତି ଉପରେ ମାଡ଼ି ବସିବ । ମଲାମଣିଷଟେ ପରି ନବନୀତା ପଡ଼ି ରହିଥିବ ।



Digitized by PPRACHIN, SOA

ଲକ୍ଷ୍ମଣ ସାମଲ ବେପରୁଆ ବାହାରି ଆସିବ- "ଶଳା ଶୋଇଥା । ଉଠିଲେ ପକୁଡ଼ି ପାଇବୁ ।" ତା'ର କ'ଣ ଆବେଗ ନା ଫାବେଗ ?

ନବନୀତା କେତେବେଳେ ଉଠି ଠୁଙ୍ଗା ଖୋଲିବ । ବରା ବା ଗୁଲୁଗୁଲା ବା ପକୁଡ଼ି ଯେଉଁଦିନ ଯାହା । ସେ ଜାଣେ ସେତିକି ହିଁ ତାର ପ୍ରାପ୍ୟ । ଆଉ ଏ ଅରଣା ମଇଁଷି ପରି ମଣିଷଟା ତାକୁ କଣ ବା ଦେଇ ପାରିବ ? ନା ସ୍ନେହ ନା ସୋହଗ ? ସେ ସବୁ ତା ନିଜ ଭାଉଜ ଆଉ ପିଲାଙ୍କର ପାଇବା ଦରବ । ଡବ ଡବ ଆଖିରେ ଘଡ଼ିଏ ଆକାଶକୁ ଚାହିଁବ ନବନୀତା । ଭାଇର ଆସିବାକୁ ଆହୁରି ଡ଼େରି । ସହର ବସ୍ତୀ ଶେଷର ଏ ଏକଣା ଘର । ନିଜ ନିଜ କାମରେ ସମସ୍ତେ ବ୍ୟସ୍ତ । କିଏ କାହା କଥା ବା ବୁଝୁଚି । ନିଜ ନିଜର ପେଟ ପାଟଣାରେ ଅଧିକାଂଶ ଘରେ କେବଳ ଛୁଆ ଓ ବୁଢ଼ାବୁଢ଼ୀଙ୍କୁ ଛାଡ଼ି ସମସ୍ତେ କିଏ କୁଆଡ଼େ ଯାଇଚନ୍ତି । ଫେରୁ ଫେରୁ ରାତି ଦି'ଘଡ଼ି ହେବ । ଅଧିକାଂଶ ମିସ୍ତ୍ରୀ ସାଙ୍ଗରେ ମୂଲିଆଣୀ । ମାଲିକଠାରୁ ପାଉଣାପତ୍ର ଆଣି ମୂଲିଆ ମୂଲିଆଣୀମାନଙ୍କୁ ବଣ୍ଟାକୁଣ୍ଟା ସରୁ ସରୁ କେତେ ବେଳ । ତା'ପରେ ନୂଆ ତିଆରି ହେଉଥିବା ଘର କୂଅରୁ ପାଣି ନେଇ ମିସ୍ତ୍ରୀ ଛଞ୍ଚେଇ ହେବାଯାକେ ଅନ୍ୟମାନଙ୍କ ଦୃଷ୍ଟି ଆଢୁଆଳରେ ଅପେକ୍ଷା କରିବ ମୂଲିଆଣୀ । ଏ କାମରେ ମାରୁଗଙ୍ଗା ନ ଥିବ । ଟିକେ ଓଲମ ବିଲମ ହେଲେ ତା ପରଦିନ ମିସ୍ତ୍ରୀ ବରଖାସ୍ତ କରିଦେବ । ମଜୁରୀ ନପାଇ ହରକତରେ ଚଳିବା ଅପେକ୍ଷା ମଧ ବୟସ୍କ ମିସ୍ତ୍ରୀର କଥାରେ ମୁଲିଆଣୀମାନେ ଠରାଠରି ହୋଇ ରାଜି ହୋଇଯିବେ । ତାଙ୍କ ମର୍ଦ୍ଦମାନେ ଯାଇଥିବେ କୋଇଲା ଖାଦାନ୍‌କୁ । ଖଣିରୁ ସିଫ୍‌ଟ ଡ଼ିଉଟି ସାରି କଳା କଳା ମଣିଷଟିମାନ ମଇଁଷି ଗୋଠ ପରି ଘରକୁ ଫେରୁ ଫେରୁ ତଥାପି ମୂଲିଆଣୀମାନେ ଘରକୁ ଫେରି ନଥିବେ ।

ସେତେବେଳେ ବୋଧହୁଏ ନବନୀତା ପିଣ୍ଡା ଖୁଣ୍ଟକୁ ଆଉଜି ବସିଥିବ, ବରା ବା ଗୁଲୁଗୁଲା ପାଟିରେ ପକାଉଥିବ । ସେ ବା କେତେବେଳ ? ଖୁବ୍ ଶୀଘ୍ର ସରିଯିବ ଠୁଙ୍ଗାରୁ ଖାଦ୍ୟ । ପାଣି ପିଇ ଏକ ରକମ ପେଟ ପୂରି ଯାଇଥିବା ପରି ଅନୁଭବ କରିବ ନବନୀତା । ଘରେ ତ ରୋଷେଇ ନାହିଁ । ଭାଇ ସବୁଦିନେ ବାହାରେ ବାହାରେ ଖାଇ ନେଉଥିବ ।

ରାତି ୯ଟା ବେଳକୁ ଦିନେ ଦିନେ ଆସିବ ବାସୁଦେବ । ସେ ସବୁଦିନେ ଆସେ ନାହିଁ- ଯଦିଓ ଘୁଙ୍ଗି ନବନୀତା ତାକୁ ଆସୁଥିବ ବୋଲି ଭାବୁଥାଏ- ଅବଶ୍ୟ ସେହିପରି ନିଷ୍କମ୍ପ ଓ ଆବେଗହୀନ ଭାବେ । ତଥାପି ବାସୁଦେବ ଆସିଲେ ତାକୁ ଭାରୀ ଭଲ ଲାଗୁଥିବା ପରି ଜଣାଯାଏ। ତିରିଶ ବର୍ଷର ଯୁବକ ବାସୁଦେବ । ଏ ଅଞ୍ଚଳରେ କର୍ମୀ ନାମରେ ଜଣା । ଶ୍ରମିକ ବସ୍ତିରେ ବୁଲି ବୁଲି ସେ ଭଲ ମନ୍ଦ ବୁଝେ । କାହା କାହା ପାଇଁ ବେଳେ ବେଳେ ଉପରିକଙ୍କୁ ଆପତ୍ତି କରେ । କେହି ଅସୁସ୍ଥ ଥିଲେ ବୀମା ଡାକ୍ତରଖାନାରୁ ଔଷଧ ଆଣିଦିଏ । ଦେଶର ନାନା ଖବର ରଖେ ଓ ବେଳେ ବେଳେ ସେ କଥା କହି ବସ୍ତୀ ବାଲାଙ୍କୁ ଚମତ୍କୃତ କରିଦିଏ । ବେଶୀ ପାଠ ପଢ଼ି ନଥିଲେ ବି ମାଟ୍ରିକ୍ ଫେଲ୍ । ମନିଅର୍ଡ଼ର ଫର୍ମ ପୂରଣ କରିଦିଏ ଓ କୁପନ୍‌ରେ ଟଙ୍କା ପଠେଇଲା ବାଲା କହିବା ଅନୁସାରେ ଦି'ପଦ ଭାଷା ଲେଖିଦିଏ । ସାଇରେ ତାର ସେଥିପାଇଁ ବେଶୀ ଆଦର ଓ ସମ୍ମାନ ।



Digitized by PPRACHIN, SOA

ବାସୁଦେବ ମଝିରେ ମଝିରେ ଘୁଙ୍ଗି ନବନୀତା ପାଖୁ ଆସେ । ତା'ଠାରୁ କଥାର ଜବାବ ଚାହେଁ । ଉତ୍ତର ମାଗେ । କିନ୍ତୁ ନବନୀତା କୌଣସି କଥାର ଉତ୍ତର ଦିଏନି । ସେମିତି ମୁହଁକୁ ଶୁଖେଇ ଡ଼ବ ଡ଼ବ ଆଖିରେ ତାକୁ ଚାହିଁ ରହିଥାଏ । ବାସୁଦେବ ବେଳେବେଳେ ବିରକ୍ତ ହୁଏ । ତାକୁ କହେ ନିଜର ପ୍ରତିରକ୍ଷା କରି ଶିଖ୍ । ଏ ଶ୍ରମିକ ବସ୍ତିରେ ନାନା ପ୍ରକାର ଲୋକ ଅଛନ୍ତି । ତୋ ପାଖୁ ଆସିବେ ନାନା ଅଭିଳାଷ ନେଇ । ତୁ ସେମାନଙ୍କୁ ବାଧା ଦେଇ ଶିଖ୍ । ଅନ୍ତତଃ ବିପଦ ବେଳେ ଚିତ୍କାର କରିବା ଉଚିତ୍ ।

କିନ୍ତୁ ନବନୀତା ଏସବୁ କିଛି ବୁଝେନି । ଯଦିଓ ବାସୁଦେବ ଭଲ ମଣିଷ ପରି ତାକୁ ନାନା ଉପଦେଶ ଦିଏ, ତାକୁ ଚୁଡା, ମୁଡ଼ି ପକୋଡ଼ି ବା ବରା ଦିଏ ନାହିଁ । ନିୟମିତ ଆସେ ନାହିଁ । ତା' କଥାରେ ପଡ଼ିଲେ ସେ ଯେ ଖାଇବା ବିନା ମରିଯିବ- ଏହା ନିଶ୍ଚିତ କଥା । ତଥାପି ବାସୁଦେବ ପ୍ରତି ତା' ମନରେ ଟିକିଏ ପ୍ରବଣତା ଥାଏ । କ'ଣ ସେ ପ୍ରବଣତା ଓ କାହିଁକି ସେ ବୁଝେ ନାହିଁ । ଅନ୍ତତଃ ଲକ୍ଷ୍ମଣ ସାମଲ ବା ହରିସାହୁ ପରି ସେ ତାକୁ ଶୁଆଇ ଦେଇ ତା ଛାତିକୁ ମାଡ଼ିବସେ ନାହିଁ- ନିଶ୍ୱାସ ରୁନ୍ଧି ଦିଏ ନାହିଁ- ଏହାହିଁ ତା ପାଇଁ ଖୁବ୍ ବଡ଼ ଆଶ୍ୱାସନା । କିନ୍ତୁ ସେପରି କରୁ ନାହିଁ କାହିଁକି ? ବୟସ କମ୍ ହୋଇ ଥିବାରୁ ତାକୁ କଣ ସେ ବାଗ ଜଣାନାହିଁ ? ନବନୀତା ଭାବେ ବାସୁଦେବକୁ କିଛି ଖାଇବାକୁ ଦିଅନ୍ତା, ବସିବାକୁ ଚଉକିଟିଏ ଦିଅନ୍ତା କିମ୍ବା ଦଉଡ଼ିଆ ଖଟ ଉପରେ ଧୋବ ଫରଫର ବିଛଣା ଚାଦରଟିଏ ପାରି ଦିଅନ୍ତା । କିନ୍ତୁ ଏସବୁ ଯେ ଘରେ କିଛି ନାହିଁ । ବେଳେବେଳେ ବାସୁଦେବ ତା' ହାତକୁ ଧରି ପକାଏ । ହାତର ରେଖା ଗଣେ । ଆଙ୍ଗୁଠିଗୁଡ଼ାକୁ ଧୀରେ ଧୀରେ ଚିପିଦିଏ । ଚେଷ୍ଟା କରେ ନବନୀତା କିଛି ଗୋଟାଏ କହୁ । ହସୁ ବା କାନ୍ଦୁ ।

କିନ୍ତୁ ସ୍ପନ୍ଦନହୀନ ଭାବେ ନବନୀତା ସେମିତି ପାଖରେ ବସିଥାଏ, ଶୁଣୁଥାଏ । ବେଳେବେଳେ ହୁଁ ହୁଁ ହୁଏତ ମାରେ । ନବନୀତାକୁ କ'ଣ ବାସୁଦେବ ବାହାହେବ ଯେ ସେ ତା ଉପରକୁ ଢ଼ଳିପଡ଼ିବ ? ଖାଲି କଥା କୁହାଳିଆ ବଦମାସୀଟାଏ । ରାଇଜଯାକର କଥା ଗପି ଗପି ତାକୁ କୁଆଡ଼େ ବୁଦ୍ଧିଆ କରିଦେବ । ନିରୀହ ଗାଈ ପରି ଡବଡବ ଆଖିରେ ଚାହିଁ ରହିଥାଏ ନବନୀତା । ତାର କ୍ରିୟା ନାହିଁ କି ପ୍ରତିକ୍ରିୟା ନାହିଁ ।

+ + + ସେଦିନ କିନ୍ତୁ ମନେ ହେଉଥଲା ବାସୁଦେବ ଗୋଟାଏ କିଛି ନିଷ୍ପତ୍ତି ନେଇ ସାରିଛି । ବସ୍ତିରେ ଆଦର୍ଶ ଦେଖାଇବା ପାଇଁ ସେ ନବନୀତାକୁ ଗ୍ରହଣ କରି ନେବ ଯଦିଓ ଖୁବ୍ ଜନରବ ଓ କୋଳାହଳ ନବନୀତାର ପିଲା ହେବ । କାହାପିଲା କିଏ କହିବ ? କିଏ କହୁଚି ହରି ସାହୁର ତ କିଏ କହୁଚି ଲକ୍ଷ୍ମଣ ସାମଲର । ଏ ଦୁହେଁ କିନ୍ତୁ ପ୍ରଚାର ଚଳେଇଚନ୍ତି ପିଲା ବାସୁଦେବର । ଯଦିଓ ଲୋକେ ବିଶ୍ୱାସ କରୁନାହାନ୍ତି ତଥାପି କେହି କେହି ସତ ମଣୁଚନ୍ତି । ବାସୁଦେବର ଶିରୀ ଦେଖି ନ ପାରୁଥିବା ତା ବୟସର କେତେ ଜଣ ଟୋକା ଏପରି ପ୍ରଚାରରେ ଆଗୁଆଳ ସାଜିଛନ୍ତି । ପାଉ ପାନେ ଆଦର୍ଶ ପୁରୁଷ । ଦେଶ ସେବା କରୁଥିଲା । ବସ୍ତୀକୁ ଉଠେଇ ଧରିବ ବୋଲି ପ୍ରଚାର କରୁଥିଲା । ଉଦ୍ଧାର କରିବାକୁ ଆସିଥିଲା ଯୁଗପୁରୁଷ । ଶଳା, ବଡ଼ ବଡ଼ କଥା କହୁଥିଲା ।



Digitized by PPRACHIN, SOA

ବାସୁଦେବ ଆଗେଇ ଆସିଥିଲା ଦୃଢ଼ତାର ସହିତ । ତା' ଆଡୁ ସେ ବି କହି ଦେଇଥିଲା ସମସ୍ତଙ୍କୁ ଶୁଣେଇ ଶୁଣେଇ ଯେ ସେ ନବନୀତାକୁ ବାହାହୋଇ ସାରିଚି- ଗାନ୍ଧର୍ବ ମତରେ । ସେ ପିଲା ଯାହାର ହେଉପଛେ ସେ ତା'ର ବାପ ହେବାକୁ ପ୍ରସ୍ତୁତ ହୋଇ ସାରିଛି । ନବନୀତାର ଭାଇ ଗୁଣ୍ଡା ମହନା ତାକୁ ଘରେ ବାଡ଼ିଆବାଡ଼ି କରି ବେହୋସ୍ କରିଦେଇଥଲେ ବି ସେ ସେଥିପାଇଁ ପରବାୟ କରିନାହିଁ । ସେ ନବନୀତାକୁ ପାଖକୁ ଟାଣିଆଣି କହିଚି- ଯେ ପଚାରିଲେ ତୁ କହିବୁ ପିଲାର ବାପା ବାସୁଦେବ । ମୁଁ ତାକୁ ଆଦରି ନବାକୁ ପ୍ରସ୍ତୁତ ହୋଇ ସାରିଚି । ଯେ ଯାହା କହୁପଛେ !

ନବନୀତା କିଛି ବୁଝୁଚି, କିଛି ବୁଝୁନାହିଁ । ଏକାନ୍ତ ସରଳ ନିର୍ବୋଧ ଘୁଙ୍ଗୀ ଝିଅଟାଏ । କିମ୍ବାର ନେଇ ମଝି ନଈରେ କଲେବି ତଥାପି ତାର କିଛି ଚିନ୍ତା ନାହିଁ । ମେଣ୍ଟାଲ୍ ରିଟାଡେସନ୍ ବୋଲି ଡାକ୍ତର କହିବେ । କିନ୍ତୁ ସେ ଯେ ମାଆ ହେବ । ପିଲାଟାଏ କୋଳରେ ଧରିବ, ତାକୁ ପାଳିବ । ବଡ଼ କରିବ- କେଡ଼େ ଅସମ୍ଭବ କଥା ଏସବୁ । ବାସୁଦେବ ପ୍ରତିଶ୍ରୁତି ଦେଇଚି- ବାରମ୍ବାର କହିଚି ଯେ ସେ ଯେପରି ସମସ୍ତଙ୍କୁ କହିଦେବ- ପିଲା ବାସୁଦେବର ବୋଲି । କିନ୍ତୁ ତଥାପି ସେ କହି ପାରୁନି । ଯେ ଯେତେ ପଚାରିଲେ ସେ ଡବ ଡବ କରି କେବଳ ଚାହୁଁଚି, କିଛି ଉତ୍ତର ଦେଉନି । କିପରି ଏତେ ବଡ଼ ମିଛ କଥାଟାଏ କହିଦେଇ ବାସୁଦେବ ମୁଣ୍ଡରେ ଅପବାଦର ଅଠା ବୋଳିଦେବ ?

ଲକ୍ଷ୍ମଣ ସାମଲ ଓ ହରିସାହୁ ବେଳେବେଳେ ଏବେ ବି ଆସୁଚନ୍ତି । କିନ୍ତୁ ଆଗପରି ସେମାନେ ତାକୁ ଅସାଡ଼ କରି ତଳେ ଶୁଆଇ ଦେଉ ନାହାନ୍ତି । ବରଂ ଭାରୀ ଥଟ୍ଟାଟାପରା କରୁଚନ୍ତି । ରାଗୁଚନ୍ତି ଆଉ କଅଁଳେଇ ସାକୁଳଉଚନ୍ତି । "ଖବର୍ଦାର୍, ଯେ ପଚାରିଲେ କହିବୁ ତୋ ପେଟର ପିଲା ବାସୁଦେବର । ସେ ପୋଡାମୁହାଁ ଟୋକା ତତେ ବାହା ହେଇପଡୁ । ଆମ ନାଁ କହିଲେ ତୋ ପଡା ରଖିବୁନି । ଏ ଚୁଲିଚାଳ ଉଡ଼େଇ ଦେବୁ । ନେ ବରା, ପକୁଡ଼ି ଖାଇଦେ । ଆମେ ଆସୁଚୁ ।"

ଆଜିକାଲି ଲକ୍ଷ୍ମଣ ସାମଲ ଓ ହରିସାହୁ ଭାରୀ ଯୋଡ଼ି ହୋଇ ଯାଇଚନ୍ତି । ଯେତେବେଳେ ଆସୁଚନ୍ତି, ଆସୁଚନ୍ତି ସାଙ୍ଗସୁଙ୍ଗା ହୋଇ କେତେ ସଲା ସୁତୁରା କରୁଚନ୍ତି । କାନରେ ମୁହଁକୁ ମାଡ଼ି ତୁନିତାନି କେତେ କଥା ହେଉଚନ୍ତି । କେତେ ସହାନୁଭୂତିର କଥା ବି କହୁଚନ୍ତି । ନବନୀତା ଏସବୁ କିଛି ବୁଝି ପାରୁନି । ତାର ଏକମାତ୍ର ପରିଚୟ ସେ ଘୁଙ୍ଗୀ । ପିଲାବେଳୁ ଅଯତ୍ନ, ଅଖାଦ୍ୟ ଓ ଅଭାବରେ ସେ ସେହିପରି ବଢ଼ି ଆସିଚି । ତା' ବାପା ବୋଉଙ୍କର ତା' ପ୍ରତି ଆଦର ନଥିଲା । ହେପାଜତ ନଥିଲା । ଭଲ କରି ପେଟ ପୂରେଇ ଦିନେ ସେ ଖାଇପାରିଲାନାହିଁ । ବାରମ୍ବାର ରୋଗରେ ପଡ଼ି ପଡ଼ି ବିନା ପଥ୍ୟ ଓ ଔଷଦରେ ତା ଭିତରୁ ସବୁ ସୁକୁମାର ପଣିଆ କୁଆଡେ ଉଭେଇ ଯାଇଛି । କେତେ ଥର ମରୁ ମରୁ ବଞ୍ଚିଚି । ଏବେ ତ ବଞ୍ଚୁ ବଞ୍ଚୁ ମରୁଚି ପ୍ରତିଦିନ ।

ହରି ସାହୁ, ଲକ୍ଷ୍ମଣ ସାମଲ ଏପରି ଲୁଚି ଲୁଚି କେବେ ଆସନ୍ତିନି । ଆଜି ସେମାନେ ଆସିଚନ୍ତି ରାତି ଦଶଟାରେ । ଭାରୀ ସାକୁଲା ସାକୁଲି କରୁଚନ୍ତି ନବନୀତାକୁ । କେତେ



Digitized by PPRACHIN, SOA

ଆଦର କରୁଚନ୍ତି । ତାକୁ ଭଲ ଶାଢ଼ୀଟାଏ ପିନ୍ଧିବାକୁ ଦେଇଚନ୍ତି । ମୁଣ୍ଡ ପାଇଁ ତେଲ, ଦେହ ପାଇଁ ସାବୁନ୍ । ଆଜି ବସ୍ତୀ ଭାରୀ ଶୂନ୍‌ଶାନ୍- ଖାଁ ଖାଁ ଲାଗୁଚି । କେହି କୁଆଡ଼େ ଦିଶୁ ନାହାନ୍ତି । କ'ଣ ହେଇଚି କେଜାଣି । କିଏ କହୁଚି ଏ ବସ୍ତୀକୁ ସନ୍ତ୍ରାସବାଦୀ ଆସିଛନ୍ତି; କିଏ କହୁଛି ଅଜି ରାତିରେ ଧୂମକେତୁ ପଡ଼ିବ, ବସ୍ତୀ ଜଳି ଧ୍ୱଂସ ହୋଇଯିବ । ଲୋକଙ୍କ ମନରେ କୋକୁଆ ଭୟ । ବାସୁଦେବ କେଉଁଠି ଥିବ କେଜାଣି ? ସହରରୁ ବୋଧହୁଏ ଏବେ ଫେରୁଥିବ ।

ଲକ୍ଷ୍ମଣ ସାମଲ ତାର ପୁରୁଣା ସ୍ୱଭାବ ସୁଲଭ ପଶୁତ୍ୱ ନେଇ କେତେବେଳୁ ଜଳୁଚି । ଆସିଲା ବେଳୁ ସେ କିପରି ନିଆରା ଜଣା ଯାଉଚି । ହରିସାହୁ ଠୁଙ୍ଗାରେ କ'ଣ ଧରିଚି-ମୁଢ଼ି ନୁହେଁ କି ଚୂଡ଼ାଭଜା ନୁହେଁ- ଆଉ କଣ ହେବ ବୋଧେ । ତାକୁ ପିଣ୍ଡାରେ ଜଗି ବସିବାକୁ କହି ଲକ୍ଷ୍ମଣ ସାମଲ ନମନୀତାକୁ ଘର ଭିତରକୁ ଟାଣି ଟାଣି ନେଇଗଲା । ନବନୀତା ବୋଧହୁଏ ପ୍ରଥମଥର ପାଇଁ ଚିତ୍କାର କରୁଚି । ବାଧା ଦେଉଚି । ଲକ୍ଷ୍ମଣ ସାମଲ ଛାତିରୁ ପୁଳାଏ କାମୁଡ଼ି ତାକୁ ରକ୍ତାକ୍ତ କରି ଦେଲା ଓ ପରେ ପରେ ଅନୁଭବ କଲା ତା ଛାତିରେ ପଡୁଚି ଠୋପା ଠୋପା ତାତିଲା ରକ୍ତ । 'ମରତୁ ଶଳା' କହି ପ୍ରଚଣ୍ଡ ରାଗ ଓ କ୍ରୋଧରେ କ୍ଷତାକ୍ତ ଲକ୍ଷ୍ମଣ ସାମଲ ତା ତଣ୍ଟିଟାକୁ ଜୋରରେ ଚିପି ଧରିଲା । କେବଳ ଗଁ ଗଁ ଶବ୍ଦ- ନିଶ୍ଚଳ ନିସ୍ପନ୍ଦ ଦେହଟାଏ ମାତ୍ର । ଲକ୍ଷ୍ମଣ ସାମଲ ପରେ ପରେ ହରି ସାହୁ ସେଇ ଅସାଡ଼ ଦେହଟାକୁ ମାଡ଼ି ବସିଲା ବେଳକୁ ତାକୁ କିପରି ଜଣାଗଲା ସେ ହଲଚଲ ହେଉନାହିଁ । କିପରି କୋହ୍ଲ ମାଇଲା ପରି ଥଣ୍ଡା ଥଣ୍ଡା ଲାଗୁଚି । ତା ଉଲଗ୍ନ ଛାତିରେ ଲୁଣିଆଁ ରକ୍ତର ସ୍ୱାଦ ସେ ବାରି ପାରିଲା । ମୁଣ୍ଡକୁ ଗଡେଇ ଦେଖିଲା ପିଣ୍ଡରେ ପ୍ରାଣ ନାହିଁ । ଅତିରିକ୍ତ ଯନ୍ତ୍ରଣାରେ ପ୍ରାଣପକ୍ଷୀ ଉଡ଼ି ଯାଇଚି ବୋଧହୁଏ ।

ହରିସାହୁ ଲୁଗାପଟା ସଜାଡ଼ି ଲକ୍ଷ୍ମଣ ସାମଲକୁ ଘରକୁ ଡାକିଲା । ଦିହେଁ ଜାଣିଲେ ନବନୀତା ମରି ଯାଇଚି । ଉପାୟ କଣ ? କିଛି ବାଟ ନପାଇ ଲକ୍ଷ୍ମଣ ସାମଲ କବାଟଟାକୁ କିଳି ହରି ସାହୁ ପଛେ ପଛେ ବାହାରକୁ ଚାଲି ଆସିଲା । ତା'ପରେ କାହା ମୁଣ୍ଡରୁ ବାହାରିଲା ଘର ଜାଳିଦେଲେ ଶଳା ପୋଡ଼ି ପାଉଁଶ ହୋଇଯିବ- କଥା ଜଣା ପଡ଼ିବନି । ଲକ୍ଷ୍ମଣ ସାମଲ କାଳବିଳମ୍ବ ନକରି ଘରେ ନିଆଁ ଲଗେଇ ଦେଲା । ବାଡ଼ି ପଟେ ପଟେ ଦି'ଟା ତ୍ରିପଣ୍ଡ କଲା ଯନ୍ତୁ ଲୁଚି ଲୁଚି ଖସିଗଲେ । ନିଆଁ ମଥାନକୁ ଉଠି ପ୍ରଖର ପବନରେ ମାଘ ପୂର୍ଣ୍ଣିମା ଅଗ୍ନିପରି ଜଳିବାକୁ ଲାଗିଲା । ବସ୍ତୀର ନିଦ ତଥାପି ଭାଙ୍ଗୁନଥାଏ । କିଛି ଗୋଟାଏ ଅଘଟଣ ଆଜି ରାତିରେ ଘଟିବ ବୋଲି ସମସ୍ତେ କବାଟ କିଳି ନିଜ ନିଜର ଠଣା ମାନଙ୍କରେ ପଶି ସାରିଥାନ୍ତି । ଖଟ ଖୁରାରେ ବନ୍ଧା ହୋଇ ପଡ଼ିଥାନ୍ତି କେତେଜଣ । ମଣିଷ ପୋଡ଼ି ଯାଉଥିବାର ଫୁରୁକୁଟି ଗନ୍ଧରେ ବସ୍ତୀର ବାୟୁମଣ୍ଡଳ ବିଷାକ୍ତ ହୋଇ ଉଠୁଥିଲା । ବସ୍ତୀ ଶେଷମୁଣ୍ଡ ଘରଟା ମାତ୍ର କେତେ ସମୟ ଭିତର ପୋଡ଼ି ପାଉଁଶ ହୋଇ ସାରିଥାଏ । କେତେବେଳେକେ କେହି କେହି ଦୌଡ଼ା ଦୌଡ଼ି କରି ସେଇ ଘରଟା ଆଡେ ଆସିଲେ । କିନ୍ତୁ ଅଧାପୋଡ଼ା ମଲା ଦେହଟାକୁ ଟାଣି ଟାଣି ବାହାରକୁ ଆଣିସାରି ନିଆଁ ଧାସରେ ନିଜେ



Digitized by PPRACHIN, SOA

ପୋଡ଼ି ହୋଇ କେତେବେଳୁ ବାସୁଦେବ ଛଟପଟ ହେଉଥାଏ । ତା' ହାତ ଓ ମୁହଁ ନିଆଁ ଧାସରେ ସଂପୂର୍ଣ୍ଣ ଜଳି ଯାଇ କିମ୍ଭୂତ କିମାକାର ହୋଇ ଯାଇଥାଏ । ବେକ ଚମ ଜଳି ତରଳି ଲାଗି ଯାଇଥାଏ । ତାକୁ ସହଜରେ ଚିହ୍ନି ହେଉନଥାଏ । କିନ୍ତୁ ତଥାପି ତା' ପିଣ୍ଡରେ ପ୍ରାଣଥାଏ ଓ ସେ ଖଣ୍ଡିଆ ଖଣ୍ଡିଆ ସ୍ୱରରେ କଥା କହୁଥାଏ । ଆମ୍ବୁଲାନ୍‌ସ ଓ ଦମକଳ ଏକାବେଳକେ ପହଞ୍ଚି ଯାଇଥିଲେ । ନବନୀତାର ଅଧାପୋଡ଼ା ଦେହକୁ ପୋଷ୍ଟମର୍ଟମ ପାଇଁ ଆମ୍ବୁଲାନ୍‌ସରେ ଲଦି ସାରି ଷ୍ଟ୍ରେଚରରେ ବାସୁଦେବକୁ ଡାକ୍ତରଖାନାକୁ ନେବା ପାଇଁ ଉଦ୍ୟମ ହେଉଥାଏ । କନଷ୍ଟେବଲ୍ ଦୁଇଜଣ ଆଗତୁରା ଆମ୍ବୁଲାନସ୍‌ରେ ବସି ସାରିଥା'ନ୍ତି । ଆଉ ସେ ପଶୁ ଦୁଇଟା ନିଜନିଜଘରେ ଧକେଇ ଧକେଇ କେବଳ ପାଣି ପିଉଥାନ୍ତି । କଥା କହିବା ଅବସ୍ଥାରେ ନଥା'ନ୍ତି ।





Digitized by PPRACHIN, SOA

# ସୁଜାତା ମହାନ୍ତି

ଆଶ୍ରମ ସ୍କୁଲର ବାରଣ୍ଡାରେ ବସି ସୁଜାତା ମହାନ୍ତି ଆକାଶ ପାତାଳ ଭାବି ଚାଲିଚି । ବାହାରେ ଗର୍ଜୁଚି ବର୍ଷା, ଗର୍ଜୁଚି ଝଡ଼ ଆଉ ତୋଫାନ । ପାଖ ପାହାଡ଼ର ଗଛ ଗୁଡ଼ା ଦୋହଲି ଉଠୁଛନ୍ତି-ବେଳେବେଳେ ଲାଗିଯାଉଚନ୍ତି ପାଖକୁ ପାଖ- ପୁଣି ଅଲଗା ହୋଇ ଯାଉଚନ୍ତି । ପାହାଡ଼ରୁ ଗଡ଼ି ଚାଲିଚି ବର୍ଷାଧାର । ଖୁବ୍ କ୍ଷିପ୍ର ତା'ର ଗତି-ରାସ୍ତା ତା'ର ଦୀର୍ଘ- ସମୁଦ୍ର ବହୁତ ଦୂରରେ ।

ସୁଜାତା ମହାନ୍ତି କରୁଣ ଆଉ ନିଷ୍ପଲକ ଭାବରେ ସେଇ ପାହାଡକୁ ଚାହିଁ ରହିଚି । ପିଲାମାନେ ବର୍ଷା ଆଗରୁ ଛୁଟି ହୋଇ ଚାଲିଗଲେଣି । ଆଦିବାସୀ ପିଲା- ବର୍ଷାରେ ଭିଜୁଥିବେ- ତିନ୍ତୁଥିବେ । ଆଉ ଆଠ ଦଶ ଜଣ ଛାତ୍ର ବାସରେ ଅଛନ୍ତି । ସୁଜାତା ମହାନ୍ତି - ଛାତ୍ରାବାସର ତତ୍ତ୍ୱାବଧାରିକା ଆଉ ଆଶ୍ରମ ସ୍କୁଲର ପ୍ରଧାନ ଶିକ୍ଷୟିତ୍ରୀ ।

ଅଚାନକ ବର୍ଷା- ମେଘ ଅନ୍ଧାର ଘୋଟି ରହିଚି । ଦିନ ବୋଧହୁଏ ଅତିକ୍ରାନ୍ତ ହେଲାଣି । ଏଇ, ରାତି ଆସିଯିବ । ପାହାଡ଼ର ଯନ୍ତୁଯନ୍ତା ଆଜି ବ୍ୟସ୍ତ ହୋଇ ପଡୁଥିବେ । ବିବ୍ରତ ହୋଇ ଆଶ୍ରା ଖୋଜୁଥିବେ । ନାଗ ଗୋଖୁର ଗାତରୁ ବାହାରି ଗଛ ମୂଳରେ ମୋଡ଼ି ହୋଇ ଶୋଇଥିବେ । ଗଧିଆ, ହେଟାବାଘ, ଭାଲୁ ବିବ୍ରତ ହୋଇ ପଡୁଥିବେ । ସୁଜାତା ମହାନ୍ତି ଭାବି ଚାଲିଚି.... କେତେ ବେଖାପୀ କଥା ।

"ପାହାଡ଼ ପର୍ବତରେ ବର୍ଷାହେଲେ ଛୋଟ ଛୋଟ ଜଳଧାରା ଗୁଡ଼ିକ ବହି ଆସି ଏକାଠି ମିଳିତ ହୁଅନ୍ତି । ତାକୁ କହନ୍ତି ନଦୀ । ନଦୀ ନିମ୍ନ ମୁଖରେ ପ୍ରବାହିତ ହୋଇ ସମୁଦ୍ରରେ ପଡ଼େ ।" ପିଲାଙ୍କୁ ସେ ବର୍ଷା ହେବା ଆଗରୁ ଭୂଗୋଳରେ ପଢ଼େଇଚି ନଦୀର ସଂଜ୍ଞା ।

"ବର୍ଷାରେ ତିନ୍ତିଲେ ଶର୍ଦ୍ଦି, ଇନ୍‌ଫ୍ଲୁଏନ୍‌ଜା ଆଉ ଜର ହୁଏ"- ଏ ଆଦିବାସୀ ପିଲାଗୁଡ଼ା ସ୍ୱାସ୍ଥ୍ୟ କଣ ବୁଝୁଚନ୍ତି ? ତଥାପି ତ ବେଶ୍ ଅଛନ୍ତି- ଦେହରୁ ଚିକ୍‌କଣ ନିଗିଡ଼ି ପଡୁଚି । ସବୁବେଳେ ବର୍ଷାରେ ତିନ୍ତି ମଧ ତାଙ୍କୁ ଜର ବା ଇନ୍‌ଫ୍ଲୁଏନ୍‌ଜା ହେଉନାହିଁ ।

ସୁଜାତା ମହାନ୍ତି ଭାବୁଚି ଅନେକ କଥା । ଗଳ୍ପ, କବିତା, ପ୍ରବନ୍ଧ, ପ୍ରେମ, ପରିଣୟ, ସଂସାର- ସ୍ୱାମୀ ସ୍ତ୍ରୀର ବନ୍ଧନ । ସ୍ୱପ୍ନ କବିତା ନୁହେଁ- କିନ୍ତୁ ଲେଖା ଭିତରେ ଯେଉଁ ସ୍ୱପ୍ନ ଆତ୍ମପ୍ରକାଶ କରେ ତାହାହିଁ କବିତା ।



Digitized by PPRACHIN, SOA

କାଳିଦାସ ମେଘଦୂତ ଲେଖିଥିଲେ । ଯକ୍ଷ ରାମଗିରି ଆଶ୍ରମରୁ ଅଳକାପୁରୀକୁ ମେଘହାତରେ ବାର୍ତ୍ତା ପଠେଇଥିଲେ । ଏମିତିଆ ଦିନ ତ ହେଇଥିବ । ମେଘ ପାହାଡ଼ ଛାତିରେ ଲୋଟି ପଡୁଥିଲା । ମେଘ କଣ ବାର୍ତ୍ତା ନେଇଥିବ । ଯକ୍ଷ ପ୍ରେମ ପାଗଳ । ଚେତନ ଅଚେତନ ଭିତରେ ତଫାତ୍ ବୁଝୁନି । ଗୋଟାଏ ବର୍ଷ ସହି ପାରୁନି ଅପଦେବତାର ଅଭିଶାପ ଜନୀତ - ପ୍ରିୟାର ବିଚ୍ଛେଦ ।

ସୁଜାତା ମହାନ୍ତି ଭାବିଲା ପିଲାମାନଙ୍କୁ ପାଖକୁ ଡାକିବ । ସେମାନେ ପାଖରେ ବସିବେ । ସେ ତାଙ୍କୁ ଗପ କହିବ । ଛୋଟ ଛୋଟ କଥା; ଭାରି ବର୍ଷା ହେଉଚି । ଘଡ଼ଘଡ଼ିର ଗର୍ଜନ । ସଂଧ୍ୟା ନଇଁ ଆସିଲାଣି । ବିଜୁଳୀ ଘନ ଘନ ମାରୁଚି । ସୁଜାତା ମହାନ୍ତି ଛାତିରେ ଛନକା ପଶିଲା ।

ଛୋଟ ପିଲାଗୁଡ଼ାଙ୍କୁ କି ଗପ ସେ କହିବ ? କଣ ବୁଝିବେ ଏ ସରଳ ଆଦିବାସୀ ବାଳିକା ଗୁଡ଼ିକ । ନୀରବ ହେଲା ସୁଜାତା ମହାନ୍ତି । ଆଖିରେ ତାର ଅଜାଣତରେ ଭରିଆସିଲା ଲୁହ ।

ପିତୃମାତୃହୀନା ସୁଜାତା ମହାନ୍ତି । ବଂଚିବାର ଅର୍ଥହୀନ ମୋହରେ ଆଶ୍ରମ ସ୍କୁଲରେ ଏତେ ଦୂରରେ ସେ ପଡ଼ିଚି । ଘର ସମତଳ ଅଞ୍ଚଳରେ । ଘରେ ଅଛନ୍ତି ଦାଦା ଆଉ ଖୁଡ଼ୀ । ତାଙ୍କରି ପାଖକୁ ହେଲେ ସେ ଚାଲିଯା'ନ୍ତା । ଏ ବର୍ଷାରେ ଏକାଟିଆ ଦୂରରେ ରହିବାକୁ ମନ ଚାହୁଁନି । ଏଡ଼େ ବର୍ଷା, ଏଡ଼େ ତୋଫାନ । ରାସ୍ତାଘାଟତ ବନ୍ଦ ହୋଇ ଯିବଣି । ବସ୍ ଆସୁନଥିବ । ନା-

ପାଠ ପଢ଼ି ଚାକିରୀ କରିବାକୁ କୌଣସି ଝିଅ ଖୁସି ମନରେ ଚାହେଁନି । ସୁଜାତା ମହାନ୍ତି ବି ଚାହିଁ ନଥିଲା । କିନ୍ତୁ ସାଙ୍ଗସାଥୀ ମହଲରେ ସେ ଦମ୍ଭର ସହିତ କହୁଥିଲା "ମୁଁ ଚାକିରୀ କରିବି- ନିଜକୁ ନେଇ ଗୋଟାଏ ବସା ବାନ୍ଧିବାକୁ ମତେ ଭଲ ଲାଗେନି । ନାରୀର ବି ସ୍ୱାଧୀନତା ଦରକାର ।"

ବାପା ମା' ଥିଲେ ତା' ଜୀବନର ଗତି ନିଆରା ହୋଇଥା'ନ୍ତା । ସୁଜାତା ମହାନ୍ତି ନିଜକୁ ପୋଷିବା ପାଇଁ, ଦାଦି ଖୁଡ଼ୀଙ୍କ ପାଟିରେ ଆହାର ଦେବାକୁ ଆଜି ଶହ ଶହ ମାଇଲ୍ ଦୂରରେ ନିଛାଟିଆ ଜଙ୍ଗଲରେ ଶିକ୍ଷୟିତ୍ରୀ ହୋଇ ନଥାନ୍ତା । ସେ ହେଇଥାନ୍ତା ସ୍ୱାମୀର ବଧୂ, ସନ୍ତାନର ମାଆ । ତା' ପାଠ ପଢ଼ାର ସେଇଠି ହୋଇଥାନ୍ତା ପରୀକ୍ଷା ।

ସୁଜାତା ମହାନ୍ତି ଅତି ମାତ୍ରାରେ ଅସ୍ୱସ୍ତି ଅନୁଭବ କଲା । ନା- ସେ ଏଇ ମୁହୂର୍ତ୍ତରେ ଏ ଚାକିରୀ ଛାଡ଼ି ଦେବ । ନିଛାଟିଆ ଜଙ୍ଗଲ ଅଞ୍ଚଳରେ ବାଘ ଭାଲୁଙ୍କ ସାଙ୍ଗରେ ସେ ବଂଚି ପାରିବନି । ଭୟଙ୍କର ଏ ବର୍ଷା । ଆଶ୍ରମ ସ୍କୁଲ ଛାତ ଉଠୁଚି କି ପଡୁଚି । କେହି ପାଖରେ ନାହିଁ- ଖାଲି ଆଠ ଦଶଟି ଛୋଟ ପିଲା । ତାଙ୍କରି ପାଇଁ ସେ ଏତେ ପାଠ ପଢ଼ିଥିଲା ? ତାଙ୍କରି ପାଖରେ ଭଲ ଶିକ୍ଷୟିତ୍ରୀର ବାହାଦୂରୀ ନବାକୁ ? ମିଛ କଥା- ସେ ନିଜକୁ



Digitized by PPRACHIN, SOA

ଭଣ୍ଟୁଚି ।

ଅନ୍ଧାର ଚାରିଆଡ଼ ଘୋଟିଲାଣି । ବାରଣ୍ଡାରେ ସେମିତି ବସିଚି ସେତିକି ବେଳୁ ସୁଜାତା ମହାନ୍ତି । ଆଜି ପୁଣି ରୋଷେଇ ଦାସ ହେବ । ଅଳ୍ପ ଦୂରରେ କାକୁସ୍ଥ ହୋଇ ଠିଆ ହୋଇଚି ଆଶ୍ରମ ସ୍କୁଲର ରୋଷେଇଆ- ପଚାଶ ବର୍ଷର ପ୍ରୌଢ଼ା ସ୍ତ୍ରୀଟିଏ । ଭରସି କିଛି କହି ପାରୁନି । ସେ ଆଜି ଦିଦିଙ୍କଠାରେ ଏକ ଅସ୍ୱାଭାବିକ ପରିବର୍ତ୍ତନ ଲକ୍ଷ୍ୟ କରୁଚି ।

ବାହାରକୁ ଚାହିଁଲେ ଆଉ ପାହାଡ଼ ଦିଶୁନି; ଦିଶୁଚି ମସ୍ତବଡ଼ ଗୋଟାଏ କଳାଘୁମର ଛାଇ । ଆକାଶରେ ଖାଲି ଭୀତି ଆଉ ବିସ୍ମୟ । ସୁଜାତା ମହାନ୍ତି ଭାବୁଚି ଭୟରେ ଅଧୀର ହୋଇ ସେ କାହାକୁ ଜଣକୁ କୁଣ୍ଢାଇ ପକାନ୍ତା । ତାରି କୋଳରେ ସେ ଏଇ ଭୀମ ଭୟଙ୍କର ରାତିରେ ନିଅନ୍ତା ଆଶ୍ରୟ । ବାହାରର ଝଡ଼ ତା କାନରେ ପଶନ୍ତାନି । ନିଛାଡ଼ିଆ ମଣିଷର ଆଦିମ ମନ ଉପରେ ଆଉ ଏତେ ଅତ୍ୟାଚାର କରନ୍ତାନି ଏଇ କଳାରାତିର ଶଇତାନୀ ବର୍ଷା । ଗର୍ଜି ଗର୍ଜି ଗଛ ଭାଙ୍ଗନ୍ତା, ପଥର ଭାଙ୍ଗନ୍ତା । ପୁଣି ମନକୁ ମନ ଥମିଯାନ୍ତା ତାର ଅଶାନ୍ତ କାମନା ।

ମନେ ପଡ଼ିଲା କେଉଁ ଦୂର ଅତୀତ । ସେତେବେଳ ସେ ସ୍କୁଲର ଶେଷ ବର୍ଷରେ ଥାଏ । ଗାଁ ପାଖ ସ୍କୁଲ । କେନାଲ ବନ୍ଧ ଧାରେ ଧାରେ ଆଉ ଆଉ ସାଙ୍ଗ ସାଥୀଙ୍କ ସହିତ ସ୍କୁଲକୁ ଯାଏ, ପାଦ ଗଣି ଗଣି ଫେରିବି ଆସେ । କିଛି ଅଘଟଣ ଘଟେନି । କିଛି ବ୍ୟତିକ୍ରମ ନଥାଏ । କେଁ କଟର ଶଗଡ଼ ଗୁଳାରେ ଜୀବନ ଗଡ଼ି ଗଡ଼ି ଚାଲିଥାଏ । କିନ୍ତୁ ସ୍କୁଲକୁ ଯେଉଁଦିନ ନୂଆ ସାର୍ ଜଣେ ସଦ୍ୟ କଲେଜ ଛାଡ଼ି ଆସିଲେ- ପ୍ରେୟାର ହଲରେ ତାଙ୍କ ସହିତ ପ୍ରଧାନ ଶିକ୍ଷକ ସମବେତ ଛାତ୍ରଛାତ୍ରୀଙ୍କୁ ପରିଚିତ କରାଇ ଦେଇଥିଲେ । ତା'ପରେ 'ବିଜ୍ଞାନର ବିସ୍ମୟ' ସମ୍ପର୍କରେ ସେ ପ୍ରେୟାର ପରେ ପରେ ୧୫ମିନିଟ୍ ଭାଷଣ ଦେଇଥିଲେ । ତାହାହିଁ ଥିଲା ତାଙ୍କ ସ୍କୁଲର ଏକ ଚିରାଚରିତ ରୀତି । ଆଗ ଧାଡ଼ିରେ ଠିଆ ହୋଇଥିଲା ସୁଜାତା । କେଜାଣି କାହିଁକି ଏକ ଅବୋଧ ଦୁର୍ବାର ଆକର୍ଷଣରେ ସେ କେତେଥର ତାଙ୍କୁ ଅନେଇ ଦେଇଥିଲା ଓ ଯେତେଥର ଚାହୁଁଥିଲା ସେତେଥର ଅନୁଭବ କରୁଥିଲା କଲେଜ ଫେରନ୍ତା ନୂଆ ସାର୍ ତାକୁ ହିଁ ଯେପରି ଚାହିଁ ରହି ଭାଷଣ ଦେଉଛନ୍ତି । କ୍ଲାସରେ ଅଧିକ ପରିଚୟ ହେଲା । ସୁଜାତା ଶ୍ରେଣୀର ପ୍ରଥମ ଛାତ୍ରୀ ଥିବାରୁ ସ୍ୱାଭାବିକ ନୂଆ ସାର୍ ତାକୁ ଗୁଡ଼େଇ ଗୁଡ଼େଇ ପ୍ରଶ୍ନ ପଚାରୁଥିଲେ ଓ ବେଳେ ବେଳେ ଗଭୀର ଆବେଗରେ ତାକୁ ଚାହିଁ ରହୁଥିଲେ ।

କିନ୍ତୁ ସୁଜାତା କଣ ଜାଣିଥିଲା ଏଇ ଚାହିଁବାହିଁ ତା' ଜୀବନର ଏକ ମଧୁର ଭ୍ରାନ୍ତିକୁ ଡ଼ାକି ଆଣିବ ! ଦିନେ ସାମାନ୍ୟ ବିଳମ୍ବରେ ସେ ଫେରୁଥାଏ ସ୍କୁଲରୁ । ପ୍ରାୟ ଅଧଘଣ୍ଟାଏ ଆଗରୁ ସ୍କୁଲ ଛୁଟି ହୋଇ ଯାଇଥିଲେ ବି ପ୍ରଧାନ ଶିକ୍ଷକଙ୍କ ଆଦେଶ ଅନୁସାରେ ସେ ଅଟକି ରହିଥିଲା ତା' ଶ୍ରେଣୀର ଆଉ ସାଙ୍ଗସାଥୀଙ୍କ ସହିତ । ତା'ପରେ ଏକାଟିଆ ନାଳବନ୍ଧ



Digitized by PPRACHIN, SOA

ରାସ୍ତାରେ ଫେରି ଆସୁଥିଲା ସୁଜାତା । ହଠାତ୍ ଅନୁଭବ କଲା ତା ପଛରେ ଖୁବ୍ କ୍ଷିପ୍ର ଗତିରେ ସାଇକେଲ ଚଳାଇ ଯେ ଛୁଟିଛନ୍ତି ସେ ତାଙ୍କ ସ୍କୁଲର ନୂଆ ବିଜ୍ଞାନ ଶିକ୍ଷକ-କଲେଜ ଫେରନ୍ତା ନୂଆସାର୍ । ସୁଜାତା ଅପ୍ରତିଭ ହୋଇପଡୁଥିଲା । ନୂଆସାର୍ ତାରି ପାଖରେ ସାଇକେଲରୁ ଓହ୍ଲେଇ ତା' ହାତରେ କଣ ଗୋଟାଏ କାଗଜ ଗୁଞ୍ଜିଦେଲେ ଆଉ ଖୁବ୍ ଚଟାପଟ୍ କହିଥିଲେ- "ଏ ଚିଠି ତୁମକୁ । ଯଦି ନ ପଢ଼ିବ ତେବେ ଏ କେନାଲ ପାଣିରେ ଭସେଇ ଦେବାର ସଂପୂର୍ଣ୍ଣ ଅଧିକାର ତୁମର ।" ସେ ଆଉ ବିଶେଷ କିଛି କହି ନପାରି ସାଇକେଲ୍‌ରେ ଧଇଁସଇଁ ହୋଇ ଆଗକୁ ଛୁଟି ଚାଲିଗଲେ। ସେତେବେଳକୁ ସୁଜାତା ଭୟରେ ପ୍ରାୟ ଜଡ଼ସଡ଼ ହୋଇ ଯାଇଥାଏ । ଅଳ୍ପ ଦୂରରେ କେନାଲ ବନ୍ଧରୁ ବାଟଭାଙ୍ଗି ତା' ଗାଁକୁ ରାସ୍ତା । ସୁଜାତା ଦେହରେ ରକ୍ତର ପ୍ରବାହ କ୍ଷିପ୍ର ହୋଇ ଉଠିଥାଏ । ଘରେ ନ ପହଞ୍ଚିବାଯାଏ ତା'ର ଯେପରି ସାହା ଭରସା ନାହିଁ । ତାର ଧାରଣା ନୂଆ ସାର୍‌ଙ୍କ ଏ କାଣ୍ଡ କେନାଲ କଡ଼ ବିଲରେ ଥିବା ଚାଷୀମାନେ ହୁଏତ ଦେଖିଥିବେ । କକା ଖୁଡ଼ୀ ବି ଜାଣିବେ- ତାର ନିସ୍ତାର ନାହିଁ ।

ଜୀବନର ଏଇ ପ୍ରଥମ ପ୍ରେମ ପତ୍ରଟି ଅତି ସନ୍ତର୍ପଣରେ ଢ଼ିବି ଆଲୁଅରେ ପଢ଼ିଥିଲା ସୁଜାତା । ସାର୍‌ଙ୍କ ପ୍ରତ୍ୟେକ ଶବ୍ଦ ଓ ବାକ୍ୟରେ ଥିଲା ପ୍ରାଣ ଉଚ୍ଛୁଳା ଆବେଗ । ଭାଷାରେ ଯାଦୁ ଓ ସମ୍ମୋହନୀ । ସୁଜାତା ସାରା ଜୀବନ ପାଇଁ ଏଇ ଚିଠିଟି ସାଇତି ରଖିଚି ।

ସେ ଚିଠିଟିକୁ ଅତି ସନ୍ତର୍ପଣରେ ଟ୍ରଙ୍କରୁ କାଢ଼ି ପଢ଼ିଲା । ସାର୍‌ଙ୍କ ପ୍ରସ୍ତାବ- ସେ ସାରାଜୀବନ ପାଇଁ ସୁଜାତାର ଦାୟିତ୍ୱ ନେବାକୁ ପଛେଇବେ ନାହିଁ । ତା'ର ସମ୍ମତି ଲୋଡ଼ା । ଠିକ୍ ସେଇ କେନାଲ ବନ୍ଧରେ ସେ ଯେପରି ତାଙ୍କ ଚିଠିର ଉତ୍ତର ଆସନ୍ତାକାଲି ପାଆନ୍ତି ।

ସୁଜାତା ଉତ୍ତର ଦେଇ ପାରି ନଥିଲା । କେତେଥର ଭାବିଚି ତାର ଉତ୍କଟ ଦାରିଦ୍ର୍ୟ ଓ ହତଭାଗ୍ୟ ଜୀବନର ଇତିକଥା ଲେଖି ସାର୍‌ଙ୍କୁ ଜଣାଇ ଦେବ । କିନ୍ତୁ ପାରିନାହିଁ । ବରଂ ସ୍କୁଲରେ ଅଧିକରୁ ଅଧିକ ସାରଙ୍କଠାରୁ ଦୂରତା ରକ୍ଷା କରିଛି-ଲାଜ ଆଉ ସଂକୋଚରେ। ତାଙ୍କୁ ଚାହିଁ ପାରୁନି । କଥା କହି ପାରିନି । ତାର ନୀରବ ପ୍ରତ୍ୟାଖ୍ୟାନର ଏଇ ଗୈରିକତାରେ ସାର୍ ଖୁବ୍ ମର୍ମାହତ ହେଉଥିବା ସେ ଲକ୍ଷ୍ୟ କରେ । କିନ୍ତୁ ସେ ନିରୁପାୟ। ଚିଠିର ଉତ୍ତର ଦେଇ ପାରିବନି । କି ଉତ୍ତର ବା ସେ ଦେବ ? କି' ସ୍ୱାଧୀନତା ତା'ର ବା ଅଛି ଏଇ କକାଖୁଡ଼ୀଙ୍କ ସଂସାରରେ ? ସାର୍ କିନ୍ତୁ ପ୍ରାୟ ସବୁଦିନ ଚିଠିଟିଏ ପାଇବା ଆଶାରେ ସେଇ ନାଳବନ୍ଧ ରାସ୍ତାରେ ସାଇକେଲ୍ ଚଳାଇ ସାନ୍ଧ୍ୟ ଭ୍ରମଣରେ ଯା'ନ୍ତି । ଫେରନ୍ତି ବି । କିନ୍ତୁ କିଛି ଘଟେନା ।

ଦିନେ କିନ୍ତୁ ସାର୍ ତାଙ୍କ ଘରେ ଅଚାନକ ଆସି ପହଞ୍ଚିଲେ । ଦାଦାଖୁଡ଼ୀଙ୍କୁ ସୁଜାତାର ତାରିଫ୍ କରି କେତେ କଥା କହିଲେ । ସେଦିନ ସୁଜାତାର ଗୋଡ଼ ତଳେ ଲାଗୁ



Digitized by PPRACHIN, SOA

ନଥାଏ । ସତେ ଯେପରି ସେ ଜୀବନ ପାଇଁ କିଛି ଆଶ୍ରୟ ପାଇଛି । କିନ୍ତୁ ସେ କ'ଣ ଜାଣିଥିଲା ସାର୍ ଆସିଛନ୍ତି ସବୁଦିନ ପାଇଁ ବିଦାୟ ନେବାକୁ !

ତା ପରଦିନ ସେ ସ୍କୁଲରୁ ବିଦାୟ ନେଇ ଉଚ୍ଚଶିକ୍ଷା ପାଇଁ ସହରକୁ ଚାଲିଗଲେ । ବିଦାୟ ସଭାରେ ପ୍ରଧାନ ଶିକ୍ଷକ ସାରଙ୍କର କେତେ ତାରିଫ୍ କରି ଭାଷଣ ଦେଇଥିଲେ । ତା ଶ୍ରେଣୀର ଜଣେ ଦି'ଜଣ ପୁଅ ବି ଭାଷଣ ଦେଇ କଇଁ କଇଁ ହୋଇ କାନ୍ଦିଲେ । ସୁଜାତାର ସ୍ପଷ୍ଟ ମନେଅଛି ସେ ମୁହଁକୁ ତଳକୁ ପୋତି ଚାହିଁ ରହିଥିଲା ଓ ତା' ନିଜସ୍ୱ ପ୍ରତିରୋଧ ସତ୍ତ୍ୱେ ତା' ଆଖିରୁ ଦୁଇଧାର ଲୁହ ଗଡ଼ି ପଡ଼ିଥିଲା । ଥରେ ଦି'ଥର ସେ ସଭା ମଞ୍ଚକୁ ମୁହଁ ଉଠେଇ ଚାହିଁଥିଲା- ସାର୍ ତାରି ଆଡକୁ ପଲକହୀନ ଆଖିରେ ଚାହିଁଛନ୍ତି । ସେତିକି ତା' ଜୀବନ ପାଇଁ ନାରୀତ୍ୱର ସମ୍ବଳ ଥିଲା ।

ସାର୍ ଦୂର ସହରକୁ ଚାଲିଗଲା ପରେ ସ୍ୱାଭାବିକ ସବୁ ଆଶା ତାର ମଉଳି ଯାଇଥିଲା । ସେ କ'ଣ ଜାଣିଥିଲା ମାତ୍ର ଛ'ମାସ ପାଇଁ ସାର୍ ଏ ସ୍କୁଲକୁ ଆସିଛନ୍ତି ? ଦାଦିଖୁଡ଼ୀ ଯଦି ସେଦିନ ଆଦରରେ ତାଙ୍କୁ ଆପଣାର କରିନେଇ ପାରିଥାନ୍ତେ, ମଝିରେ ମଝିରେ ଆସିବାକୁ ନିମନ୍ତ୍ରଣ ଜଣାଇଥାନ୍ତେ, ତା'ହେଲେ ହୁଏତ ତା' ଜୀବନ ଭିନ୍ନ ରାସ୍ତାରେ ଯାଇଥାନ୍ତା । ଛାଡ଼- ସେ ସବୁ ଅଳୀକ ସ୍ୱପ୍ନ କଥା ଭାବି ଆଜି ଲାଭ ନାହିଁ। ସୁଜାତା ଚିଠିଟିକୁ ସଜାଡ଼ି ପୁଣି ଟ୍ରଙ୍କରେ ରଖିଦେଲା । ଭାବିଲା ଚାକିରୀ ଛାଡ଼ିଦେବ । କେତେଦିନ ଏମିତି ଏକାଟିଆ ଏ ଆଶ୍ରମ ସ୍କୁଲରେ ପଡ଼ିଥିବ ? କାହାପାଇଁ ? କାହିଁକି ? ଏମିତି ଏମିତି କୋଡ଼ିଏ ବର୍ଷ ବିତିଗଲାଣି । ମୁଣ୍ଡରେ ଗୋଟିଏ ଗୋଟିଏ କେଶ ପାଚି ଆସିଲାଣି । ଏଇତ ତାର ଅପୂର୍ଚ୍ଛା ଅପାଙ୍‌କ୍ତେୟ ଜୀବନ । ନା ଅଛି ଘର, ନା ସମାଜ, ନା ସ୍ନେହ, ନା ମମତା ? ଦାଦାଖୁଡ଼ୀ ଖାଲି ଚିଠି ଲେଖନ୍ତି ଟଙ୍କା ପାଇଁ । ମନିଅର୍ଡର ପହଞ୍ଚିବାର ଦିନେ ଦି'ଦିନ ଡେରି ହେଲେ ତାଙ୍କର ଚିଠି ଆସେ- ଜୀବନହୀନ ନିଷ୍ପ୍ରାଣ ଚିଠିର ଭାଷା ସହିତ ସେ ବେଶ୍ ପରିଚିତ । ସୁଜାତା ମଲେ କି ଗଲେ ତାଙ୍କର ସେଥିପାଇଁ ଚିନ୍ତା ନାହିଁ- ଟଙ୍କା ପାଉଛନ୍ତି ତ ଭଲ । ନଇଲେ ଯେତେ ପ୍ରକାର ରାଗ, ରୋଷ ଓ ଅବିଶ୍ୱାସ ।

ସୁଜାତା ମହାନ୍ତି ଆଜି ଚାକିରୀରୁ ଇସ୍ତଫା ଦେଲେ କାଲିକି ହେବ ବାସ୍ତୁହାରା । ତିନୋଟି ପ୍ରାଣୀର ଜୀବନ ତାରି ଚାକିରୀ ଉପରେ ଗୁନ୍ଥା ହୋଇଛି । ଘର ଆଡ଼େ ଏମିତି ଝଡ଼, ଏମିତି ବର୍ଷା, ଏମିତି ପବନ ଯଦି ହେଉଥିବ- ନୂଆଁଣିଆଁ ଚାଳଛପର ଘର ତାର ଭାଙ୍ଗିଯିବଣି । କ'ଣ କରୁଥିବେ ଖୁଡ଼ୀ, କଣ କରୁଥିବେ ଦାଦା ? ସେ ଚାକିରୀ ଛାଡ଼ି ପାରିବନି । ଏଇ ଜଙ୍ଗଲ ତାର ସାଥୀ । ତା'ର ଆଉ କେହି ନାହିଁ ଏତେ ବଡ଼ ଦୁନିଆରେ ।

ସୁଜାତା ମହାନ୍ତି ପ୍ରାଣରେ ଦାରୁଣ ଆଘାତ ଭାଗିଲା । ନିଃସହାୟ ଜୀବନର ଏ ଭୀରୁ ବ୍ୟସ୍ତତା ତା ଦେହର ସକଳ ମାଂସପେଶୀକୁ ଯୌକ୍ତିକତା ଆଉ ପତିମୁଖତାରେ



Digitized by PPRACHIN, SOA

ବାରମ୍ବାର କଲା ପ୍ରସାରିତ ଆଉ ସଂକୁଚିତ । ଯେତେ ସାନ୍ତ୍ୱନା ଦେଲେ ବି ଆହୁରି ଅସହାୟ ପ୍ରତୀତ ହେଲା ତା ପାଇଁ ତା'ର ଠାବ ନଥିବା ଛୋଟ ମନଟି । ଛୋଟ ପିଲାର କୋହପରି ଛାତି ଭିତରୁ ଉଠିଲା କୋହର ହାବୁକା । ସୁଜାତା ମହାନ୍ତି ଅତି ଅଧୀର ଭାବରେ ଚେୟାର ଛାଡ଼ି ରୁମ୍‌କୁ କ୍ଷିପ୍ର ଗତିରେ ପଶିଗଲା । ବିଛଣାରେ ନିଜକୁ ଲୋଟେଇ ଦେଇ ନାହିଁ ନଥିବା ଉଦ୍‌ବେଗରେ ବାରମ୍ବାର କଡ଼ ଲେଉଟେଇଲା ସୁଜାତା ମହାନ୍ତି ।

ସୁଜାତା ମହାନ୍ତି ଭାବୁଥିଲା ଏଇ ଘର ଛାତ ଆଜି ଭାଙ୍ଗିପଡ଼ନ୍ତା କି ? ଏଇଠି ଏଇଲାଏ ଆଉ ତାରି ଉପରେ । ସେ ଆହତ ହୋଇ ସୁନ୍ଦରଗଡ଼ ମେଡ଼ିକାଲରେ ନିଅନ୍ତା ଆଶ୍ରୟ । ନିଛାଟିଆ ଜୀବନର ଅକ୍ଷାଂଶରେ ଆଉ ମିଳନର ସୁଯୋଗ ନଥିଲେ ମଧ କାଲି ଦୂରରୁ ତା'ର ଅତି ପରିଚିତ ଆତ୍ମୀୟ ସାର୍ ପୁରୁଣା ପରିଚୟର ଖିଅ ଯୋଡ଼ି ଚିଠିଟାଏ ଦିଅନ୍ତେ- "କେମିତି ଅଛୁ ସୁଜା, ଖବରକାଗଜରୁ ପଢ଼ିଲି, ସୁନ୍ଦରଗଡ଼ରେ ଭୀଷଣ ବର୍ଷା ହୋଇ ଆଶ୍ରମ ସ୍କୁଲ ଛାତ ଭାଙ୍ଗିପଡ଼ିଚି । ତୁ ମେଡ଼ିକାଲରେ ଚିକିତ୍ସାଧୀନ ଅଛୁ । ଭଗବାନଙ୍କୁ କାମନା କରୁଚି ଶୀଘ୍ର ତୁ ଆରୋଗ୍ୟ ଲାଭ କର ।" ସୁଜାତା ମହାନ୍ତି ଆଉ ଭାବିପାରିଲାନି । ଖାଲି ଗୋଟାଏ ସଂଜ୍ଞାହୀନ ଅନବଦମିତ କୋହରେ ବିଛଣାରେ ପଡ଼ି କଇଁ କଇଁ ହୋଇ କାନ୍ଦିବାକୁ ଲାଗିଲା ।

ପଚାଶ ବର୍ଷୀୟା ଚାକରାଣୀଟି ନାରୀସୁଲଭ ବ୍ୟାକୁଳତା ନେଇ ଖାଲି ପଚାରୁଥିଲା, "କଣ ହେଇଚି ଦିଦି- କାନ୍ଦୁଚ କାହିଁକି, ଦେହ କ'ଣ ଭଲ ନାହିଁ ?"





Digitized by PPRACHIN, SOA

# ଜୀବ ଓ ଜୈବିକ

ଦୁଷ୍ଟ ପିଲା; ଫାଜିଲ୍, ଟୁପୁସୀ, ଅଭିନବ ମହାନ୍ତି ଉଷାକୁ ଝାବୁଡ଼ି ଧରିଲେ ।

ଉଷା । ସାତ ବର୍ଷର ଚପଳ ଶିଶୁ । କଳା ଫ୍ରକ୍‌ଟାଏ ଦେହରେ । ପିନ୍ଧିଚି ଛୋଟ ଇଲାଷ୍ଟିକ୍ ହାପ୍‌ପେଣ୍ଟ । ମୁଣ୍ଡର ଚୁଟି କେରାକ ଭଉଣୀ ଗୀତା ଦେବୀ ଯତ୍ନରେ ବାନ୍ଧି ଦେଇଚନ୍ତି । ଛୋଟ ଜଟଟିରେ ଦୁଇଧାର ରିବନ୍‌ରେ ଦୁଇଟି ପ୍ରସ୍ଫୁଟିତ ପଦ୍ମଫୁଲ । ଛୋଟ କଣ୍ଟାଟିଏ କାନ ଉପରକୁ - ଢାକେଟ୍ । ଜିଦି କରିଚି ଉଷା, ଅପା ପରି ସେ ବି ଢାକେଟ୍ ଦେବ ମୁଣ୍ଡରେ । ବାଳକୁ ଜୋର କରି ମୁଣ୍ଡରେ ଚାପି ରଖିବ ।

ଉଷା ମୁଣ୍ଡ ବାନ୍ଧୁଚି । ଅପାର ବାସ୍ନାତେଲ ଶିଶି ପାଖରେ ଥୁଆ ହୋଇଚି । ଆଗରେ ଆଇନାଟାଏ । ଛୋଟ ମୁହଁଟିଏ ସେ ଅଇନା ଭିତରେ ଉଷାକୁ ଖତେଇ ହଉଚି । ଜିଭ ଦେଖେଇଲା ଉଷା । ବଡ଼ ବଦମାସ ଛବି । ଯାହା ଉଷା କରୁଚି, ସେ ବି ଠିକ୍ ସେଇଆ କରୁଚି । ଉଷା ରାଗିଲା । ରାଗିଲା ଆଇନା ଭିତରର ପ୍ରତିକୃତି । ଉଷା ଏଥର ହସି ଉଠିଲା । କ୍ରୋଧ ତାର ଫସଲ ଫାଟିଚି । ଧରି ପାରନ୍ତା ଯଦି-

ଆଖିରେ ଧାରେ ଧାରେ ଲୁହ । ଲାଞ୍ଜି ଅଙ୍କ ବଢ଼ିଆସିଚି । କପାଳର ଦୁଇ ଭ୍ରୂ ମଝିରେ ଗାରେ କୁଙ୍କୁମ । ଉଷା ହସି ହସି ଗଡ଼ି ଯାଉଚି ।

"ଅଲକ୍ଷଣୀଟା', କିଲୋ ଏମିତି କାହିଁକି ହଉଚୁ, ଥିର ହେଇ ବସ ।" ତାଗିଦା କରୁଚି ସ୍ନେହ ସୋହାଗର ଭଉଣୀ ଗୀତା ପଟ୍ଟନାୟକ । ଦୁଷ୍ଟ ଉଷାର ପିଠିରେ ଛୋଟ ଚାପୁଡ଼ାଟାଏ ବସେଇଲା ପରେ ବି ତାର ହସ ବନ୍ଦ ହେଉନାହିଁ ।

+ + "ମୋ କଥା ଶୁଣିବୁନି ଉଷା ? ଆଉ ତୋ ମୁଣ୍ଡ ବାନ୍ଧି ଦେବିନି । ମୋ କୁଙ୍କୁମ ତୋ କପାଳରେ ଲଗେଇ ଦେବିନି । ତୋ ଅପା ହେବିନି ।"

"ନ' ହ । ମୁଣ୍ଡ ବାନ୍ଧି ନଦେ । ମୋ ବଡ଼ ଦେଈ ବାନ୍ଧି ଦେବନି କି ? ନଇଲେ ବୋଉ ?"

"ହଉ'- ମୁଁ ତତେ ଖେଳନା ଦେବିନି । ସାଙ୍ଗରେ ବୁଲେଇ ନେବିନି । ଦିଆସିଲିରେ ବାଇସ୍କୋପ ଦେଖେଇବିନି । ଛୋପରୀ, ତୁ ଏଠୁ ଯା ।" ମୁହଁ ଶୁଖେଇଲା ଗୀତା ପଟ୍ଟନାୟକ । ଛୋଟ ଶିଶୁଟା ପାଖରେ ଏତେ ଅଭିମାନ । ଆଦେଶ ସେ ଜାହିର କରିବନି ? ଆଦେଶ ଦେଇନି ଗୀତା ପଟ୍ଟନାୟକ; ଅନୁଯୋଗ କରିଚି ମାତ୍ର ।

ଉଷା ତା ଅପାକୁ ପରଖୁଥିଲା ଅବା । ଚପଳ ଶିଶୁ- ବିଜୁଳୀ ପରି ଗତି ତାର କ୍ଷିପ୍ର । ମନର ଉଦୟ ଆଉ ଅସ୍ତ- ସୂର୍ଯ୍ୟଠାରୁ ଆହୁରି ନିର୍ମଳ, ଚକ୍ଷୁର ପଲକଠାରୁ ଆହୁରି ଚଞ୍ଚଳ ।



Digitized by PPRACHIN, SOA

"କହ ଅପା, କଣ କରିବି ?"

"ଯା- ମୁଁ ତୋ ସହିତ ପାଟି ଫିଟେଇବିନି ।"

"କହ...... ନାଆଁ.... ମୁଁ ତୋ କଥା କରିବି । ତୋ କଥା ମାନିବି । ଉଁ..... କହ ?"ଉଷା ଗାଲରେ ଗୀତା ସରୁ ଚାପୁଡ଼ାଟିଏ ବସେଇଲା ।

"କରିବୁ- ଏଁ, ଯା ସେ ବାବୁଙ୍କ ଦୁଆରୁ ରଙ୍ଗଣୀଫୁଲ ଆଣିବୁ ! ବହୁତ ଆଣିବୁ, ବୁଝିଲୁ ?"

ବିଜୁଳୀ ଗତିରେ ଉଷା ଧାଇଁ ଗଲା । ଅନୁମତି ଲୋଡ଼ିବା ଦରକାର ନାହିଁ । ବହୁତ ଥର ରଙ୍ଗଣୀଫୁଲ ନେଇଚି । କେବେ ଅପା ସାଙ୍ଗରେ, କେବେ ଏକା ଏକା । ଏଥର ବି ନେବ ।

ଉଷା ଅଣ୍ଟିରେ ଅଣ୍ଟିଏ ତୋଳିଲାଣି । ଅପାର ହୁକୁମ-"ବହୁତ ଆଣିବୁ" । ଆହୁରି ତୋଳୁଚି । ଦୁଆରଯାକ ରଙ୍ଗଣୀ ଗଛ । ନାଲି ଟୁକୁଟୁକୁ ଫୁଲ ଉଷା ହାତର ପାବନ ସ୍ପର୍ଶ ପାଇଁ ପ୍ରତୀକ୍ଷମାଣ ।

++ ଅଭିନବ ମହାନ୍ତି ଉଷାକୁ ଜାବୁଡ଼ି ଧରିଲେ ।

"କିଲୋ ଏତେ ଫୁଲ କଣ ହେବ ?"

"ଛାଡ଼, ଦେଇ କହିଚି । ଆହୁରି ଫୁଲ ଦରକାର, ସବୁଯାକ ।

"ଦେଇ ଆସି ତୋଳି ନେଲାନି ?"

"କେଜାଣି ?" .....

ଅଭିନବ ମହାନ୍ତି ଉଷାକୁ ସତେ ଯେପରି ଚିପି ଚକଟି ଦଳି ଦେବାକୁ ପ୍ରସ୍ତୁତ ହେଉଥିଲେ । ଛୋଟ ଛୁଆଟାକୁ ଅଣ୍ଟିରେ ଫୁଲ ପରି ଦଳି ମକଚି ବଳନାଟାଏ ବନେଇ ଦେବେ ।

ଉଷା ବ୍ୟସ୍ତ ହୋଇ ପଡ଼ିଲା ।

"ଆରେ ଛାଡ଼ । ମୋ ଫୁଲ ପଡ଼ିଗଲା .... ଦେଇ ଗାଳିଦେବ ।"

ଅଭିନବ ମହାନ୍ତି କିଶୋରୀ ଉଷାର ଯତ୍ନସଂଯତ କେଶରାଶିକୁ ଅଡୁଆ କରିଦେଲେ । ମୁଣ୍ଡର ବାଳ କେରାକ ଇଚ୍ଛାମତେ ହାତରେ ଖେଳେଇ ପକେଇଲେ, ସତେ ଯେପରି କୁକୁଡ଼ାଟିଏ ଅନ୍ଧାରୁଆ କୁଟା ଗଦାକୁ ଆଡ଼େଇ ଖୋଜୁଚି ଜୀଅନ୍ତା କୀଟ । ତାର ଆହାର ।

"ବୋଉକୁ ଡାକିବି- ଆରେ ଛାଡ଼ ।" ଉଷା ଛାଟିପିଟି ହେଉଚି ।

"ଅପାକୁ ଡାକୁନୁ ?"

"ଚୋପ୍...." ଛୋଟ ଶିଶୁଟା ବଡ଼ ମଣିଷର ସଂସ୍କରଣ । ସେଇ ମୁହଁ, ସେଇ ଆଖି । ଜଣକ ଆଖିରେ ନାହିଁ ସ୍ୱପ୍ନ, ଅଛି ଚଞ୍ଚଳତା । ନିବିଷ୍ଟ ହେବାକୁ ଚାହେଁ ଜଣକ ଆଖି । ଅପରର ଆଖି- ପ୍ରଜାପତି ପରି ଉଡ଼ିବୁଲେ ଫୁଲରୁ ଫୁଲକୁ- ଚଞ୍ଚଳ, ମୁଖର ଓ ଛଳଛଳ । ଜଣକ ଗତିରେ ତାରୁଣ୍ୟର ଭୀରୁ ଶିଥିଳତା, ମନରେ ଅଜସ୍ର ପ୍ରତୀକ୍ଷା ।



Digitized by PPRACHIN, SOA

ଅପରର ଗତି ବିରାମହୀନ, ଉଚ୍ଛଳ- ଝରଣାର ସ୍ରୋତପରି ।

ଉଷା ପଟ୍ଟନାୟକ । ସାତ ବର୍ଷର ଶିଶୁ । ଗୀତା ପଟ୍ଟନାୟକ ଅଠର ବର୍ଷର ତରୁଣୀ । ଅନେଇଁ ବସିଚି ଫୁଲପାଇଁ, ବେଣୀରେ ଖୋସିବ । ନା ଛୋଟ କଣ୍ଢେଇ ବେକରେ ଝୁଲେଇବ ? ସ୍ୱପ୍ନର କଣ୍ଢେଇ ଅନ୍ଧାରରେ ଚାହିଁ ବସିଚି- ନିର୍ଜୀବ, ନିସ୍ପନ୍ଦ, ନିଶ୍ଚଳ ।

ଅଭିନବ ମହାନ୍ତି ଉଷାକୁ ଶୂନ୍ୟେ ଶୂନ୍ୟେ ଟେକି ଧରିଲେ । ଫୁଲଗୁଡ଼ା ବିଞ୍ଚି ହୋଇଗଲା । ଉଷାର ମନରେ ବିରକ୍ତି- ଫୁଲ ବିଞ୍ଚି ହୋଇଗଲା । କାଖରେ ଅଭିନବ ମହାନ୍ତିଙ୍କ ବଜ୍ର କଠିନ ହାତ । ସଲ ସଲ ଲାଗୁଚି । ହସି ହସି ଗଡ଼ିଯାଉଚି ଉଷା ।

ଅଭିନବ ମହାନ୍ତି ଉଷା ମୁହଁରେ ବୋକ ଦେଲେ । ଛୋଟ ପିଲା- ଆଶିଷର, ଭାତୃତ୍ୱର, ସ୍ନେହର ଓ ସୋହାଗର ଛୋଟ ଚୁମାଟାଏ ??

+ + + ଅଭିନବ ମହାନ୍ତି ସତେ ଯେପରି ନିଶ୍ଚଳ ପ୍ରତିମାଟିଏ ପରି ଠିଆ ହୋଇ ରହିଥିଲେ । ପଳେଇ ଗଲାଣି ଉଷା । ଅଭିନବ ମହାନ୍ତି ଭାବୁଥିଲେ- ପାଖରେ ଗୀତା । ତାକୁହିଁ ସେ ଛାତି ଉପରକୁ ସତେ ଯେପରି ଆଉଜେଇ ଧରିଛନ୍ତି । ତାରି ଆଲୁଳାୟିତ କେଶରାଶିରେ ଧୀରେ ଧୀରେ ହସ୍ତ ସଞ୍ଚାଳନ କରୁଛନ୍ତି । ଉଷା ନାହିଁ, ଉଷାକୁ ସେ ଚିହ୍ନନ୍ତିନି ।

ଅଭିନବ ମହାନ୍ତି ନିଜ ଦେହକୁ ଚାହିଁଲେ । ତାଙ୍କ ଗେଞ୍ଜିରେ ଉଷା ମୁଣ୍ଡ କୁଙ୍କୁମର ଲମ୍ବା ନାଲିଗାରଟିଏ । ଗୀତାର ସିନ୍ଦୂରର ନୁହେଁ । କୁମାରୀ ଗୀତା ପଟ୍ଟନାୟକ କେବେ ନାଇବ ସିନ୍ଦୂର ? କାହାର ଅଜସ୍ର ଆୟୁ କାମନା କରି ନିଜର ମଥାକୁ ଚିତ୍ରିତ କରିବ ସ୍ମୃତିର ଉଦାତ୍ତ ସ୍ମାରକୀରେ ?

ଅଭିନବ ମହାନ୍ତିଙ୍କ ଦେହରେ ତାତି । ଇସ୍ କେଡ଼େ ଜଘନ୍ୟ ସେ । ଛୋଟ ଛୁଆଟାର ମୁଣ୍ଡ ଫିଟେଇ ପକାଇଲେ । କୁଙ୍କୁମ ଦାଗ ନିଭିଗଲା । କଣ ଭାବିବ ଗୀତା ? ନିଜକୁ ବୁଝିବ ଏଇ ପରିଚୟର ଆଦାନପ୍ରଦାନ ଭିତରେ ? ବୁଝିବ- ଯାହାକୁ ଅଭିନବ ବୋକ ଦେଲେ ସେ ଉଷା ନୁହେଁ, ଉଷା ଭିତରର ଗୀତା ? କଣ ଭାବିବେ - ବାବୁଟି ଭାରି ଭଲ ପିଲା ? ଭାରି ଛୁଆ କାଙ୍ଗାଳ । ପର ପିଲାକୁ କୋଳକୁ ନିଅନ୍ତି- ଗାଲରେ ଲଗାନ୍ତି ଓଠ ?

ଓଠ ଥରୁଛି । ଦେହ ଥରୁଛି । ଅଭିନବ ମହାନ୍ତି ରଙ୍ଗଣୀ ଗଛକୁ ଚାହିଁଲେ । ଆଉ ଆଠ ଦଶୋଟି ଫୁଲ ଅବଶିଷ୍ଟ ଅଛି । ଆଉ ସବୁ ଉଷା ଅଣ୍ଟିରେ ।

+ + + ଅଭିନବ ମହାନ୍ତି ହନୁମାନ ପରି ଗଛଗୁଡ଼ାକ ଓପାଡ଼ିବାରେ ଲାଗିଲେ । ସିଂହ ବିକ୍ରମ । ଶୂନ୍ୟ ହୋଇ ଆସୁଚି ଗଛ ଗୁଡ଼ାକରୁ ଜୀବନର ସଞ୍ଚାର । ବଞ୍ଚିବାର ସୌଖୀନ ଆକାଙ୍କ୍ଷା । ମାଟି ତଳୁ ନିଭି ଯାଉଛି ଜୀବନର ସ୍ଥିତି । ଗଛଗୁଡ଼ାକ ନିଶ୍ଚିହ୍ନ ହେଉଛନ୍ତି । ହୁଂକାର ନାଦ କରି ପାଚେରୀ ଡ଼ିଆଁଇ ଗଛଗୁଡ଼ାକୁ ତଥାପି ଦୂରକୁ ଫିଙ୍ଗୁଚନ୍ତି ଅଭିନବ ମହାନ୍ତି ।



Digitized by PPRACHIN, SOA

ଏକ, ଏକା ଥରକେ ତିନି, ...... ପୁଣି ଫୋପାଡୁଛନ୍ତି ସରିବା ଯାଏ । ଅଭିନବ ମହାନ୍ତି ଧଇଁ ସଇଁ ହୋଇପଡ଼ିଲେଣି । ଆଖି ଦୁଇଟା ସତେ ଯେପରି ଦୁଇଟା ଜ୍ୱଳନ୍ତ ଉଲ୍‌କା ପିଣ୍ଡ ।

ଦେହରୁ ବହୁଚି ଝାଳ । ମୁଣ୍ଡରୁ ନିଗୁଡୁଚି ଗାଲଦେଇ ଲୁଣିଆ ସ୍ୱେଦଧାର । ଅଭିନବ ମହାନ୍ତି କ୍ଲାନ୍ତ ହୋଇ ବସିପଡ଼ିଲେ । ନିଃଶ୍ୱାସ ଫେରୁନି । ମଥା ଉପରକୁ ଝୁଲି ପଡ଼ିଥିବା ଝାଳୁଆ ଆଗବାଳ ଦି'ଟାକୁ ହାତରେ ସଜାଡ଼ି ନେଲେ । ଅଭିନବ ମହାନ୍ତିଙ୍କ ମନରେ କୋଳାହଳ । ଗୋଟାଏ ଆଦିମ ଆବେଗ । ତାଙ୍କ ରକ୍ତର ଅନ୍ଧକାର ଭିତରେ ଗୋଟାଏ ଅସ୍ତହୀନ ସୂର୍ଯ୍ୟର ପ୍ରଚଣ୍ଡ ତାତି ।

"ଆହା ଓପାଡ଼ି ଦେଲି । ଠିକ୍ ଅଛି । ଆଉ ପାଣି ଦେବାକୁ ପଡ଼ିବନି ।" ଅଭିନବ ମହାନ୍ତି ପଦାକୁ ଆସିଲେ । ତାଙ୍କ ଭିତରର ପରୁଷତ୍ୱ ତାଙ୍କୁ ସତେ ଯେପରି ବିଦ୍ରୂପ କରି କହୁଥିଲା- "ଗଛଗୁଡ଼ା ଓପାଡ଼ି ସିଂହଶିଶୁ ସାଜିଲ ଅଭିନବ ? ତୁମ ହୃଦୟ କିନ୍ତୁ ଶୃଗାଳ ପରି ଭୀରୁ, ଫୁଲପରି କୋମଳ । କାଲି ଯେତେବେଳେ ଫୁଲପାଇଁ ହାତ ବଢ଼େଇବ- ରଙ୍ଗଣୀ ନଥିବ ।" ଅଭିନବ ମହାନ୍ତି ଅଗଣା ଅତିକ୍ରମ କରୁଥିଲେ । ଫାଟକରେ ଦେଲେ ଚାବି । ବାହାରକୁ ଯିବେ । ବୁଲି ଆସିଲେ ମନର ଉତ୍ତେଜନା ହୁଏତ ଆପେ ଆପେ ପ୍ରଶମିତ ହୋଇଯିବ ।

ଅଭିନବ ମହାନ୍ତି ଚାହିଁଲେ- ଅଳ୍ପ ଦୂରରେ ଉଷା ଲିଭ ଦେଖେଇ ତାଙ୍କୁ ଖତେଇ ହେଉଚି । ସେ ଗଡ଼ ଜିତିଚି । ଅଭିନବ ମହାନ୍ତି କ୍ରୋଧ, ଲାଜ ଓ ଅପମାନରେ ସଢ଼ିଗଲେ । ଆଗକୁ ବଢେଇଲେ ପାଦ ।

ନାଲି ରାସ୍ତାର ଧାରେ ଧାରେ ବିଜୁଳି ବତୀଗୁଡ଼ା ଏଇମାତ୍ର ଜଳି ଉଠୁଥାଏ । କୃଷ୍ଣଚୂଡ଼ା ଗଛର ବହଳ ଫୁଲଗୁଡ଼ାକୁ ଉଲୁସେଇ ଝଙ୍କାଏ ହେମାଳ ପବନ ପହଁରିଗଲା । ଅଭିନବ ଆହୁରି କ୍ଷିପ୍ର ଗତିରେ ରାସ୍ତାରେ ଚାଲିବାକୁ ଲାଗିଲେ ।





Digitized by PPRACHIN, SOA

# ଅଗଷ୍ଟ ପନ୍ଦର

ବ୍ରଜସୁନ୍ଦର ବାହାବଳୀନ୍ଦ୍ର ବଳୀୟାର ସିଂ ଖଟ ଉପରେ ନିସ୍ତେଜ ଭାବରେ ସିଗାରେଟ୍ ଶୋଷୁଛନ୍ତି । ଏକ, ଦୁଇ, ତିନି ...... ପ୍ୟାକେଟ୍‌ରେ ଆଉ ଦୁଇଟି ମାତ୍ର ବାକି ଅଛି । ଦିଆସିଲିଟା ତକିଆର ବାମ ପାଖରେ ଥୁଆ ହୋଇଛି । ଅତି ନିର୍ବିକାର ଓ ବିରକ୍ତ ଭାବେ ଗୋଟାକ ପରେ ଗୋଟାଏ ସିଗାରେଟ୍ ଶୋଷି ଚାଲିଛନ୍ତି ବ୍ରଜସୁନ୍ଦର ବାହାବଳୀନ୍ଦ୍ର ବଳୀୟାର ସିଂ ।

ଦୂରରୁ ଜନଗଣମନ ଅଧିନାୟକ ଜାତୀୟ ସଙ୍ଗୀତର ମୂର୍ଚ୍ଛନା ଭାସି ଆସିଲା । ଆଜି ଭାରତୀୟ ମୁକ୍ତି ଦିବସ । ଦୁର୍ଦ୍ଦମ ଏ ଜାତିର ସାମୟିକ ପରାଧୀନତାର ଅବସାନ ପରେ ମୁକ୍ତି ଖସଡ଼ାର ଶୁଭଶଙ୍ଖ ଏମିତି ଗୋଟିଏ ଅତୀତର ଅରୁଣ ପ୍ରଭାତରେ ବାଜି ଉଠିଥିଲା ।

ବ୍ରଜସୁନ୍ଦର ବାହାବଳୀନ୍ଦ୍ର ବଳୀୟାର ସିଂ କଡ଼ ଲେଉଟେଇଲେ । ବିରକ୍ତିରେ ଏକ ତାଚ୍ଛଲ୍ୟ ବ୍ୟଞ୍ଜକ ହସ ହସିଲେ । ହୁଁଃ, ଜାତୀୟ ସଙ୍ଗୀତ । ମୁକ୍ତି ! ବଳୀୟାର ସିଂ ବୋଧହୁଏ ଅସହିଷ୍ଣୁ ହୋଇ ପଡ଼ିଥିଲେ । ମୁକ୍ତିର ଅର୍ଥ କଣ ବୁଝନ୍ତି ଏ ମଣିଷମାନେ ? କ'ଣ ବୁଝନ୍ତି ନେତା ଓ ପାରିଷଦମାନେ ? କିଛି ବୁଝନ୍ତିନି । ସ୍ୱାଧୀନତାର ମଧୁ ଆସ୍ୱାଦନ ପାଇଁ ସେ ନେତା ଓ ଜନନାୟକଙ୍କ ଠାରୁ ଯେତେ ଆହ୍ୱାନ ଶୁଣିଚନ୍ତି କେଉଁଥିରେ ସନ୍ତୁଷ୍ଟ ହୋଇ ନାହାଁନ୍ତି । ତାଙ୍କର ଚରମ ଅବଶୋଷ ଜମିଦାରୀ ଉଠିଛି । ବ୍ରଜସୁନ୍ଦର ବାହାବଳୀନ୍ଦ୍ର ବଳୀୟାର ସିଂ ତାଙ୍କ ଇଚ୍ଛା ବିରୁଦ୍ଧରେ ହୋଇଛନ୍ତି ଜଣେ ସାମାନ୍ୟ ସରକାରୀ କର୍ମଚାରୀ । ଅଗଷ୍ଟ ପନ୍ଦର, ମାସର ମଝିରେ ଏକ ଚୂଡ଼ାନ୍ତ ଅଭାବବୋଧର ବିରକ୍ତିକର ପ୍ରତ୍ୟୁଷ ।

ଏ ସ୍ୱାଧୀନତା ଆଉ ଗଣତନ୍ତ୍ର ଦିବସଗୁଡ଼ିକ ପ୍ରତି ତାଙ୍କର ବିତୃଷ୍ଣାର ଅପର ଏକ ବଳିଷ୍ଠ କାରଣ ଥିଲା । ଏଇ ଦିନଗୁଡ଼ିକରେ ସେ ନିଜ ଲୋକଙ୍କଠାରୁ ସ୍ନେହ ଖୋଜି କିମ୍ବା କୌଣସି ଆମୋଦ ପ୍ରମୋଦର ସୁରାକ ଖୋଜି ପାଉ ନଥିଲେ । ତେଣୁ ଅନେକ ସମୟରେ ବ୍ରଜସୁନ୍ଦର ବଳୀୟାର ସିଂ ଏଇ ଦିନଗୁଡ଼ିକରେ ଅତିମାତ୍ରାରେ ବିକ୍ଷୁବ୍ଧ ହୋଇ ଉଠୁଥିଲେ । ବେଳେବେଳେ କବାଟଟା ଖୋଲି କାନ୍ଥର ବିରାଟ ଆଇନା ଆଗରେ ରୁକ୍ଷ ଭାବରେ ଗର୍ଜି ଉଠୁଥିଲେ । ଆଉ କେବେ କେବେ ବା ସେହି ଆରିସିଟିକୁ ଚାହିଁ ଅବୋଧ ଶିଶୁପରି କଇଁ କଇଁ ହୋଇ କାନ୍ଦି ଉଠୁଥିଲେ ।

ବଳୀୟାର ସିଂ ମେସ୍‌ର ଗୋଟାଏ ସଂକୀର୍ଣ୍ଣ ଚଉଷଠି ବର୍ଗଫୁଟ ପ୍ରକୋଷ୍ଠରେ ଛୋଟ



Digitized by PPRACHIN, SOA

ଅପ୍ରଶସ୍ତ ଛଣିକିଆ ଖଟ ଉପରେ ଶୋଇ ସିଗାରେଟ୍ ଶୋଷୁଛନ୍ତି । ବେଳେବେଳେ ହସୁଚନ୍ତି ବେପରୁଆ ହସ । ନାକ ତଳର ବାଘ ନିଶ କେରିକରେ ଆସ୍ତେ ହସ୍ତ ସଞ୍ଚାଳନ କରୁଛନ୍ତି । ନିଶର ଅଗ୍ରଭାଗକୁ ବଳି ଧରୁଛନ୍ତି । ସତେ ଅବା ସେ କାହାକୁ ଡରେଇବା ପାଇଁ ଭୀତିର ସ୍ୱରୂପକୁ ପ୍ରଥମେ ନିଜଠାରେ ହିଁ ପରୀକ୍ଷା କରୁଛନ୍ତି । ଶେଷ ସିଗାରେଟ୍ ଲଗେଇଲେ ବଳୀୟାର ସିଂ । ସମୟ ଏଗାରଟା ପାଖାପାଖି ।

ଛାତି ପୋଡୁଚି । ବହୁତ ଧୂଆଁ ସେ ଆଜି ପିଇଛନ୍ତି । କେତେବେଳେ ନାକବାଟେ କେତେବେଳେ ପାଟିବାଟେ ସେ ସବୁ ତିମି ମାଛର ପ୍ରଶ୍ୱାସ ପରି ଫୁଙ୍କି ଉଡ଼େଇ ଦେଇଚନ୍ତି । ଧୂଆଁର କୁଣ୍ଡଳୀକୃତ ପତଳା ବଳୟଗୁଡ଼ା ନିଭି ନିଭି ଯାଇଚି ।

ବ୍ରଜସୁନ୍ଦର ବଳୀୟାର ସିଂ ହଠାତ୍ ସର୍ବାଙ୍ଗରେ ଗୋଟାଏ ବେଦନା ଅନୁଭବ କଲେ । ଏକ ସଂଜ୍ଞାହୀନ, ଅସ୍ୱସ୍ତିକର ବେଖାପୀ ବେଦନା । ମନରେ ଛୁଟୁଚି ଘୋଡ଼ାର ଦୌଡ଼ । ଦେହରେ ଏକ ଅନବବୋଧ କାମନାର ବିକଳ ଆର୍ତ୍ତନାଦ । ନିର୍ଦ୍ଧୃମ ଯୌକ୍ତିକତା ଓ ପତିମୁଖତାରେ ବାରମ୍ବାର ପ୍ରସାରିତ ଓ ସଙ୍କୁଚିତ ହେଉଚି ଦେହର ମାଂସପେଶୀ । ବାହାବଳୀନ୍ଦ୍ର ନିଷ୍ପ୍ରାଣ ଭାବରେ ପଡ଼ି ରହିଲେ ।

ମନରେ ତାଙ୍କର ଭାବାନ୍ତର ସୃଷ୍ଟି ହେଲା । ସ୍ୱାଧୀନତା ଦିବସ । ଇଚ୍ଛାମତେ ବୁଲାଚଲା ଉପଭୋଗ କରିବାକୁ ପାଖରେ ସମ୍ବଳ ନାହିଁ । ସହରର ଅପ୍ରଶସ୍ତ ଗଳିରୁ ଶେଷ ପ୍ରାନ୍ତର କଲୋନୀକୁ ପୋଲିସ ପ୍ୟାରେଡ ଦେଖି ଯିବାକୁ ପକେଟରେ ପଇସା ନାହିଁ । ସମୟ ଅତିକ୍ରାନ୍ତ ହୋଇଛି । ଗାଧୋଇ ସାରିଲେ ପ୍ରବଳ ଭୋକ ହେବ । ଆଜି ଦିନଟାରେ ଇଚ୍ଛା ହେଉଛି ଗୁଡ଼ାଏ ମାଂସ, ଅଣ୍ଡାର ଆମ୍‌ଲେଟ୍ ଆଉ ପଲାଉ ଖାଇବାକୁ । ପ୍ରତିଦିନ ଗୋଟାଏ ହୋଟେଲରେ ଏକା ପ୍ରକାରର ଖାଦ୍ୟ ଖାଇ ତାଙ୍କୁ ବିରକ୍ତ ଲାଗିଲାଣି । ପ୍ରଥମ ସପ୍ତାହର ଦିନଗୁଡ଼ିକରେ ସେ ବଡ଼ ହୋଟେଲମାନଙ୍କରେ ଖାଇବାରେ ଦରମାର ଅର୍ଦ୍ଧାଂଶ ଖର୍ଚ୍ଚ କରିଦେଇଛନ୍ତି । ତାଙ୍କର ଧାରଣା ନଥିଲା ଏଇମାସ ଅଗଷ୍ଟ ପନ୍ଦର ବୋଲି । ଅନ୍ତତଃ ସେଦିନ ଟିକିଏ ଆମୋଦ ପ୍ରମୋଦ ଦରକାର ।

ବ୍ରଜସୁନ୍ଦର ବଳୀୟାର ସିଂ ଭାବିଲେ କୌଣସି ବନ୍ଧୁ ଘରକୁ ତ ଆଜି ଯାଇ ହୋଇଥାନ୍ତା । ସହର ଅପେକ୍ଷା ଗାଁରେ ଏ ଦିନଗୁଡ଼ିକ ବରଂ ଅଧିକ ଆମୋଦପ୍ରଦ । କାରଣ ସେମାନଙ୍କର ସେମିତି କିଛି ଏ ଦିନପ୍ରତି ଆକର୍ଷଣ ନାହିଁ । ସହଜ ଗତାନୁଗତିକ ଜୀବନ । ଗଣତନ୍ତ୍ର ଆଉ ସ୍ୱାଧୀନତାର ଆବଶ୍ୟକତା ଓ ମୂଲ୍ୟ ତାଙ୍କ ପାଖରେ ଏ ଯାଏ ପହଞ୍ଚିନି । ସେମାନେ ଏବେ ବି ଭାବନ୍ତି ଆମର ବ୍ରିଟିଶ ସରକାର ଭଲ ରାଜା ଥିଲା । ବଳୀୟାର ସିଂ ଭାରି ବିତସ୍ପୃହ ହୋଇପଡ଼ିଲେ । ସହରରେ ଏ ଦିନମାନଙ୍କରେ ରହିବା ଗୋଟିଏ ମସ୍ତବଡ଼ ଅପରାଧ । ପାଖରେ ପଇସା ନଥିଲେ ସେ ଅପରାଧ ଆହୁରି ଭୀଷଣ ଆକୃତି ଧରି ମନକୁ କବଳିତ କରିଦିଏ ।



Digitized by PPRACHIN, SOA

ବଡ଼ ଅପା ମାଳତୀ ଦେବୀ । ବୋଉଠାରୁ ବୟସରେ ଅଳ୍ପ ବଡ଼ । ବଡ଼ ବାପାଙ୍କ ଆଗ ସ୍ତ୍ରୀର ବଡ଼ ଝିଅ । ମନ ତାଙ୍କର ବିରକ୍ତିରେ ପୂରି ଉଠିଲା । ବଡ଼ଲୋକ ଘରେ ବଡ଼ ଅପା ବାହା ହେଇଚି । ଚାକର ଚାକରାଣୀ, ବିରାଟ କୁଟୁମ୍ବର ପରିବାର । ସବୁବେଳେ ଗହଳଚହଳ । ନିଜର ପିଲାଙ୍କ ଖିଆପିଆ ବୁଝିବାକୁ ବଡ଼ ଅପା ମାଳତୀ ଦେବୀଙ୍କୁ ବେଳ କାହିଁ ? ବୁଝିବେ ସେ ବାହାବଳୀନ୍ଦ୍ର ବଳୀୟାର ସିଂଙ୍କ ମନ କଥା ? ଦାସୀ ଆଣି ଥୋଇଦେବ ଖାଇବାକୁ । ଦର୍ଶନ ମିଳିବନି ବଡ଼ ଅପାର । ନା ସେ ଯିବେନି । ମନ ତାଙ୍କର ଅତିଷ୍ଠ ହୋଇ ଉଠିଲା । ବଡ଼ ଅପା- ସ୍ୱାର୍ଥପର, ଅହଂକାରୀ । ନିଜର ଭାଇ କଥା ବୁଝିବାକୁ ତାର ବେଳ ନାହିଁ ।

ଭାବିଲେ ତା ତଳ ଅପା କେତକୀ ଦେବୀଙ୍କ ଘରକୁ ଯିବେ । ତାଙ୍କ ବଡ଼ ପୁଅ ବଳୀୟାର ସିଂଙ୍କଠାରୁ ତିନିବର୍ଷ ସାନ । ବେଶ ମଉଜ ହେବ । ପିଠାପଣାର ଧୂମ୍ ସେଠି ଉଡ଼ିବ । ନଈକୂଳରେ ରାତି ଦଶଟାଯାଏ ବସି ଯାବତୀୟ ନଷ୍ଟ କଥା ଗପି ଗପି ଆନନ୍ଦ ପାଇବେ । ଯିବେ ସେ ମଝିଆଁ ଅପା କେତକୀ ଦେବୀଙ୍କ ଘରକୁ ?

ମନ ତାଙ୍କର ବିଷିପିତା ଧରିଲା । କେତକୀ ଅପା ତାଙ୍କୁ ସନ୍ଦେହ କରେ । ତାର ଛୋଟ ବଡ଼ ଛଅଟି ସନ୍ତାନ । କାହାକୁ ତ ଦିନେ ହେଲେ ମାମୁଁ ସୋହାଗରେ ସେ ପାଖରେ ବସି ଖୁଆଇ ନାହାନ୍ତି । ବରଂ ପଡ଼ିଶା ଘର ବୁଢ଼ୀକୁ ସବୁବେଳେ ଡାକିଛନ୍ତି । ସେ ସାଙ୍ଗରେ ନ ଖାଇଲେ ବଳୀୟାର ସିଂକୁ ରୁଚେନା । ଆଳ ଦେଖାଇ ଉଠିଯାଆନ୍ତି । ବେଳେ ବେଳେ ହାତକୁ ଭିଡ଼ି ଧରନ୍ତି ବୁଢ଼ୀର । ସେ ତାଙ୍କ ଅପାର ଝିଆରୀ । ବଳୀୟାର ସିଂ ମାମୁଁ ଭାଣିଜୀର ତଫାତ୍ ରଖିବାକୁ ଚାହାନ୍ତିନି । ନିଜେ ଯେ ମାଛରୁ କଣ୍ଟା ଛଡ଼େଇ ଜାଣେନି, ସେ ପୁଣି ଛଡ଼େଇ ଦିଏ ଲୁଚେଇ ଲୁଚେଇ ବୁଢ଼ୀ ହାତରେ । ପ୍ରଭାତ ନଳିନୀ- ଡାକ ନାମ ବୁଢ଼ୀ । ପ୍ରଭାତର ନଳିନୀ ପରି ସଦ୍ୟ ଆଉ ଢ଼ଳ ଢ଼ଳ । ସେଇଠିକି ଯିବାକୁ ତାଙ୍କର ମନ । ଅଗଷ୍ଟ ପନ୍ଦର ସେଇଠି ବେଶ୍ ଉପଭୋଗ୍ୟ ହେବ । ସହରଟା ଯନ୍ତଣା ଦାୟକ ।

ବ୍ରଜସୁନ୍ଦର ବାହାବଳୀନ୍ଦ୍ର ବଳୀୟାର ସିଂ ସନ୍ତପ୍ତ ହେଲେ- ସମସ୍ତେ ତାଙ୍କୁ ସନ୍ଦେହ କରିଛନ୍ତି । ନିଜେ ବି ନିଜକୁ ସେ କମ ସନ୍ଦେହ କରି ନାହାନ୍ତି । ଉଦ୍ଧତ ବଳୀୟାର ସିଂ । ସେ ପ୍ରଭାତ ନଳିନୀକୁ ଭଲ ପାଆନ୍ତି । ଲୁଚେଇ ଲୁଚେଇ ତାକୁ ନିଜ ଛାତିରେ ସୁଯୋଗ ଦେଖି ଚାପି ବି ଧରନ୍ତି । ଗ୍ରାମରେ କଥା ପ୍ରଘଟ ହୋଇଚି । ବଳୀୟାର ସିଂ ନିଜ ସମ୍ମାନକୁ ବିକି ପାରିବେନି । ଏବେ ବି ଗତାୟୁ ଜମିଦାର ବଂଶର ରକ୍ତ ତାଙ୍କ ଧମନୀରେ ପ୍ରବାହିତ । ସହି ପାରିବେନି ସେ ଇତର ଲୋକଙ୍କ ଭ୍ରୂକୁଟୀ । ସେ ତ ଅନ୍ୟାୟ କରି ନାହାନ୍ତି ? ପ୍ରେମ କରିଚନ୍ତି । ଲୋଭ କରିଚନ୍ତି ଗୋଟିଏ ପ୍ରସ୍ଫୁଟିତ ଗୋଲାପର ତନୁର ତନିମାକୁ । ସ୍ୱାଭାବିକ । ନା, ସେଠିକି ଯିବେନି । ଲାଜ ଓ ଭୟ ମିଶାମିଶି ତାଙ୍କୁ ଗ୍ରାସ କରିଚି ।



Digitized by PPRACHIN, SOA

ସାନ ଅପା ରଜନୀଗନ୍ଧା । ଯିବେକି ସେ ସେଠିକି ? ସେ ବାହାବଳୀନ୍ଦ୍ରଙ୍କ ମନକଥା ବୁଝେ । ଗରିବ ଘରେ ବାହା ହୋଇଚି ରଜନୀଅପା । ଅପତିଆଣୀ- ଉପରେ ତାର ପାଞ୍ଚଟି ସନ୍ତାନ ହୋଇ ମରିଚନ୍ତି । ବାହାବଳୀନ୍ଦ୍ର ଭାବିରେ ସେ ସେଇଠିକୁ ଯିବେ । ସହରଠାରୁ ମାତ୍ର ପନ୍ଦର ମାଇଲ ବାଟ । ସାଇକେଲ ନାହିଁ, ବିକା ସରିଚି । ସାଇକେଲଟାଏ ଯୋଗାଡ଼ କରି ନେଇ ହେବ । କିନ୍ତୁ କାହିଁକି ସେ ସେଠାକୁ ଯିବେ ? କି ଉପଭୋଗ ପାଇଁ ? ଦରିଦ୍ର ଅପା ଉପରେ ବରଂ ସେ ହେବେ ଅଦିନ ବୋଝ । ଜମିଦାରୀ ସିନା ନାହିଁ, ଉଠିଗଲା । ଭାଇତ ତାର ଜମିଦାରଙ୍କ ପୁଅ । ଅପା ଶାଗରେ ମାଛରେ ପରିଚର୍ଯ୍ୟା କରି ବି ସଙ୍କୁଚିତ ହେବ । ମନ ମାରି ବସିବ । ତାର ବାହାବଳୀନ୍ଦ୍ରକୁ ଭାରି ଡ଼ର । କାରଣ ବ୍ରଜସୁନ୍ଦର ବାହାବଳୀନ୍ଦ୍ର ବେଳେବେଳେ ତାର ଘରେ ମାଂସ କିମ୍ୱା ଅଣ୍ଡା ତର୍କାରି କରିବାକୁ ଜିଦ୍ ଧରନ୍ତି । ସାତ ସପନ କଥା । ରଜନୀ ଅପା ଘରକୁ ସେ ଯିବେନି, ସେଠି ଆମୋଦର ସ୍ୱପ୍ନ ନାହିଁ । ବରଂ ଏଇ କ୍ଲାନ୍ତିକର ସହର ପରିବେଶ ତା ଘରଠାରୁ ଅଧିକ ଆରାମ ଦାୟକ ।

ବାହାବଳୀନ୍ଦ୍ର ବଳୀୟାର ସିଂ କଡ଼ ଲେଉଟାଇଲେ । ସିଗାରେଟ୍ ପ୍ୟାକେଟ ଉପରେ ହାତ ପଡ଼ିଗଲା । "ଧେତ୍" । ରାଗରେ ଖାଲି ଖୋଳଟାକୁ ଝରକା ଡ଼ିଆଁଇ ଫିଙ୍ଗିଲେ ବାହାରର ନାଳିରାସ୍ତା ଉପରକୁ । ସବୁ ଅପାଙ୍କ ଉପରେ ତାଙ୍କର ରାଗ ହେଲା । ସମସ୍ତେସମାନ ଭାବେ ସ୍ୱାର୍ଥପର । ପଘାବନ୍ଧା ଗାଈଟିଏ ପରି ନିଜ ନିଜ ସଂସାର ଜଞ୍ଜାଳରେ ବନ୍ଧା ପଡ଼ିଛନ୍ତି । ହୁଗୁଳିବାର ଚାରା ନାହିଁ ।

ମନେ ପଡ଼ିଲେ ବୋଉ-ଜନ୍ମଦାତ୍ରୀ । ଆହା ! ଆଉ ସେ ସଂସାରରେ ନାହିଁ । ଜମିଦାର ଘରର ବୋହୂ ହୋଇ ଯେତେବେଳେ ସେ ଆସିଲା ସେତେବେଳେ ତାକୁ ସତର ବର୍ଷ । ଯାହାର ହାତ ଧରିଲା- ତାକୁ ବୟସ ପଇଁଚାଳିଶ । ଛଡ଼ ପରି ଡେଙ୍ଗା ମର୍ଦ୍ଦ । ନିଶ ହଳକୁ ଦେଖିଲେ ଡ଼ର ଲାଗିବ । ପ୍ରଶସ୍ତ ଛାତି । ବିରାଟ ଆକୃତି ପୁରୁଷ, ଶ୍ୟାମସୁନ୍ଦର ବାହାବଳୀନ୍ଦ୍ର ବଳୀୟାର ସିଂ । ଦୁନିଆର କୌଣସି କଥା ପାଇଁ ପରବାଏ ନାଇଁ, ଖାତିର ନାହିଁ । ବସି ବସି ଗପୁଛନ୍ତି ତ ସନ୍ଧ୍ୟାଗଡ଼ି ରାତି ଅଧ ବି ଗଡ଼ିବ । ପଶାପାଲି ପଡ଼ିଚିତ ସେଦିନ ସବୁ ସେ ଭୁଲିଯିବେ । ବାଜି ରଖି ସେ ଖେଳନ୍ତି- ତା' ପରେ ସାଗୁଆଟୀ ତର୍କାରୀ ଆଉ ପରଟା ଭୋଜୀ ହୁଏ । ସମସ୍ତ ଖେଳାଳୀ ଆଉ ଗ୍ରାମର ପଛପେଲା ଦଶପନ୍ଦରଙ୍କ ପତ୍ର ବି ପଡ଼େ । ସବୁ ଖର୍ଚ୍ଚ ଶ୍ୟାମସୁନ୍ଦର ବାହାବଳୀନ୍ଦ୍ର ବଳୀୟାର ସିଂ ତୁଲାନ୍ତି । ଘରକୁ ପଶିଲା ବେଳକୁ ନବବଧୂ ଉର୍ବଶୀ ଦେବୀଙ୍କୁ ମାଡ଼ି ମାଡ଼ି ପଡ଼େ । ପଦେ କଥା କହନ୍ତିନି । କଣେଇ ଟିକିଏ ଚାହାନ୍ତିନି ବି । ଭଲରେ ମନ୍ଦରେ ପଚାରନ୍ତିନି । ଗୋଟିଏ କିସମର ମିଜାଜୀ ମଣିଷ ବଳୀୟାର ସିଂ ।

ଗାଁର ବିଶ୍ୱସ୍ତ ଲୋକଙ୍କଠାରୁ ବ୍ରଜସୁନ୍ଦର ଶୁଣିଚନ୍ତି- ବେଳେ ବେଳେ ରାତି ଅଧରେ



Digitized by PPRACHIN, SOA

ବୋଉ ଉର୍ବଶୀ ଦେବୀ କାନ୍ଦି ଉଠନ୍ତି । ଅତି ଆକୁଳ କ୍ରନ୍ଦନ । ପିଠିରେ ତାଙ୍କର ପାହାର ବସେ । ବ୍ରଜସୁନ୍ଦରଙ୍କ ଉପର ଭଉଣୀ ସେତେବେଳେ ପେଟରେ ଥାଏ । ପଲଙ୍କ ଉପରୁ ଗୋଇଠାମାରି ବାହାବଳୀନ୍ଦ୍ର ଠେଲି ଦେଲେ, ଅସଜ ମଣିଷ ଗଛ କାଟିଲାପରି ଦୁଲ କରି ଖଟତଳକୁ ଗଡ଼ିପଡ଼ିଲେ । ମଲା କି ଗଲା ବାହାବଳୀନ୍ଦ୍ରଙ୍କର ପରବାୟ ନଥାଏ ।

"ରୁହ, ତୁମେ ମତେ ଯେତେ ହିନସ୍ତା କରୁଚ- ଏଇ ମୋ ପେଟର ଛୁଆ ତାର ପ୍ରତିଶୋଧ ନେବ ।" ଅତି ଦୁଃଖରେ ବେଳେବେଳେ ଉର୍ବଶୀ ଦେବୀ କହି ପକାନ୍ତି । ଜିଭ କାମୁଡ଼ି ପକାନ୍ତି ପରକ୍ଷଣରେ ଭାବନ୍ତି କାହାର ପ୍ରତିଶୋଧ କିଏ ନେବ ? ପତି- ପରମ ଦେବତା । ଇହ ଓ ପର ଜନ୍ମର ସେ ସାଥୀ । "ବଡ଼ ଅଲକ୍ଷଣୀ ମୁଁ ।"

ଝିଅଟିଏ ଜନ୍ମ ହେଲା ପ୍ରଥମ ଗର୍ଭରେ । ବାହାବଳୀନ୍ଦ୍ର ସେଇପରି ଲଗାମଛଡ଼ା ହୋଇ ପଘା ଛିଣ୍ଡେଇ ବୁଲିଲେ । ମନରେ ତାଙ୍କର ଐକାନ୍ତିକ ପତ୍ନୀନିଷ୍ଠା କେବେ ନଥିଲା । ବନ୍ଧନ ପାଇଁ ପ୍ରୟାସ ନଥିଲା । କାମନାର ନିର୍ବହଣ ପାଇଁ ଘରେ ରକ୍ଷିତା ଅନେକ ଅଛନ୍ତି ।

ଆଖିରୁ ଲୁହ ଶୁଖିଲାନି ଉର୍ବଶୀ ଦେବୀଙ୍କର । ଛ' ବର୍ଷ ଧରି ଯମ ପଟେ ଓ ସେ ପଟେ ଛୁଆଟିକୁ ଟାଣିଲେ । ଦହଗଞ୍ଜ କରି ଲୁହ ଓ ଲହୁକୁ ଗୋଳାଗୋଳି କରି ସେ ଚାଲିଗଲା । ନିଶ୍ଚିନ୍ତ ହେଲେ ଶ୍ୟାମସୁନ୍ଦର ବାହାବଳୀନ୍ଦ୍ର ବଳୀୟାର ସିଂ ।

ତା' ପରେ ୨ୟ ଗର୍ଭ । ଭୂଇଁରେ ପଡ଼ିଲେ ବ୍ରଜସୁନ୍ଦର ବାହାବଳୀନ୍ଦ୍ର ବଳୀୟାର ସିଂ । ତଥାପି ସ୍ୱାମୀ ଦେବତା ସନ୍ତୁଷ୍ଟ ହେଲେନି । ସେମିତି ବେପରୁଆ, ତାଙ୍କଠାରୁ ତଥାପି ଉର୍ବଶୀ ଦେବୀଙ୍କର ଭୟ କମିଲାନି ।

ପାଖରେ ଶୋଇଚି ବ୍ରଜସୁନ୍ଦର ବାହାବଳୀନ୍ଦ୍ର । ସୁନ୍ଦର କମନୀୟ ଶିଶୁ । ଗୋରା ତକ୍ ତକ୍ ଦେହରୁ ଲାବଣ୍ୟ ନିଗିଡ଼ି ପଡୁଚି । ଅନ୍ଧର ଲଉଡ଼ି । ପେଟ ପୂରି ଉଠୁଚି । ବୁକୁ ଫୁଲି ଉଠୁଚି ମାଆଙ୍କର ।

ବ୍ରଜସୁନ୍ଦର ବାହାବଳୀନ୍ଦ୍ର ବଳୀୟାର ସିଂଙ୍କ ଅପାମାନେ ବୟସରେ ତାଙ୍କ ବୋଉଠାରୁ ଆହୁରି ବଡ଼ । ଟଙ୍କା ଦେଇ ବିଭା ହୋଇଚନ୍ତି ପ୍ରତିପତ୍ତିଶାଳୀ ଜମିଦାର- ଶ୍ୟାମସୁନ୍ଦର ବଳୀୟାର ସିଂ । ଗରିବ ଘରୁ ଆସିଚି ବୋହୂଟିଏ, ହେଉ ପଛେ ସେ ମର୍ତ୍ତ୍ୟର ମେନକା, ଅତି ସହିଷ୍ଣୁ ଓ କାମିକା, ତଥାପି ଝିଆରୀମାନେ ତାଙ୍କୁ ଥଟ୍ଟା ଟାପରା କରନ୍ତି । କେତେ ଦେଖେଇ ଶିଖେଇ କଥା କୁହନ୍ତି ।

ଲୋକ ଲଜ୍ଜାକୁ ଓ ଜନରବକୁ ଡ଼ରି ସାବତ ଝିଅମାନଙ୍କ ଘରକୁ ଉର୍ବଶୀ ଦେବୀ ତେର ପର୍ବରେ ଚଉଦଭାର ପଠାନ୍ତି । ଅଦିନରେ ଭାର ପହଞ୍ଚେ । ବାଡିରୁ ଖୋଳା ହୋଇଚି ଗାଡ଼ି ଗାଡ଼ି ଦେଶୀଆଳୁ । ସବୁ ମନକୁ ଉଠିଚି । କେହି ଯତ୍ନ କରିନି । ମାଛ ଆସେ ପୋଖରୀରୁ । ଜାଲୁଆ ମାଛ ଧରି ଇଚ୍ଛାନୁସାରେ ନିଅନ୍ତି, ଦିଅନ୍ତି ବି । କେହି



Digitized by PPRACHIN, SOA

ଦେଖିବାକୁ ଯାଏନି । ବଳୀୟାର ସିଂ ବଡ଼ ମାଛ ଦେଖି ନିଶ ଫୁଲାନ୍ତି । ପଶା ଖେଳରେ ମନ ଦିଅନ୍ତି ।

ସାତ ପାଞ୍ଚ ପୋଇଲୀ ପରିବାରୀଙ୍କୁ ଲଗେଇ ଉର୍ବଶୀ ଦେବୀ ବଢ଼ି ପାରନ୍ତି । ଝିଆରୀମାନଙ୍କ ଘରକୁ ପଠେଇବେ । ନଇଲେ ସେମାନେ ଅପବାଦ ଦେବେ, ବୋଉ ନାହିଁ ବୋଲି ସାନବୋଉ ସେମାନଙ୍କ କଥା ବୁଝିଲାନି । କିଏ କାହାକୁ ପଚାରେ ?

ଜୀବନ ମୂର୍ଚ୍ଛା ଖଟନ୍ତି ଉର୍ବଶୀ ଦେବୀ । ଦୁନିଆକୁ ସନ୍ତୁଷ୍ଟ କରିବା ତାଙ୍କର ବ୍ରତ ! ଚାହିଁ ବସିଥାନ୍ତି- ବ୍ରଜସୁନ୍ଦର ସ୍କୁଲରୁ ଆସିବ । ବସ୍ତାନି ଫୋପାଡ଼ି ତାଙ୍କ ବେକକୁ ଧରି ଓହଳି ପଡ଼ିବ । ସେଘରେ ଚୁଲୀରେ ବସିଚି ଦୁଧହାଣ୍ଡି – ଦୁଧ ତ ପିଇବନି, ସରରେ ତାର ଭାରି ଲୋଭ ।

ଏଇ ବ୍ରଜସୁନ୍ଦର ବାହାବଳୀନ୍ଦ୍ର ବଳୀୟାର ସିଂ । ବୋଉ କେତେ ଆଶା କରିଥିଲେ ତାଙ୍କର ଦୁଃଖ ଫେଡ଼ିବ ଏଇ ନୟନଚନ୍ଦ୍ରମା । ଆହା- ନିଜେ ବଞ୍ଚିଲେନି । ପୂତିର ନର୍କରୁ ସ୍ୱର୍ଗର ସୁରଭିକୁ ଅସମୟରେ ସେ ଚାଲିଗଲେ । ବୟସ ସେତେବେଳ ମାତ୍ର ପଇଁଚାଳିଶି ।

ବାହାବଳୀନ୍ଦ୍ର ସେତେବେଳେ ପ୍ରଥମ ବାର୍ଷିକ କଳାଛାତ୍ର । ମନଭରି କାନ୍ଦିଥିଲେ । ଘରକୁ ଅନେକ ଦିନ ଗଲେନି । କାହାପାଇଁ ଯିବେ ? ଆଖିରେ ଦେଖିଚନ୍ତି ବୋଉର ନିର୍ଯ୍ୟାତନା । ସୁଖ ପାଇଁ ସେ ବଞ୍ଚି ରହିଲାନି । ତିନୋଟି ସନ୍ତାନକୁ ଦୁନିଆରେ ଛାଡ଼ି ଆଖି ବୁଜିଲା ।

+ + + ବାହାବଳୀନ୍ଦ୍ର ପୁଣି କଡ଼ ଲେଉଟେଇଲେ । ଅପାଗୁଡ଼ା ସ୍ୱାର୍ଥପର । ଚାହିଁଚନ୍ତି ସେ ବିବାହ କରିବ । ନଣନ୍ଦପୁଟୁଳା ଆଣି ନୂଆବୋହୂ ଆସିବ । କେତକୀ ଅପା ଭଲ ସୁନା ମୁଦିଟାଏ ବରାଦ ଦେଇଚି । ସୁଟ୍‌କେଶ ସାଜ ସଜେଇ ରଖିଚି । ଏମିତି କେତେ କଣ । ବାହାବଳୀନ୍ଦ୍ର ବିଭା ହେବେ । ସବୁ ଆପାଙ୍କ ମନରେ ଆନନ୍ଦ । ସେମାନଙ୍କର ଦାବୀ ସେମାନେ ହାସଲ କରି ପାରିବେ । ନଣନ୍ଦ ପୁଟୁଳୀରେ ସମସ୍ତଙ୍କର ଭାଗ । ନଣନ୍ଦ ପୁଟୁଳୀ ମାତ୍ର ଗୋଟିଏ ।

ମନେ ମନେ ହସିଲେ ବଳୀୟାର ସିଂ । ଏଇ ଅପାଗୁଡ଼ା ଏତେ ସ୍ୱାର୍ଥପର । ପାଖରେ ଥିଲେ ଭାବନ୍ତି ସତେ ଯେପରି କୋଟିନିଧି ତାଙ୍କ ହାତରେ ପଡ଼ିଚି । ଆଖି ସାମନାରୁ ଗଲେ ହିସାବ କରନ୍ତି କେତେ ପାଇବେ । ଦେଏଣାଠାରୁ ପାଉଣା କେତେ ବେଶୀ ।

ନା- ସେ ଏତେ ଶୀଘ୍ର ବିବାହ କରିପାରିବେନି । ଏଇ ଅପାଗୁଡ଼ା ପରଝିଅକୁ ତାଙ୍କ ବୋଉକୁ କଲାପରି ହୁଏତ ଦହଗଞ୍ଜ କରିପାରନ୍ତି । ନାମଜାଦା ଜମିଦାର ଘର । କର୍ପୂର ଯାଇ କନାରୁ ବି ବାସ ଉଡ଼ିଗଲାଣି । ଘରଟା ପଡ଼ି ରହିଚି- କେଉଁ ଯୁଗର ଖାନଦାନୀ



Digitized by PPRACHIN, SOA

ଅତୀତକୁ ମନେପକେଇ କେଉଁ ହଜିଲା ସ୍ମୃତିର ତର୍ପଣ କରୁଚି କେଜାଣି ? ସେ ଘରେ ଏଇଲାଏ କେହି କାହାକୁ ଚିହ୍ନନ୍ତିନି । ଏତେବଡ଼ ଘରେ ମାତ୍ର ଚାରିପ୍ରାଣୀ କୁଟୁମ୍ବ ରହୁଚନ୍ତି । ଦୁଇ ବୁଢ଼ା, ଆଉ ବ୍ରଜସୁନ୍ଦରଙ୍କ ସାନ ଭାଇ ଓ ସାନ ଭଉଣୀ । ତିନିଟି ଘରକୁ ଛାଡ଼ିଦେଲେ ଆଉ ସବୁ ଘରେ ଝୁଲୁଚି ବଡ଼ ବଡ଼ ତାଲା । ଘରଗୁଡ଼ାକରେ କେଉଁ ଦିନରୁ କେଜାଣି ଗୋବର କନା ଟିକିଏ ବାଜିନି । ଝୋଟି ସାତସପନ । ଚାରିଆଡ଼େ ବିରକ୍ତିକର ଅଳନ୍ଧୁ । ବୁଢ଼ାଦିଟି ରହନ୍ତି ଦି'ଘରେ । ନଇଁ ନଇଁ ଧୀରେ ଧୀରେ - ନିଜ ଘରଗୁଡ଼ାକ ଖରକି ଦିଅନ୍ତି । ସାନଭଉଣୀ ଜ୍ୟୋତିର୍ମୟୀ ଆଭିଜାତ୍ୟର ଜ୍ୱଳନ୍ତ ନମୁନା; କୁଟାଖଣ୍ଡିକୁ ଦିଖଣ୍ଡ କରିବନି । ଖଟ ଉପରେ ଶୋଇ ଅଳସ ଭାଙ୍ଗିବା ତାର ଗୋଟାଏ ସଉକ । ବେଳେବେଳେ ରାତିରେ ନିଦ ଲାଗୁଥିଲେ ଖାଇବାବି ତାର ବନ୍ଦ । ସାଇଭାଇ ମାଇପେ ଆସି ମନଖୁସିରେ ରୋଷେଇ କରି ଦେଇ ଯାଆନ୍ତି । ଦାସ ଦାସୀର କୋଳାହଳ ଆଉ ନାହିଁ । ଅଧିକାଂଶ ଦିନ ପାଖ ଗୁଡ଼ିଆ ଦୋକାନରୁ ଖାଇବା ଜିନିଷ କିଣାହୋଇ ଆସେ ।

ବ୍ରଜସୁନ୍ଦର ବାହାବଳୀନ୍ଦ୍ର ଭାବିଲେ ଘରଆଡ଼େ ଟିକେ ବୁଲି ଆସିବେ । ଦେଖି ଆସିବେ କଣ କରୁଚନ୍ତି ବୁଢ଼ା ଦୁହେଁ । କ'ଣ କରୁଚି ଜ୍ୟୋତିର୍ମୟୀ । ମନେ ମନେ ବେଢାଏ ହସିଲେ । ସବୁ ଘରଗୁଡ଼ାକରେ ଝୁଲୁଥିବ ତାଲା । ଗିଲାସଟା ଯଦି କାହା ଗୋଡ଼ରେ ବାଜି ପଡ଼ିଥିବ ତାକୁ  କେହି ହେପାଜତ କରି ଉଠେଇ ଥୋଇ ନଥିବେ । ବୋଉ ନାହିଁ- ଲକ୍ଷ୍ମୀ ତୁଟିଚି ଘରୁ । ଆଉ କାହିଁକି ସେଠିକି ଯିବେ ? ବରଂ ସହରର ଏ ନିର୍ଜନ ଗଳି ଓ ମେସ୍‌ଠାରୁ ସେଠି ସେ ଆହୁରି ଅପରିଚିତ । ଆହୁରି ଅପାଙ୍‌କ୍ତେୟ । ଛୁଟିରେ ଦଶଦିନ ରହିଲେ ବାପାଙ୍କ ସହିତ ଥରେ ସାକ୍ଷାତ ହେବା କଷ୍ଟକର । ବାପା ଭୁଲରେ ପଚାରନ୍ତିନି ସେ କେଉଁଠି ଅଛନ୍ତି, କ'ଣ କରୁଚନ୍ତି । ସାନଭଉଣୀ ଭାବେ- ଘରକୁ ଘର ଲୋକ ଆସିଚି । ନିଜେ ସେ ନିଜର ପରିଚର୍ଯ୍ୟା କରୁ । ପଡ଼ିଶାଘର ଭାଉଜ ଭାତ ରାନ୍ଧିଦେଇ ଯାଇଚି । ନିଜେ ସେ ବାଢ଼ି ଖାଇ ବସନ୍ତୁ । ବାସନ ସେମିତି ପଡ଼ିଥିବ- ଦାସିଆ ବାରିକ କାଲି ଆସିଲେ ମାଜିଦେବ ।

"କୁଆଡ଼େ ଯାଉଚୁ ଜ୍ୟୋତି ?"

"କାଇଁକି, କଉଡ଼ି ଖେଳି ?"

"ମତେ ଜଳଖିଆ ଗଣ୍ଡେ ଦେଇଯା ।"

"ଭାଇ ତମେ ଶିକାରୁ ଆଣି ଖାଇଦିଅ । ମୁଁ ଆରଓଳିକି ଗୁଡ଼ିଆ ଦୋକାନରୁ କିଣିଆଣି ଦେବି ।"

ଦଉଡ଼ି ଦଉଡ଼ି ଚାଲିଯାଏ ଜ୍ୟୋତିର୍ମୟୀ । ବଳୀୟାର ସିଂ ବିଷଣ୍ଣ ହୁଅନ୍ତି । ବିରକ୍ତ ହୁଅନ୍ତି । ସତର ବର୍ଷର ଝିଅଟାଏ । କିଛି ବୁଝିଲାନି । ମନହୁଏ ଦି'ଚାପୁଡ଼ା କସି ଦିଅନ୍ତେ । ପୁଣି ଭାବନ୍ତି ଶିଖେଇବାକୁ କିଏବା ଅଛି ? ବୋଉ ଆଜି ଥିଲେ ଏପରି ହୁଅନ୍ତାକି ?



Digitized by PPRACHIN, SOA

+++ +++ +++

ବୋଉ ଆଜି ଥିଲେ- ବ୍ରଜସୁନ୍ଦର ବାହାବଳୀନ୍ଦ୍ର ବଳିୟାର ସିଂ ଭୋ'କିନା କାନ୍ଦି ଉଠିଲେ- କାନ୍ଦୁଚନ୍ତି ବଳୀୟାର ସିଂ । କୋହ ପରେ କୋହ ଉଠୁଚି । ଆଖିରୁ ବୋହୁଚି ଧାର ଧାର ଲୁହ- ଦି'ଟାରୁ ଅଧିକ ବେଳ ହେଲାଣି । ଏ ଯାଏ ଗାଧୋଇ ନାହାଁନ୍ତି । ସକାଳୁ କିଛି ଖାଇ ନାହାନ୍ତି । ଅଗଷ୍ଟ ପନ୍ଦର । ସହରର ଆକାଶରେ ତ୍ରିରଙ୍ଗା ପତାକାର ମହୋତ୍ସବ । ବାହାବଳୀନ୍ଦ୍ର ଆସ୍ତେ ବିଛଣା ଛାଡ଼ିଲେ- ଟ୍ରଙ୍କରୁ ଖୋଲିଲେ ଫଟୋଟିଏ । ବୋଉ ଉର୍ବଶୀ ଦେବୀଙ୍କର । ସତେ ଯେପରି ବଳୀୟାର ସିଂକୁ ଚାହିଁ କହୁଚନ୍ତି- "ତୁଇ ମୋର ଦୁଃଖ ହରିବୁ । ତୁଇ ଚାହିଁବୁ ଏ ଜମିଦାରୀକୁ । ଏସବୁ ଉଜୁଡ଼େଇ ଦେବେରେ । ମୁଁ ଆଉ ଏତେ ହସ୍ତସନ୍ତ ହୋଇ ପାରିବିନି । ସବୁ ଥାଇବି ମୋର କେହି ନାହାଁନ୍ତି । ସେ ଲାଞ୍ଛନାର ପ୍ରତିଶୋଧ ତୁଇ ନେବୁ ବ୍ରଜସୁନ୍ଦର ।"

କୋହ ସମ୍ଭାଳି ପାରିଲେନି ବ୍ରଜସୁନ୍ଦର ବାହାବଳୀନ୍ଦ୍ର ବଳୀୟାର ସିଂ । କାହାର ହେପାଜତ ସେ କରିବେ ? କାହାର ନେବେ ପ୍ରତିଶୋଧ ? କିଛି ତାଙ୍କର ଦରକାର ନାହିଁ । ଯେ ଦରକାର ଥିଲା ସେ ଆଉ ନାହିଁ । ତା ପାଇଁ କଳିକଜିଆ କରିବାକୁ କେହି ନାହିଁ । ସେ ସହରରେ ନିହାତି ନିଛାଟିଆ, ନିହାତି ଅପାଂକ୍ତେୟ ସାଧାରଣ ମଣିଷଟିଏ ମାତ୍ର ।

ବ୍ରଜସୁନ୍ଦର ବାହାବଳୀନ୍ଦ୍ର ବଳୀୟାର ସିଂ ଆଖିରୁ ଲୁହ ପୋଛିଲେ । ସହର ଆକାଶରେ ଗଣତନ୍ତ୍ର ଦିବସର ମହୋତ୍ସବକୁ ଉଚ୍ଚାଟିତ କରି କେତୋଟି ସରଳ ରେଖାରେ ଉଡ଼ି ଚାଲିଗଲେ ଦଶୋଟି ଏରୋପ୍ଲେନ୍ । ବ୍ରଜସୁନ୍ଦର ବାହାବଳୀନ୍ଦ୍ର ଗାଧୋଇ ବାହାରିଲେ ।





Digitized by PPRACHIN, SOA

# ଉପେକ୍ଷିତା

ସାକେତ ନଗରୀରେ ବସନ୍ତର ଅଭିଷେକ । ବାୟୁର ହିଲ୍ଲୋଳରେ, ମୃତ୍ତିକାର ଗନ୍ଧରେ ଆଜି ଭରା ଆନନ୍ଦର ମହୋତ୍ସବ । ଦୀର୍ଘ ବନବାସ ପରେ ପ୍ରତ୍ୟାବର୍ତ୍ତନ କରୁଛନ୍ତି ରାମଚନ୍ଦ୍ର, ସହାନୁଗ ଅନୁଜ ଲକ୍ଷ୍ମଣ ଏବଂ ଜଗତବନ୍ଦ୍ୟା ମାତା ଜାନକୀ । ପୁରବାସୀଙ୍କ ମନରେ ନିର୍ବାସିତ ରାଜପୁରୁଷମାନଙ୍କୁ ଦେଖିବାକୁ ବ୍ୟାକୁଳ ଆଗ୍ରହ । ଦ୍ୱାରେ ଦ୍ୱାରେ ଭରା କଳସୀର ଆମନ୍ତ୍ରଣ । ରାଜପଥରେ ସୁସଜ୍ଜିତ ତୋରଣ ପତ୍ରପୁଷ୍ପରେ ବିମଣ୍ଡିତ । ବୃକ୍ଷ ଶାଖାରେ ପରଭୃତର ପଞ୍ଚମିତ ସ୍ୱର । ଜନପଦର ଶ୍ୱାପଦ ସମୂହ ଉତ୍‌ପକ୍ଷ୍ମ ହୋଇ ଚାହିଁ ରହିଛନ୍ତି । ଚତୁର୍ଦ୍ଦିଗରେ ବାଦ୍ୟନାଦ ଓ ସଙ୍ଗୀତର କଳରୋଳ ।

ପୁଷ୍ପକ ବିମାନ ଆକାଶମାର୍ଗରୁ ଅବତରଣ କଲା । ପ୍ରଥମେ ସୋପାନ ଶ୍ରେଣୀ ଅତିକ୍ରମ କରି ତଳକୁ ଓହ୍ଲାଇ ଆସିଲେ ପିତୃଭକ୍ତ ରାମଚନ୍ଦ୍ର । ସର୍ବଶେଷରେ ଭ୍ରାତୃନିଷ୍ଠ ଲକ୍ଷ୍ମଣ । ସର୍ବାଗ୍ରେ ପଥପ୍ରଦର୍ଶନ କରୁଥିଲେ ସୌମିତ୍ର, ସୁଗ୍ରୀବ ଆଉ ରାକ୍ଷସରାଜ ବିଭୀଷଣ । ଅଦୂରରେ ଅଯୋଧ୍ୟା ନଗରୀର ରମଣୀକୁଳ ନୈବେଦ୍ୟ ଧରି ପ୍ରତୀକ୍ଷମାଣା । ଲଳନା କଣ୍ଠର ହୁଳହୁଳିରେ ଜନପଥ ପ୍ରତିଧ୍ୱନିତ ହୋଇ ଉଠୁଛି । ଶୁଭଶଙ୍ଖର ମାଙ୍ଗଳିକ ଧ୍ୱନିରେ ଆକାଶ ହେଉଛି ମୁଖରିତ ।

+ + + ରାଜ ଅନ୍ତଃପୁରରେ ପ୍ରବେଶ କଲେ ସୌମିତ୍ର । ଦୀର୍ଘ ଚଉଦ ବର୍ଷ ପରେ ଆଜି ଉର୍ମିଳାକୁ ସାକ୍ଷାତ କରିବେ । ଏଇ ଦିନଗୁଡ଼ିକରେ ସେ ସବୁଠାରେ ଦେଖିଛନ୍ତି ସେଇ ତରୁଣୀଙ୍କର ହାସ୍ୟୋତ୍‌ଫୁଲ୍ଲ ମୁଖ- ଶୁଣିଛନ୍ତି ତାଙ୍କର ଆଳାପନ । ପଞ୍ଚବଟୀର ଗୁହାରେ ତେତେଥର ସେ ସ୍ୱପ୍ନ ଦେଖି ଚମକି ଉଠିଛନ୍ତି । ମାଲ୍ୟବନ୍ତର ସାନୁ ପ୍ରଦେଶରେ ମେଘ ଯେତେବେଳେ ବପ୍ରକ୍ରୀଡ଼ା କରିଛି ସେ ସେଇ ସୁନ୍ଦର ମୁଖଟିର ପ୍ରତିଛବି ସନ୍ଦର୍ଶନରେ ବିଷଣ୍ଣ ହୋଇଛନ୍ତି । ମେଘର ଗର୍ଜନ ଶୁଣି ବିରହୀଯକ୍ଷର ବ୍ୟଥାରେ ମନ୍ଦାକ୍ରାନ୍ତାର କରୁଣ ମୂର୍ଚ୍ଛନା ତୋଳିଛନ୍ତି । ଆଜି ସେ ଉର୍ମିଳାଙ୍କୁ କୋଳରେ ଧରି ବନବାସର ସକଳ ତିକ୍ତ ମଧୁର ଅନୁଭୂତି କହିଯିବେ ।

ରାଜ ଅନ୍ତଃପୁରରେ କୋଳାହଳ । କେହି କାହା କଥା ଶୁଣିବାକୁ ଅପେକ୍ଷା କରୁନି । ସମସ୍ତେ ବ୍ୟଗ୍ର, ସମସ୍ତେ ବ୍ୟସ୍ତ । ରାଜପ୍ରାସାଦର ଅସ୍ତମିତ ଚନ୍ଦ୍ର ଆଜି ଉଦିତ ହୋଇଛି । ତାରି ଜ୍ୟୋତ୍ସ୍ନାର ପ୍ଳାବନ ସମସ୍ତଙ୍କୁ ଛୁଇଁ ଛୁଇଁ ଯାଉଛି । ସମସ୍ତଙ୍କୁ ସଂଜ୍ଞାହୀନ



Digitized by PPRACHIN, SOA

ଆନନ୍ଦରେ କରୁଛି ଆତ୍ମହରା ।

ଉର୍ମିଳାଙ୍କ ଶୟନ କକ୍ଷରେ ଲକ୍ଷ୍ମଣ ପ୍ରବେଶ କଲେ । ଉର୍ମିଳା ନାହାନ୍ତି । ପ୍ରିୟତମାର ଅଦର୍ଶନ ଲକ୍ଷ୍ମଣଙ୍କୁ ବ୍ୟଥିତ କଲା । ରାଜଭବନରେ ସେ ସମସ୍ତଙ୍କୁ ଦେଖି ଆସିଲେ । ନାହାନ୍ତି କେବଳ ଉର୍ମିମାଳିନୀ ଉର୍ମିଳା । ହୁଏତ ଅଭିମାନିନୀ ପତ୍ନୀ ପ୍ରିୟତମର ଦର୍ଶନ ଆଶାରେ ସ୍ୱକକ୍ଷରେ ଅପେକ୍ଷା କରିଥିବେ । କିନ୍ତୁ ଏଠି ଯେ ସେ ନାହାନ୍ତି । ଲକ୍ଷ୍ମଣଙ୍କ ମନରେ ଅପ୍ରକାଶିତ ଏକ ବ୍ୟଥାର ଗୁଞ୍ଜରଣ । ବ୍ୟସ୍ତହୋଇ ସେ କକ୍ଷପରେ କକ୍ଷ ଅତିକ୍ରମ କରିବାକୁ ଲାଗିଲେ ।

ଉର୍ମିଳା ନାହାନ୍ତି । ଲକ୍ଷ୍ମଣ ରାଜୋଦ୍ୟାନରେ ପ୍ରବେଶ କଲେ । ରଜତ ଧବଳ ଚନ୍ଦ୍ରାଲୋକରେ ଉଦ୍ୟାନ ଉତ୍ଫୁଲିତ । ମଲ୍ଲୀ, ହେନାର ସୁଗନ୍ଧରେ ନିଶୀଥ ବାୟୁ ଆମୋଦିତ ହେଉଛି । ଦୂରରୁ ପବନରେ ଭାସିଆସୁଛି କେଉଁ ବ୍ୟର୍ଥ ପ୍ରେମିକର ବଂଶୀସ୍ୱନ । ଲକ୍ଷ୍ମଣ ଉଦ୍ୟାନର ପ୍ରତ୍ୟେକ ପୁଷ୍ପବିଥୀକୁ ତନ୍ନ ତନ୍ନ କରି ନିରୀକ୍ଷଣ କଲେ । ଚନ୍ଦ୍ରାଲୋକ ବୃକ୍ଷ ଛାୟାରେ ହୋଇଥାଏ ତିଳତଣ୍ଡୁଳିତ । ମଝିରେ ମଝିରେ ରାତ୍ରି ବିହଗର ଅସ୍ପଷ୍ଟ ସ୍ୱର ଶୁଭୁଥାଏ । ଲକ୍ଷ୍ମଣ ବ୍ୟାକୁଳ ଭାବରେ ଅନୁସନ୍ଧାନ କରି କରି ରାଜପୁଷ୍କରିଣୀ ନିକଟରେ ଉପସ୍ଥିତ ହେଲେ । ଅଦୂରରେ ଶୁଭିଲା କ୍ରନ୍ଦାତୁରା ଜଣେ ନାରୀର କରୁଣ କଣ୍ଠସ୍ୱର । ତରଙ୍ଗ ପରି କୋହ ଉପରେ କୋହ ଉଠୁଛି- ନିଶୀଥ ଆକାଶର ଅନନ୍ତ ଅନ୍ତରୀକ୍ଷରେ ଭରି ଉଠୁଛି କାରୁଣ୍ୟର ଛନ୍ଦ । ନୀଡ଼ହରା କପୋତୀର କଣ୍ଠରେ ବେଦନାର ଆର୍ତ୍ତି । ଲକ୍ଷ୍ମଣ ସନ୍ନିକଟକୁ ଆସିଲେ । ସମ୍ମୁଖରେ ପତି ବିରହିଣୀ ଆଲୁଳିତା ଉର୍ମିଳା । ରାଜପ୍ରାସାଦର ତୁଳୀତଳ୍ପରୁ ସେ ଆସି ଘାସର ଶଯ୍ୟାରେ ଲୋଟି ପଡ଼ିଛନ୍ତି । ଆଖିର ଲୁହ ଚନ୍ଦ୍ରକିରଣରେ ଚିକ୍‌ଚିକ୍ କରୁଚି ।

ଉର୍ମିଳା ନତଜାନୁ ହୋଇ ଲକ୍ଷ୍ମଣଙ୍କୁ ପ୍ରଣତି କଲେ । ପଦରଜ ନେଇ ସୀମନ୍ତରେ ସ୍ପର୍ଶ କଲେ । ଆହୁରି ଅଧୀର ଭାବରେ କାନ୍ଦି ଉଠିଲେ । କଣ ଯେପରି କହିବାକୁ ଯାଇ କଣ୍ଠ ତାଙ୍କର ରୁଦ୍ଧ ହୋଇଗଲା ।

ଲକ୍ଷ୍ମଣ ରାତ୍ରିର ସେଇ ନିରନ୍ଧ୍ର ଜ୍ୟୋତ୍ସ୍ନାଲୋକରେ ଅତି କରୁଣ ଭାବରେ ପ୍ରାଣ ପ୍ରତିମା ଉର୍ମିଳାକୁ ନିରୀକ୍ଷଣ କରୁଥିଲେ । ନୟନ ଯୁଗରେ ବେଦନାର ପ୍ରଲେପ । କେଶବାସ ନିରାଭରଣ, ଅଯତ୍ନ । ବସନ ଶୀର୍ଣ୍ଣ ଆଉ ଶରୀର ଅଳଙ୍କାର ବିହୀନ । ଉର୍ମିଳାଙ୍କ ଆଖିରେ ବିଗତ ଯୁଗ ବ୍ୟାପୀ ପ୍ରତୀକ୍ଷାର ବ୍ୟଥା । ପ୍ରିୟତମର ଦର୍ଶନରେ ଅବାରିତ ଲୋତକ ଗଣ୍ଡଦେଶକୁ ଆର୍ଦ୍ରକରି ଶିଶିର ପରି ସବୁଜ ଘାସରେ ଝରି ପଡୁଛି ।

ରଙ୍ଗରାତ୍ରି ଘାସର ଗାଲିଚା ଉପରେ ପ୍ରଥମ ରାତ୍ରିର ଜ୍ୟୋତ୍ସ୍ନା ବିଧୌତ ଧବଳିମା । ଲକ୍ଷ୍ମଣ ପ୍ରିୟତମା ଉର୍ମିଳାଙ୍କ ଆଲୁଳିତା ମସ୍ତକକୁ ନିଜର ବକ୍ଷଆଡ଼କୁ ଆଉଜେଇ ଆଣିଲେ । କଜଳକଳା କେଶଗୁଚ୍ଛରେ ସେଦିନର ମସୃଣତା ନାହିଁ । କର୍ଣ୍ଣରେ ନାହିଁ



Digitized by PPRACHIN, SOA

ରାଜବଧୂର ଅବତଂସ । ନାସାରେ ନାହିଁ ମୋତିର ବସୁଣୀ । ପାଦରେ ନାହିଁ ରତ୍ନର ଝୁଣ୍ଟିଆ । କଟିରେ ନାହିଁ ସୁନାର ମେଖଳା । ଅଭିମାନିନୀ ରାଜବଧୂ ଦୀର୍ଘ ଚଉଦ ବର୍ଷ ତଳେ ସେସବୁ ପରିତ୍ୟାଗ କରିଛନ୍ତି । ପରିଧାନ- ରାଜ ପରିଚାରିକାର ଉପଯୋଗୀ ସାଧାରଣ ବସନ । ଆପଣାର ସେଇ ମଣିଷଟିର ବିଷାଦବିଧୂର ପାଣ୍ଡୁର ମୁଖକୁ ବିସ୍ମିତ ଭାବରେ ଲକ୍ଷ୍ମଣ ଚାହିଁ ରହିଲେ ।

ଉର୍ମିଳା ନିରୁତ୍ତର । ଆଖିରୁ ବହୁଥାଏ ସେହିପରି ଶ୍ରାବଣର ଅସରା ଅଶ୍ରୁଧାର । ଚକ୍ଷୁ ନିମିଳିତ । କୋମଳ ସୁନ୍ଦର ମୁଖଶ୍ରୀରୁ ଲାବଣ୍ୟ ନିଷ୍ପ୍ରଭ ହୋଇଛି । ସ୍ୱର୍ଣକାତର ଅବୟବରେ ଭୀରୁ ପ୍ରେମିକାର ସଂକୋଚନ ନାହିଁ । ଚିତ୍ର ପ୍ରତିମା ପରି ଲକ୍ଷ୍ମଣ ସେହି ମୁଖମଣ୍ଡଳକୁ ଚାହିଁ ରହିଲେ । ଅଜ୍ଞାତରେ ତାଙ୍କ ଆଖିରୁ ଦୁଇବିନ୍ଦୁ ଲୋତକ ଉର୍ମିଳାଙ୍କ ଦୁଇ ପାଦରେ ଖସିପଡ଼ିଲା ।

ଉର୍ମିଳା ଆନତ ଆଖି ଉନ୍ମୀଳିତ କଲେ । ଆଖି ଆଗରେ ଯୁଗ ଯୁଗର ପ୍ରତୀକ୍ଷାର ଈପ୍‌ସିତତମ ପୁରୁଷ । ବକ୍ଷରେ ଶେଳର ଆଘାତ, ଦେହସାରା କ୍ଷତର ଚିହ୍ନ ଜ୍ୟୋତ୍ସ୍ନାଲୋକରେ ବେଶ ଚିହ୍ନି ହେଉଛି । ଉର୍ମିଳା ତାଙ୍କର ଏଇ ନିଷ୍ଠୁର ପ୍ରୀତିପ୍ରତିମାକୁ ନିବିଷ୍ଟ ଭାବରେ ଚାହିଁ ରହିଲେ । ଦେହରେ ମୃଦୁହସ୍ତ ସଞ୍ଚାଳନ କଲେ ।

"ଏତେଦିନେ ମୁଁ ମନେ ପଡ଼ିଲି ?" ବାଷ୍ପରୁଦ୍ଧ କଣ୍ଠରେ ଉର୍ମିଳା ପଚାରିଲେ । ଲକ୍ଷ୍ମଣ ନିରୁତ୍ତର । ସତୀ ନାରୀର ଅଭିମାନ ସହି ହୁଏନି; ବୁଝି ହୁଏନି ପ୍ରାଣର ଦରଦ । ସେ କି ଦୁଃଖ, କି ତୀବ୍ର ଯନ୍ତ୍ରଣା । ଦୀର୍ଘ ବିରହର ବ୍ୟଥା ନେଇ ଆଜି ପ୍ରାଣତମା ପତ୍ନୀ ପାଖରେ ପ୍ରିୟତମ ପତିର ଭୀରୁ ଆକୁଳ ପ୍ରେମ ନିବେଦନ । ନାରୀର ଛଳ ଛଳ ଅଭିମାନ ପାଖରେ ଯୁଦ୍ଧ ଓ ବିଜୟର ଆଡ଼ମ୍ବର ଅସ୍ତମିତ ହୋଇ ପଡ଼ୁଛି । ଲକ୍ଷ୍ମଣ ଭାବୁଛନ୍ତି- କର୍ତ୍ତବ୍ୟର ଅନୁରୋଧରେ ସେ ଷୋଡ଼ଶୀ ତରୁଣୀ ପତ୍ନୀ ପ୍ରତି କରିଛନ୍ତି ଅକଥନୀୟ ଅବହେଳା । ଚଉଦଟି ବସନ୍ତର ନିର୍ଦ୍ଦୟ ଆଘାତକୁ ସହି ସହି ଉର୍ମିଳାଙ୍କ ପ୍ରାଣରୁ ପ୍ରୀତି ଉଚ୍ଛୁଳା ପ୍ରବଣତା ଲୁପ୍ତ ହୋଇଛି । ନାରୀର ସୁପ୍ତ ମାତୃତ୍ୱକୁ ଉପେକ୍ଷା କରି ନିଷ୍ଠୁର ପତିର ଅବିଚାର ତାଙ୍କୁ ଦେଇଛି ଅସହ୍ୟ ବେଦନା । ଦେହର ଜୈବିକ ଆକାଂକ୍ଷାକୁ ଭୁଲି ପତିସୋହାଗିନୀ ନାରୀ ସନ୍ନ୍ୟାସିନୀର ଗୈରିକ ଆଗ୍ରହକୁ କରିଛନ୍ତି ଅବଲମ୍ବନ ।

"ବିଶ୍ୱାସ କର ଉର୍ମିଳା, ଗତ ଚଉଦ ବର୍ଷ ଧରି ପ୍ରତି ମୁହୂର୍ତ୍ତରେ ତୁମରି ରୂପ ହିଁ ମୁଁ ଦେଖୁଥିଲି । ଋଷି ଆଶ୍ରମର ସ୍ନେହପାଳିତ ହରିଣଶାବକଟିଏ ହରିଣୀ ନିକଟରୁ ସ୍ତନ୍ୟପାନ କରୁଥିବାର ଦେଖିଲେ ତୁମରି କଥା ତୁହାଇ ତୁହାଇ ମୋର ମନେ ପଡୁଥିଲା । ଶ୍ୱାପଦ ସଂକୁଳ ଭୟଙ୍କର ବନାନୀରେ ବିଦାୟକାଳୀନ ତୁମର କଥା କେଇପଦ ବାରମ୍ବାର ମୋ ଶ୍ରୁତିରେ ଶୁଭି ଯାଉଥିଲା । ଇନ୍ଦ୍ରଜିତର ଶରାଘାତରେ ଆହତ ହୋଇ ଯେତେବେଳେ ମରଣ ଆତଙ୍କରେ ପଡ଼ି ରହିଥିଲି ତୁମରି ସାନ୍ନିଧ ହିଁ କରୁଣ ଭାବରେ କାମନା କରୁଥିଲି ।



Digitized by PPRACHIN, SOA

ଯୁଦ୍ଧର କ୍ଲାନ୍ତି, ସଂଗ୍ରାମ ବେଳର ଭୟାବହ ଅନିଶ୍ଚିତତା ପରେ ସାକେତ ନଗରୀକୁ ଫେରି ତୁମକୁ ଦେଖିବାକୁ ମୋ ମନରେ ଉଦ୍‌ବେଗ ତୁମେ କଣ ବୁଝିବନି ଉର୍ମିଳା ?

"ସବୁ ଜାଣେ । ମୁଁ ରାଜାର କନ୍ୟା, ରାଜବଧୂ । ମୋର ସ୍ୱାମୀ ସହଗାମିନୀ ହେବାର ଆଗ୍ରହକୁ ନିଷ୍ଠୁର ଭାବରେ ଅବଦମିତ କରି ତୁମେ ଅରଣ୍ୟରେ ଭ୍ରାତୃନିଷ୍ଠାର ପ୍ରଦୀପ ଜାଳିଲ । ଜଗତ ତୁମକୁ ଚିହ୍ନିଲା, ବନ୍ଦନା କଲା । ରାମଚନ୍ଦ୍ରଙ୍କ ସହ ଜାନକୀ ଅରଣ୍ୟକୁ ଗଲେ । ରାମ ତ ତାଙ୍କୁ ତାଙ୍କ ଆଗ୍ରହରୁ ତୁମପରି ନିଷ୍ଠୁର ଭାବରେ ବଞ୍ଚିତ କରିନାହାନ୍ତି ? ଅରଣ୍ୟରେ ପତି ସନ୍ନିକଟରେ ବୈଦେହୀ ନିଜର ଦୁଃଖକୁ ଭୁଲିଲେ । ଆଉ ମୁଁ, ତୁମେ କଣ ଭାବୁଚ ମୁଁ ଚାହିଁଥିଲି ରାଜପ୍ରସାଦର ଏଇ ଆଭିଜାତ୍ୟ ? ଏଇ ଆଡ଼ମ୍ବର ? ପତି ପଦସେବାରୁ ବଞ୍ଚିତା ହୋଇ ଏଇ ରୁଦ୍ଧ ପ୍ରାଚୀରରେ ଝଡ଼ିଯିବାକୁ ମୁଁ ତ ଚାହିଁ ନଥିଲି ? ଏଇ ରାଜପ୍ରସାଦ ଏଇ ତୁଳୀତଳ୍ପ କଣ୍ଟକର ପୀଡ଼ାଦେଇ ମତେ ଦୁଃସହ ଯନ୍ତ୍ରଣାରେ ଛଟପଟ କରିଚି । ମୁହୂର୍ତ୍ତକ ପାଇଁ ତୁମେ ତୁମର ବିବାହିତା ପତ୍ନୀର ଏହି ଦୁରବସ୍ଥା କଥା ଭାବିଚ କି ? ଆଭିଜାତ୍ୟର ଅସହ୍ୟ ଦଂଶନ ତଳେ ଉର୍ମିଳା ତୁମର ସବୁଦିନ ପାଇଁ ହଜି ଯାଇଛି । ତା ମନର ହୋଇଚି ମୃତ୍ୟୁ । ଜୀବନ ପାଇଁ ଆଉ ତାର କିଛି ସଞ୍ଚୟ ନାହିଁ । ସେ ବନ କୁସୁମ ପରି ଝଡ଼ିଯିବାକୁ ଚାହେଁ । ତା ଆଖିର ଲୁହ ମୂଲ୍ୟହୀନ । ଅବାଞ୍ଛିତ ଭାବରେ ବଞ୍ଚିବାର ଦହନ ନେଇ କେତେଦିନ ସେ ସୂର୍ଯ୍ୟବଂଶର ଆଦର୍ଶକୁ ଅକ୍ଷୁଣ୍ଣ ରଖିପାରିବ ? ଆଦର୍ଶ ତୁମର ବଡ଼ । ସେଥିପାଇଁ ନିଷ୍ଠୁର ଭାବରେ ତୁମେ ସ୍ନେହ ମମତା ସବୁକୁ ଭୁଲିଗଲ । ତୁମ ଆଦର୍ଶର ଜୟ ହେଉ । ସେଇ ଆଦର୍ଶର ବିଜୟ ଫଳକରୁ ଉର୍ମିଳାର ଇତିକଥା ହଜିଯାଉ । ଧରିନିଅ ସେ ଥିଲା ମୁହୂର୍ତ୍ତକର ଗୋଟିଏ ଛାୟା, ଏକ ଅବାଞ୍ଛିତ ଆବଶ୍ୟକତା ।" ଉର୍ମିଳାଙ୍କର ଧୈର୍ଯ୍ୟ ଲୋପ ପାଇ ଆସୁଥିଲା । ବସ୍ତ୍ରାଞ୍ଚଳରେ ମୁଖ ଆବୃତ କରି ସେ ଅଧୀର ଭାବରେ କାନ୍ଦିବାକୁ ଲାଗିଲେ ।

ଲକ୍ଷ୍ମଣ କ୍ରନ୍ଦାତୁରା ପ୍ରିୟତମାର ମୁଖକୁ ଆହୁରି ନିବିଡ଼ ଭାବରେ ବକ୍ଷରେ ଭିଡ଼ି ଧରିଲେ । ଅଳିଅଳି ଆଗ୍ରହର ଧୂସର ପ୍ରଲେପ ତଳେ ଚଉଦ ବର୍ଷ ତଳର ବେଦନାକ୍ଳିଷ୍ଟ ପତ୍ନୀର କରୁଣ ମଳିନ ମୂର୍ତ୍ତି ରାତ୍ରିର ନିର୍ଜନତା ଭିତରେ ଠିଆ ହେଲା । ସଂସାର ବିଷୟରେ ଅନଭିଜ୍ଞା ଏଇ ବାଳିକା- ସୂର୍ଯ୍ୟବଂଶର ତୃତୀୟ ବଧୂ ହିସାବରେ ନିଜର ଆଗ୍ରହକୁ ପ୍ରକାଶ କରିବାକୁ ସାହସ ହରେଇ ଅତି ଦୟନୀୟ ଭାବରେ ସେଦିନ ସେ ସବୁ ବିଡମ୍ବନାକୁ ଆଦରି ନେଇଥିଲା ।

ଆଜି ଚଉଦ ବର୍ଷ ପରେ..... । ସେଇ ମୁଖ, ସେଇ ବିସ୍ଫାରିତ ନୟନ । ଗତ ବସନ୍ତର ସମାରୋହକୁ ଜୀବନ ପାଇଁ ଫେରି ପାଇବାର ପ୍ରତ୍ୟାଶା ହରେଇ ସେ ମ୍ରିୟମାଣ । ପାହାଡ଼ ପରି ଅଭିମାନ ଭିତରେ ସେ ଦିନର ଅସହାୟ ସେଇ ବାଳିକା ବଧୂର କୋମଳ କଣ୍ଠ ଆଉ ଥରେ ଲକ୍ଷ୍ମଣଙ୍କୁ ଚମକାଇ ଦେଲା । ବିଷଣ୍ଣ ସାକେତ ନଗରୀ । ସମସ୍ତଙ୍କ ମୁଖରେ



Digitized by PPRACHIN, SOA

ଦୁଃଖର ମଳିନ ଛାୟା । ରାଜପ୍ରାସାଦରୁ ଧୀରେ ଧୀରେ ସନ୍ନ୍ୟାସୀ ବେଶରେ ତିନିଜଣ ନିଷ୍କ୍ରାନ୍ତ ହୋଇଗଲେ । କୌଶଲ୍ୟା ଅସ୍ଥିର ଭାବରେ କାନ୍ଦି କାନ୍ଦି ଭୂଇଁରେ ଲୋଟୁଥାନ୍ତି । ନିର୍ବାକ ଦଶରଥ । କୁଟିଳା କୈକେୟୀଙ୍କ ମନରେ ବିଜୟର ପୁଲକ; ତଥାପି ଆଖିରେ ଛଳନାର ଅଶ୍ରୁ । ଚଳଚିତ୍ର ପରି ପରିଚିତ ଅତୀତ ଲକ୍ଷ୍ମଣଙ୍କ ଆଖି ଆଗରେ ନାଚିଗଲା । ଆଖି ଆଗରେ ସେଇ ସ୍ୱପ୍ନର ପ୍ରତିମା ଉର୍ମିଳା । ସାଗରର ତରଙ୍ଗ ପରି ସେ ଉଦ୍‌ବେଳ ନୁହେଁ । ବିଗତ ବେଦନାର ଆହତ ଅଭିମାନରେ ବର୍ତ୍ତମାନ ପାଇଁ ସଞ୍ଚୟଶୂନ୍ୟା । ତା ମନରେ ଖାଲି ନୈରାଶ୍ୟର ଝଞ୍ଜାଘାତ ।

ରାଜ ଉଦ୍ୟାନର ନିର୍ଜନତାକୁ ଭଙ୍ଗ କରି ବଶିଷ୍ଠ ଉପସ୍ଥିତ ହେଲେ । ନିଶାନ୍ତ ପ୍ରହରରେ କୁଳଗୁରୁଙ୍କ ଆଗମନ ରାଜଦମ୍ପତିଙ୍କ ମନରେ ବିସ୍ମୟ ସୃଷ୍ଟିକଲା । ପାରମ୍ପରିକ ରୀତିରେ ପଦବନ୍ଦନା କଲେ ଉର୍ମିଳା ଓ ଲକ୍ଷ୍ମଣ ।

ତୁମ ଦୁହିଁଙ୍କ ଅନୁସନ୍ଧାନ କରି କରି ମୁଁ ଏ ସ୍ଥାନକୁ ଆସିଅଛି । ମୁଁ ସବୁ ବୁଝିଛି ବତ୍ସ । ସୀତାଙ୍କର ଅଗ୍ନିପରୀକ୍ଷାଠାରୁ ଉର୍ମିଳାଙ୍କର ଧୈର୍ଯ୍ୟ ଓ ଆତ୍ମଦାନର ପରୀକ୍ଷା କୌଣସି ଗୁଣରେ ନ୍ୟୂନ ନୁହେଁ । ଆଜିଠାରୁ ବହୁବର୍ଷ ପରେ ଯେତେବେଳେ ବାଲ୍ମୀକି ରଘୁବଂଶର ଇତିହାସ ରଚନା କରିବେ- ଆଦିକବିଙ୍କ ଶ୍ଳୋକର କାରୁଣ୍ୟରେ ପ୍ରତ୍ୟେକ ଭାରତୀୟ ପ୍ରାଣ ବିଗଳିତ ହେବ, ସେଇ ରାମାୟଣ କାହାଣୀରେ ତୁମେ ଦୁହେଁ ଅମର ହୋଇ ରହିବ । ଲକ୍ଷ୍ମଣଙ୍କର ଭ୍ରାତୃନିଷ୍ଠା ଆଉ ଉର୍ମିଳାଙ୍କର ଧୈର୍ଯ୍ୟ ରାମାୟଣର କରୁଣ କାହାଣୀକୁ କରିବ ଅଶ୍ରୁସଜଳ । ତୁମ ଦୁହିଁଙ୍କୁ ଆଶୀର୍ବାଦ କରୁଛି ।

ଉର୍ମିଳା ଆହୁରି ଅଧୀର ଭାବରେ କାନ୍ଦି ଉଠିଲେ । ଆଗରେ ସୂର୍ଯ୍ୟ ବଂଶର କୁଳଗୁରୁ । ସେ ଦେଇଛନ୍ତି ସ୍ନେହର ଆଶିଷ । ସେ ହିଁ ବୁଝିଛନ୍ତି ଉର୍ମିଳା ପ୍ରାଣର ଅବରୁଦ୍ଧ ବ୍ୟଥିତ ଯନ୍ତ୍ରଣା । ରାଜବଧୂର ନିରାଡମ୍ବର ପରିଛଦ ଅବଲୋକନକରି ପିତୃ ପ୍ରବଣ ହୃଦୟ ତାଙ୍କର ସ୍ନେହରେ ଆର୍ଦ୍ର ହୋଇ ଉଠୁଥିଲା ।

"ମୋର ଗୋଟିଏ ଭିକ୍ଷା ଅଛି ଗୁରୁଦେବ । ପ୍ରତିଜ୍ଞା କରନ୍ତୁ ଯାଚ୍‌ଞା ମୋର ପୂର୍ଣ୍ଣ କରିବେ ।" ଦରସ୍ଫୁଟ ସ୍ୱରରେ ଉର୍ମିଳା ଜିଜ୍ଞାସା କଲେ ।

"ପ୍ରତିଶ୍ରୁତି ହେଉଛି ମା ।"

"ମୁଁ ସବୁଦିନେ ସଂଗୋପନରେ ରହିବାକୁ ଚାହେଁ ଗୁରୁଦେବ । ଲୋକଜ୍ଞାନର ଅଗୋଚରରେ ମୁଁ ଚାହେଁ ମୃତ୍ୟୁପରେ ବି ରହିବି ଅବଜ୍ଞାତ । ମୋ ନାମ ସୁଦ୍ଧା ବାଲ୍ମୀକି ରଘୁବଂଶର ଅମରକାବ୍ୟ ରମାୟଣରେ ଉଲ୍ଲେଖ କରିବେ ନାହିଁ । ନଚେତ ସ୍ମୃତିର ଯନ୍ତ୍ରଣାରେ ମୋର ଆତ୍ମା ହେବ ଅଶ୍ରୁମଗ୍ନ । ମୁଁ ଅପାଙ୍‌କ୍ତେୟ ଜୀବନ ଚାହେଁ । ସୀତାଙ୍କ ଅଶ୍ରୁରେ ବାଲ୍ମୀକିଙ୍କ କମଣ୍ଡଳୁ ପୂର୍ଣ୍ଣହେବ । ସେ ମୋର ଅଶ୍ରୁକୁ ଧରିରଖି ପାରିବାକୁ ସ୍ଥାନ କାହୁଁ ପାଇବେ ? ବୁଝି ପାରିବେ ନାହିଁ ମୋର ପ୍ରାଣର ବ୍ୟଥା । ମୋର ନିପୀଡ଼ିତ ଆତ୍ମାର



Digitized by PPRACHIN, SOA

ଇତିକଥା ସେ ଲେଖି ପାରିବେ ନାହିଁ । ଏଣିକି ମୋର ପ୍ରାର୍ଥନା ମତେ ନିର୍ଜନ ଶାନ୍ତି ଦିଅନ୍ତୁ ଗୁରୁଦେବ । ପତି ସେବା ଆଉ ସୋହାଗରୁ ବଞ୍ଚିତା ନାରୀର ଜୀବନ ଆଶ୍ରମବାସୀର ଲେଖନୀକୁ କେବେବି ଦୋହଲାଇ ପାରିବନି ।”

ବଶିଷ୍ଠ ଚିନ୍ତାମଗ୍ନ ହେଲେ । କ'ଣ କହିବାକୁ ଯାଇ ତାଙ୍କ କଣ୍ଠ ଯେପରି ରୁଦ୍ଧ ହୋଇଗଲା ।

“କୁଣ୍ଠିତ ହୁଅନ୍ତୁ ନାହିଁ ଗୁରୁଦେବ । ସୂର୍ଯ୍ୟବଂଶର କୁଳବଧୂ ଉର୍ମିଳା ସାଧାରଣ ନାରୀ ମାତ୍ର । ସେ ଯଶ କାଙ୍ଗାଳିନୀ ନୁହେଁ, ସେ ନୁହେଁ ଅସାମାନ୍ୟା । ସାଧାରଣ ମଣିଷର ଅଭାବ, ଅଭିଯୋଗ, ଅଶାନ୍ତି, ଅବସାଦ, ତାର ଶିରାରେ ଶୋଣିତର ଅଗ୍ନିପ୍ରବାହ ସୃଷ୍ଟିକରେ । ପାରତ୍ରିକ ଜୀବନର ମୋହ ତା ନିକଟରେ ବଡ଼ନୁହେଁ । ଏ ଉଦ୍ୟାନର ବୃକ୍ଷଲତା, ବିହଙ୍ଗକୁଳ ତା ଦୁଃଖରେ ବିଷଣ୍ଣ ହୁଅନ୍ତି, କିନ୍ତୁ ମଣିଷ ତାର ଅପ୍ରକାଶ୍ୟ ଆହତ କ୍ରନ୍ଦନ ଶୁଣିବାକୁ ବ୍ୟାକୁଳ ହୁଏନାହିଁ” ।

“ତଥାସ୍ତୁ”- ବଶିଷ୍ଠ ବିସ୍ମୟ ବିସ୍ଫାରିତ ଭାବରେ ସଂସାରର ଅନୁପମ ସୃଷ୍ଟି ଉର୍ମିଳାଙ୍କୁ ଚାହିଁ ରହିଲେ । ରାଜ ପ୍ରାସାଦର ନହବତ କ୍ରମେ ନୀରବ ହୋଇ ଆସୁଥିଲା । କୋଳାହଳ ଥମି ଆସୁଥିଲା । ରାକାନିଶୀଥର ବିପର୍ଯ୍ୟସ୍ତ ଚନ୍ଦ୍ରିକାକୁ ସତେ ଯେପରି ରାଜପ୍ରାସାଦର ସୁସଜ୍ଜିତ ସ୍ୱର୍ଣ୍ଣପ୍ରଦୀପ ମାଳା ଦୋହଲି ଦୋହଲି ଉପହାସ କରୁଥିଲେ ।

ଲକ୍ଷ୍ମଣ ଦୀର୍ଘ ନିଃଶ୍ୱାସ ନିକ୍ଷେପ କଲେ । ତାଙ୍କର ଚତୁର୍ଦ୍ଦଶ ବର୍ଷର ବିନିଦ୍ର ଅବଶୋଷ ଅସମାନ୍ୟା ନାରୀର ନିଷ୍ଠାପାଖରେ ନିଷ୍ପ୍ରଭ ହୋଇ ପଡୁଥିଲା । ସହସା ନିବିଡ଼ କଳାଛାଇ ଉଭୟଙ୍କ ମୁଖମଣ୍ଡଳକୁ ଆଚ୍ଛନ୍ନ କଲା । ପୂର୍ଣ୍ଣିମୀର ଚନ୍ଦ୍ର ଅଦୂର କଦମ୍ବ ବୃକ୍ଷର ଅନ୍ତରାଳରେ ଛପିରହି ସଲଜ୍ଜ ଭାବରେ ରାଜଦମ୍ପତିଙ୍କୁ ନିରୀକ୍ଷଣ କରୁଥିଲା ।





Digitized by PPRACHIN, SOA

# ଝିଅ

ଝିଅକୁ ଟିକିଏ ବସିବାକୁ ଫୁରସତ ବି ନାହିଁ । ସାନ ଭଉଣୀ ବାହାହେଉଚି ବୋଲି ତାକୁ ସବୁକାମ କରିବାକୁ ହେବ । କାମ ତ ଲାଗିଚି ପନ୍ଦର ଦିନ ହେଲାଣି । ବୋଉର ସବୁ କଥାରେ ତାକୁଇ ଡାଗିଦା । କେଉଁଠି ଟିକିଏ ବସିଲେ, କାହା ସହିତ ପଦେ ଦୁଃଖସୁଖ ହେଲେ ସେ ରଡ଼ିଛାଡ଼ିଥିବ-"ସାବୀ, ନିଆଁଲଗା.... ସେଠି କେଉଁଠି ଲାଖିଗଲାଣି । ପେଟେ ପେଟେ ଖାଲି ଖାଇବ । କାମ ବେଳକୁ ପ୍ରାଣ ଛାଡୁଚି ।"

ସାବୀ ଆତ୍ମା ଛଟପଟ ହୁଏ । ହୁଣ୍ଡି ହାଉଡ଼ି ତଳେ ଲେଖା ତା ଜୀବନରେ ଆଉ ସୁକୁମାର ଅନୁଭୂତି କଣ ବା ଅଛି ? ବୋଉ କହିଲା ସାବୀ ହୁଣ୍ଡିଟା..... ସେ କ'ଣ ବାହାହେବ ? କେଉଁଠି କାହାଘର ତ ଚଳେଇ ପାରିବନି । ପୁଣି ଆସି ମୋରି ବେକରେ ବନ୍ଧା ହେବ । ବାପା କହୁଥିଲେ ସାବୀ ପାଇଁ ଗଡ଼ଜାତରେ କେଉଁଠି ଓଭରସିଅର କି ସ୍କୁଲ ଟିଚରଟିଏ ସ୍ଥିର କରିଛନ୍ତି । ସେ ପ୍ରାୟ ଚାରି ପାଞ୍ଚ ବର୍ଷ ତଳର କଥା । ବାପାଙ୍କ କଥାରେ ଓଜନ ନଥାଏ । ଏଣେତେଣେ ମାସେ ଦି'ମାସ ବୁଲି ବୁଲି କେବେ କଦବା ଘରେ ପହଞ୍ଚି ବୋଉ ସାଙ୍ଗରେ କଳି ଲଗାନ୍ତି । ବୋଉ ବି ତାଙ୍କ ଭଲମନ୍ଦ ବୁଝେ ନାହିଁ । କେଉଁ ଦିନୁ ଅବଜ୍ଞାର ଭାବ ତା' ମନରେ ଜମାଟ ବାନ୍ଧି ପ୍ରସ୍ତପ୍ରସ୍ତ ଅଳନ୍ଧୁ ସେଥିରେ ଲାଗି ଗଲାଣି । ଆଚ୍ଛା ହେଇଚି- ବୋଉ କାହିଁକି ପଚାରନ୍ତା ଯେ- ସେ କ'ଣ ବୋଉକୁ ପଚାରି ଚାକିରୀ ଛାଡ଼ିଥିଲେ ? ଚାକିରୀ ଛାଡ଼ିଲେ ଆଉ କି ସମ୍ପତ୍ତି ଅଛି ଯେ- ଜମି ନା ବାଡ଼ି ? ଚାକିରୀ ଛାଡ଼ିବା ଖେଳଘର କଥା ନୁହେଁ । ବାପା ଏବେ ବାବନାଭୂତ ପରି ଦିଶୁଛନ୍ତି । ଲୁଗାପଟା ମଇଳା କୋଚଟ, ବୁଲି ବୁଲି ଦେହ କଳା ଖପରା ହେଲାଣି । ଦି' ଓଳି ଠିକ୍ ଖାଇବା ପିଇବା ହେଇଥିବ କି ନାହିଁ ସଂଦେହ ।

ଘରକୁ ଆସି ବାପା ଗଣ୍ଡେ ଭଲ ଖାଇବାକୁ ଚାହାଁନ୍ତି । ବୋଉର ସେଥିପାଇଁ ନିଘା ନାହିଁ । "ବୁଲୁଥାଉ ଅମଣିଆ ବଳଦ । ତା ଇଚ୍ଛାରେ ଚାକିରୀ ଛାଡ଼ିଚି- ତା ଇଚ୍ଛା ଯାହା ତା କରୁ । ଏଠିକି ଆସିଲେ ମୁଁ କେଉଁଠୁ ଗଢ଼େଇବି ?" ତିନି ତିନିଟା ଝିଅ । ତାଙ୍କ ଖାଇଖୋରାକି ବୁଝିଲା ବେଳକୁ ବୋଉ ନାକେଦମ୍ । ସେ ତେଣୁ ବାପାଙ୍କୁ ଦୂର୍‌ଦୂର୍ କରିବା ସ୍ୱାଭାବିକ । ଏଥିରେ ସାବୀ ବୟସ ବଢ଼ି ବଢ଼ି ତା ଦେହରୁ ସମସ୍ତ ଲାବଣ୍ୟ ଖସିଗଲେବି ତା' ବିଭାଘର କଥା ବୁଝିବାକୁ କିଏ ଅଛି ?

ସାବୀ ହୁଣ୍ଡି ହାଉଡ଼ି ତଳେ ଲେଖା ହେଉଚି । ବୋଉ କହେ ଅସୁରଟାଏ, ଖାଲି ଖାଲି କଂସାଏ ଭାତ ଥୋଇଦେଲେ ମୁହୂର୍ତ୍ତକେ ଟେକି ଦେବ । ତରକାରୀ ଦରକାର



Digitized by PPRACHIN, SOA

ନାହିଁ । ଜଳଖିଆ ରଖିଲେ କେଉଁ ଛଟକରେ ଶେଷ ନ କଲାଯାଏ ତାକୁ ବିଶ୍ରାମ ନାହିଁ । ଜୀବନର ସୁକୁମାର ଅନୁଭୂତି ଜଳିପୋଡ଼ି ଯାଇ ଏଇ ଖାଇବାଟା ପରି ଜାନ୍ତବ କ୍ରିୟାଟିହିଁ ଆଜି ତା' ପାଇଁ ଏକମାତ୍ର ସତ୍ୟରେ ପରିଣତ ହୋଇଛି ।

ସାନ ଭଉଣୀର ବାହାଘର ହେବ । ସାବୀର ସେଥିପାଇଁ ଚିନ୍ତା ନାହିଁ, ଅନୁଶୋଚନା ନାହିଁ । ବାପା କହୁଥିଲେ କେଉଁଠି ତା ପାଇଁ କୁଆଡ଼େ ଓଭରସିଅର ଠିକଣା କରିଛନ୍ତି । ତାଙ୍କ କଥାରେ ଏତେ ଟିକେ ବି ସତ ନାହିଁ । ସତ ଥିଲେ ତା' ବିଭାଘର ହେଉନାହିଁ କାହିଁକି ? ଗାଁ ଲୋକେ କହୁଛନ୍ତି ବଡ଼ ଥାଉ ଥାଉ ସାନ ଆଗ ବାହାହେଇଯିବ । ବଡ଼ ବାଛିଆରୀ ହୋଇ ରହିଯିବ ।

ଗାଁ ଲୋକଙ୍କ ମୁହଁରେ ନିଆଁରଡ଼ । ସେମାନେ ବି ତ ସାବୀକୁ କମ୍ ଥଟ୍ଟା ଟାପରା କରନ୍ତିନି ! "ଇଲୋ ହେ ହୁଣ୍ଡି, କେବେ ବାଆ ହବୁବେ ? ଆଲୋ ଆଉ କଣ ବୁଢ଼ୀଦିନେ ବାହା ହେବୁ ? ଇଲୋ ବାଉରୀଘର ହେଇଥିଲେ ହେଁସେ ପିଲାଝିଲା ହୁଅନ୍ତେଣି । ଇଲୋ ହାଉଡ଼ି; ତୋ ବାପା କଣ ତତେ ବାହା ଦେବନି !"

ସାବୀ ସବୁ ଶୁଣେ । କିଛି ଉତ୍ତର ଦିଏ ନାହିଁ । ଉତ୍ତର ତ ତାକୁ ଜଣା ନାହିଁ- କଣ ବା କହିବ ? ଖାଲି ଦାନ୍ତ ଚାପି ହସି ଦିଏ । ସେମାନେ ଭାବନ୍ତି ହୁଣ୍ଡୀର ସବୁ କଥାରେ ଖାଲି ହସ, କିଏ ଏ ହୁଣ୍ଡୀଟାକୁ ବାହା ହବ ମ ?

ତାଙ୍କର କାହିଁକି ଏତେ କଥାରେ ମୁଣ୍ଡ ବଥାଏ ? ସମସ୍ତେ କଣ ବାହା ହେବାକୁ ବାଧ ? ମାଉସୀ ଠିକ୍ କହନ୍ତି । ଏତେ ପାଠ ପଢ଼ିଛନ୍ତି- କହିବେନି ? ତାଙ୍କରି ଖାଲି ସାବୀ ପାଇଁ ଥାଏ ମନରେ ଦରଦ । ସେ କହନ୍ତି "ସମସ୍ତେ କାହିଁକି ବାହା ହେବେ ? ସେଇ ବାହାସାହା- ଗୋଠେ ପିଲାଝିଲା- ନେ ନେନ୍ଦରା- ଉଠେଇ ବସେଇ ଦେବେନି- ପ୍ରାଣ ଖାଇବେ । ଯାଉଣୁ ଆସୁଣୁ କାନ ଅତରା ପକେଇଥିବେ । ସାବୀ ଆମର ବାହା ନ ହେଉ । ସେ ରମାଦେବୀଙ୍କ ସାଙ୍ଗରେ ଦେଶସେବା କରିବ । କେଉଁଠି ଟ୍ରେନିଂଟାଏ ବୁଝିଦେଲେ ଦି' ପଇସା ରୋଜଗାର କଲେ ତା' ନିଜକଥା ନିଜେ ବୁଝିବ ।"

ବୋଉ କହେ-"ସେ କିଛି କରିପାରିବନି । ଯେମିତି ବାପା ସେମିତି ଝିଅ- କେଉଁଠି ଦିନେ ବି ଚଳି ପାରିବନି । କାନ କାଟିଲେ ପାଟିରୁ କଥା ବାହାରୁନି । ଯେଉଁ କାମଟି ମୁହୂର୍ତ୍ତେକେ ସରିବା କଥା ଘଣ୍ଟାଏ ଲାଗିବ । ନା ରନ୍ଧା ବଢ଼ା ନା ସଫାସୁତୁରା । ସେ ହୀନ କପାଳୀ । ତା ବାପା ସାଙ୍ଗରେ ଯାଉ । ସେ ତା' କଥା ବୁଝୁ । ମୋର କିଏ ବସେଇ ବସେଇ ହାତୀ ପୋଷିବ ?"

ବୋଉ ଭାରୀ ରୁକ୍ଷ । କିନ୍ତୁ ବେଳେବେଳେ ବୋଉ ତ ଲୁଚେଇ ଲୁଚେଇ କେବଳ ସାବୀକୁ ପଲକ ନ ପଡ଼ିଲା ପରି ଢିମା ଆଖିରେ ଚାହିଁ ରହିଥାଏ । ସାବୀର ଆଖି ପଡ଼ିଗଲେ- ବୋଉ ଖାଉଁକିନା ମାଡ଼ି ବସେ- ଗାଳିଦିଏ-"ଆଲୋ ଚୁଲିପଶି, ନିଆଲାଗି, ସେମିତି ବସି ଖଇରୁ ଧାନ ବାଛୁଥା । ବେଳ ବୁଡ଼ି ରାତି ହୋଇଯିବ । ତୁ ମଲୁନି ଯାହା ।"



Digitized by PPRACHIN, SOA

ସାବୀର ଛଳ ନଥାଏ । ମନ ଦୁଗୁଡ଼େଇ ହୁଏ । କଣ କହି ବୋଉକୁ ସେ ବୁଝେଇ ପାରିବ ଯେ ତାକୁ ଏ କାମ ବି ଆସୁନି । ମନ ଲାଗୁନି କାମରେ- ସେ କଣ ଆଉ କିଛି ଭାବୁଚି । କଣ ବା ଭାବିବ- ତା ପାଇଁ ଭାବନାର ସଂଜ୍ଞା ଓ ସ୍ୱରୂପ ନାହିଁ । ମନରେ ନାହିଁ ସ୍ୱପ୍ନ ଆଉ କଳ୍ପନା । ସାବୀ ଭାବୁଚି ନିବୀର ବାହାଘର ହେବ । ବେଶ୍ ମଜା ହେବ । ଭୋଜିଭାତ, ରୋଷଣି, ଗାଡ଼ି ମଟର- କେତେ ବରଯାତ୍ରୀ ଆସିବେ । ନିବୀର ବର କେମିତିଆଟେ ? ଗୋରା ନା କଳା ? ନା ସାବନା ? ଡେଙ୍ଗା ନା ବାଙ୍ଗୁରା ? ବାଳ କୁଞ୍ଚୁକୁଞ୍ଚିଆ ନା ଠିଆ ଠିଆ ?

ସାବୀ ବେଶୀ ଭାବିପାରେନି । ଭାବି ଆସେନି ବୋଲି ସେ ହୁଣ୍ଡୀ, ଆଉ ହାଉଡ଼ି । ଚୁପ୍ ରହେ ବୋଲି ଘୁଙ୍ଗୀ ଆଉ ବୋକୀ । ଭୋକ ହେଲେ ତ ସମସ୍ତେ ପେଟପୁରା ଖା'ନ୍ତି । ସେ ବି ଖାଏ, ନିବୀ ବି ଖାଏ । ସେ କିନ୍ତୁ ହୁଏ ଅସୁରୁଣୀ । ନିବୀ ଚାକିରୀ କରିଚି । ତାକୁ ବୋଉ କିଛି କହେନି । କହିଲେ ସେ ମୁହେଁ ମୁହେଁ ଜବାବ୍ ଦିଏ । ବୋଉର ତାକୁ ଭାରୀ ଡ଼ର । କଥା କଟା କଟି କରିବାରେ, ବନେଇ ଚୂନେଇ କହିବାରେ ନିବୀ ଓସ୍ତାତ୍ ।

ଥରେ ନିବୀ ବୋଉ ସାଙ୍ଗରେ ଝଙ୍କାଝଟ ଝଗଡ଼ା ଲଗେଇଲା । ବୋଉ ମୁହଁ କଳାହାଣ୍ଡିଆ ମେଘ ପରି ଥମଥମ । ସେ ସତେକି ଗାଳି ପକେଇବ । ଆଖି ରଙ୍ଗା ରଙ୍ଗା ଦିଶୁଥାଏ । ବୋଉ ଖାଲି କହୁଥାଏ- "ଭଲ ଝିଅ ଜନ୍ମ କଲି । ମୋତେ କାନଧରି ଉଠ୍‌ବସ୍ ନ କରି ଛାଡ଼ିବନି ।" ସେ ମନେ ମନେ କୁହୁଳୁଥାଏ ।

ସାବୀ ନିବୀକୁ ଚୁପ୍ ହେବାକୁ ଧମକେଇ ଦେଇ ବଡ଼ ପାଟିରେ ପଦେ କଣ କହି ଦେଇଥିଲା । ନିବୀ କହିଲା- "ଚୁପ୍ କର ଘୁଙ୍ଗି, ହାଉଡ଼ି । ବୋଉପଟିଆ ହେଇଯାଇଚୁ ? ରହ ରହ ନାକ ଘୋଷରା ଯଦି ନ ଖାଇଚୁ, ବୁଢ଼ୀ ହେବାଯାଏ ବସିଥା ।"

ସାବୀକୁ ଭାରୀ କାନ୍ଦ ମାଡ଼ିଥିଲା । ନିବୀ ତାକୁ ଭାରୀ ଟାଣ ଟାଣ କଥାରେ ସବୁବେଳେ ଗାଳିଦିଏ । ଆଜି ବା କେଉଁ ନୂଆ କଥା ? ସେ କ'ଣ ଆଉ କଥାକୁ କଥା ଯୋଡ଼ି କହି ଜାଣିଚି ଯେ ଉତ୍ତର ଦେଇଦେବ ? ନଳକୁ ନଳ ଯୋଖି ନଳୁଆ କେଳା ବାଡ଼ିଗଛରୁ ପାରା, କାପ୍‌ତା, ଭଦଭଦଳିଆ ମାରିବା କେତେ ଥର ସେ ଦେଖିଛି । ହେଲେ କଥାକୁ କଥା ଯୋଖି ଲକ୍ଷ୍ୟରେ ପହଞ୍ଚିବା ତା ପାଇଁ ଭାରୀ ଆୟାସସାଧ୍ୟ । ତା'ର ପୁଣି ନିବୀକୁ ଭାରୀ ଡ଼ର । ବୋଉ ଡରୁଚି ସେ ବା କି ଛାର ?

ନିବୀର ଆଜି ବାହାଘର । ବର ଆସି ଗାଁ ମୁଣ୍ଡରେ ଥାଟମାରି ବସିଗଲାଣି । ରୋଷଣି ସେଇଠୁ ଆରମ୍ଭ ହେବ । କେତେ ପ୍ରକାର ବାଜା, ବାଣ, କେତେ ବରଜାତି, କେତେ ମଟର । ରୋଜଗାରିଆ ଝିଅକୁ ରୋଜଗାରିଆ ବର । ସାବୀର ମନହୁଏ ଦଉଡ଼ି ଯାଇ ଦୂରରୁ ବରଜାତି ଥାଟ ପଟାଳି ଭିତରୁ ବରକୁ ଦେଖିଦେଇ ଆସନ୍ତା । ଗାଁ ଗୋହିରୀ ପାରି ହେଲେ ଗାଁ ମୁଣ୍ଡ । ବାଉଁଶ ବଣ ଭିତରୁ ବି ଲୁଚି ଲୁଚି ଦେଖିଦେଇ ପାରନ୍ତା



Digitized by PPRACHIN, SOA

ବରକୁ ।"

ବୋଉ ଏଣେ ସାବୀ ସାବୀ ରଡ଼ି ଛାଡ଼ିଚି । "କିଲୋ ହୁଣ୍ଡି କଣ ରୋଷେଇ ଘରେ ଖାଉଥିଲୁ କି ? କଣ କରୁଥିଲୁ ଏ ଯାଏ ?କେତେ ପାଇଟି ପଡ଼ି ରହିଚି । ଦିଅଁ ମଙ୍ଗୁଳା ହେବ । ବାଡ଼ୁଅ ପାଣି ଗାଧୁଆ ହେବ । କଳସ ସଜାଡ଼ି ଦେଇ ପାରୁନୁ ? କିଲୋ ଟିକେ ଫୁର୍ତ୍ତି ହ । ଏମିତି ଧିମେଉଚୁ କାହିଁକି ?"

ବୋଉ ତାକୁ ମୁହୂର୍ତ୍ତେ ବି ଫୁରୁସତ୍ ଦେବନି । ସେ ଆଜି ଥକି ପଡ଼ିଚି । ଖାଲି ଲଥ୍‌କିନି ବସିପଡୁଚି- ପଥର ମୁଣ୍ଡିଆ ପରି ନିଶ୍ଚଳ ହୋଇ ରହୁଚି । ବେଳେ ବେଳେ ସକ ସକ ହେଇ ଆଖିରୁ ଲୁହ ଗଡ଼ଉଚି, ଲୁଚେଇ ଲୁଚେଇ ପୋଛି ଦେଉଚି । ପୁଣି ସଜଡା ସଜଡ଼ିରେ ଲାଗିଚି । ଗାଁ ଯାକର ପିଲାଛୁଆ, ଝିଅ ମାଇପେ ଘରେ ପଶିଚନ୍ତି । ବନ୍ଧୁବାନ୍ଧବ ଯେତେକୁ ସେତେ । ସେ ଯେତେବେଳେ ପତର ପକେଇ ଦେଉଚନ୍ତି ବୋଉ ତ ସେମାନଙ୍କୁ କିଛି କହୁନି । ଆଉ ସେ ଖାଇବା କଥା ବୋଉ ଆଜି ଭୁଲି ଯାଇଚି କିପରି ? ବେଳ ଆସି ରତ ରତ ହେଲାଣି । ବରଯାତ୍ରୀ ନ ଖାଇଲେ ଘରଲୋକେ କୁଆଡ଼େ ଖାଇବେନି । ସକାଳ ପହରୁ ଯାହା ଜଳଖିଆ ଖିଆ ହେଇଥିଲା ସେତିକି । ଏତେ ପ୍ରକାର ରୋଷେଇ ହେଇଚି । ଏତେ ପ୍ରକାର ମିଠା, ମାଛ ଭଜା । ସେ ଗୋଟାଏ ପେଟକୁ ଖାଇଦେଲେ କ'ଣ ସରିଯିବ । ବୋଉକୁ ଖାଲି ତାରି ଖାଇବା ଦିଶୁଚି । ଏଠି ସମସ୍ତେ ପତ୍ରରେ ଏତେ ନଷ୍ଟ କରିଯାଇଛନ୍ତି । ଖାଲି ବସୁଛନ୍ତି, ଉଠୁଛନ୍ତି । ତାଙ୍କୁ ତ ବୋଉ କିଛି କହି ପାରୁନି ।

ସାବୀ ସନ୍ତର୍ପଣରେ ଭଣ୍ଡାର ଘରକୁ ପଶିଲା । ଭଣ୍ଡାର ଘରେ ଖାସ୍ତାଗଜା, କାକରା, ଜିଲିପି, ରସଗୋଲା, ପାଚିଲା କଦଳୀ କାନ୍ଦି, ଉଖୁଡ଼ା ଓ ଚୂଡ଼ାଭଜା- ସବୁ ସଜହୋଇ ଥୁଆ ହୋଇଛି । ନିବୀ ପାଇଁ ସେ ତିନିଥର ଦହି ହାଣ୍ଡିରୁ ଦହି ନେଇ ସର୍ବତ କରି ଦେଲାଣି । ସେ ଟିକେ ପିଇଦେଲେ କଣ ସରିଯିବ ? ବୋଉ ବୋଧେ ଦାଣ୍ଡକୁ ଯାଉଚି । ସେ ତ କହୁନି ଖାଇବାକୁ । ସେ କହିବନି ବି । ସେ ନିଜେ ଆଣି ଖାଇବ । ଭଣ୍ଡାର ଘରେ ଏଇଲାଏ କେହି ନାହାନ୍ତି । ସମସ୍ତେ ଦାଣ୍ଡକୁ ଗଲେଣି । ବର ରୋଷଣି କରି ଆସୁଚି । ବାଜାରେ କାନ ଅତଡ଼ା ପଡୁଚି । ବୋଉବି ନାହିଁ ।

ସାବୀ ଦି' ଚାରିଟା ରସଗୋଲା ପାଟିରେ ପୂରେଇ ଖଜା ଟୋକେଇ ଆଡ଼କୁ ହାତ ବଢ଼େଇଲା । ହାତ ପାହାନ୍ତାରୁ ଅଳ୍ପ ଉଚ୍ଚରେ ଥିବା ଖଜା ଟୋକେଇଟା ଭୁସ୍‌କିନା ତଳେ ପଡ଼ିଗଲା । ସାବୀ ପ୍ରାଣ ବିକଳରେ ସେ ଘର ଛାଡ଼ି ପଳେଇ ଆସୁ ଆସୁ ଦୁଆର ମୁହଁରେ ବୋଉ ହାଜର ।

ସାବୀ କାଠ ଖମ୍ବ ପରି ଠିଆ ହୋଇ ରହିଲା । ବୋଉ ଗର ଗର ହୋଇ ଶୋଧି ଚାଲିଚି- "ଆଲୋ ନିଆଁଲାଗୀ, ତୁ ସେଥିରେ କାହିଁକି ହାତ ମାରୁଥିଲୁ ? ଦିନସାରା ତ ଖିଆ ଚାଲିଚି- ପେଟପୂରୁ ନାହିଁ ? ଇଲୋ ସେ ଖଜା ପରା ବରଯାତ୍ରୀଙ୍କ ପାଇଁ, ସେ ଲଡୁ ଝିଅ ସାଙ୍ଗରେ ଯିବ । ତୋ ପେଟ ଏଇଥିରେ ପୂରିବ ? ତତେ ମରଣ ହେଉନି ଯାହା ।"



Digitized by PPRACHIN, SOA

ବୋଉ ଖଜା ଗୋଟାଉ ଗୋଟାଉ ରାଉ ରାଉ ହୋଇ କେତେ କଣ ଶୋଧୁ ଚାଲିଚି । ସାବୀ କାଠଗଡ଼ ପରି ଠିଆ ହୋଇଚି । ପାଦେ ବି ଏକଡ଼ ସେକଡ଼ ହୋଇ ପାରୁନି ।

ଆଲୋ ନିଆଁଲାଗୀ ସେମତି ଠିଆ ହୋଇ ରହିଲୁ କାହିଁକି ? ଦେଖିଲୁ ସେ ବାରିକାଣୀ କୁଆଡ଼େ ଗଲା ? ସେ ଅଇଁଠା ପତର କେତୁଟା ବାଟଘର ଯିବାଆସିବା ରାସ୍ତାରେ ପଡ଼ିରହିଛି । ଯା ଉଠେଇ ଦେ । ସମସ୍ତେ ତ ଦାଣ୍ଡକୁ ଗଲେଣି । ତୁ ଯାଉନୁ ବର ଦେଖିବୁ ? ଏଠି ତୋର କି କାମ ? ନିଆଁଲାଗୀର ଖାଲି ଖାଇବାରେ ଧ୍ୟାନ ।

ସାବୀ କୋହରେ ଫାଟି ପଡୁଥିଲା । ଥୋଡ଼ାଏ ଲୁହ ହେଲେ ଛାତି ଫଟେଇ ଆଖିବାଟେ ବୋହି ଯା'ନ୍ତା । ତାକୁ ଭାରୀ ହାଲୁକା ଲାଗନ୍ତା । କେଉଁଠି ନିରୋଳାରେ ହେଲେ ଟିକେ ବସି ସେ କାନ୍ଦି ପାରନ୍ତା । ସେମିତି ଜାଗା ବି ଆଜି ଘରେ ନାହିଁ । ସେ ଘରେ ନିବୀ ବସିଚି । ଝରକାବାଟେ ଲୁଚେଇ ଲୁଚେଇ ମଟର ଆଡ଼କୁ ଚାହୁଁଚି । ପୁଣି ବସି ପଡୁଚି । ତା ମନରେ ଟିକେ ହେଲେ ଆଜି ଦୁଃଖ ନାହିଁ । ବାହାଘର ଦିନ ସବୁ ଝିଅ ଗଳା ଫଟେଇ କାନ୍ଦନ୍ତି, ବେଳେବେଳେ ଛୋବ ଯାଆନ୍ତି । ପାଣି ଛାଟି ତାଙ୍କୁ ସାଷ୍ଟାମ କରିବାକୁ ହୁଏ । ସେ ସବୁ ଲୋକ ଦେଖାଣିଆ । ନିବୀ ତ ଆଜି ଭାରି ଖୁସି ଅଛି ।

ସାବୀ ବୋଉର ଆଦେଶମତେ ପଡ଼ି ରହିଥିବା ଅଇଁଠା ପତର ଗୋଟଉ ଗୋଟଉ ନିବୀର ବରକଥା ଭାବୁଥିଲା । ବର କେମିତିଆଟିଏ ହୋଇଥିବ ? କର୍ପୂର ଆଉ ଗଜରା ମାଳରେ ମହମହ ବାସୁଥିବ । ମୁଣ୍ଡରେ ଚନ୍ଦନ ସିନ୍ଦୂର ଘିନିଥିବ । ସାବୀ ତରତର ହୋଇ ଅଇଁଠା ପତ୍ର କେତେଟା ଗୋଟେଇ ବାଡ଼ିଆଡ଼େ ଫୋପାଡ଼ି ଦେଇ ଦାଣ୍ଡକୁ ବାହାରିଗଲା ।

ବୋଉ ଡାକିଲା-ଆଲୋ ସାବୀ ! ତେଣେ କୁଆଡ଼େ ଯାଉଚୁ ? ରାଇଜଯାକର କାମ ଏଣେ ପଡ଼ି ରହିଚି । ତତେ କଣ ଦେଖା ଯାଉନି ? ଗଲୁ ବେଦି ଜିନିଷ ଆଉ କଣ ଯାଇନି ପୁରୋହିତଙ୍କୁ ପଚାରି ଆସିବୁ । ଦେଖିଲୁ ବାପା ବାଟ ବରଣ ପାଇଁ ବାହାରିଲେ କି ? ଏଇଲାଏ ବର ଫାଟକ ପାଖରେ ପହଞ୍ଚିଯିବ । ରୋଷେଇଆକୁ କହି ଦେ, ବଜନ୍ତିମାନେ ଆଗ ଖାଇବେ । ତାଙ୍କ ପାଇଁ ସକାଳ ଭାତ ଡାଲମା ଅଲଗା ଥିଲା । ତାଙ୍କ ଖାଇବା କଥା ବୁଝିବେ ।

ସାବୀ କାନ୍ଦ କାନ୍ଦ ହୋଇ ଆସିଲା । ବୋଉକୁ କେବେ ବି ପାଟି ଫିଟାଇ କିଛି କହିନି । ସେଥିପାଇଁ ସେ ଘୁଙ୍ଗୀ, ସେ ବୋକୀ, ସେ ହାଉଡ଼ି । ଆଜି ମନ ହେଉଚି ତାକୁ ମନଇଚ୍ଛା ଗଳା ଫଟେଇ ଶୋଧି ଦିଅନ୍ତା । ତାର କଣ ନିବୀ କେବଳ ଝିଅ ଆଉ ତାକୁ କେଉଁଠୁ ଗୋଟେଇ ଆଣିଥିଲା ?

ସାବୀ ବୋଉ କଥାରେ କିଛି କହିଲାନି ସିନା କିନ୍ତୁ ସିଧାସଳଖ ବର ଦେଖିବାକୁ ଫାଟକ ଆଡକୁ ଆଗେଇ ଗଲା । ସେଠି ଗାଁଯାକ ଝିଅ ରୁଣ୍ଡ ହେଇଚନ୍ତି । କାନରେ ତୁନିତାନି ବର ବିଷୟରେ କେତେ କୁହା କୁହି ହେଉଚନ୍ତି । ସାବୀ ତାଙ୍କରି ଭିଡ଼ ଠେଲି ଆଗକୁ ଯିବାକୁ ଚେଷ୍ଟା କରୁଥିବା ବେଳେ ତା କାନି କିଏ ଜଣେ ଧରି ତାକୁ କହୁଥିଲା-



Digitized by PPRACHIN, SOA

"ଆଲୋ ହେ, ଦେଢ଼ଶାଶୁ ହେବୁ ପରା, ଏମିତି ମଇଳା ଅସନା ଲୁଗାଟାଏ ପିନ୍ଧି ଆଗକୁ କଣ ମାଡ଼ି ଯାଉଚୁ ?"

ସାବୀ ଅଟକିଗଲା । ପଛକୁ ଚାହିଁଲା- ତା କାନି ଟାଣି ଧରିଚି ତାଙ୍କ ଗାଁର ତାର ଜଣେ ନୂଆବୋଉ ଲେଖା ରମା ଭାଇଙ୍କ ସ୍ତ୍ରୀ କମଳା ଭାଉଜ । ସାବୀ ମୁହଁକୁ ହାତରେ ଆଉଁସି ଦେଉ ଦେଉ କମଳା ଭାଉଜ କହିଲେ, "ଚାଲ, ଆମ ଘରେ ତୁମ ମୁଣ୍ଡ କୁଣ୍ଡେଇ ଦେବି । ପାଉଡ଼ର ମାରିଦେବି, କଜଳ କୁଙ୍କୁମ ପିନ୍ଧେଇ ଦେବି । ମୋ ଶାଢ଼ୀ ପିନ୍ଧାଇ ଦେବି । ତୁମକୁ ସଜେଇ ଦେଲେ ରାଜକୁମାରୀ ଭଳି ଦେଖାଯିବ ।"

କମଳା ଭାଉଜ ହାତଧରି ଟାଣୁଥିଲେ । ଏ ଅଯାଚିତ ଶ୍ରଦ୍ଧାରେ ସାବୀର କଣ୍ଠ ରୁଦ୍ଧ ହୋଇ ଆସୁଥିଲା । ଆଖିରେ ଜକେଇ ଆସୁଥିବା ଲୁହ ଦି' ଟୋପା ଗାଲ ଦେଇ ତଳକୁ ନିଗିଡ଼ି ଗଲା ।

ସାବୀ କହିଲା - "ନାଇଁ ଥାଉ ଭାଉଜ । ଆଜି ନୁହେଁ ଆଉ କେଉଁଦିନ ।"

ବୋଉ ପାଟି ଶୁଭୁଥିଲା- "ସାବି, ଲୋ ସାବି, ନିଆଁଲାଗୀ ଦାଣ୍ଡକୁ ତ ବର ଦେଖି ବୋଧହୁଏ ଗଲାଣି ।"





Digitized by PPRACHIN, SOA

# ମୋହନ ମୂର୍ତ୍ତି

ମୋହନ ମୂର୍ତ୍ତି ଆଗକୁ ପାଦ ଚାଲିଲା । ଆଗରେ ବିରାଟ ଢାଉ ରଙ୍ଗର ଦ୍ୱିତଳ ପ୍ରାସାଦ । ବହୁ ଛାତ୍ରଛାତ୍ରୀଙ୍କ ଜୀବନ ଗଢ଼ିବାର ଦାୟିତ୍ୱ ନେଇ କେଉଁ କାଳରୁ କେଜାଣି ସେ ସେମିତି ନିର୍ବିକାର ଭାବରେ ଠିଆ ହେଇଚି । ବିରାଟ ଦେହରେ ତା'ର ଠାଏ ଠାଏ ବର୍ଷା ପାଣିର ଦାଗ । ସେଥିପାଇଁ ତା'ର ଖାତିରି ନାହିଁ । ଠିଆ ହେଇଚି ନିଶ୍ଚଳ ସ୍ଥାଣୁ ଦ୍ୱିତଳ ପ୍ରାସାଦ । ମୋହନ ମୂର୍ତ୍ତି ଆଖି ଉଠେଇ ଚାହିଁଲା । ବହୁତ ପାରା ଆସି ବସିଲେଣି । ଅନେକ ଉଡ଼ି ଏପାଖ ସେପାଖ ହେଉଛନ୍ତି । କେତେକ ଘୁମୁରୁଛନ୍ତି । ଆଉ କେତେକ ଦୁଷ୍ଟାମୀ କରି ମାଇ ପାରାଗୁଡ଼ାଙ୍କୁ ବ୍ୟତିବ୍ୟସ୍ତ କରୁଛନ୍ତି । ମୋହନ ମୂର୍ତ୍ତି ଆଖି ଫେରେଇଲା ।

ସଂଧ୍ୟା ଛ'ଟା । କଲେଜ ଆଗ ପିଚୁରାସ୍ତାରେ ପ୍ରବେଶ ପଥର କୃଷ୍ଣଚୂଡ଼ା ଗଛ ସେ ଡ଼େଇଁ ଆସିଲାଣି ।

ତା'ର ମନେପଡ଼ିଲା ଗଛରେ ଏବେ କୃଷ୍ଣଚୂଡ଼ା ଫୁଟିଚି । ନାଲି ଟୁକୁଟୁକୁ ସୁନ୍ଦର ଫୁଲଗୁଡ଼ିଏ ପବନରେ ଲୋଟି ପଡୁଚି । ତୋଳି ପାରନ୍ତାକି ଦି'ଟା ଫଲର ଥୋପା । ହାତରେ ଧରିଥାନ୍ତା । ଗାଲରେ ବଢ଼େଇଥାନ୍ତା । ମୋହନ ମୂର୍ତ୍ତି ଅଟକି କ୍ଷଣେକାଳ ଗଛକୁ ଚାହିଁଲା । କୃଷ୍ଣଚୂଡ଼ା ଫୁଲଗୁଡ଼ା ସତେ ଯେପରି ତାକୁ ହିଁ ଚାହିଁ ରହିଛନ୍ତି ।

ନାଇଁ, ନାଇଁ ଆଉ ଦିନେ ତୋଳିବା । ବିଷଣ୍ଣ ମୋହନ ମୂର୍ତ୍ତି ମନର ସୌନ୍ଦର୍ଯ୍ୟ ଚେତନାକୁ ଜୋର କରି ଅବଦମିତ କରି ଆଗକୁ ପାଦ ବଢ଼େଇଲା ।

ଅଳ୍ପ ଆଗରେ କଲେଜ ହଲ୍ । ଛାତ୍ର ଛାତ୍ରୀ ଗହଳରେ ହଲ୍ ପୂରିଉଠିଚି । ବୋଧହୁଏ କିଛି ଗୋଟାଏ ଫେଷ୍ଟିଭାଲ୍‌ର ଆୟୋଜନ । ବାହାରେ ମନ୍ତ୍ରୀ ଶିକ୍ଷାବିତ୍- ଆଉ ଆଉ ଭଦ୍ରଲୋକଙ୍କ କାର୍ ପାର୍କ କରିଛି । ହଲ୍ ଭିତରୁ ଭାସି ଆସୁଚି ସଙ୍ଗୀତର ମୂର୍ଚ୍ଛନା, ଲଳନା କଣ୍ଠର ଲଳିତ କଣ୍ଠସ୍ୱର ।

"ଭଲ ହେଲା । ପେଟର ଭୋକଟା ଏଇଠି ହୁଏତ କିଛିକାଳ ପାଇଁ ମରିଯିବ ।" ମୋହନ ମୂର୍ତ୍ତି ମୁହଁରେ ମ୍ଲାନ ସ୍ମିତରେଖା ସୁସ୍ପଷ୍ଟ ହୋଇ ଉଠିଲା । ଛାତ୍ର ଗହଳି ଆଡ଼େଇ ଆଡ଼େଇ ସେ ନିଜ ପାଇଁ ଗୋଟିଏ ଚୌକୀ ବାଛିନେଲା ।

ଏରୋ ଭଏସ୍ ସାଉଣ୍ଡ୍ ୱେଭ୍‌ରୁ ପରବର୍ତ୍ତୀ ପ୍ରୋଗ୍ରାମର ଘୋଷଣା ଭାସି ଆସିଲା-



Digitized by PPRACHIN, SOA

"ମିସ୍ ସୁଚେତା ମିଶ୍ରଙ୍କ ଭାରତ ନାଟ୍ୟମ୍- ଏକ ପ୍ରସିଦ୍ଧ ଡ୍ୟାନ୍ସର ଆୟୋଜନ । ତାଙ୍କ ଅଙ୍ଗଚାଳନାର ଅନନ୍ୟ ସାଧାରଣ ଅଭିନବ ଭଙ୍ଗୀ ଖୁବ୍ ଶୀଘ୍ର ଆପଣମାନଙ୍କୁ ମୁଗ୍ଧ କରିବ ।"

ନିଜକୁ ଟିକିଏ ପରୀକ୍ଷା କରିନେଇ ନିଜ ଚୌକୀରେ ଆହୁରି ସତର୍କ ହୋଇ ମୋହନ ମୂର୍ତ୍ତି ବସି ରହିଲା । ବାମହାତ ତା'ର ଅଭ୍ୟାସବଶତଃ ଗଣ୍ଡଦେଶରୁ ଦୁଷ୍ଟ ବ୍ରଣଗୁଡ଼ାକୁ ଚିପିବାରେ ତତ୍ପର ହୋଇ ଉଠୁଥାଏ । ମୋହନ ମୂର୍ତ୍ତି ଅନୁଭବ କଲା, ଶୁଖି ଆସିଥିବା ବ୍ରଣ ଭିତରୁ କ'ଣ ଗୋଟାଏ ସାମାନ୍ୟ ଓଦା ଧଳା ଜିନିଷ ବାହାରି ଆସୁଚି । ହାତରେ ପରୀକ୍ଷା କରୁଚି- ଚୋବା ଚାଉଳ ପରି ଧଳା ଧଳା ଜିନିଷ । ମଂଜି ବାହାରି ଆସିଚି । ମରିଚି ବ୍ରଣର ବୀଜ । ମୋହନ ମୂର୍ତ୍ତିର ପାଣ୍ଡୁର ମୁଖମଣ୍ଡଳରେ ତଥାପି ଆଉ ଏକ ବ୍ରଣର ବିରକ୍ତିକର ଆଗମନ ସ୍ପଷ୍ଟ ବାରି ହେଉଚି । ଜ୍ୟୋତିହୀନ ଚକ୍ଷୁଦୁଇଟି କେଉଁ ଏକ ନିଶ୍ଚିତ ଭବିଷ୍ୟତର ଅପେକ୍ଷାରେ ଆବେଦନଶୀଳ । ମୋହନ ମୂର୍ତ୍ତି ଧ୍ୟାନ ସ୍ତିମିତ ।

ସ୍କ୍ରିନ୍ ଅପସରି ଗଲା । ବିଶିଷ୍ଟ ନୃତ୍ୟ ଠାଣିରେ ଠିଆ ହୋଇଚନ୍ତି ମିସ୍ ସୁଚେତା ମିଶ୍ର । ମୋହନ ମୂର୍ତ୍ତି ନିଜ ଦେହକୁ ଚାହିଁଲା । ଜାମାପଟାକୁ ସଜାଡ଼ିନେଇ ଲୁଗା କାନିକୁ ପାଦ ଆଡକୁ ଟାଣିଦେଲା ।

ପାଞ୍ଚଟଙ୍କିଆ ନୋଟ୍‌ଟାଏ । ଚମକି ପଡ଼ିଲା ମୋହନ ମୂର୍ତ୍ତି । ମନରେ ତା'ର ହଠାତ୍ ପ୍ରାପ୍ତିର ଏକ ଉଚ୍ଛଳା ଢେଉ ଖେଳିଗଲା । ସେ ଦୁଇ ପାଖର ଦର୍ଶକଙ୍କୁ ଟିକିଏ ଚଞ୍ଚଳ ଆଖିରେ ପରଖି ନେଲା । ସେମାନେ ପେଣ୍ଡାଲ ଆଡେ ଚାହିଁଛନ୍ତି । ଭୟର କୌଣସି କାରଣ ନାହିଁ । ବାଁ ଗୋଡ଼ର ଜୋତା ତଳେ ଆସ୍ତେ ସେ ନୋଟ୍‌ଟାକୁ ଲୁଚେଇ ରଖିଲା । କିଛି ଆଶ୍ୱସ୍ତି ଓ କିଛି ଉଦ୍‌ବେଗରେ ମୋହନ ମୂର୍ତ୍ତି ପେଣ୍ଡାଲ ଆଡକୁ ଆଖି ଫେରେଇଲା । ମୁହଁରେ ଏକ ଅନନୁଭୂତ ସ୍ଫୀତି । କପାଳର କୁଞ୍ଚିତ ରେଖାବଳୀ ମୋହନ ମୂର୍ତ୍ତିର ବିସ୍ମୟକୁ ସ୍ପଷ୍ଟ ସୂଚେଇ ଦେଉଥିଲା ।

ମିସ୍ ସୁଚେତା ମିଶ୍ର ନୃତ୍ୟରତା । ପୃଷ୍ଠଭୂମିରୁ ଏକ କରୁଣ ସଙ୍ଗୀତର ବିରହରାଗିଣୀ ଭାସି ଆସୁଚି । ତା'ରି ଛନ୍ଦେ ଛନ୍ଦେ ଲୀଳା ଚଞ୍ଚଳ ହୋଇଉଠୁଚି ମିସ୍ ମିଶ୍ରଙ୍କ ଅଙ୍ଗଲତା । ସତେ ଯେପରି ଦେହର ପେଶୀ ଉପରେ ତାଙ୍କର ପୂର୍ଣ୍ଣ କର୍ତ୍ତୃତ୍ୱ ରହିଚି । ଯେମିତି ଚାହୁଁଚନ୍ତି ସେଗୁଡ଼ାକୁ ସେମିତି ସେ ନଚଉଚନ୍ତି । ନିଜେ ନାଚୁଚନ୍ତି । ଲୋଟି ଯାଉଚନ୍ତି ରକ୍ତ, ମାଂସ, କେଶ ଆଉ ଚର୍ମର ମିସ୍ ସୁଚେତା ମିଶ୍ର ।

ମୋହନ ମୂର୍ତ୍ତି ଭାବାବିଷ୍ଟ । ନୃତ୍ୟରତା କୁମାରୀଙ୍କର ନୃତ୍ୟଭଙ୍ଗୀରେ ସେ ମୁଗ୍ଧ ନୁହେଁ । ତା'ର ସେଥିପାଇଁ ଦୃଷ୍ଟି ନାହିଁ । ତା'ର ଆଖି ନିଷ୍ପଲକ ଭାବରେ ମିସ୍ ମିଶ୍ରଙ୍କ ମୁହଁରେ ହିଁ ନିବଦ୍ଧ । ସେ ଲକ୍ଷ୍ୟ କରୁଚି ମିସ୍ ମିଶ୍ରଙ୍କ ମୁହଁରେ ଅସଂଖ୍ୟ ବ୍ରଣର ଦାଗ । କେତେକ ଗତାୟୁ, କେତେକ କ୍ରମ ବର୍ଦ୍ଧିଷ୍ଣୁ, ଆଉ କେତେକ ବୃଦ୍ଧି ପାଇଁ ଦୟନୀୟ



Digitized by PPRACHIN, SOA

ଭାବରେ ଅପେକ୍ଷମାଣ । ମିସ୍ ମିଶ୍ରଙ୍କ ଚେଷ୍ଟାରେ ଅନ୍ତ ନାହିଁ । ହେଜ୍‌ଲିନ୍ ସ୍ନୋର ଏକ ବହଳ ଆସ୍ତରଣ ଭିତରୁ ତଥାପି ବ୍ରଣଗୁଡ଼ା ସ୍ପଷ୍ଟ ଆତ୍ମପ୍ରକାଶ କରୁଚନ୍ତି ।

ମୋହନ ମୂର୍ତ୍ତିର ଅଲକ୍ଷ୍ୟରେ ତା ହାତ ପୁଣି ତା ଗାଲକୁ ଛୁଇଁଲା । ହାତର ମୃଦୁଚାଳନାରେ ସେ ବ୍ରଣଗୁଡ଼ାକଙ୍କର ଅବସ୍ଥିତି ଆଉ ଥରେ ଅନୁଭବ କରିନେଲା । ଅପେକ୍ଷାକୃତ ବଡ଼ ଉପରେ ଆଙ୍ଗୁଠିର ଟିପ ଦେଲା ସ୍ଥିର । ଟିକିଏ ଆରାମ ଅନୁଭବ କଲା ମୋହନ ମୂର୍ତ୍ତି ।

ପୁଣି ପ୍ରଚ୍ଛଦପଟରୁ ପରବର୍ତ୍ତୀ କାର୍ଯ୍ୟକ୍ରମର ଉଦାତ୍ତ ଘୋଷଣା । ଏକ ବିଶିଷ୍ଟ ଏକାଙ୍କିକାର ଆୟୋଜନ । ଲେଖକ ଅଧ୍ୟାପକ ପ୍ରାଣବନ୍ଧୁ କର ଏମ୍.ଏ. ।

ମୋହନ ମୂର୍ତ୍ତି ଧୈର୍ଯ୍ୟ ହରେଇ ବସିଲା । ଏକାଙ୍କିକା-ରୀତିମତ୍ ଗୋଟାଏ ଛୋଟ ଧରଣର ଡ୍ରାମା । ଏଣେ ପେଟ କରୁଚି ଆର୍ତ୍ତନାଦ । ସକାଳୁ ସେ କିଛି ଖାଇନି । ତା ପକେଟରେ ଥିବା ଦୁଇଟି ଟଙ୍କା ଆଉ ତିନିଟି ସୁକିକୁ କୌଣସି ଲୋକ କଟକ ଷ୍ଟେସନ୍‌ରେ ପିକ୍‌ପକେଟ୍ କରିନେଇଚି । ସେଇ ଥିଲା ତାର ଶେଷ ସମ୍ବଳ ।

ମୋହନ ମୂର୍ତ୍ତି ଖୁବ୍ ସତର୍କ ଭାବରେ ଗୋଡ଼ତଳୁ ନୋଟଟିକୁ ଉଠେଇ ନେଲା । ତା ପରେ କ୍ଷଣେ ମାତ୍ର ଅପେକ୍ଷା ନ କରି ହଲ ଛାଡ଼ି ବାହାରି ଆସିଲା ପଦାକୁ । କେହି ଦେଖିନାହାନ୍ତି । ସ୍ୱସ୍ତିର ନିଃଶ୍ୱାସଟିଏ ମାରିଲା ମୋହନ ମୂର୍ତ୍ତି ।

ଟେନିସ୍ ଲନରେ ମୋହନ ମୂର୍ତ୍ତି କ୍ଷଣେକାଳ ଠିଆ ହେଲା । ରୁମାଲରେ ବେକ ଆଉ ଛାତିର ଛାଳ ପୋଛିନେଲା । ଉପରକୁ ଚାହିଁଲା ମୋହନ ମୂର୍ତ୍ତି । ଉପରେ ନୈଶ ଆକାଶ । ଛୋଟ ବଡ଼ ତାରକାପନ୍ତିର ଏକ ବିଚିତ୍ର ସମାବେଶ । ପଛରେ ଜନାକୀର୍ଣ୍ଣ କଲେଜ ହଲ । ରୁଦ୍ଧବାୟୁ ଆଉ ମିସ୍ ମିଶ୍ରଙ୍କ ଉଚ୍ଚନୀଚ ବ୍ରଣଦଂଷ୍ଟ ମୁଖମଣ୍ଡଳ । ମନଭରି ମୁକ୍ତ ଆକାଶର ବାୟୁକୁ ବାରମ୍ବାର ପ୍ରଶ୍ୱାସରେ ନେଇ ନିଃଶ୍ୱାସରେ ଛାଡ଼ିଲା ମୋହନ ମୂର୍ତ୍ତି । ହଲର ବାୟୁ ଦୂଷିତ ହେଇଚି । ଧୂମପାନର ନିଷେଧାଜ୍ଞା ସତ୍ତ୍ୱେ ହଲ ସିଗାରେଟ ଧୂଆଁରେ ଭରପୂର ।

ପକେଟରେ ହାତ ପୂରେଇଲା ମୋହନମୂର୍ତ୍ତି । ପାଞ୍ଚଟଙ୍କିଆ ନୋଟଟା ସଙ୍କୁଚିତ ଭାବରେ ଗୋଟାଏ କଣରେ ପଡ଼ିରହିଛି । ସେଥିରେ କେତେ ଭାଙ୍ଗ । ମୋହନ ମୂର୍ତ୍ତି ନିଜକୁ ବଡ଼ ଅସହିଷ୍ଣୁ ଅନୁଭବ କଲା । ମନରେ ତାର ମାନସିକ କୋଳାହଳ । ତାର ନୁହେଁ ସେ ଟଙ୍କା । ଟଙ୍କା ପାଞ୍ଚୋଟିକୁ ମାଲିକ ତାର କେତେ ଖୋଜି ହେଉଥିବ । ତାରି ଅବସ୍ଥା ହୁଏତ ସେ ଭୋଗିବ । ଉପାସ ହୁଏତ ରହିପାରେ । ନା- ସେ ଫେରେଇ ଦେବ ଏଇ ସାଙ୍ଗେ ସାଙ୍ଗେ । ଯେଉଁଠି ମିସ୍ ମିଶ୍ରଙ୍କ ନାମ ଆଉ ନୃତ୍ୟର ଘୋଷଣା କ୍ଷଣକ ପୂର୍ବେ ହେଉଥିଲା- ସେଇଠି ଘୋଷିତ ହେବ ସଚ୍ଚୋଟ ମୋହନ ମୂର୍ତ୍ତିର ନାମ । ତା ସାଧୁତାକୁ ସମସ୍ତେ ପ୍ରଶଂସା କରିବେ । ମାତ୍ର ପାଞ୍ଚଟା ଟଙ୍କା ପାଇଁ ସେ ଏତେ ଛୋଟ ହେଇ



Digitized by PPRACHIN, SOA

ପାରିବନି ।

ପକେଟରୁ କାଗଜ ନୋଟ୍‌ଟି କାଢ଼ି ଜହ୍ନ ଆଲୁଅରେ ତାକୁ ପରୀକ୍ଷା କଲା । ଅତି ଜୀର୍ଣ୍ଣ ଶୀର୍ଣ୍ଣ ଆୟତାକାର କାଗଜଟାଏ । ସରକାରଙ୍କ ଅନୁମୋଦନ ହାସଲ କରି ଦାମିକା ହୋଇ ଉଠିଛି । କିଛି ସମୟ ପରେ କାଗଜ ହେବ ଓଜନିଆ କେତୋଟି ନୂଆ ପଇସାର ମୁଦ୍ରା । ବିଚିତ୍ର ବିନିମୟ ପଦ୍ଧତି । ସେଥିରୁ କିଛି ବ୍ୟୟ ହେଲେ ତାର ଓଜନ ବଢ଼ିବ । ଓଜନିଆ ହେବ ମୋହନ ମୂର୍ତ୍ତିର ପକେଟ୍ । ଆଉ ପକେଟରେ ନିଜର ଅଲକ୍ଷ୍ୟରେ ସେ ହାତ ଭରିଲା । ସେଇଟା କଟା ହେଇଚି । ପଇସା ନେଇ ଛିଣ୍ଡା କନାଟାକୁ କେଉଁଠି ଡକାୟତଟି ଫିଙ୍ଗି ଦେଇଥିବ । ଅଧମାଇଲିଏ ପଛରେ କଟକ ରେଳ ଷ୍ଟେସନ ତାର ନିଃସ୍ୱତାକୁ ଉପହାସ କରି ଡକାୟତର ଜିନ୍ଦାବାଦ କରୁଥିବ । ବେପରୁଆ ଡକାୟତି, ପୋଲିସ ଆଉ ଚୋରର ସମ୍ପର୍କ ହୋଇଛି ମଧୁରତର । ମୋହନ ମୂର୍ତ୍ତି ମନେ ମନେ ଭାରତର ଜୟଗାନ କଲା । "ଜୟ ଭାରତ" ।

ମୋହନ ମୂର୍ତ୍ତି ଦୀର୍ଘଶ୍ୱାସ ନିକ୍ଷେପ କଲା । ପ୍ରବଳ ଭୋକ ହେଉଚି । ନା- ସେ ଫେରେଇ ଦେଇ ପାରିବନି । ଯେ ପଇସା ହଜାଏ ସେ ବଡ଼ଲୋକ । ହଜୁ ତା ଟଙ୍କା । ଆଉ ଦିନେ ହଜେଇବନି । ଠିକିଲେ ଶିଖିବ ।

ମୋହନ ମୂର୍ତ୍ତି କଲେଜ ଗେଟ ଆଡ଼େ ଆଗେଇଲା । ଗେଟର ଦୁଇ ଆଲୋକସ୍ତମ୍ଭ ଡେଇଁଲେ ରାଜରାସ୍ତା । ସେଠି ଧନୀ ନିର୍ଦ୍ଧନ ସମସ୍ତଙ୍କର ସମାନ ଦାବୀ । ତା ବକ୍ଷରେ ସମସ୍ତଙ୍କର ସମାନଭାବେ ଜୁଲମ ଓ ଅତ୍ୟାଚାର ।

"ବାବୁ ପଇସାଟିଏ ଦିଅ ! ବା ...... ଆ....... ବୁ । କିଛି ଖାଇନି ।"

ମୋହନ ମୂର୍ତ୍ତି ପଛକୁ ଆଖି ଫେରେଇଲା । ତା'ରି ମୁହଁକୁ ଅତି ବିକଳ ଭାବରେ ଚାହିଁ ରହିଚି ସତର ଅଠର ବର୍ଷର ଭିକାରୁଣୀଟିଏ । ମୁଖ ବିବର୍ଣ୍ଣ । କେଶ ଆଲୁଳାୟିତ । ସାତ ଗଇଁଠା ଚିରା କନାରେ ଦେହକୁ ଢାଙ୍କିଚି ଲଜ୍ଜାନତ ଯୁବତୀ ଭିକାରୁଣୀ । କୋଳରେ ତା'ର ଶିଶୁଟିଏ । ନାମହୀନ, ଗୋତ୍ରହୀନ ଅମୃତର ସନ୍ତାନ । ସେ ବଞ୍ଚିବ । ଦୁନିଆଁରେ ବଡ଼ ହେବ । ବାପା ମାଆର ଗୋତ୍ର ଭୁଲି ବଞ୍ଚିବାର ଦୁର୍ଦ୍ଦମ ସଂଗ୍ରାମ ଭିତରେ ନିଜକୁ ଲହୁଲୁହାଣ କରିବ ।

ମୋହନ ମୂର୍ତ୍ତି ଆଖି ଫେରେଇ ଆଗକୁ ଚାଲିଲା । ପୁଣି ଶୁଣିଲା ପଛରୁ ସେଇ ଅସ୍ପଷ୍ଟ କରୁଣ ନିବେଦନ । ପୁଣି ସେଇ ଆଶା ନିରାଶାର କୋଳାହଳ । ନଥିଲା ବର୍ତ୍ତମାନର ସାଉଁଟା ସାଉଁଟି ଆଉ ଥିଲା ଅତୀତର ଫିଙ୍ଗାଫିଙ୍ଗି କେତୋଟି ଶବ୍ଦର ଉଚ୍ଚାରଣ । ଭିକାରୁଣୀଟି ପଛେ ପଛେ ଆସୁଚି । ପୁଣି ସେଇ ଆକୁଳ କଣ୍ଠର ନିବେଦନ । ନିରଙ୍କୁଶ ଜୀବନର ସେଇ ମର୍ମନ୍ତୁଦ ମରମିତ ଟିପ୍‌ପଣୀ । ଛୁଆଟା ପାଇଁ ମାଆର କେଡ଼େ ମମତା ! ତା'ରି ପାଇଁ ନିଜର ତାରୁଣ୍ୟକୁ ଭୁଲି ସେ ହେଇଚି ଭିକାରିଣୀ । ଯୌବନର ଜଳିଲା



Digitized by PPRACHIN, SOA

ଆଗ୍ରହକୁ ତା'ରି ଯୋଗୁ ମାଡ଼ି ମକଚି ସେ ରାସ୍ତାରେ ବୁଲୁଚି । ତା ଯାତ୍ରାରେ ଭାଗ ନେବାକୁ ତା'ର ଲମ୍ପଟ ପ୍ରେମିକ ପୁରୁଷ ପାଖରେ ନାହିଁ । ସେ ଫାଙ୍କି ଦେଇଚି । ଝାଡ଼ିଝୁଡ଼ି ସଫା ହୋଇ ପଳେଇ ଯାଇଛି ସୁବିଧାବାଦୀ । ଆହା- ଭିକାରିଣୀଟି । ତା'ରି ଛୁଆକୁ ପେଟରେ ଧରି ଭୃଣ ହତ୍ୟା କରିବାକୁ ମାଆ ମନ ତା'ର ପଛେଇ ଯାଇଥିବ । ସେ ଅଶିକ୍ଷିତା । ପାଠ ପଢ଼ିଥିଲେ ଅବା ଆଧୁନିକ ମନନେଇ ନିର୍ବିକାର ଭାବରେ କୌଣସି ସହଜସାଧ ଉପାୟର ଆଶ୍ରୟ ନେଇଥାନ୍ତା । ସେ କିନ୍ତୁ ତା ନିଜ ଭିତରୁ ଶୁଣିଲା ମାତୃତ୍ୱର ଚିତ୍କାର । ରକ୍ତ ଦେଇ, ଶକ୍ତି ଦେଇ ଦୁନିଆର ଆଲୋକକୁ ଆସିଲା ଶିଶୁଟିଏ । କିପରି ଫିଙ୍ଗିଦେଇ ପାରନ୍ତା ? ସମାଜରେ ବୋଧହୁଏ ଆଶ୍ରୟ ପାଇଲାନି । ଶେଷକୁ ଚାଲି ଆସିଛି ସର୍ବସାଧାରଣଙ୍କ ଏଇ ରାଜରାସ୍ତାକୁ ।

ହଠାତ୍ ଅଟକି ରହିଲା ମୋହନ ମୂର୍ତ୍ତି । ଭାବୁ ଭାବୁ ବହୁତ ବାଟ ସେ ଟପିଗଲାଣି । ପଛକୁ ଚାହିଁଲା । ଆହା ଭିକାରୁଣୀଟି ନିରାଶ ହୋଇ ଫେରିଯାଉଚି । ତାକୁ ସେ ହାତଟେକି ପଇସାଟିଏ ଦେଇ ପାରିଲାନି ।

ମୋହନ ମୂର୍ତ୍ତି ଅଟକି ରହିଲା । ମନେ ପଡ଼ିଲା ଅତୀତ କଥା । ଗୋଟିକ ପରେ ଗୋଟିଏ ସିନେମାର ଆଲୋକଚିତ୍ର ପରି ସେ ସବୁ ନାଚି ଉଠିଲା ।

+ + ସେତେବେଳେ ତାକୁ ଛଅ ବର୍ଷ । କ୍ରମାଗତ ଦି'ଦିନ ଖାଇବାକୁ ନ ପାଇ ମାଆ ତା'ର ରୋଗରେ ପଡ଼ିଲା । ରାସ୍ତାକଡ଼ର ଛୋଟ ବରଗଛଟି ମୂଳେ ମାଆ ପୁଅ ଆଶ୍ରୟ ନେଉଥିଲେ । ମୋହନ ମୂର୍ତ୍ତି ହତବାକ୍ ହୋଇ ପଡ଼ିଲା । କିଛି ବୁଝିପାରୁ ନଥାଏ । ଖାଲି ନିର୍ବୋଧ ପରି କରୁଣ କରୁଣ ଆଖିରେ ମାଆକୁ ଚାହୁଁଥାଏ । ମାଆ ଶୋଇଛି । ବେଳେବେଳେ ଖାଇବାକୁ ମାଗୁଥାଏ । ନ ଶୁଣିଲେ କାନ୍ଦି କାନ୍ଦି ତା ଛାତିରେ ଚାପୁଡ଼ା ଦେଉଥାଏ । ସେଇଠି ସେଇ ଗଛ ମୂଳେ ତିନିଥର ତରଳ ଝାଡ଼ା ପରେ ମାଆ ତାର ବରଡ଼ା ପତର ପରି ଥରିବାକୁ ଲାଗିଲା । ମୋହନ ମୂର୍ତ୍ତି ଶଙ୍କି ଗଲା । ଚିତ୍କାର କରି କାନ୍ଦି ଉଠିଲା । ଭିକାରୁଣୀର ପୁଅ ହିସାବରେ ପରିଚୟ ଦେଇ କେଉଁଠୁ ସେ ସେଦିନ କାଳରାତିରେ ସାହାଯ୍ୟ ପାଇଥା'ନ୍ତା ? କିଏ ଦେଇଥାନ୍ତା ତା ମାଆକୁ ଔଷଧ ? କାହାକୁ ବା ସେ ଚିହ୍ନେ ? ମାଆ ତାର ଚାରିଆଡ଼େ ଅଣ୍ଡାଳିଲା । ବୋଧହୁଏ କିଛି ଖାଇବା ଉଦ୍ଦେଶ୍ୟରେ । କିଛି ନାହିଁ । ସେ ଦି'ଦିନ ହେଲା ମାଗିବାକୁ ଯାଇ ପାରିନି । ତା'ପରେ ପୁଣି ଗୋଟାଏ ତରଳ ଝାଡ଼ା । ବେଶ୍ ସେତିକି । ମୋହନ ମୂର୍ତ୍ତି କାନ୍ଦି କାନ୍ଦି ଯେତେ ଡାକିଲେବି ଆଉ ଜବାବ୍ ପାଇଲାନି । କିଛି ସେ ବୁଝି ପାରୁ ନଥାଏ । ମାଆ ତାର ଶୋଇଚି ନିଘୋଡ଼ ନିଦରେ । ଭୋକରେ ମୋହନ ମୂର୍ତ୍ତି ପେଟ ଆଉଟି ପାଉଟି ହେଉଚି । ପୁଣି ସେ ରାଗରେ ଦି'ବିଧା ତା ମାଆ ପିଠିରେ ଥୋଇ ତା ଚୁଟିକି ଟାଣିବାକୁ ଲାଗିଲା ।

ଜବାବ୍ ନାହିଁ । ବାହାରେ ରାତି ଗର୍ଜୁଚି । ମୋହନ ମୂର୍ତ୍ତିକୁ ଭାରୀ ଡ଼ର ମାଡ଼ିଲା ।



Digitized by PPRACHIN, SOA

ମାଆ ଛାତିରୁ ଲୁଗା କାନିଟାକୁ ଭିଡ଼ି ଆଣି ନିଜ ମୁହଁକୁ ଘୋଡ଼େଇ ଦେଲା । ମାଆ ଛାତି ପାଖରେ ମୁହଁ ଢାକି ଆଖିକୁ ଜୋର କରି ବୁଜି ନିର୍ଜୀବ ପରି ପଡ଼ି ରହିଲା ସେ । ବରଫଳ ଖାଇ ବାଦୁଡ଼ି ଗୁଡ଼ା ଉଡ଼ିଗଲେ । ଆହୁରି ଢାକି ହେଇ ଆସିଲା ମୋହନ ମୂର୍ତ୍ତି । ଦେହଢାକ ଝାଳ । ପେଟରେ ଭୋକ, ନିଦ ନାହିଁ ।

ସକାଳକୁ ମ୍ୟୁନିସିପାଲ୍‌ଟି ଗାଡ଼ି ଆସି ମା'କୁ ତାର ଟାଣି ଟାଣି ନେଇଗଲା । ସେ ମନଭରି କାନ୍ଦିଲା । ବିକଳ ହେଲା, ଧୂଳିରେ ଗଡ଼ିଲା । ଗାଡ଼ି ପଛେ ପଛେ ଖଣ୍ଡେ ଦୂର ଦଉଡ଼ିଲା । ଗାଡ଼ି ଧୂଳି ଉଡ଼େଇ ଆଖି ଆଗରୁ ବହୁତ ଦୂରକୁ ସେତେବେଳକୁ ଚାଲିଗଲାଣି ।

++ ଆଖିରୁ ଲୁହ ପୋଛିଲା ମୋହନ ମୂର୍ତ୍ତି । ଆହା ଭିକାରୁଣୀଟି କଣ ଖାଇବ ? ତା ଛୁଆଟି ? ଆଖି ଆଗରେ ତାର ନାଚିଉଠିଲେ ସେମିତି ଗୋଟିଏ ମାଆ ଆଉ ଗୋଟିଏ ଛୁଆ । ବୁଲି ବୁଲି ଭିକ ମାଗୁଚନ୍ତି । ମାଆ କାନି ଧରି ଛୋଟପିଲାଟି ପଛେ ପଛେ ଚାଲିଚି ।

ମୋହ୍‌ନ ମୂର୍ତ୍ତି ଅଥୟ ହୋଇ ପଡ଼ିଲା । ବିଜୁଳି ବେଗରେ ପଛକୁ ଫେରି କଲେଜ ଛକ ପାଖରେ ଭିକାରୁଣୀଟିକୁ ଖୋଜିଲା । ଲାଇଟ ପୋଷ୍ଟ ତଳେ ଛାପି ଛାପିକିଆ ଅନ୍ଧାରରେ ମାଆ ଛୁଆକୁ କ୍ଷୀର ଦେଉଚି । ଗୋଟିଏ ଥନକୁ ପାଟିରେ ଧରି ଆର ଥନକୁ ହାତରେ ଧରିଚି ନିର୍ବୋଧ ନିର୍ବିକାର ଶିଶୁଟି ।

ମୋହନ ମୂର୍ତ୍ତି ତା ପାଖୁ ଆଗେଇ ଗଲା । ମାଆର ଧ୍ୟାନକୁ ହଠାତ୍ ଭାଙ୍ଗି ପାଞ୍ଚ ଟଙ୍କିଆ ନୋଟ୍‌ଟାକୁ ତା ଛୁଆ ଉପରକୁ ପକେଇ ଦେଇ ସେ ଏକ ମୁହାଁ ହେଇ ଦୌଡ଼ିବାରେ ଲାଗିଲା । ପଛକୁ ଫେରି ଭିକାରୁଣୀଟିକୁ ଚାହିଁବାକୁ ତାର ଧୈର୍ଯ୍ୟ ନଥିଲା । ଆଶୀର୍ବାଦ କରି ଚାଲିଥାଏ ଭିକାରୁଣୀ । ସେ ଭାବୁଥାଏ ତା ଡାକ ଶୁଣି ଶୂନ୍ୟରୁ ବୋଧହୁଏ ଦେବତା ଜଣେ କିଏ ଓହ୍ଲେଇ ଆସିଲେ, ଆଉ ନୋଟ୍‌ଟା ଦେଇ ଚାଲିଗଲେ ।

ନିଜର ଛୋଟ ରହିବା ଘରର କବାଟ ଖୋଲି ମୋହନ ମୂର୍ତ୍ତି କ୍ଲାନ୍ତ ଦେହଟାକୁ ବିଛଣାରେ ଲୋଟେଇ ଦେଲା । ଏକ ଅସ୍ୱାଭାବିକ ତୃପ୍ତିରେ ପେଟ ତାର ପୂରି ଉଠୁଥିଲା । ଆଖିରେ ଜମିଲା ଲୁହ । ବାହାରେ ଝଡ଼ ମଥା ପିଟୁଚି । ଆକାଶ ସାରା ମେଘ ଘୋଟି ଆସିଲାଣି । ଘଡ଼ିକ ଆଗରୁ ଆକାଶରେ ଚାନ୍ଦ ହସୁଥିଲା । ବର୍ଷା ବୋଧହୁଏ ଏଇ ଆସିଯିବ । ମୋହନ ମୂର୍ତ୍ତି ଚାଦରଟାକୁ ଗୋଡ଼ଆଡୁ ମୁହଁ ଆଡକୁ ଟାଣି ଆଣିଲା ।





Digitized by PPRACHIN, SOA

# ଦହନ : ଦୋହନ

ନିଜ ଘରର ଛାତ ଉପରେ ବସି ବସି ସବ୍ୟସାଚୀ ଭାବୁଥିଲେ- ତାରକା ଖଚିତ ଆକାଶ ଆଡ଼କୁ ଚାହିଁ ରହିଲେ ଯେତେ ଯାହା ଦାର୍ଶନିକ ଭାବନା ମନରେ ଆସି କାହୁଁ କାହିଁ ପହଁଚିଯାଏ । କବି ମାତ୍ରେଇ ଦାର୍ଶନିକ- କିଏ ପରା କହିଥିଲେ । ସବ୍ୟସାଚୀ ବାବୁ ଭାବୁଥିଲେ- ଏତେ ଭାବନାର ହାବୁକାକୁ ଭାଷା ଦେଇ କବିତା ରଚନା କରିପାରିଲେ କେଡ଼େ ବଡ଼ ସାର୍ଥକତା ଜୀବନରେ ଆସନ୍ତା ! ହାତଛଡ଼ା ହୋଇଯାଆନ୍ତି କେତେ ଭାବ ଓ ଭାବନା । କେନ୍ଦ୍ରରୁ, ଗୋଟିଏ ବିନ୍ଦୁରୁ ସଞ୍ଚରିଯା'ନ୍ତି ପରିଧି ଆଡ଼େ- ପରିଧି ପୁଣି ବେଳେ ବେଳେ ବିସ୍ତାରିତ ହୋଇଯାଏ- କୁଣ୍ଡଳୀ ପରେ କୁଣ୍ଡଳୀ-ସ୍ଥିର ଜଳରାଶିର ତରଙ୍ଗ ପରି ମନର ଅସରନ୍ତି ଢେଉ । ତାକୁ ଧରିହୁଅନ୍ତା ଭଲା ଭାଷାର ଜାଲରେ !

ଏବେ ଉତ୍ତୀର୍ଣ୍ଣ ବୟସରେ ପତ୍ନୀଙ୍କର ସବୁବେଳେ ଅଭିଯୋଗ- ସବ୍ୟସାଚୀବାବୁ ସ୍ଥୁଳ- ତାଙ୍କର ସୂକ୍ଷ୍ମ ଅନୁଭବ ନାହିଁ, କଳା ରସିକତା ନାହିଁ । ତାଙ୍କ ମନରେ ଜୁଆର ଆସେନି...... ଏମିତି ନାନାଦି ତାତ୍ତ୍ୱିକ ଅଭିଯୋଗ ।

କିନ୍ତୁ ଏ ଅଭିଯୋଗ ଭିତରେ ବେଶୀ ବେଶୀ ଛନ୍ଦି ହୋଇ ଯା'ନ୍ତି ସବ୍ୟସାଚୀ । ଯେଉଁ ନାରୀଟି ଦିନେ ତାଙ୍କୁ ଦେଖି ଓ ଭେଟି କେତେ ଭାଗରେ ସ୍ପନ୍ଦିତ ହୋଇ ଉଠୁଥିଲା, ମୁହେଁଇ ଦେଉଥିଲା ତାର ପ୍ରେମର ନୈବେଦ୍ୟ, ହୁଏତ କଳାର ସୁରାକ ପାଇଲା ତାଙ୍କର ସାନ୍ନିଧ୍ୟରୁ- ସେ ତ ଆଉ ଆଜି ଚାରାଗଛଟିଏ ମାତ୍ର ନୁହେଁ । ଏକ ବିଶାଳ ମହୀରୁହ । କେତେ ଶାଖା ପ୍ରଶାଖାରେ ସେ ମାଡ଼ି ବସିଚି ଗୋଟାଏ ବିରାଟ ଆକାଶର ଅଂଶକୁ । ପୁଣି କେତେ ତଳକୁ ତାର ଚେର ମାଡ଼ି ଯାଇଚି । ସେ ସମାଜରେ ଖୁବ୍ ବଡ଼ ସମ୍ମାନିତ କଳାକାର । ତାର ପେଣ୍ଟିଙ୍ଗ୍ ପାଇଁ ଏକ୍‌ଜିବିସନ୍‌ରେ ପ୍ରବଳ ଭିଡ଼ । ଦେଶ ବିଦେଶରୁ ନିମନ୍ତ୍ରଣ । କେତେ କେତେ ଫଟୋ ଉଠେ । ଟେଲିଭିଜନରେ ଓ ରେଡ଼ିଓରେ କେତେ ସାକ୍ଷାତକାର - ଖବର କାଗଜରେ ସବୁବେଳେ ନାମ ପ୍ରକାଶ ପାଏ । ସବୁବେଳେ କୋଳାହଳ ଓ ଭିଡ଼ ।

ସବ୍ୟସାଚୀ ପତ୍ନୀଙ୍କ ପାଇଁ ମନେ ମନେ ଖୁବ୍ ଗର୍ବିତ ହୁଅନ୍ତି । ବେଳେବେଳେ ତାଙ୍କ ପାଖୁ ବି ଏସବୁ ସମ୍ମାନରୁ କିଛି କିଛି ଅଂଶ ଛିଟିକି ଆସେ । କିନ୍ତୁ କେଜାଣି କାହିଁକି ଗୋଟାଏ ବିଷଣ୍ଣତା ତାଙ୍କ ସମଗ୍ର ବ୍ୟକ୍ତିତ୍ୱକୁ ଆବୋରି ବସେ ।



Digitized by PPRACHIN, SOA

ପତ୍ନୀଙ୍କ କଥା ତୁହାଇ ତୁହାଇ ମନେପଡ଼େ- ତାଙ୍କର ଅବବୋଧ ନାହିଁ । କେଉଁ ଅବବୋଧ ? ପ୍ରେମର, ପ୍ରଣୟର, ଘେନାଘେନି ଦିଆନିଆର ? ନା ପାରିବାରିକ ଜୀବନର, ବଂଚିବାର ? କେଉଁ ଅବବୋଧ ?

ଅଜଗର ସାପ ପରି କର୍ମକକ୍ଷଣ ଦେହ ଧରି ତାଙ୍କୁ ପଡ଼ିରହିବାକୁ ହୁଏ । ମଧ୍ୟାହ୍ନର ଛାଇ ଯେ ଅପରାହ୍ନରେ ବହୁତ ଲମ୍ବା- ତାଙ୍କୁ ବି ଟପିଯାଏ ସେ ଛାଇ- କେତେ ବଡ଼, କେତେ ବିଶାଳ । ସେ ଭାବିପାରନ୍ତି ନାହିଁ । 'ସୂକ୍ଷ୍ମ ଅନୁଭୂତି' ଓ 'ଅବବୋଧ' ଏଇପରି କେତେକ ଶବ୍ଦ ଜାଲରେ ଛନ୍ଦି ହୋଇ ଯା'ନ୍ତି ।

ସେଦିନ ସିନେମା ହଲରେ ସବ୍ୟସାଚୀ ମହାନ୍ତି ରାମକୃଷ୍ଣଙ୍କ ପତ୍ନୀ ପୂଜା ଦେଖୁ ଦେଖୁ ଏକ ବିମୁଗ୍ଧ ଓ ବିରଳ ଅନୁଭୂତିରେ ଛୋଟ ପିଲାଟି ପରି କାନ୍ଦି ଉଠିଥିଲେ । ପାଖରେ ପତ୍ନୀ ନଳିନୀଦେବୀ ତାଙ୍କୁ ଚିମୁଟି ଦେଇ କହିଥିଲେ, "ଟିକିଏ ହେଲେ ଧୈର୍ଯ୍ୟ ବି ନାହିଁ । ପିଲାଙ୍କ ପରି କଣ କାନ୍ଦୁଚ ? ଯେ ଦେଖିବେ କଣ ଭାବିବେ ?"

ମାସ ମାସ ଧରି ଓ ବେଳେବେଳେ ବର୍ଷ ବର୍ଷ ଧରି ପତ୍ନୀ ନଳିନୀ ଦେବୀଙ୍କ ସହିତ ତାଙ୍କର କଥାବାର୍ତ୍ତା ନଥାଏ; ସତେ ଯେପରି ଦୁହେଁ ଦୁଇଟି ବିପରୀତ ମେରୁ । ଛୋଟ ଛୋଟ କଥାରୁ ପରିବାରରେ ଝଡ଼ ଉଠେ । ପ୍ରତ୍ୟେକ ଚାହାନ୍ତି ନିଜର ବଡ଼ତିକୁ ସାବ୍ୟସ୍ତ କରିବାକୁ । କେହି ନଇଁବେ ନାହିଁ । ପରିଣତିରେ ଦୀର୍ଘ ନୀରବତାକୁ ଅମୋଘ ଅସ୍ତ୍ରଭାବେ ସବ୍ୟସାଚୀ ପ୍ରୟୋଗ କରନ୍ତି ।

କିନ୍ତୁ ପ୍ରତ୍ୟେକଥର ତାଙ୍କର ପ୍ରତିଜ୍ଞା ଭଙ୍ଗ ହୁଏ- ନଳିନୀ ଦେବୀଙ୍କ ସହିତ ବୁଝାମଣା ନକଲେ ସଂସାର ଚଳେନା- ବେଶୀ ବ୍ୟସ୍ତ ହୁଅନ୍ତି ପିଲାମାନେ । ସେମାନେ ତ ଆଉ ଶିଶୁ ନୁହନ୍ତି- ସେମାନେ ସବୁ ବୁଝି ପାରନ୍ତି । ପୁଣି ନିମନ୍ତ୍ରଣ ଆସେ ସଭା ଓ ସମ୍ବର୍ଦ୍ଧନାର । ନଳିନୀ ଦେବୀଙ୍କୁ ସାଙ୍ଗରେ ନେଇ ସବ୍ୟସାଚୀଙ୍କୁ ଯିବାକୁ ହୁଏ । ସମାଜର ବି ତ ଦି'ଟା ମସ୍ତବଡ଼ ଆଖି ଓ କାନ ଅଛି ! ବେଳେବେଳେ ଯେ ନଳିନୀଦେବୀ ଏକାକୀ ନଯା'ନ୍ତି ତା' ନୁହେଁ । କିନ୍ତୁ ସେଥର ସବ୍ୟସାଚୀଙ୍କୁ ବନ୍ଧୁ ମହଲରେ ଓ ଜଣାଶୁଣା ଲୋକଙ୍କୁ ବହୁତ କୈଫିୟତ ଦେବାକୁ ହୁଏ । ବାଘ କାମୁଡ଼ାଠାରୁ ଘୋଷରା ବାଧେ ।

ସବ୍ୟସାଚୀ ଛାତ ଉପରେ ଅନ୍ଧାରରେ ଆକାଶକୁ ଚାହିଁ ଭାବୁ ଭାବୁ ନିଜକୁ ଖୋଜନ୍ତି । କି ଅବବୋଧ ତାଙ୍କର ନାହିଁ, କି ସୂକ୍ଷ୍ମ ଅନୁଭବ ନାହିଁ ବୋଲି ପତ୍ନୀଙ୍କର ଦୋଷାରୋପ ?

ସେ କଳାକାର ନୁହନ୍ତି ସତ, କିନ୍ତୁ କଳାକୁ ବେଶ୍ ଭଲ ପା'ନ୍ତି, ବୁଝନ୍ତି ଓ ବୁଝାଇ ପାରନ୍ତି । ତାଙ୍କରି ଉଦ୍ୟମରେ କେତେ କଳାକାର ପରିଚିତ ହୁଅନ୍ତି, ସମାଜରେ ପ୍ରତିଷ୍ଠା ପା'ନ୍ତି । ପିକାଶୋ, ଭାନ୍‌ଗଗ୍‌ଠାରୁ ଅବନୀନ୍ଦ୍ରନାଥ ଠାକୁର ରାମକିଙ୍କରଙ୍କ ପର୍ଯ୍ୟନ୍ତ ସମସ୍ତଙ୍କୁ ସେ ପ୍ରାଣେ ପ୍ରାଣେ ଅନୁଭବ କରିଚନ୍ତି, ବୁଝିଚନ୍ତି ଓ କେତେ ମନୋଗ୍ରାମ୍ ପ୍ରସ୍ତୁତ



Digitized by PPRACHIN, SOA

କରିଚନ୍ତି ସେମାନଙ୍କ ପାଇଁ ! କେଉଁଠି ତେବେ ଅବବୋଧର ଅଭାବ ଜନିତ ବିଡ଼ମ୍ବନା ?

ନଳିନୀ ଦେବୀ କଳାକାର ସତ- କିନ୍ତୁ ଛବି ଆଙ୍କିବା ବେଳର କାଳିସୀ ତାଙ୍କଠାରୁ ଓହ୍ଲାଇଗଲେ ମନେ ହୁଅନ୍ତି ଏକାନ୍ତ ସାଧାରଣୀ- ଯାହା ଭିତରେ ନିଜକୁ ପ୍ରଚାର କରିବାକୁ ପ୍ରବଳ ମୋହ । ପୁରସ୍କାର ଓ ଫୁଲମାଳ ପାଇଁ ସବୁବେଳେ କଳାକାରମାନେ ଲୋଭାୟିତ । ନଳିନୀ ଦେବୀଙ୍କ ଅଭିଯୋଗ- ତାଙ୍କ ସ୍ୱାମୀଙ୍କ ପାଇଁ ତାଙ୍କ ଆର୍ଟର ଚାହିଦା କମିଯାଉଚି-କାରଣ ଆର୍ଟ କ୍ରିଟିକ୍‌ଭାବେ ତାଙ୍କ ସ୍ୱାମୀଙ୍କର ଶତ୍ରୁ ବହୁତ । ହୁଏତ କେବେ କେବେ ନଳିନୀ ଦେବୀଙ୍କ ପେଣ୍ଟିଙ୍ଗ୍ ଠାରୁ ବହୁ ନ୍ୟୂନତର ଆର୍ଟ ପୁରସ୍କୃତ ହୋଇଯାଇଛି । ନିଜସ୍ୱ ପ୍ରଭାବରେ କେହି କେହି ଅଧିକାର କରି ବସିଛନ୍ତି କିଛି କିଛି ପୁରସ୍କାରର ସିଂହାସନ । ଯେତେ ବୁଝାଇଲେ ମଧ୍ୟ ନଳିନୀ ଦେବୀ ବୁଝିବାକୁ ପ୍ରସ୍ତୁତ ନୁହନ୍ତି । ତାଙ୍କର ସିଧାସଳଖ ଅଭିଯୋଗ- ତାଙ୍କ ସ୍ୱାମୀଙ୍କ ପାଇଁ ତାଙ୍କର ସମ୍ଭାବନା କମିଯାଉଛି ।

ଏ ସିଧାସଳଖ ଅଭିଯୋଗର ଉତ୍ତର ଦେବାକୁ ସବ୍ୟସାଚୀ ବାବୁଙ୍କର ଧୈର୍ଯ୍ୟ ନଥିଲେ ବି ସେ ବଡ଼ ହତାଶ ହୋଇ ପଡ଼ନ୍ତି । ତାଙ୍କର ସ୍ପଷ୍ଟ ମନେ ପଡ଼େ ବିବାହର ଅବ୍ୟବହିତ ପୂର୍ବରୁ ସେ ଅଙ୍କିଥିବା ଦୁଇଟି ଆର୍ଟକୁ କୁମାରୀ ନଳିନୀଙ୍କ ନାମରେ ପ୍ରଥମେ ଲୋକଲୋଚନକୁ ଆଣିଥିଲେ । ତା' ପରେ ପରେ ନଳିନୀ ଦେବୀ ଧରିଲେ ତୂଳି ଓ କାନଭାସ୍ । ସେ ଖୁବ୍ ଶୀଘ୍ର ସ୍ୱାମୀଙ୍କୁ ଟପି ଗଲେ- ତେଣୁ ସବ୍ୟସାଚୀ ବାଧହୋଇ ସବୁଦିନ ପାଇଁ ତୂଳି ଛାଡ଼ିଦେଲେ ।

ଏବେ ବି ସେଦିନର କେହି କେହି ବନ୍ଧୁଙ୍କ ଅଭିଯୋଗ ମନେ ପଡ଼େ- ସେମାନେ ସ୍ପଷ୍ଟ କହି ବୁଲୁଥିଲେ ସବ୍ୟସାଚୀ ନିଜ ପେଣ୍ଟିଂ ଗୁଡ଼ିକୁ ନଳିନୀ ଦେବୀଙ୍କ ନାମରେ ପ୍ରଦର୍ଶନୀରେ ଟାଙ୍ଗିଦେଇଚି । କିନ୍ତୁ ସେମାନେ ପ୍ରାୟ ପରେ ପରେ ବୁଝିଗଲେ ଯେ କଳାକାର ହିସାବରେ ସବ୍ୟସାଚୀଙ୍କ ଠାରୁ ନଳିନୀ ଦେବୀ ବହୁତ ଉଚ୍ଚରେ । ସେ ତୂଳି ଧରିଲେ ଜୀବନରେ ସ୍ପନ୍ଦନ ଉଠେ, କବିତାର ଝଙ୍କାର ଶୁଭେ । କିନ୍ତୁ ନିଜ ରାଜ୍ୟର ସଂକୀର୍ଣ୍ଣ ପରିବେଶ ଭିତରେ ସେ ଉଠି ପାରନ୍ତି ନାହିଁ। ତାଙ୍କୁ ସିଧାସଳଖ କେହି ସମାଲୋଚନା ନକଲେ ବି ସବ୍ୟସାଚୀଙ୍କୁ ଆକ୍ରମଣ କରନ୍ତି । ଘରୁ ଓ ବାହାରୁ ଦୁଇପଟରୁ ଧକ୍‌କା ଖାଇବାକୁ ସବ୍ୟସାଚୀଙ୍କ ଜନ୍ମ- ସେ ଭାବିନିଅନ୍ତି ତାହାହିଁ ବୋଧହୁଏ ଅନ୍ଧମୁହାଣି ତାଙ୍କର ଭାଗ୍ୟ- ଯାହାର କିଛି ନିର୍ଦ୍ଦିଷ୍ଟ ସଂଜ୍ଞା, ସୀମା ବା ସରହଦ ନାହିଁ। ଅଚାନକ ଅପମାନ ଓ କ୍ୱଚିତ୍ ପ୍ରଶଂସା ଭିତରେ ତାଙ୍କୁ ବଞ୍ଚିବାକୁ ପଡ଼େ- ଜୀବନ ପାଇଁ କମ୍ପ୍ରୋମାଇଜ୍- ବଞ୍ଚିବାକୁ ହୁଏ କେବଳ ଆଡଜଷ୍ଟମେଣ୍ଟ୍ ଭିତରେ । ଜୀବନର ସବୁଠାରୁ ସାର୍ଥକ ସଂଜ୍ଞା ବୋଧହୁଏ ହେବ "ଆଡ୍‌ଜଷ୍ଟମେଣ୍ଟ୍" ଏବଂ "କମ୍ପ୍ରୋମାଇଜ" ।

ନଳିନୀ ଦେବୀ ନିୟମିତ କିଛି କିଛି ରୋଜଗାର କରନ୍ତି ଏଇ ଆର୍ଟ ମାଧ୍ୟମରେ । ତାଙ୍କର ତେଣୁ ସ୍ୱାଭାବିକ ଦମ୍ଭୋକ୍ତି ଯେ ସେ ତାଙ୍କ ଆୟରେ ହିଁ ବଞ୍ଚୁଚନ୍ତି, ଆୟାସ ଭିତରେ



Digitized by PPRACHIN, SOA

ରହିଛନ୍ତି । ନଚେତ୍ କେବଳ କିରାଣୀ ସବ୍ୟସାଚୀଙ୍କ ଦରମାରେ ଚଳିବା କାଠିକର ପାଠ ହୁଅନ୍ତା । କିରାଣୀ ଜୀବନ ଯେ କି ଦୁର୍ବିସହ ।

ଆହତ ହୁଅନ୍ତି ସବ୍ୟସାଚୀ । ସେ ତ କିରାଣୀ- ଏମିତି ଆସି ବୃଦ୍ଧ ହେଲେଣି- ଆଉ ବର୍ଷେ ଦି'ବର୍ଷ ପରେ ପେନ୍‌ସନ ନେବେ । ଲମ୍ବା ଚାକିରୀ ଜୀବନର ସମୟଗୁଡ଼ା ଯେତିକି ଶେଷ ହୋଇ ଆସୁଚି ନଳିନୀ ଦେବୀଙ୍କ ଆକ୍ରମଣ ସେତିକି ବଢୁଚି । ଅବହେଳା ଓ ଅବଶୋଷ ଭିତରେ କୌଣସି ମତେ ମଧ୍ୟବିତ୍ତର ଜୀବନ ଦୀପ ନିଭିଗଲେ ଯାଏ । ସେ ବା ଆଉ କ'ଣ ହୋଇ ପାରିଥା'ନ୍ତେ ? ନିଜ ଉଦ୍ୟମରେ କଳାର ସମାଲୋଚକ ଭାବରେ ଯେତିକି ପ୍ରଶସ୍ତି ଅଛି ତାହା ତାଙ୍କୁ ଆର୍ଥିକ ଦିଗରୁ ବେଶୀ କିଛି ସମ୍ଭାବନା ଦେଇନାହିଁ । ତେଣୁ ପତ୍ନୀଙ୍କର ଅଭିଯୋଗ ହୁଏତ ସତ୍ୟ ।

କିନ୍ତୁ କାହିଁକି ଏ ଅଭିଯୋଗ ? ସେଦିନ ଟି.ଭିରୁ 'ପରିଚୟ' ଫିଲ୍ମ ଦେଖୁ ଦେଖୁ କେତେ ଥର ଲୁଚେଇ ଲୁଚେଇ ଆଖିରୁ ଲୁହ ପୋଛୁ ଥିଲେ ସବ୍ୟସାଚୀ । କଳା ପାଇଁ ଦାରିଦ୍ର୍ୟକୁ ବରଣ କରିନେଲା ଅମୀରର ପୁଅ- ଦୀର୍ଘ ସତର ବର୍ଷ ଧରି ଅମୀର ବାପଠାରୁ ଦୂରରେ ରହିଲା- ହେଲେ ବାପାଠାରୁ କିଛି ବି ସାହାଯ୍ୟ ଲୋଡ଼ିଲାନି । ଦୁରାରୋଗ୍ୟ ରାଜଯକ୍ଷ୍ମାର ଶୀକାର ହୋଇ ଔଷଧ ଓ ପଥ୍ୟ ନ ପାଇ ଅସମୟରେ ଝଡ଼ିଗଲା ସିନା, ନିଜ କଳାର ସମ୍ମାନକୁ ଲୁଣ୍ଠିତ ହେବାକୁ ଦେଲାନାହିଁ । ସଂଗୀତକୁ ଆନାଦର କରୁଥିବା ବାପ ସହିତ ତାର ସାଲିସ ନାହିଁ ।

କିନ୍ତୁ ଆଜିର ଶିଳ୍ପୀ, ଆଜିର କବି ଚାହେଁ ଆଶୁ ପ୍ରତିଷ୍ଠା ଓ ପୁରସ୍କାର । ଏଇ ଅବବୋଧ ? ନଗ୍ନ ଆଉ ନୀଚ ? ସବ୍ୟସାଚୀ ଭାବନ୍ତି ଜଣେ ସଚୋଟ କଳାକାର ପଛରେ ପୁରସ୍କାର ଗୋଡ଼େଇ ଗୋଡ଼େଇ ଯିବ । ସେ ଯେତେ ତାକୁ ଅବହେଳା କରିବ ସେ ସେତିକି ସେତିକି ତାକୁ ଅନୁସରଣ କରୁଥିବ । ସେ ଜଣେ କିରାଣୀ ହେଲେ ବି ଅର୍ଥ ପାଇଁ ତାଙ୍କର ମୋହ କେବେ ନଥିଲା, ଆଜି ବି ନାହିଁ । ମିଳିଲେ ଭଲ, ନ ମିଳିଲେ ନାହିଁ ।

କିନ୍ତୁ ନଳିନୀ ଦେବୀ ଆଜିକାଲି ତାଙ୍କୁ ହିଁ ସବୁ ପାଇଁ ଦୋଷ ଦିଅନ୍ତି । ସେ ସୂକ୍ଷ୍ମ ସ୍ପନ୍ଦନଟିକୁ ଧରି ନ ଧରୁଣୁ ସବ୍ୟସାଚୀ ତାକୁ କୁଆଡ଼େ ହାତଛଡ଼ା କରି ଦେଉଚନ୍ତି । କ'ଣ ଏହାର ମାନେ ? ସବ୍ୟସାଚୀ ଭାବନ୍ତି- ଏ ପୃଥିବୀଟା ସାରା ସମସ୍ତେ ବୋଧହୁଏ ପ୍ରତିଷ୍ଠା ପାଗଳ । ପ୍ରତିଷ୍ଠା ପାଇଁ ସଂସାର ଆଉ ସବୁ ସମ୍ପର୍କକୁ ପଛକୁ ପକେଇ ମଣିଷ ଅହର୍ନିଶ ଧାଇଁଛି- ନିଜକୁ ବିଜ୍ଞାପିତ କରିବା ପାଇଁ ତାର ଲୋଭ ଏତେ ବେଶୀ ଯେ ଯେତେ ମୋହଭଙ୍ଗ ହେଲେ ବି ତାକୁ ସେ ଛାଡ଼ିପାରୁନି । ଆହୁରି ଆହୁରି ସେଇ ମୋହରେ ଛଟପଟ ହେଉଚି ଓ ଅନ୍ୟକୁ ସନ୍ତୁଳିତ କରୁଚି ।

ସବ୍ୟସାଚୀ ପତ୍ନୀଙ୍କୁ ଓ ନିଜକୁ ବୁଝିବାକୁ ଚେଷ୍ଟା କରୁଥିଲେ । କେଉଁଠି ରହିଯାଉଚି ତଥାପି ବୁଝାମଣାର ସୂତ୍ର- ଏତେ ଅଡୁଆତଡୁଆ ଏତେ ବାଟବଣା ଯେ ସେ



Digitized by PPRACHIN, SOA

ଅନ୍ଧଗଳିରେ ପଶିଲେ ଆଉ ବାହାରିବାର ବାଟ ନାହିଁ । ଆବେଗ ଆଉ ତର୍କ- ସମୟକ୍ରମେ ଗୋଟିକୁ ମାଡ଼ି ବସିବାକୁ ଅନ୍ୟଟି ସବୁବେଳେ ବ୍ୟଗ୍ର । ମନର ଅଭାବକୁ ଯୁକ୍ତିର ଛାଟରେ ପିଟିପିଟ ଖଣ୍ଡିଆ ଖାବଡ଼ା କରିବା ସାର ହୁଏ ।

ବେଳେବେଳେ ସବ୍ୟସାଚୀ ଭାବନ୍ତି ସୁଧାର ଗାଈଟି ପରି ସେ ଠିଆ ହୋଇଯିବେ- ଶିଙ୍ଗ ହଲେଇବେନି କି ନାତ ମାରିବେନି । ନିଅରେ ସଂସାର ଯେତେ ପାରୁଚ ଦୋହନ କରିନିଅ । ସ୍ତ୍ରୀ, ପିଲା, ନାତି, ଅଣନାତି ଆଉ ଯେତେ ଯେତେ ଆସିବେ ଆଗତ ଓ ଅନାଗତ । ସମସ୍ତେ ଆସି ନିଜ ନିଜର ଚାହିଦା ମତେ ଶୋଷିନିଅ- ଚିପୁଡ଼ି ନିଅ । ରସ ସରିଗଲେ ଆଉ ଶୁଖିଲା କାଠରୁ କ'ଣ ବା ପାଇବ ? ଅନ୍ତତଃ ବେଳ ଥାଉ ଥାଉ ଦୋହନ କରିନିଅ ଆଉ ଦହନରୁ ମୁକ୍ତି ଦିଅ ।

ସେ ସିନା ଭାବନ୍ତି ଏପରି..... ହେଲେ ମୁକ୍ତି କାହିଁ ?ଏ ପୃଥିବୀରୁ ମରିବାଯାଏ ମୁକ୍ତି ନାହିଁ । ସ୍ୱାର୍ଥପର ପୃଥିବୀ କହିବ ଯେ ଆମେ ଦୁହିଁବୁ- ତୁମେ ଯନ୍ତି ହେଲେ କେତେ, ରହିଲେ କେତେ, ମଲେ କେତେ ? ଆମେ ଆମ କାମ କରିଯିବୁ । ତୁମେ କିଆଁ ଆମକୁ ଆଣୁଥିଲ ପୃଥିବୀକୁ ? ଆମ ରାସ୍ତା ଏଣିକି ଏକତରଫା ? ଆମ ପାଖରେ ଆମ ଚାହିଦା ବଡ଼- ତୁମର କେଉଁ ଜିନିଷ ଭାଙ୍ଗିଗଲା କି ଦରଜ ହେଲା ତାକୁ ବୁଝିବାକୁ ଆମର ବେଳ କାହିଁ ? ସେ ସବୁ ବୁଝିବା ଆମର କାମ ନୁହେଁ । ଯଦି ନ ପାରିବ ବୋଲି ଜାଣିଥିଲ ଆଣୁଥିଲ କାହିଁକି ? ପତ୍ନୀ ନଳିନୀ ଦେବୀ ଜାଳିଦିଅନ୍ତି ଇନ୍ଧନ । ପିଲାଏ ଭୁଲ କ'ଣ କହୁଚନ୍ତି ? କିରାଣୀ ହୋଇ ଏଡ଼େ ବଡ଼ ବଡ଼ ଭାବନା କାହିଁକି ? ସୂକ୍ଷ୍ମ ଅବବୋଧ ନାହିଁ, ସ୍ପନ୍ଦନ ନାହିଁ, ଅନୁଭବ ନାହିଁ- ପୂରାପୁରି ଏ ଗୋଟାଏ ଗୋଲକଧନ୍ଦା । ପ୍ରତିଷ୍ଠିତ କଳାକାର ସୁନ୍ଦରୀ ସୁଶ୍ରୀ ନଳିନୀ ଦେବୀଙ୍କ ମୁହଁରେ ଏ କଥା ଆଦୌ ଶୋଭା ପାଏନି । କି ଚିତ୍ର ସେ ଆଙ୍କନ୍ତି ତେବେ ? ସବ୍ୟସାଚୀ ବାବୁଙ୍କ ମନରେ ସନ୍ଦେହ ଜମାଟ ବାନ୍ଧେ । ଭାବନ୍ତି ଆଧୁନିକ କଳାହେଲା ତେବେ କ୍ଷିଣିକର ଅବବୋଧ ଓ ତା'ରି ପରିପ୍ରକାଶ । ସେଥିରେ ସ୍ଥାୟୀ ବା ଚିରାୟତ ବୋଲି କିଛି ନାହିଁ । ପରସ୍ପର ବିପରୀତମୁଖୀ ଚିନ୍ତା ଓ ଚେତନାକୁ ଧରି ରଖିବାର ନାମ ଆଧୁନିକତା । କାରଣ ଏହାହିଁ ତାର ଅବଚେତନର ବାସ୍ତବତା- ଯାହା ସରିଆଲିଷ୍ଟ କବି ବା ଚିତ୍ରକାରମାନେ କହିଗଲେ- ଅନୁଷଙ୍ଗ ସାହାଯ୍ୟରେ ମଗ୍ନ ଚୈତନ୍ୟର ଉଦ୍‌ବୋଧନ- ଏଇଆ ତ ?

ମଣିଷ ଜୀବନର ବିପରୀତମୁଖୀ ଜିଜ୍ଞାସା ଓ ଜିଘାଂସା ଭିତରେ ସବ୍ୟସାଚୀ ବେଳେବେଳେ ଦାରୁଭୂତ ପାଲଟି ଯାନ୍ତି । ପୃଥିବୀ ପ୍ରତି ତାଙ୍କର ଆସ୍ଥା ତୁଟି ତୁଟି ଆସେ । କ'ଣ ଏ ପୃଥିବୀ-କେବଳ ସ୍ୱାର୍ଥର ସମ୍ପର୍କ? ଯାହା ପ୍ରତୀତ ହୁଏ ତାହା କେବଳ ପ୍ରତାରଣା ? ନିହିତ ଅର୍ଥକୁ ଆପାତ ଅର୍ଥ ବାଟ ଆଗୋଳି ବସେ । ଜୀବନର ସ୍ୱପ୍ନ ସବୁକୁ ପରିବେଶର ଧୂସର ବାସ୍ତବତା ଗିଳି ପକାଏ ।



Digitized by PPRACHIN, SOA

ଝଡ଼ ଭିତରେ ତଥାପି ବଞ୍ଚି ରହନ୍ତି ସବ୍ୟସାଚୀ । ଗୋପୀବାବୁ କୁହନ୍ତି ଜୀବନ ସୁନ୍ଦର, ସରସ ଓ ସାର୍ଥକ । ସେଥିପାଇଁ କେତେ ଦୁଃଖ ଓ ଯନ୍ତ୍ରଣା ଭିତରେ ବି ଛଟପଟ ହୋଇ ତାଙ୍କ ଚରିତ୍ରମାନେ ଆଗାମୀ କାଲିର ସ୍ୱପ୍ନ ଦେଖନ୍ତି । ଜୀବନରେ ଅର୍ଥ ଅଛି- ବଞ୍ଚିବାରେ ଆନନ୍ଦ ଅଛି । ଏମିତି ନାନା ଦାର୍ଶନିକ କଥାର ଜିଜ୍ଞାସା ଭିତରେ ତାଙ୍କ ଚରିତ୍ରମାନେ ଉଠନ୍ତି ପଡ଼ନ୍ତି, ପଡ଼ନ୍ତି ଉଠନ୍ତି- ଉବୁଟୁବୁ ହୁଅନ୍ତି- ଶିଙ୍ଘିବୁଡ଼ା ଦେଇ ପାଣି ପିଇ ବି ପୁଣି ଉଠିବସନ୍ତି ଦରମରା ହୋଇ ।

ସୂକ୍ଷ୍ମ ଅବବୋଧ ନଥିବାର ପୁନଃପୌନିକ ଅଭିଯୋଗ ଛାଟ ପରି ତାଙ୍କ ପିଠିରେ ଆଘାତ ହିଏ । ସବ୍ୟସାଚୀ ଭାବନ୍ତି ଏଇ ପୃଥିବୀରେ ହିଁ ସବୁ ସମ୍ଭବ- ସବୁ ଶଠତା ଓ ଧୂର୍ତ୍ତତାର ଏ ପୃଥିବୀ- ପୁଣି କିଛି ଆନନ୍ଦ ଓ ଉପଭୋଗର ଅଳୀକତାକୁ ମୁହେଁଇ ଦେଇ ଏଇ ପୃଥିବୀ ତାଙ୍କୁ ଦୋହନ କରି ଚାଲିଛି । ତତ୍‌ଜନିତ ଦହନରୁ ମୁକ୍ତି କାହିଁ ?





Digitized by PPRACHIN, SOA

# ଇତିଶ୍ରୀ

ମତେ ବିବାହ କରି ନବବଧୂ ଭାବରେ ଆମ ଘରକୁ ଯେଉଁଦିନ ମନ୍ଦାକିନୀ ଆସିଲେ ସେ ଜାଣିନଥିଲେ ମୋର ଚାରିବର୍ଷର ଝିଅଟିଏ ଅଛି ।

ମୋର ଆଦରର କନ୍ୟା ଇତିଶ୍ରୀ- ଡାକ ନାମ ଇତି । ଆମ ବିରାଟ ସଂସାରର କୋଳାହଳ ଭିତରେ ଇତିର ଇତିକଥା ବୁଝିବାକୁ ସେ ପ୍ରଥମେ ପ୍ରୟାସ କରି ନଥିଲେ । ସବୁ ପିଲାଙ୍କ ସହିତ ସେ ଖେଳେ, ବୁଲେ, ନାଚେ, କୁଦେ । କିଏ ତାକୁ ଖେଳୁ ଖେଳୁ ମାଇଲେ ମୋ'ରି ପାଖରେ ଆସି ଅଳିକରେ, ଅଭିଯୋଗ ବାଢ଼େ ।

"ବାଆ, ମତେ ଟୁନା ମାଇଲା ।"

ଟୁନା ମୋ'ର ବଡ଼ଭାଇଙ୍କ ପୁଅ । ଟିକିଏ ଦୁଷ୍ଟ ହେଲେବି ବିଚକ୍ଷଣ ବୁଦ୍ଧିମାନ । ମୁଁ ଇତି ମୁହଁରେ ସ୍ନେହର ଚୁମାଟିଏ ଦେଇ କୁହେ, "ଭାଇକି ମାରିବା, ତୁ ଯା ।"

ବିବାହର ଚାରୋଟି ମାସ । ଆମ ଘରର କେହି ଇତିର ଜନ୍ମ ରହସ୍ୟ ମନ୍ଦାକିନୀକୁ ନ କହିବାକୁ ମୁଁ ତାଗିଦା କରିଦେଇଥିଲି । ତା' ପରେ ମନ୍ଦାକିନୀର ପୂର୍ଣ୍ଣ ଧାରଣା ହୋଇଗଲା, ଇତି ତାଙ୍କ ବଡ଼ ଯାଆଙ୍କ କନ୍ୟା । ମତେ ତେଣୁ ସେ ବା' ଡାକିବା ଅଯୌକ୍ତିକ ନୁହେଁ । ତେଣୁ ସେ ଆଗ୍ରହରେ ଇତିକୁ କୋଳକୁ ନେଉଥିଲେ- ଠିକ୍ ଆଉ ଆଉ ଛୋଟପିଲାଙ୍କ ପରି ।

ସେଦିନ ଇତିକୁ ଭାରି ଜର ହୋଇଥାଏ । ଆମ ଶଯ୍ୟାରେ ଗୋଟିଏ ଧାରରେ ମୁଁ ଇତିକୁ ଉଠେଇ ଆଣି ଶୁଆଇ ଦେଇଥାଏ । ତା' ଦେହରେ ତାତି । ମୁଁ ବାରମ୍ବାର ତା' ଛାତିରେ ହାତରଖି ଉତ୍ତାପ ପରୀକ୍ଷା କରୁଥାଏ । ମନରେ ମୋର ଆଶଙ୍କା ।

ଘରକାମ ସାରି ମନ୍ଦାକିନୀ ଆସିଲେ । ମୁଁ ଲକ୍ଷ୍ୟକରିଚି ସେ ପ୍ରଥମେ ଟିକିଏ ଅସହିଷ୍ଣୁ ହେଲେ । ତା'ପରେ ମୋର ମ୍ଳାନ ମୁଖ ଓ ନିସ୍ତେଜ କରୁଣ ଆଖିଦୁଇଟିକୁ ଦେଖି ସେ ନିଜର ସ୍ୱାଭାବିକ ଅଭିମାନକୁ ଲୁଚେଇ ନେଲେ । ମୁଁ ଇତିର ପାଦରେ ଆସ୍ତେ ଆସ୍ତେ ହାତ ବୁଲାଉ ଥାଏ । ଭୟଙ୍କର ତାତି । ଜର ରେମିସନ୍ ହେଉନି । କିଛି ଥଣ୍ଡା ପାଣି ଆଉ ଗୋଟିଏ ପଟି ଆଣିବାକୁ ମନ୍ଦାକିନୀଙ୍କୁ ନିର୍ଦ୍ଦେଶ ଦେଲି ।

ମନ୍ଦାକିନୀ କହିଲେ, "ଭାଇ ଶୋଇଗଲେଣିକି ? ତାଙ୍କ ରୁମ୍‌ରେ ଛାଡ଼ି ଆସୁନା- ଅପା ବ୍ୟସ୍ତ ହେଉଥିବେ ।"

ମୋତେ ହସମାଡ଼ିଲା । ଅପା ବ୍ୟସ୍ତହେବାର କୌଣସି କାରଣ ନାହିଁ । ମନେ ମନେ ଭାବିଲି- ବ୍ୟସ୍ତ ହୁଏତ ମନ୍ଦାକିନୀ ହେଉଚନ୍ତି । ତାଙ୍କର ନାରୀ ପ୍ରାଣର ମାତୃତ୍ୱ



Digitized by PPRACHIN, SOA

ଆକାଙ୍‌କ୍ଷା ଏବେବି ଅତୃପ୍ତ । ନାରୀମାଆ ହେବାକୁ ଚାହେଁ- ଚାହେଁ ନିଜର ପେଟରୁ କାଢ଼ି, ରକତ ନିଗାଡ଼ି ଗଢ଼ିବ ଗୋଟିଏ ମାଟିର ଚେତନାଶୀଳ ପିତୁଳା । ନିଜର ସବୁ ନିଷ୍ଠା ଆଉ ମମତା ଦେଇ ତାକୁ ବୃଦ୍ଧିର ଗୌରବ ଦେବ । କିନ୍ତୁ ଅପର ଏକ ସନ୍ତାନକୁ ସେ ପାଳିବାକୁ ଅସମର୍ଥ । ସେ ଜନୟତ୍ରୀ ହେବାକୁ ଚାହେଁ-କିନ୍ତୁ ପାଳାୟତ୍ରୀ ନୁହେଁ ।

ମୁଁ ମନ୍ଦାକିନୀଙ୍କୁ କହିଲି- "ଇତି ମୋ ଛଡ଼ା ଆଉ କେଉଁଠି ତା'ର ଏ ଅସହାୟ ଅବସ୍ଥାରେ ଆଶ୍ୱାସନା ପାଇବନି । ତା' ଦେହର ତାତି କାହା ମନରେ ଉଦ୍‌ବେଗ ଆଉ ବ୍ୟାକୁଳତା ଆଣିବନି " ।

ମନ୍ଦାକିନୀ ମୋତେ ଜିଜ୍ଞାସୁ ଆଖିରେ ଚାହିଁଲେ । ତାଙ୍କ ଆଖିରେ ଜାଣିବାର ପ୍ରୟାସଠାରୁ ତୃଷାତୁର ଏକ ଆତ୍ମାର ପ୍ରତିଫଳନ ମୁଁ ଅଧିକ ମାତ୍ରାରେ ଅନୁଭବ କଲି ।

ତୁମକୁ ନିଦ ଆସିଲାଣି ବୋଧହୁଏ । ଆଜି ବହୁତ ଖଟିଚ । ଟିକିଏ ଶୋଇପଡ଼ିବ ଯାଅ । ଇତି ଦେହ ବେଶୀ ହେଲେ ମୁଁ ତୁମକୁ ଉଠେଇବି । ମୁଁ ଏଇଠି ତା'ରି ପାଖରେ ଅଛି ।

ମନ୍ଦାକିନୀ ମୋ ଆଚରଣରେ ଏକ ଅସ୍ୱାଭାବିକତା ଅନୁଭବ କଲେ । ବୋଧହୁଏ ସେ ଇତି ପ୍ରତି ମୋର ସ୍ନେହ ଦେଖି ଈର୍ଷା କରୁଥିଲେ ।

ମନ୍ଦାକିନୀ ଖଟଉପରୁ ତକିଆଟା ନେଇ ସେଇ ଘରର ଆଉ ଗୋଟିଏ ଖଟ ଉପରକୁ ଶୋଇବାକୁ ଗଲେ । ମୁଁ ତାଙ୍କ ଗତିବିଧି ଲକ୍ଷ୍ୟ କରୁଥାଏ । କିନ୍ତୁ ଇତିର ଚିନ୍ତା ମୋ ମନକୁ ସଂପୂର୍ଣ୍ଣ ରୂପେ ଆଚ୍ଛନ୍ନ କରିଥାଏ । ଭାବୁଥାଏ- ଏତେ ସ୍ୱାର୍ଥପର ନାରୀ ଜାତି । ଏଇ ଯଦି ହୋଇଥାନ୍ତା ତାଙ୍କ ପେଟର ସନ୍ତାନ- ନିଶ୍ଚିନ୍ତରେ ସେ କଣ ଶୋଇ ପାରିଥାନ୍ତେ ? ଆଖିରୁ ତାଙ୍କର ଲୁହଧାର ଛୁଟୁଥାନ୍ତା । ପ୍ରାଣ କାନ୍ଦିଉଠୁଥାନ୍ତା । ଅତନ୍ଦ୍ରିତ ରହି କେତେ ସେ ଡାକୁଥାନ୍ତେ ଠାକୁରଙ୍କୁ । କେତେ ମନାସୁଥାନ୍ତେ ଭୋଗ ଓ ନୈବେଦ୍ୟ ।

ଇତିକୁ ଚାହିଁଲି । ମୁହଁ ତା'ର ନିଷ୍ପ୍ରଭ ଦିଶୁଚି । କିନ୍ତୁ ତା'ର ଆଖି ଦୁଇଟିରେ ଲାଗିରହିଚି ଶିଶୁସୁଲଭ ଚଞ୍ଚଳତା । ଆଖି ଢ଼ଳଢ଼ଳ । କଇଁଫୁଲର କେଶର ପରି ସୁନ୍ଦର ମୁହଁଟିରେ ଝାଲୁରୁ ଝାଲୁରୁ ବାଳ କେରାକ ଇତସ୍ତତଃ ପଡ଼ିଚି । ମୁହଁରେ ଦୁଇଚାରି ମଶାଖିଆ ଦାଗ । ମୋର ସତର୍କତା ସତ୍ତ୍ୱେ ତା'ର ରୋଗଶୀର୍ଣ୍ଣ ମୁହଁରେ ମଶା ଦଂଶନ କରି କେତେବେଳୁ ଉଡ଼ିଗଲାଣି ବୋଧହୁଏ ।

ଇତିକୁ ନିରେଖି ଚାହିଁଲି । ସେ ବି' ତିନିଥର ବା' ବା' କହି ଜିଭ ବୁଲେଇଲା । ମୁଁ ଅନୁଭବ କଲି ତାକୁ ଶୋଷ ହେଉଚି । ପାଟିରେ ମିଶ୍ରି ପାଣି ଦେଲି । ସେ ପିଇଲାନି । ମୁଁ ତା' ଛୋଟ କୁଞ୍ଚୁକୁଞ୍ଚିଆ ବାଳ କେରାକ ହାତରେ ଆଉଁସୁ ଆଉଁସୁ ପଚାରିଲି- "କେମିତି ଲାଗୁଛି ଇ......ତି.... ।" ସେ ମୋ ଆଡକୁ ହାତ ବଢ଼େଇଲା । ମୁଁ ଅତି ଅଧୀର ହୋଇ ତା' ଗାଲରେ ଚୁମାଟିଏ ଦେଲି । ତାକୁ ଟିକିଏ ହସେଇବା ପାଇଁ ମୁଁ ତା କୁନି ହାତଟିରେ ଚୁଉକୁମିଷି ଖେଳିଲି । ଇତି ଏଇ ଖେଳକୁ ଭାରି ଭଲ ପାଏ । ତାକୁ ଆରାମ ଲାଗିଲା ବୋଧହୁଏ । କ୍ରମେ ତା ଆଖି ଦୁଇଟି ନିଦରେ ମୁଦି ହୋଇ ଆସିଲା ।



Digitized by PPRACHIN, SOA

ମୁଁ ସେମିତି ତା' ମୁହଁଟିକୁ ଚାହିଁଥାଏ । ଅଳ୍ପ ଦୂରରେ ମନ୍ଦାକିନୀ ଆର ଖଟରେ ଶୋଇଚନ୍ତି । କିନ୍ତୁ ତାଙ୍କୁ ନିଦ ହେଉ ନଥାଏ ।

ମନ୍ଦାକିନୀଙ୍କୁ ପାଖକୁ ଡାକିଲି । ସେ ହାଇମାରି ଆସିଲେ । ମୋର ଭାରି ଇଚ୍ଛା ହେଲା ସେ ଯେତେ ଅସହିଷ୍ଣୁ ହୁଅନ୍ତୁ ପଛେ ଏଇ ମୋର ଆଦରର ଇତିର ଇତିକଥା ଆଜି ତାଙ୍କୁ ଶୁଣେଇବି । ତାଙ୍କର ନିଶ୍ଚିନ୍ତ ମନରେ ମୋ ପ୍ରତି ଯେତେ ଅବିଶ୍ୱାସ ଆସୁ ବା ଏଇ କଥାଟିର ଗୋପନୀୟତା ପାଇଁ ଯେତେ ଦ୍ୱନ୍ଦ୍ୱ ଖେଳୁ ତଥାପି ମୁଁ ତାଙ୍କୁ କହିବି, ନିଶ୍ଚୟ କହିବି ।

ମୋ ପାଖରେ ମନ୍ଦାକିନୀ ବସିଲେ । ଇତି ଦେହରେ ହାତ ମାରିଲେ । ଝାଳ ଢ଼କଉଚି ।

ମୁଁ ମୋ ଲୁଗା ଫେରରେ ଇତି ଦେହରୁ ଝାଳ ପୋଛିଲା ବେଳେ ଭାବୁଥିଲି- ମନ୍ଦାକିନୀ ତାଙ୍କରି ଲୁଗା କାନିରେ ହୁଏତ ଇତି ଦେହରୁ ଝାଳ ପୋଛି ଦିଅନ୍ତେ । ମନ୍ଦାକିନୀ ଏତିକି କରି ପାରିଲେନି ? ଅନ୍ତତଃ ସେ ତ ଅଭିନୟ କରିପାରି ଥା'ନ୍ତେ ? କାରଣ ସାମନାରେ ତାଙ୍କର ପତି, ଚଲାପଥର ବାଲୁଚରରେ ଯା'ର ପାଦ ସହିତ ପାଦ ମିଳେଇ ତାଙ୍କୁ ଜୀବନସାରା ଚାଲିବାକୁ ହେବ, ତା'ରି ପାଖରେ ସେ ଏତିକି ଅଭିନୟ କରିପାରିଲେନି ? ହେଉପଛେ ତାହା ଛଳନା !

ମୁଁ ଇତିକୁ ଚାହିଁଚି । ତାର ଔଷଧ ଖାଇବା ବେଳ ହେଲା । କାନ୍ଥ ଘଣ୍ଟାକୁ ଚାହିଁଲି- ସମୟ ଦୁଇଟା । ଇତି ପାଟିରେ ହୋମିଓପାଥି ଔଷଧର ତୃତୀୟ ଡୋଜ୍‌ଟି ଦେଲି । ନିଦ ବାଉଳାରେ ଇତି ମିଠା ଔଷଧ ଖାଉ ଖାଉ ଅସ୍ଥିର ହୋଇ ଅତି କ୍ଷୀଣ କଣ୍ଠରେ ତିନିଥର "ବୋଉ", "ବୋଉ" ଡାକିଲା । ତା'ପରେ କଡ଼ ଲେଉଟେଇ ଆଖିବୁଜି ଶୋଇଲା ।

ମୁଁ ମନ୍ଦାକିନୀକୁ ଚାହିଁଲି । ଦୃଷ୍ଟିରେ ତାଙ୍କର ଏକ ବିରାଟ ପ୍ରଶ୍ନବାଚୀ । କିନ୍ତୁ ସାହସ କରି ସେ କିଛି ପଚାରି ପାରୁନାହାଁନ୍ତି ।

"ଇତି ବୋଉକୁ ତାର ଡାକୁଚି । ତୁମ ଭାଉଜଙ୍କୁ ଡାକୁନା । ସେ ତାକୁ କୋଳକୁ ନିଅନ୍ତୁ ।"

"ଇତିର ମାଆ ମୋ ଭାଉଜ ବା ତୁମ ବଡ଼ ଯାଆ ନୁହନ୍ତି ମନ୍ଦି ।"- ଏକ ଉଚ୍ଛୁଳା ଆବେଗରେ ହଠାତ୍ ସତ କଥାଟି କହିଦେଲି ।

ମନ୍ଦାକିନୀ ଚମକି ପଡ଼ିଲେ । ତାଙ୍କର ସ୍ୱାଭାବିକ ନାରୀମନ ଗୋଟାଏ ରହସ୍ୟ ଜାଲ ଭିତରେ ଛଟପଟ ହେବାକୁ ଲାଗିଲା । ସେ ମତେ ପ୍ରଶ୍ନିଳ ଆଖିରେ ଚାହିଁ ରହିଲେ । ମୁଁ ତାଙ୍କ ଅନ୍ତରର ଅସୂୟା ଆଉ ଜିଜ୍ଞାସା ଯୁଗପତ୍ ଅନୁଭବ କଲି ।

"ମୁଁଇ ତା'ର ବାପା, ମୁଁଇ ତା'ର ମାଆ । ମୋର ବ୍ୟତୀତ ତା'ର ନିଜର ଆଉ କେହି ନାହିଁ ।" ମନ୍ଦାକିନୀ ବିସ୍ମିତ ହୋଇ ଚାହିଁ ରହିଲେ । ମନ୍ଦାକିନୀ ମୋତେ ବୋଧହୁଏ ଘୃଣା କଲେ । ତାଙ୍କ ସହଜ ନାରୀ ମନ ମଣିଷ ଜୀବନର ଏଇ ଦୁର୍ଭେଦ୍ୟ



Digitized by PPRACHIN, SOA

ରହସ୍ୟ ଭେଦିବାକୁ ଏତେଟିକେ ଧୈର୍ଯ୍ୟ ବି ଦେଖାଇଲାନି । ସେ ହଠାତ୍ ଉଠିଯିବାକୁ ବସିଲେ- ରାଗରେ, ଘୃଣାରେ ଆଉ ବିରକ୍ତିରେ ।

ମୁଁ ତାଙ୍କ ହାତକୁ ଜୋର୍ କରି ଧରିଲି ଓ ଅନୁନୟ କରି କହିଲି "ଏମିତି ବ୍ୟସ୍ତ ହେଉଚ କାହିଁକି ?" ସେ ମୋତେ ସଫେଇ ଦେଲେ "ଭାରି ନିଦ ଆସିଲାଣି । ଭୋରରୁ ଉଠି ବାସୀକାମ କରିବାକୁ ହେବ ।"

ମତେ ଭାରି ହସ ମାଡ଼ିଲା । ଚିନ୍ତା ଆଉ ଚୈତନ୍ୟର ଦୌଡ଼ ପ୍ରତିଯୋଗିତାରେ ମନ୍ଦାକିନୀ ଏକ ଦୟନୀୟ ବିଫଳତା । ଭୀରୁ ତାଙ୍କର ମନ, ଅଥଚ ଅନବଦମିତ ତାଙ୍କର ଅଭିଳାଷ ।

ମୁଁ ଟିକିଏ ନିଜକୁ ବିଶ୍ଳେଷଣ କଲି, ମନ୍ଦାକିନୀ ବାଧ ଶିଶୁପରି ବସିଚନ୍ତି । ମୁଁ ଭାବିଲି, ଅଠର ବର୍ଷର ମନ୍ଦାକିନୀ ପାରିବେ ପଚିଶ ବର୍ଷର ମାଆ ହେଇ ? ହଠାତ୍ ତାଙ୍କ ମନରେ ମୁଁ ଉଦୟ କରିପାରିବି ସାତବର୍ଷର ଏକ ବ୍ୟବଧାନର ପରୀକ୍ଷା ! ତାଙ୍କରି ହାତକୁ ଟେକିଦେବି ସନ୍ତାନଟିଏ । ପୁରୁଷ ଭାବରେ ଆଉ କେତେଦିନ ନାରୀର ଦାୟିତ୍ୱ ମୁଁ ବହନ କରିପାରିବି ? ଅଠର ବର୍ଷର ତରୁଣୀ । ଆଖିରେ ହରିଣୀର ଭ୍ରୂଭଙ୍ଗୀ; ଚାଲିରେ ଗଜର ମନ୍ଥର ଗତି, ମନରେ ପକ୍ଷୀର ବିଚିତ୍ର ଡ଼େଣା- ହୋଇପାରିବେ ସେ ହଠାତ୍ ସ୍ଥିର ଆଉ ଅଚଞ୍ଚଳ ! ମୋର ଆଦରର ଇତିକୁ ମାଆ ପରି ପବିତ୍ର ସ୍ନେହ ଢାଳିଦେଇ ପାରିବେ ?

ଇତିକୁ ଚାହିଁଲି ନିଘୋଡ଼ ନିଦରେ ଶୋଇଲାଣି । ତା ଦେହରେ ଚାଦରଟାକୁ ଭଲ କରି ଘୋଡ଼ାଇଦେଲି । କହିଲି "ଇତି ଗୋଟାଏ କୁଷ୍ଠୀର କନ୍ୟା ମନ୍ଦି । ତା'ର ବାପା କିଏ ସିଏ କିମ୍ବା ମୁଁ କେହି ଜାଣିନୁ । ତା' ବୋଉ କେବଳ ଜାଣିଥିବ କିଏ ତାର ବାପା । ସେ ଦିନେ ମୋ ବସା ସାମ୍ନାକୁ ଭିକ ମାଗି ଆସିଥିଲା । ମୁଁ ସେତେବେଳେ କଟକରେ ଏମ୍.ଏ. ପଢୁଥାଏ । କଟକ ରେଳଷ୍ଟେସନ୍ କଲୋନୀ ମୋ ବସା ପାଖୁ ପ୍ରତି ସୋମବାର ଦିନ କାଳିଆବୋଦାର କୁଷ୍ଠାଶ୍ରମରୁ ଅନେକ ରୋଗୀ ଭିକମାଗି ଆସନ୍ତି ।

ଦୁଇବର୍ଷ ତଳର କଥା । ମୋ ବସା ଆଗରେ କୁଷ୍ଠୀଟିଏ ତା'ର ଏଇ ସୁନ୍ଦର ଛୁଆଟିକୁ କୋଳରେ ଧରି ଅତି ଆକୁଳ ଭାବରେ ମୋଠାରୁ ଚାଉଳ ମୁଠିଏ ପାଇଁ ଅଳି କରୁଥିଲା । ଛୁଆଟିକୁ ଚାହିଁଲି, ଭାରି ସୁନ୍ଦର । ତା ମୁହଁ ଉପରକୁ ମୁଣ୍ଡର ଚୂନା ଚୂନା କେତୋଟି କେଶ ଝୁଲିପଡ଼ିଥାଏ । ସେ ସେତେବେଳେ ମାଆ ସ୍ତନରୁ କ୍ଷୀର ପିଉଥାଏ ।

ତା ମାର ଆକୁଳ ଆବେଦନ ଶୁଣି ସେ ମୋତେ ଚାହିଁ ରହିଲା, ଅନେକ ବେଳ । ମୁଁ ଦେଖିଲି ତା ମୁହଁରେ ଅସଂଖ୍ୟ ନାଲି ନାଲି ମଶା କାମୁଡ଼ା ଦାଗ । ତା' ମାଆ ଗଳିତ କୁଷ୍ଠରେ ହତଶ୍ରୀ ହୋଇପଡ଼ିଥାଏ । ଗୋଡ଼ ଆଙ୍ଗୁଠି ଆସ୍ତେ ଛିଡ଼ି ଛିଡ଼ି ଆସୁଥାଏ ।

ମୁଁ ସେ କୁଷ୍ଠୀଟିକୁ ପଚାରିଲି-"ଏ ଛୁଆଟିକୁ ଅନାଥ ଆଶ୍ରମରେ ଛାଡ଼ି ଦେଉନା ? ନଇଲେ ତାକୁ ବି ଏମିତି ରୋଗ ହେବ ।"

ଅତି କରୁଣ ଭାବରେ ମାଆଟି କହିଲା-"ବାବୁ.... ଏ ଦୁଧ ଛାଡ଼ିନି । ମୁଁ ଦରଖାସ୍ତ ଦେଇଚି । ମଞ୍ଜୁର ହେଲେ ଛାଡ଼ିଦେଇ ଆସିବି ।"



Digitized by PPRACHIN, SOA

ତା ମାଆ ଅନ୍ତରର ନାହିଁ ନାହିଁ ଭାବ ମୁଁ ବୁଝିଲି । ତାକୁ ବହୁତ ବୁଝେଇଲି । ସେ ଅନୁଭବ କଲା ଆଉ ଶେଷରେ ଆଖିରୁ ଲୁହ ପୋଛୁ ପୋଛୁ କହିଲା "ବାବୁ, ହାତୀ ବନସ୍ତରେ ରହିଲେ ବି ସେ ରଜାଙ୍କର । ପିଲାଟା ବଞ୍ଚିରହୁ । କେଉଁ ପାପରୁ କେଜାଣି ମୋ'ର ତ ଏ ଦଶା ହେଲା । ତାକୁ ଯଦି ଏଇ କାଳରୋଗ ହୁଏ...." ସେ ଆଉ କହି ପାରିଲାନି । ମୁଁ ତା'ର କୋହ ଆଉ କାରୁଣ୍ୟ ଦେଖି ତାକୁ ସେଦିନ ଦଶୋଟି ଟଙ୍କା ଦେଇ ବିଦାୟ ଦେଲି ।

ମନ୍ଦାକିନୀଙ୍କୁ ଲକ୍ଷ୍ୟ କଲି ସେ ମୋ କଥା ଶୁଣି ଆହୁରି ଘୃଣା କରିବାକୁ ଆରମ୍ଭ କରିଛନ୍ତି । କାରଣ ସେ ଇତିଠାରୁ ଟିକିଏ ଦୂରକୁ ଘୁଞ୍ଚି ବସିଲେ । କୁଷ୍ଠରୋଗୀର କନ୍ୟା ତାଙ୍କର ସୁରଭିତ ଶଯ୍ୟାରେ ଶୋଇଚି । ଦେହଯାକ ତା'ର ରୋଗର ଜୀବାଣୁ । ସେ ବି ତା' ମାଆପରି ହେବ କୁଷ୍ଠରୋଗୀ ।

ତା'ପରେ ମୁଁ କହିଲି- ଆଉ ଦିନେ । ଖୁବ୍ ସକାଳୁ ସକାଳୁ ତା'ର କୁଷ୍ଠରୋଗୀ ମାଆଟି ଏଇ ସୁନ୍ଦର ଶିଶୁଟିକୁ ଆଣି ମୋ' ଦୁଆର ମୁହଁରେ ଶୁଆଇ ଦେଲା । ଅତି କରୁଣ ଭାବରେ କାନ୍ଦି କାନ୍ଦି କହିଲା-"ବାବୁ ତୁମେ ତାକୁ ଅନାଥାଶ୍ରମରେ ଛାଡ଼ିଦିଅ । ତୁମେ ବାବୁଲୋକ । ଏ କାମ ତୁମେ ଏକା ପାରିବ । ତୁମର କୋଟି ପରମାୟୁ ହେବ ।"

+ + + + + + + + +

ଛୁଆଟା ମତେ ଆଦରି ନେଲା । ତାର ଖଣ୍ଡିଆ ଖଣ୍ଡିଆ ଭାଷାରେ ମୋତେ ବାପା ବୋଲି ଡାକିଲେ ମୋ ପ୍ରାଣ ଆନନ୍ଦରେ ଉଦ୍‌ବେଳିତ ହୋଇ ଉଠୁଥିଲା । କିପରି ଏତେ ସୁନ୍ଦର ଛୁଆଟାକୁ ନିର୍ମମ ଭାବେ ମୁଁ ଅନାଶ୍ରାମରେ ଛାଡ଼ି ଦେଇଥାନ୍ତି ?

ମନ୍ଦାକିନୀ କଣ କହିବେ ବୋଲି ଉପକ୍ରମ କରୁଥିଲେ । କିନ୍ତୁ ମୋ ମୁହଁରେ ବେଦନାର ଗୋଟାଏ କୃଷ୍ଣଛାୟା ସେ ଅନୁଭବ କଲେ ।

ତୁମେବି ପାରି ନଥାନ୍ତ, ଯଦି ମୋରି ଅବସ୍ଥାରେ ସେତେବେଳେ ତୁମେ ଥା'ନ୍ତ । ଗୋଟିଏ ତିନିବର୍ଷର ଛୋଟ ଶିଶୁକୁ ନିଶ୍ଚିତ ବିଶ୍ୱାସ ତଳୁ କେଉଁ ଆଶାରେ ଅନିଶ୍ଚିତ ଅନାଥାଶ୍ରମକୁ ମୁଁ ଠେଲି ଦେଇଥାନ୍ତି ? ଆମ ଘରେ ମୁଠାଏ ତ ହେଲେ ଖାଇବାକୁ ଥିଲା । ଆଉ ତା' ଯଦି ନ ମିଳିଥାନ୍ତା, ମୋରି ଭାଗରୁ ମୁଁ ତାକୁ ଖାଇବାକୁ ଦେଇ ବଡ଼ କରିଥାନ୍ତି- ମାତୃସ୍ନେହରୁ ବଞ୍ଚିତା ହୋଇ ମଧ୍ୟ ସେ ସବୁ ପାଇଚି । ତାର ଅଭାବ ନାହିଁ । ସେ ଆଉ ଆଉ ପାଞ୍ଚ ସାତ ଝିଅଙ୍କ ପରି ଜଣେ । ରାସ୍ତାରୁ ମୁଁ ତାକୁ ସାଉଁଟି ଆଣିଚି । ମୋ ଜୀବନର ଏକ ଆକସ୍ମିକ ମୁହୂର୍ତ୍ତରେ ଅତି ଅନାହୂତ ଓ ଅପ୍ରତ୍ୟାଶିତ ଭାବରେ ସେ ଛନ୍ଦି ହୋଇ ଯାଇଚି । ଏ ଘରେ ରହିବାର ଗୋଟିଏ ବର୍ଷ ବିତିଗଲାଣି । ସେ ଜାଣେ ମୁଁ ତାର ବାପ । ଟୁନା ଭାଉଜଙ୍କୁ ବୋଉ ଡାକିବାର ଦେଖି ସେ ବି ବେଳେବେଳେ "ବୋଉ" ଡାକେ; କିନ୍ତୁ ସେ ତାକୁ ଅନାନ୍ତିନି । ସ୍ନେହରେ କୋଳକୁ ଟେକିନେଇ ତା କଅଁଳିଆ ଗାଲରେ ଚୁମାଟିଏ ଦିଅନ୍ତିନି । ଇତି ବେଳେବେଳେ କାଖ ହେବାକୁ କାନ୍ଦିଲେ ସେ କାମର ଛଳନା କରି ପଳେଇ ଯାନ୍ତି ।



Digitized by PPRACHIN, SOA

+++ ମନ୍ଦାକିନୀ ମୋତେ ସେଦିନ କଟାକ୍ଷ କରି କହିଲେ ଇତିକୁ ଅନାଥାଶ୍ରମରେ ଛାଡ଼ିଦେଇ ଆସ । ଆମେ ମଝିରେ ମଝିରେ ତା ଖବର ଯାଇ ବୁଝି ଆସୁଥିବା ।

ମନ୍ଦାକିନୀକୁ ଚାହିଁଲି, ନିହାତି ସାଧାରଣୀ ମନ୍ଦାକିନୀ ନୁହନ୍ତି । ନିଜର ବୁନିଆଦୀ ଓ ବଂଶ ଗୌରବ ପ୍ରତି ତାଙ୍କର ଗର୍ବ ଅଛି । ସେ ଗୋଟାଏ କୁଷ୍ଠରୋଗୀର ଝିଅକୁ ନିଜ କୋଳରେ ସ୍ଥାନ ଦେଇ ପାରିବେନି । ତାଙ୍କ ଅନାଗତ ସନ୍ତାନମାନଙ୍କ ମଧ୍ୟରେ ମୋ ସ୍ନେହର ପ୍ରଥମ ଭାଗ ଇତିପାଇଁ ବିନିଯୋଗ ହେବାର ଦେଖି ସହିପାରିବେନି ।

ମୁଁ ମନ୍ଦାକିନୀଙ୍କ ମନର ସ୍ୱରୂପ ବେଶ୍ ଠଉରେଇ ପାରିଲି । ସେ ଘୃଣାରେ ନାକ ଟେକୁଚନ୍ତି । ତାଙ୍କର ଶଯ୍ୟାରେ ଶୋଇଛି ଇତି । ଆଉ ତାରି ମୁହଁରେ ମନ୍ଦାକିନୀଙ୍କ ପତି ଟାଣି ଦେଇଛନ୍ତି କେତେ ଆଶିଷର ଚୁମ୍ବନ ରେଖା ।

ମୁଁ ଟିକିଏ ମନ୍ଦାକିନୀକୁ ହସେଇବାକୁ କହିଲି- ଇତି ତୁମରି କୋଳରେ ବସିବାକୁ ଧ୍ରୁବ ପରି ବନରେ ତପସ୍ୟା କରିବ । ତାପରେ ସେ ଯଦି ତୁମ କୋଳରେ କେବେ ଜନ୍ମନିଏ- ତୁମେ ତ ମନା କରି ପାରିବନି ?

ମନ୍ଦାକିନୀ ସାମାନ୍ୟ ହସିଲେ । କିନ୍ତୁ ସେ ହସ ପ୍ରାଣର ଅନୁମୋଦନର ନୁହେଁ, ଘୃଣା ଓ ତାଚ୍ଛଲ୍ୟର ।

ଇତି ଦେହରେ ହାତ ମାରିଲି । ଜର କମିଗଲାଣି । ତା ମୁଣ୍ଡବାଳଗୁଡ଼ିକୁ ହାତରେ ସଜାଡ଼ି ଦେଲି ।

ମନ୍ଦାକିନୀ ଧୀରେ ଉଠି ଯାଉଥିଲେ । ନାରୀର ନିର୍ମୋକ ତଳେ ତାଙ୍କ ଭିତରର ଆହତ ହିଂସ୍ରମନଟା ମୋତେ ଖଣ୍ଡିଆ ଖାବଡ଼ା କରିବାକୁ ସତେ ଯେପରି ଉଦ୍ୟତ ହେଉଥିଲା ।

ରାତି ଚାରିଟା- ମୁଁ ଇତି ପାଖରେ ଶୋଇ ପଡ଼ିଲି ।





Digitized by PPRACHIN, SOA

# ଗୋଟିଏ ବୋକ, ବିନ୍ଦୁଏ ଲୁହ

"ବୋଉ କହିଲା, ବୁଲୁ ଯେଉଁ ବେତ ବାଡ଼ିଟା ଆଣିଥିଲା ଦିଅ ।"

ମୁଁ ବିସ୍ମିତ ହେଲି । ବୋଉ କହିଲା ବେତବାଡ଼ି........ !

ଭାରି ବ୍ୟସ୍ତ ହୋଇ ବଜାରକୁ ବାହାରୁଥିଲୁ । ମାଇଁ ସେଦିନ ରାତି ଗାଡ଼ିରେ ଘରକୁ ଚାଲିଯିବେ । ତାଙ୍କର ମେଡ଼ିକାଲ କାମ ସରିଚି । କେତେଟା ସଉଦା ବଜାରରୁ କିଣିବାର ଥାଏ ।

"ହଉ, ତୁ ଯା' ବୁଢ଼ା । ବଜାରରୁ ଫେରୁଁ, ଖୋଜି ଦେଇ ଆସିବି ।"

ବୁଢ଼ା ଚାଲିଗଲା ।

+++ ପନ୍ଦର ଦିନ ତଳେ ମୋ ବସାରେ ଅନାହୂତ ଭାବରେ ମାଇଁ ଆସି ପହଞ୍ଚନ୍ତି । ମୁଁ ବସାରେ ଚାବି ଦେଇ ଯାଇଥାଏ ସେକେଣ୍ଡ୍ ସୋ ସିନେମା ଦେଖି ।

ମାଇଁ ଅସୁବିଧାରେ ପଡ଼ି ନାହାନ୍ତି । ପଡୋଶୀ ବାବୁଘର ସ୍ତ୍ରୀ ତାଙ୍କୁ ଅନାହୂତ ଡାକି କେଇ ଘଣ୍ଟା ପାଇଁ ବିଶ୍ରାମ ଦେଇଚନ୍ତି । ମୁଁ ଫେରିଲି ରାତି ବାରଟାରେ ।

ସେଇଦିନ ମାଇଁଙ୍କ ସହିତ ତାଙ୍କର ପରିଚୟ- ଅତି ଅପ୍ରତ୍ୟାଶିତ, ଅତି ଆକସ୍ମିକ ।

+++ ପଡ଼ିଶା ଘରର ସ୍ତ୍ରୀ । ଦେହରୁ ରକ୍ତର ଦ୍ୟୁତି ନିଭିଚି । ମୁହଁରେ ବୟସର ଦାଗ ଅତି ସ୍ପଷ୍ଟ । ଛୁଆଟିଏ ପେଟରୁ କାଢ଼ି ସେ ମାଟିରେ ପକେଇ ନାହାନ୍ତି । ସେ ବୟସ ତାଙ୍କର ଯାଇଚି । ପ୍ରତି ମାସର ବ୍ୟାକୁଳ ପ୍ରତୀକ୍ଷା ବର୍ଷ ବର୍ଷ ବିତିଚି । ସୀମନ୍ତରେ ତାଙ୍କର ସିନ୍ଦୂର- ଦୀର୍ଘ ସତର ବର୍ଷର ଏକ ଉଦ୍ଧାର ସ୍ମାରକୀ ।

ସତର ବର୍ଷ । ଜୀବନର ଆଖିହଜା ଭାବନା ଭିତରେ ସତରଟି ବସନ୍ତର ଉଦୟ ଓ ଅସ୍ତର ସମାରୋହ । ସ୍ୱାମୀ ଅବ୍ବାନ୍ଧବ ଅତିଷ୍ଠ ହୋଇ ନାହାନ୍ତି । ମନରୁ ତାଙ୍କର ଆଶା ମରିଚି; କିନ୍ତୁ ଭିତରୁ ମରିନି ଆଶାତୀତର ମୋହ । ଆହା–କୋଡ଼ ତାଙ୍କର ମଣ୍ଡିଲାନି । ଛୁଆଟିଏର କୁଆଁ କୁଆଁ ରାବରେ ଘର ତାଙ୍କର ପୂରି ଉଠିଲାନି । ଛୋଟ ଛୁଆର ନାଲି ଟୁକୁଟୁକୁ ଓଠରେ ବୋକଟାଏ ସେ ଦେଇପାରିଲେନି ।

ଅବ୍‌ବାନ୍ଧବ ଚାହିଁଲେ । ମମତା ଦେବୀ ବୁଲୁକୁ କୋଡ଼ରେ ବସେଇଚନ୍ତି । ମୁହଁରେ ତାଙ୍କର ଲାଗିରହିଚି ଗଭୀର ତୃପ୍ତିର ଉଜ୍ଜ୍ୱଳ ରେଖା । ତା ଛୋଟ ପାପୁଲିଟିକୁ ତଳେ ଥୋଇ ଖେଳୁଚନ୍ତି-

"ଟୁଉକୁ ମୁଷୀ...... ଟୁକେଇ ମୁଷୀ ।"

"ହୁଆ....." ହସି ହସି ଲୋଟି ଯାଉଚି ତିନି ବର୍ଷର ଶିଶୁ ବୁଲୁ । ଆହୁରି



Digitized by PPRACHIN, SOA

ଆଗ୍ରହରେ ହାତଟିକୁ ତଳେ ଥୋଇ ଦେଉଚି । ମୁଗ୍ଧ ଆଖିରେ ଚାହିଁ ରହିଚି ମମତା ଦେବୀଙ୍କୁ ।

ପୁଣି ନୂଆ ଖେଳର ଉଦ୍ଭାବନ । ମାତୃତ୍ୱର ଅବଦମିତ ଆକାଙ୍‌କ୍ଷା ତଳୁ ମମତା ଦେବୀ ସତେ ଯେପରି ଜୀବନର ସବୁ କିଛି ଅତୃପ୍ତ ବାସନାକୁ ପରୀକ୍ଷା କରିନେବାକୁ ବ୍ୟଗ୍ର ।

"ପାନ ଦିଅଉଁ"

"ଚୂନ ଦିଅଉଁ"

"ଗୁଆ ଦିଅଉଁ"

ହସୁଚି ବୁଲୁ । ଆସନ୍ନ ଏକ ପ୍ରତ୍ୟାଶାର ଅନାଗତ ପୁଲକ । ନୂଆ ମଣିଷଟି ଆସ୍ତେ ହାତ ତଳେଇ ଆଣୁଚି ।

"କାଳିଆ ବଳଦ ଗଲା ଗଲା...... ।"

କାଖରେ ତା'ର ଭାରି ଖର । ହସି ଲୋଟିଯାଉଚି ବୁଲୁ ।

ଅବ୍‌ଜବାନ୍ଧବ ଚାହିଁଲେ । ମମତା ଦେବୀଙ୍କ କୋଡ଼ରେ ତିନି ବର୍ଷର ଶୁଭ୍ର ଶିଶୁଟିଏ । ତାକୁ ଛାତିରେ ଖୁବ୍ ଜୋର୍‌ରେ ଚାପି ଧରିଚନ୍ତି । ଶିଶୁର ମଥା ଉପରେ ମମତା ଦେବୀଙ୍କ ଛାତି ଚାପି ହୋଇ ରହିଚି । ଶିଶୁଟି ନିର୍ଭୀକ ଭାବରେ ହାତ ବୁଲେଇ କ'ଣ ଯେପରି ଖୋଜୁଚି ।

ଲାଜରା ହେଲେ ମମତା ଦେବୀ । ଅବ୍‌ଜବାନ୍ଧବ ଚାହିଁ ରହିଚନ୍ତି ।

"କେଡ଼େ ଚଗଲା ଟୋକା । ଭାରୀ ଦୁଷ୍ଟ ହେଉଚି ।" ମମତା ଦେବୀ ବୁଲୁ ଗାଲକୁ ଚିପିଦେଲେ । ମୁହଁ ତାଙ୍କର ପାଟଳ ହେଲା ।

ଅବ୍‌ଜବାନ୍ଧବଙ୍କ ମୁହଁରେ ଏକ ଅନନୁଭବ ତୃପ୍ତିର ରେଖା ସ୍ପଷ୍ଟ ହୋଇ ଉଠିଲା । ପଲକପାତରେ ତାଙ୍କ ଆଖିରେ ଜମି ଉଠିଲା ଲୁହ ।

+++"ସୁନାଟାପରା, ଆଉ ଗୁଣ୍ଡାଏ ଖାଇନେ । ଏ ଗୁଣ୍ଡାକ ମୋର; ଏଇଟି ତୋ' ବାପର । ମିଆଉଁ..... ମିଆଉଁ..... ଦୁଧଭାତ ଖାଉଁ..... ଖାଇ ଦେରେ ବୁଲୁ । ବୁଲୁ ଆମର ସୁନାପିଲା । ବୁଲୁ ଆଗ, ସୁନା ପାଗ । ବୁଢ଼ା ପଛ, ଘୁଅ ପୋଛ ।"

ବୁଢ଼ା- ବନ୍ଧ୍ୟା ନାରୀର ଅତୃପ୍ତ ଆତ୍ମାର ଏକ ସାଂପ୍ରତିକ ଆଶ୍ୱାସନା । ମମତା ଦେବୀ ଜନୟିତ୍ରୀ ନୁହନ୍ତି, ପାଳୟିତ୍ରୀ । ସଂସାରର ଘୋରଣା ଭିତରେ ଗୋଟିଏ ଅଣ୍ଡିରା ପିଲାର ହସକୁ ଆପଣାର କରିବାକୁ ପ୍ରାଣପାତ ତାଙ୍କର ପ୍ରୟାସ । ବାର ବର୍ଷର ବୁଢ଼ା- ବଡ଼ ଭଉଣୀର ଚତୁର୍ଥ ସନ୍ତାନ । ବୁଢ଼ା ବୋଉ ଟେକି ଦେଇଚନ୍ତି ଓ ସେ ହାତପାତି ଗ୍ରହଣ କରିଚନ୍ତି ।

"ମମତା, ବୋଉ କିଏ, ମାଉସୀ କିଏ । ତତେ ବୁଢ଼ା ଦିନରାତି ଝୁରେ ଲୋ । ତୋ' କୋଳରେ ପିଲାଦିନେ ସେ କେତେ ହଗିଚି, ମୁତିଚି । ତୋ' ଠେଇଁ ତା'ର ଭାରି ଲୋଭ । ତୁ ତା'ର ଜୀବନ ।"



Digitized by PPRACHIN, SOA

ସେତିକି କଥାରେ ମମତା ଦେବୀ ଟେକି ଆଣିଚନ୍ତି । ଅବ୍‌ଜବାନ୍ଧବ ଆପତ୍ତି କରି ନାହାନ୍ତି । ପୁରୁଷତ୍ୱର ଅହମିକାରେ ପିତୃତ୍ୱ କାମନା ଅବଦମିତ ହୋଇ ପାରିନି ସିନା କିନ୍ତୁ ଅତି ଦୟନୀୟ ଭାବରେ ଅନୁଗତ ଅବ୍‌ଜବାନ୍ଧବ ।

ବୁଲୁ- ଛୋଟ, ତିନି ବର୍ଷର ଶିଶୁ । ସୁନ୍ଦର ପାନପତ୍ର ମୁହଁ ଉପରେ କୁଞ୍ଚୁକୁଞ୍ଚିଆ ବାଳ ପୁଞ୍ଜିଏ । ଉଜ୍ଜଳ ଆଖି, ଦାନ୍ତ ଉଠିଚି, ପୁଣି ଉଠୁଚି ।

ଅବ୍‌ଜବାନ୍ଧବ ଚାହିଁଲେ । ମମତା ଦେବୀ ବୁଲୁ ମୁହଁକୁ ଲୁଗା କାନିରେ ପୋଛି ଦେଉଚନ୍ତି । କେତେ ଆଦରରେ ତା' ଜାମାରୁ ଅଇଁଠା ଭାତ, ତରକାରୀ ଦାଗ ଧୋଇ ଦେଉଚନ୍ତି ।

"ଆରେ ପାନିଆ କ'ଣ ହେଲା ?"

"ଶୁଣୁଚ ?"

କ'ଣ-

"ବୁଲୁ......"

"କଅନ ବୋଉ........ ।"

ବୋଳକୁ ନେଲେ ଅବ୍‌ଜବାନ୍ଧବ । ବୁଲୁର ଛୋଟ ମୁହଁଟିରେ ଦେଲେ ଆଶିଷର ଚୁମ୍ବନ ।

"ଡାହାଣୀ ।"

+++ ବୁଲୁ ରଡ଼ି କରୁଚି । ରାତି ଦି'ଟା । ଗୋଡ଼ ବାଡ଼େଇ ହାତ ଛିଞ୍ଚାଡ଼ି- ସେଇ ଏକା ଜିଦ୍, "ବୋଉ ପାଖୁ ଯିବି ।" ଆଖିରୁ ବହୁଚି ବିରାମହୀନ ଦୁଇଧାର ଲୁହ । ନିଜ ମାଆ କୋଡ଼ରେ ତା'ର ଆଶ୍ୱାସନା ନାହିଁ । ମାଆ ଛାତିରୁ ସରିଚି ଶିଶୁର ସଞ୍ଚୟ !

ନିଶବ୍ଦ ରାତି । ଆକାଶରେ ଦ୍ୱାଦଶୀ ଚାନ୍ଦର ନୃତ୍ୟ ଉଚ୍ଛୁଳା ମହୋତ୍ସବ । ପାଖ ଆମ୍ବ ଗଛଟାରୁ ଟପ୍ ଟପ୍ କାକର ବିନ୍ଦୁ ତଳେ ପଡୁଚି । ପଡ଼ିଶା ଘରୁ କେତେବେଳୁ ବତୀ ନିଭିଗଲାଣି ।

ବତୀ ଜାଳିଲେ ମାଇଁ ।

"ଦେଖିଲୁ ଅଚୁତ । ମୁଁ ଏତେ ରାତିରେ କଣ କରିବି ?"

ମୁଁ ନିଦ ମଳମଳ ହୋଇ ଉଠିଲି । ବୁଲୁର ଏକାଜିଦ୍ ବୋଉ ପାଖୁ ଯିବ । ଅତି ଅଧୀର ହୋଇ ସେ ଲୋଟି ପଡୁଚି । କୋହ ଉଠୁଚି, ରାହା ଧରୁଚି । ଆଖିରୁ ବହି ଯାଉଚି ଧାର ଧାର ଲୁହ ।

ନିଦ ମଳମଳ ହୋଇ ଉଠିଲି । ସ୍ୱପ୍ନ ବୋଧହୁଏ ଦେଖୁଥିଲି- ଅସଂଲଗ୍ନ, ଅସଂପୂର୍ଣ୍ଣ । ହଠାତ୍ ମାଇଁ ଡାକିଦେଲେ । ମୋ' ସ୍ମୃତିରେ ଥିଲା ନ ଥିଲାର ଗୋଟାଏ କ୍ଷୀଣ କୋଳାହଳ । ଅବ୍‌ଜବାନ୍ଧବ ଓ ନଳିନୀ ଦେବୀ ଶୋଇଚନ୍ତି- ମଝିରେ ସ୍ନେହର ବ୍ୟବଧାନ ବୁଲୁ । ତାଆରି ଶିରରେ ବର୍ଷା ହେଉଚି ଦୁଇପାରଖରୁ ଆଶିଷର ଚୁମ୍ବନରାଶି । ଏଁ, ଅବ୍‌ଜବାନ୍ଧବ ମୁହଁ ଶୁଖେଇଲେ । ମୁହଁ ତାଙ୍କର ଶଙ୍କିତ, ସଙ୍କୁଚିତ । ନଳିନୀ ଦେବୀ



Digitized by PPRACHIN, SOA

ଅଭିମାନ କଲେ ବୋଧହୁଏ । ଅବ୍ଜବାନ୍ଧବ କହିଲେ- "ମାଆଠାରୁ ଯେ ଅଧିକ ଭଲ ପାଏ, ସେ ଡାଆଣୀ ।" ଚମକିପଡ଼ିଲେ ନଳିନୀ ଦେବୀ । ଛାତି ପାଖରୁ ଖସେଇଦେଲେ ବୁଲୁକୁ । ବୁଲୁ ବୋଉ ବୋଉ ରଡ଼ିକରି ଉଠିଲା ।

"ବୁଲୁ, ଇରେ ତୋ' ଠେକୁଆ କାଇଁକିରେ ?"

"ବୁଲୁର କାଲି ବେଲୁନ୍ କିଣା ହବ, ନେ ପଇସା ...."

"ଧୁଅ....."

"ଇଲୋ ବୋପାଲୋ- ଶୋଇପଡ଼, ବାହାରେ ବାଇଆ.... ନାଇଁ ତୁ ଯା । ବୁଲୁ ମୋର ସୁନାପୁଅ- ଯାଆରେ ବାଇଆ- ଯା - ଯା । ବୁଲୁ ଆଉ କାନ୍ଦିବନି, ଶୋଇ ପଡ଼ିଲାଣି ।" ମାଇଁ ବୁଲୁକୁ କାନ୍ଧରେ ପକେଇ ଥାପୁଡ଼ଉଚନ୍ତି ।

"କି ଅବେଇଜ ଛୁଆ । ସମ୍ଭାଳ ଆକୁ ଅଚୁତ । ମୁଁ ପାରିବିନି । ଏତେ ରାତିରେ ମୋ'ର କିଏ ପଡ଼ିଶା ଘରକୁ ଯିବ ? ଆଛା 'ବୋଉ' ରଡ଼ି ଧରିଚି ।"- ମାଇଁ ବୁଲୁକୁ ଦୁଇ ଚାପୁଡ଼ା ଦେଲେ ।

ବୁଲୁକୁ ମୁଁ କୋଡ଼କୁ ନେଲି । ଆହା, ଛୋଟ ଛୁଆଟା ପରକୁ ଆପଣାର କରି ନେଇଚି । ସ୍ନେହ ପାଇଚି । ଭୁଲି ପାରୁନି । ସେ ଅକୃତଜ୍ଞ ବଡ଼ ମଣିଷ ନୁହେଁ । ନିଜକୁ ନିର୍ଦ୍ଦୋଷ ବୋଲି ପ୍ରମାଣିତ କରିବାକୁ କୌଣସି ଭୀରୁ ଧୂର୍ତ୍ତା ପଲ୍ଲୀବାଳିକା ପରି ସେ ଚଞ୍ଚଳ ନୁହେଁ । କୌଣସି କଥାର ଅର୍ଥ ବୁଝିନି । ଚଉଲି ଶିଖିନି । ସ୍ନେହର ନିକ୍ତିରେ ଏବେ ବି ପ୍ରତ୍ୟାଶାର ବଟକରା ଆହୁରି ଓଜନିଆ ।

ବୁଲୁ ମୋ' କୋଳରେ ବରାଭୟ ପାଇଲା ବୋଧହୁଏ ।

"ଆଜି ବୁଢ଼ା ବୋଉ କେତେ ଖେଳନା ଦେଇଚନ୍ତି ଦେଖିଚ ? ଦିନସାରା ଟୋକାଟା ସିଆଡ଼େ ଅଛି, ସିଆଡ଼େ ଖିଆପିଆ ।"

"ତୁମେ ସେଥିପାଇଁ ଆଜି ଭାତ ନ ଖାଇ ବସୁ ବସୁ ଉଠିଗଲ ।"

"ନାଇମ, ପେଟ ଭଲ ଲାଗୁନି, ଟୁକ୍ ଟୁକ୍ ଫୁଟୁଚି । ବାଇ ଭର୍ତ୍ତି ହୋଇ ରହିଚି ।"

"ମିଛ କହୁଚ ।"

"ତେମେ ଶୋଇପଡ଼ । ରାତିରେ ଉଠେଇଲି, ଦେହ କାଳେ ଖରାପ ହେବ ।" ମାଇଁ ମୋ' କୋଳରୁ ବୁଲୁକୁ ନେଲେ ।"

+++ ବୁଲୁ ଛୋଟ ପାହୁଣ୍ଡ ପକେଇ ପାହାଚ ତଳକୁ ଗଡ଼ିଲା । ହାତ ପାଆନ୍ତାରେ ଥିବା ଜାଫିର୍ କବାଟ ଝଞ୍ଜିରକୁ ସେ ଫିଟେଇବାକୁ ଚେଷ୍ଟା କରୁଚି । ଚାହିଁଲି ମାଇଁ ଆର ଘରେ ଶୋଇଚନ୍ତି ।

ବୁଲୁ ଯାଉଚି । ନଳିନୀ ଦେବୀ କବାଟ ଖୋଲିଲେ ।

+++ ଜୀବନର ଆବୃତ୍ତିରେ ପୁଣି ପୁନରାବୃତ୍ତି । ପୁଣି ଏକ ଧୂସର ଅମୀମାଂସା ।

"ପାରିବିନି ଏଇଟାକୁ ଅଚୁତ । ପୁଣି ରାତି ଅଧଟାରେ କାଲିପରି କାନ୍ଦିଲାଣି ।



Digitized by PPRACHIN, SOA

"ତାକୁ ମାରିବନି ମାଇଁ । ପିଲା ଲୋକ । ସେ କଣ ବୁଝୁଚି ?"

"ଧୁଅରେ ବାଇଆ ଧୁଅ, ଯେଉଁ କିଆରୀରେ ଗହଳ ମାଣ୍ଡିଆ ସେଇ କିଆରୀରେ ଶୁଅ ।" "ଶଗଡ଼ ଆସିଲା ଘିଡ଼ି ଘିଡ଼େଇଲୋ ଦିଅଁଙ୍କ ପୋଖରୀ ଡ଼େଇଁ । ତୁମେ ତ ଆସିଲ ଶଗଡ଼ିଆ ଭାଇ, ମୋ ବୁଲୁ ପାଇଁ କିଛି ନାହିଁ......"

ମାଇଁ ହାଇ ମାରିଲେ ।

+++ ଭୋରୁ ନିଦ ଭାଙ୍ଗିଗଲା । ଦେଖିଲି ବୁଲୁ "ବୋଉ, ବୋଉ" ଡାକି କାନ୍ଦି କାନ୍ଦି ଆଗକୁ ଯାଉଚି, ମାଇଁ ଠିଆ ହୋଇଛନ୍ତି ଝାଫିର କବାଟ ପାଖରେ । ଝାଫିର କବାଟ ସେ ଆଉଜେଇ ଧରିଚନ୍ତି । ଜଳାବାଟେ ଚାହିଁଚନ୍ତି । ଆଖି ତାଙ୍କର ସତେ ଯେପରି କ୍ରନ୍ଦାତୁର । ଏକ ଅବୋଧ ମାତୃସୁଲଭ ଆଶଙ୍କାରେ ଶଙ୍କାକୁଳ ତାଙ୍କର ମନ ।

ପନ୍ଦର ଦିନ ମାଇଁଙ୍କର ରହଣୀ, ନଳିନୀ ଦେବୀ ତାଙ୍କୁ ଭଉଣୀ ହିସାବ କରିଚନ୍ତି ।

ଛାତି ଉପରେ ବୁଲୁ । ନଳିନୀ ଦେବୀଙ୍କ କାନ୍ଧରେ ମୁଣ୍ଡ ରଖି ଶୋଇ ଯାଇଚି ।

"ନେ-ଲୋ ତୋ' ପୁଅକୁ, ମୁଁ ତାକୁ ଶୁଆଇ ଦେଇଚି । ବିଛଣା ପକେଇଦେ ।" ପଛେ ପଛେ ମାଇଁ ଆସିଲେ ବିଛଣା ପାରିଦେଲେ ।

"ମୋ ପୁଅକୁ ଦେଖିଚୁକି ?"

"ବୁଲୁ ତ ବୁଢ଼ାଭାଇ, ବୁଢ଼ାଭାଇ ଡାକି ତମ ଘରକୁ ଗଲା । ମୁଁ ଦେଖିନି ।" ମୁଁ ହସିଲି । ମାଇଁଙ୍କୁ ଚାହିଁଲି- ସେ ବି ହସିବାକୁ ଉପକ୍ରମ କରୁଛନ୍ତି । ହସୁଥିବେ ଯଦି, ଗୁରୁଜନ, ଲଘୁଜନ କିଛି ସେ ବିଚାର କରିବେନି । ଭାରି ଦରହସୀ ।

ଈର୍ଷା କରୁଚନ୍ତି ମାଇଁ, ଅହଂକାର ?- ନାଇଁ ବୋଧହୁଏ ।

"ପୁଅଟା ଗଲା କୁଆଡ଼େ..... ଦେଖେଁ...." ସତେ ଯେପରି ନଳିନୀ ଦେବୀଙ୍କ ଭିତରୁ କିଏ ଚିତ୍କାର କରି କହୁଚି । ବୁଢ଼ା ତାଙ୍କର ପୁଅ ନୁହେଁ । ସେ ତା'ର ବୋଉ ନୁହନ୍ତି ।

"ମୋ' ପୁଅ ପେଟପୂରା କାଲି ରାତିରେ ଖାଇ ନଥିଲା । ଟୋକାଟା ସକାଳଠଉଁ କୁଆଡ଼େ ଗଲାଣି ।"

ବୁଲୁ ଶୋଇ ଘୁଙ୍ଗୁଡ଼ି ମାରୁଚି । +++ ଅବଜ୍ଜବାନ୍ଧବଙ୍କ ଘରୁ ନଳିନୀ ଦେବୀଙ୍କ ପାଟି ଶୁଣାଗଲା- "ପାଜି ! ସଇତାନ୍ ! ବାହାର ଏ ଘରୁ । ହଇରେ- ତତେ ମୁଁ କେତେଥର କହିଲିଣି- ଘର ଜିନିଷ ନେଇ ପଦାରେ ଛାଡ଼ିବୁନି । ବଦ୍‌ମାସ୍ ଟୋକା !"

କାକୁସ୍ଥ ହୋଇ ଗରୁଡ଼ ସ୍ତମ୍ଭ ପାଖରେ ଠିଆ ହୋଇଚି ପୋଷାପୁଅ ବୁଢ଼ା । ନଳିନୀ ଦେବୀଙ୍କ ପ୍ରଚଣ୍ଡ ମୂର୍ତ୍ତି ଆଗରେ ସେ ଥରି ଯାଉଚି । ଅତି ବିନୀତ, ଅତି ବଶମ୍ବଦ ଆଖିରୁ ତା'ର ନିଗିଡ଼ି ଯାଉଚି ଦୁଇଧାର ଲୁହ । ଦେହରେ ସତେ କି ଜୀବନ ନାହିଁ । ମୁହଁ ଆନତ ।

"ସବୁ ସାରିବ । ସବୁ ହଜେଇବ । ଆଜି ତୋର ଖାଇବା ବନ୍ଦ । ବେତବାଡ଼ି ନ ଆଣିଲେ ଖାଇବାକୁ ଦେବିନି ।



Digitized by PPRACHIN, SOA

କମ୍ପୁଚନ୍ତି ନଳିନୀ ଦେବୀ । ଅବ୍ଜବାନ୍ଧବ ଡ଼ିଉଟିକୁ ଯାଇଚନ୍ତି । ଚେୟାର ଉପରେ ଘୁମେଇ ପଡ଼ି ହୁଏତ ସ୍ୱପ୍ନ ଦେଖୁଥିବେ- ବୁଲୁ, ବୁଢ଼ା ।

ବୁଲୁ ବୁଢ଼ା ।

ବୁଲୁ,

ବୁଢ଼ା,

ବୁଲୁ, ବୁଲୁ, ବୁଲୁ, ବୁଲୁ ! ବୁଲୁ ଆଜି ଘରକୁ ଚାଲିଯିବ ।

+++ "ବେତବାଡ଼ିଟା ବୁଲୁ ଆଣିଥିଲା । ବୋଉ ମତେ ମାଇଲା । ବାଡ଼ିଟା ଆଜି ଦିଅ !" ଅତି ବିନୀତ ଭାବରେ ବୁଢ଼ା ଭାରୀ ସଙ୍କୁଚିତ ଭଂଗୀରେ କହିଲା ।

ବୁଲୁ ହାତରେ ବାଡ଼ି ଧରିଚି । ବାଡ଼ିଟାକୁ ହାତରେ ଧରିବାରୁ ଛୋଟ ଛୁଆଟା ଆନନ୍ଦ ପାଉଚି । ବୁଲୁ- ସତେ ଯେପରି ସେ ସତୁରୀ ବର୍ଷର ବୁଢ଼ା ।

ମାଇଁ ଘରବାହୁଡ଼ା ସଜଡ଼ା ସଜଡ଼ି କରୁଥିଲେ ।

"ବୁଲୁ; ବୁଢ଼ାଭାଇ କି ବାଡ଼ି ଦେ ।"

"ନା"

"ଦେ କହୁଚି ।"

"ମୁଁ ଦେବିନି ।"

ଠୋ' କିନା ମାଇଁ ବୁଲୁ ଗାଲରେ ଚାପୁଡ଼ାଟେ ବସାଇଦେଲେ ।

ବୁଢ଼ା ବାଡ଼ି ନେଇ ଚାଲିଗଲା । ବୁଲୁ ବାଡ଼ି ପାଇଁ କାନ୍ଦି କାନ୍ଦି ତଳେ ଲୋଟୁଥାଏ ।

ଆହୁରି ଗୋଟାଏ ଚାପଡ଼ା ମଝି ପିଠିରେ ମାଇଁ ବସେଇଲେ ।

"ପାଞ୍ଚ ଆଙ୍ଗୁଠି ଚିହ୍ନ ବସେଇ ଦେଲ ମାଇଁ ?"

"ଗାଡ଼ି ବେଳ ହେଇଗଲାଣି ପରା । ସୁଟ୍‌କେଶଟା ଧର । ଚାଲ ଫୁର୍ତ୍ତି ଫୁର୍ତ୍ତି ଚାଲିଯିବା । ଗାଡ଼ି ଫେଲ ହେଇଯିବା କାଳେ ।"

ପଡ଼ିଶା ଘର କବାଟ କିଳା ହେଇଚି । ଝରକା କାଠର ଯୋଡ଼ା ଫାଙ୍କବାଟେ ଆସୁଚି ଆଲୁଅ । ବୁଢ଼ା ବୋଧହୁଏ ପଢୁଚି ।

"ଟିକିଏ ବୁଢ଼ା ବୋଉକୁ ଦେଖା କରିବାନି ?"

"ବୁଲୁକୁ ପଚାର ।"

ମାଇଁ ବୁଲୁ ଗାଲରେ ବୋକଟିଏ ଦେଲେ । ଆଉଁସି ଦେଲେ ପିଠି । ତାଙ୍କ ଆଖିରୁ ଲୁହ ବିନ୍ଦୁଟିଏ ଝରିପଡ଼ିଲା ।





Digitized by PPRACHIN, SOA

# ମାତୃତ୍ୱ

ବନ୍ଧୁ କୃଷ୍ଣପ୍ରସାଦ କହନ୍ତି- ଛୋଟ ସୁନ୍ଦର ଗୁଲୁଗୁଲିଆ ଟିକିଛୁଆ ପାଞ୍ଚୋଟି ଅନୂଢ଼ା ଝିଅଙ୍କ ମେଳରେ ଛାଡ଼ିଦେଲେ ସେମାନେ ସବୁ କାମ ବନ୍ଦ କରି ତାଙ୍କୁହିଁ ଖୁସି କରିବାରେ ଲାଗିପଡ଼ିବେ । ମାନେ- କାଖେଇବେ, କୋଳେଇବେ. କୁତୁକୁତୁ କରିବେ, ଚୁମା ଦେବେ ଇତ୍ୟାଦି ଇତ୍ୟାଦି । ଏମିତି ଶୁଣାକଥାରେ ମୋର ବିଶ୍ୱାସ ହେଲେ ବି ତାଙ୍କ ସହିତ ବେଦମ୍ ଯୁକ୍ତି କରେ । ଅନ୍ତତଃ ଆମ ପୁରୁଷ ଜଗତର ବାହାର ଏ କଥାଟା ଉପରେ ବେଧଡ଼କ୍ କିଛି ଗୋଟାଏ ମନ୍ତବ୍ୟ ଦେବାରେ ହୁଏତ ତ୍ରୁଟି ରହିଯାଇପାରେ- । ଏ ଆମର ଅନୁଭବର କଥା ନୁହେଁ ।

କିନ୍ତୁ ମୁଁ ସେଦିନ ଆଖିରେ ଦେଖି ବିସ୍ମିତ ହେଲି । ଦୈବାତ୍ ମୋ ସାଙ୍ଗରେ ବନ୍ଧୁ କୃଷ୍ଣପ୍ରସାଦ ବି ଥା'ନ୍ତି । ସେ ଆଠବର୍ଷ ତଳର କଥା ।

ମୁଁ ମେଡ଼ିକାଲରୁ ଫେରୁଥାଏ । ସାଇକେଲ୍‌ରେ କୃଷ୍ଣପ୍ରସାଦଙ୍କୁ ବୁହାଇବା ମୋର ଗୋଟାଏ ନିତିଦିନିଆ ରୁଟିନ୍‌ବନ୍ଧା କାମ ହୋଇ ପଡ଼ିଥାଏ । ତାଙ୍କ ଗୋଡ଼ ପାଏନି । ମୋପରି ପୃଥୁଳକାୟ, ଓଜନିଆ ଦୀର୍ଘ ମଣିଷକୁ ସେ ସାଇକେଲରେ ବୋହିବାକୁ ସଂପୂର୍ଣ୍ଣ ଅସମର୍ଥ । ଅନେକ ଥର ଚେଷ୍ଟା କରି ମତେ କଚାଡ଼ି ବି ଦେଇଚନ୍ତି । କହନ୍ତି- ବାଟ ଦେଖାଯାଉନି ।

ଆଠବର୍ଷ ତଳର କଥା । ଆମେ ଏମ୍.ଏ. ଶ୍ରେଣୀର ଛାତ୍ର ଥିଲୁ । ନୂଆ ହେଇ କଲେଜକୁ ଆସିଥିଲେ ମିସ୍ ପ୍ରଣୀତା ମହାନ୍ତି । ଅଳ୍ପଦିନ ମଧ୍ୟରେ କଲେଜରେ ତାଙ୍କୁ ଅନେକେ ଚିହ୍ନିଗଲେ । ପୁଣି ଭଲିମ୍ୟାଚରେ ମେଡ଼ିକାଲ କଲେଜର ଝିଅମାନଙ୍କୁ ହରେଇ ସେ ଯେଉଁଦିନ ତାଙ୍କ ଦଳ ତରଫରୁ ସିଲ୍‌ଡ଼ ଗ୍ରହଣ କଲେ- ସେଦିନ ହଠାତ୍ ତାଙ୍କୁ ଅନାଗ୍ରହୀ ଛାତ୍ରମାନେ ବି ଚିହ୍ନିଗଲେ । ଖବର କାଗଜରେ ଫଟୋ ବି ଛପାହେଲା । ପୁରୁଷ ସୁଲଭ କର୍ମପ୍ରବଣତାରେ ନାରୀତ୍ୱର ହେଲା ବିଜ୍ଞାପନ ।

ମିସ୍ ପ୍ରଣୀତା ମହାନ୍ତି । ସୁନ୍ଦର ସୁଶ୍ରୀ ଗଠନ । ଚଳନୀୟ ଉଚ୍ଚତା, ଆଉ କମନୀୟ କାନ୍ତି । ଆଖିରେ ସେ ସବୁଦିନେ ଧାରେ କଜ୍ଜଳ ପିନ୍ଧନ୍ତି । ଛୋଟ ଲାଞ୍ଜିଟାଏ ଅଳ୍ପଦୂରକୁ ଲମ୍ବିଯାଇଥାଏ । ଭଲିବଲ ଖେଳୁ ଖେଳୁ ଝାଳ ବୋହି କଜ୍ଜଳଗାରକୁ ଓଦା କରେ । ଅଲକ୍ଷ୍ୟରେ ନେଶିଦିଅନ୍ତି ମିସ୍ ମହାନ୍ତି ।

ପ୍ରସାଧନପ୍ରତି ବେଶୀ ଦୃଷ୍ଟି ନଦେବା ମିସ୍ ମହାନ୍ତିଙ୍କର ଅଭ୍ୟାସ ଥିଲା । ଧଳା ଶାଢ଼ୀ ତାଙ୍କର ନିତିଦିନିଆ ପରିଧେୟ । ବେଶ୍ ସେତିକି ତାଙ୍କର ପରିଚୟ । ସେ ଅସାଧାରଣ



Digitized by PPRACHIN, SOA

ମେଧାବୀ ଛାତ୍ରୀ ନୁହନ୍ତି । ସୁଗାୟିକା କିମ୍ବା ନୃତ୍ୟଶିଳ୍ପୀ ବି ନୁହନ୍ତି । ତେବେ ତାଙ୍କର ପରିଧାନ ଭିତରୁ କିପରି କେଜାଣି ତାଙ୍କ ବ୍ୟକ୍ତିତ୍ୱ ଅତିମାତ୍ରାରେ ସ୍ପଷ୍ଟ ହୋଇ ଉଠୁଥିଲା । ଧଳାଶାଢ଼ୀ କହିଲେ ପ୍ରାୟ ଅଧାଅଧି କଲେଜଛାତ୍ର ବୁଝୁଥିଲେ ମିସ୍ ପ୍ରଣୀତା ମହାନ୍ତିଙ୍କୁ । ସେ ରାସ୍ତାରେ ଗଲାବେଳେ ସବୁ ଛାତ୍ର ଭାବୁଥିଲେ ତାଙ୍କୁ ହୁଏତ ମିସ୍ ମହାନ୍ତି ଚାହିଁଲେ- କଣ କହିବାକୁ ବୋଧହୁଏ ଉପକ୍ରମ କଲେ- ଠିକ୍ କାନ୍ଥରେ ଟଙ୍ଗା ହୋଇଥିବା ଫଟୋଟିକୁ ଯେଉଁ ଦିଗରୁ ଚାହିଁଲେ ବି ସେ ଯେମିତି ଦୃଷ୍ଟିଭ୍ରମ ଆଣେ- ଠିକ୍ ସେହିପରି ନିର୍ବୋଧଭାବରେ ସବୁଛାତ୍ର ଆପଣାକୁ କୃତକୃତ୍ୟ ମଣୁଥିଲେ । ହୁଏତ ମିସ୍ ମହାନ୍ତିଙ୍କର ନିଜପ୍ରତି ଥିବା ଅସୀମ ବିଶ୍ୱାସ ତାଙ୍କୁ ସେହିପରି ଦୃଢ଼ତା ଓ ପ୍ରତ୍ୟୟ ଦେଇଥିଲା ।

+++ ଆମେ ମେଡ଼ିକାଲରୁ ଫେରୁଥାଉ । ଗେଟ୍ ପାଖରେ ଗୋଟାଏ ରିକ୍ସା ଅଟକି ଥାଏ । ଦୁଇଜଣ ପ୍ରୌଢ଼ ସେ ରିକ୍ସାରେ ବସିଥାନ୍ତି । ଆଉ ଛୋଟ କୋଳପୋଛା ଝିଅଟିଏ ବି । ଗୋରା ଏବଂ ସୁନ୍ଦର ।

ଆମେ ଦେଖି ବିସ୍ମିତ ହେଲୁ ମିସ୍ ପ୍ରଣୀତା ମହାନ୍ତି ଛୁଆଟାକୁ ଭିଡ଼ିନେଇ ଛାତିରେ ଜାକି ଧରିଲେ । ତା ମୁହଁରେ ବାରମ୍ବାର ବୋକ ଦେଇ ପ୍ରୌଢ଼ା ଜଣଙ୍କୁ କହିଲେ, "ମୁଁ ଆକୁ ମୋ ପାଖରେ ରଖିବି । ମୁଁ ଆକୁ ନେଇ ଯାଉଚି ।"

ବନ୍ଧୁ କୃଷ୍ଣପ୍ରସାଦ ହସିଲେ । ସହଜ ଭାବରେ ମନ୍ତବ୍ୟ ଦେଲେ- "ହୁଁ ସବୁ ଝିଅ ସମାନ, ଖାଲି ମାଆ ହେବେ । ବେଶ୍ ସେତିକିରେ ଯେମିତି ପୃଥିବୀର ସବୁ ସମସ୍ୟା ସମାଧାନ ହୋଇଗଲା ।"

ତାପରେ ଆମର ଦର୍ଶନଶାସ୍ତ୍ର ଆଲୋଚନା ହେଲା । ମୁଁ କହିଲି ନାରୀର ଅନନ୍ତ କାମନା ହେଉଚି ମାତୃତ୍ୱ । ସେ ଯେତେ ନିର୍ମମ ନିଷ୍ଠୁର ହେଉପଛେ ସେ ତା କୋଳରେ ଚାହେଁ ଗୋଟିଏ ଲହୁଣୀ ପରି କୋମଳ ଶିଶୁ । ତାକୁ ତାର ସଂଚୟ ଅକାତରରେ ଢ଼ାଳିଦେଇ ସେ ଗର୍ବରେ ଫାଟିପଡ଼େ । ଗୋଟିଏ ନାରୀ ସହିତ ଆଉ ଗୋଟିଏ ନାରୀର ଯେତେ ବନ୍ଧୁତା ଥିଲେ ବି ଜଣେ ଦୁର୍ଭାଗ୍ୟକୁ ବନ୍ଧ୍ୟା ହେଲେ ଅପର ଜଣକ ନିଶଙ୍କ ଭାବରେ ତାର ସନ୍ତାନକୁ ତା କୋଳକୁ ଟେକିନେବାକୁ କୁଣ୍ଠାବୋଧ କରିବ ।

ବନ୍ଧୁ କୃଷ୍ଣପ୍ରସାଦ କହିଲେ- "ତୁମେ ତା' ହେଲେ କହୁଚ ଏଇଠି ଏଇଲାଏ ମିସ୍ ମହାନ୍ତିଙ୍କ ମନରେ ଓ ଦେହରେ ମାତୃତ୍ୱର ଉଦୟ ହେଲା ?"

ମୁଁ କହିଲି- "ନାଇଁ, ଖାଲି ସେଇ ସୁପ୍ତ କାମନାଟା ଚେଇଁ ଉଠିଲା ମାତ୍ର ।"

ସେ ଆଠବର୍ଷ ତଳର କଥା । ଆମେ ମିସ୍ ମହାନ୍ତିଙ୍କୁ ଭୁଲିଥିଲୁ । ଆମ ଚଲାବାଟର ରାସ୍ତାରେ ଅସଂଖ୍ୟ ଏମିତି ଛୋଟବଡ଼ ଘଟଣା ନିଭି ଯାଉଥିଲା ।

ପୁଣି ହଠାତ୍ ସେଦିନ ସେଇ ମେଡ଼ିକାଲରେ ଅଚାନକ ମିସ୍ ପ୍ରଣୀତା ମହାନ୍ତିଙ୍କୁ ଦେଖି ମୁଁ ବିସ୍ମିତ ଆଉ ଆଗ୍ରହାନ୍ୱିତ ହୋଇ ପଡ଼ିଲି । ପୁରୁଣା କଥା ମନେ ପଡ଼ିଲା ।

ମିସ୍ ପ୍ରଣିତା ମହାନ୍ତି ଏ ପର୍ଯ୍ୟନ୍ତ ବିବାହ କରିନାହାନ୍ତି । ମୁଁ ଦେଖି ଆଶ୍ଚର୍ଯ୍ୟ ହେଲି । ବୟସ ସହିତ ଦୌଡ଼ପ୍ରତିଯୋଗିତାରେ ମିସ୍ ମହାନ୍ତି ଜିତିଚନ୍ତି । ନିଜର ତନୁକୁ



Digitized by PPRACHIN, SOA

ସେମିତି କମନୀୟ ଆଉ ଲୋଭନୀୟ ରଖିଚନ୍ତି । ଦେହର ଅଙ୍ଗପ୍ରତ୍ୟଙ୍ଗ ଆହୁରି ହେଇଚି ପୁଷ୍ଟ ଓ ପେଶୀଯୁକ୍ତ । ତନୁର ତନିମା ଭିତରେ ମିସ୍ ମହାନ୍ତି ଆକର୍ଷଣର ଅଙ୍କୁଶକୁ ସତେଜ ଓ ସଯତ୍ନ ରଖିଚନ୍ତି ।

ସେଦିନର ଅଯତ୍ନ ରୂପଶ୍ରୀକୁ ସଜେଇବାରେ ମିସ୍ ମହାନ୍ତିଙ୍କର ଅଦମ୍ୟ ଚେଷ୍ଟା ମୁଁ ଲକ୍ଷ୍ୟକଲି । ଅଯତ୍ନ କେଶରାଶିରେ ଫୁଟେଇଚନ୍ତି କମନୀୟ କୋକନଦ । ମୁହଁରେ ସ୍ନୋ ଆଉ ପାଉଡ଼ରର ଆସ୍ତରଣ । ଧଳାଶାଢ଼ୀ ପରିବର୍ତ୍ତେ ପିନ୍ଧିଛନ୍ତି ରଙ୍ଗୀନ ପରିଧେୟ । ଦେହରେ ଆଉ ମନରେ ସତେ ଯେପରି ଛୁଟୁଛୁ କୁମାରୀ ଜୀବନର ଉତ୍‌ଥଳ ଲହଡି ।

ମୁଁ ପ୍ରକୃତରେ ତାଙ୍କର ଏ ପରିବର୍ତ୍ତନର କାରଣ ବୁଝିପାରିଲିନି । ଅନୁମାନ କଲି ହୁଏତ ବୟସର ଦାବୀକୁ ସାବ୍ୟସ୍ତ କରିବାପାଇଁ ସେ ନିଜକୁ ହିଁ ପ୍ରଥମେ ନିଜ ପାଖରେ କରୁଚନ୍ତି ପରୀକ୍ଷା । ତେଣୁ ଏ ପରିବର୍ତ୍ତନ ଆକସ୍ମିକ ହେଲେ ବି ଅସ୍ୱାଭାବିକ ନୁହେଁ । ମୁଁ ତାହାହିଁ ଭାବିଲି ।

ସେତେବେଳେ ମୁହଁସଞ୍ଜ । ଆରକ୍ତ ଗୋଧୂଳି ଅନ୍ଧକାରର କଳା ଭିତରେ ନିଜକୁ କ୍ରମେ ହଜେଇ ବସୁଥାଏ । ମେଡ଼ିକାଲ୍ ରାସ୍ତାର କୃଷ୍ଣଚୂଡ଼ା ଗଛ ଗୁଡ଼ାକରେ ଚଢ଼େଇ ଦଳଦଳ ହୋଇ ଉଡ଼ି ବସୁଥାନ୍ତି- ଉଡ଼ିଯାଉଥାନ୍ତି । ଖାଲି କିଚିରି ମିଚିର, ଚେଁ ଚାଁ ଶବ୍ଦ ।

ମିସ୍ ପ୍ରଣୀତା ମହାନ୍ତି ପ୍ରସୂତି ଭବନ ସାମ୍ନାରେ ନିର୍ବିକାର ଭାବରେ ଠିଆ ହୋଇଥାନ୍ତି । ବୋଧହୁଏ କାହାର ଅପେକ୍ଷାରେ । ମୁଁ ଆହୁରି କୌତୂହଳୀ ହେଲି । ଅଚିହ୍ନା ପରିଚୟର ମପାମପି ଭିତରେ ମୋ ମନରେ ଗୋଟିଏ କଥା ସ୍ପଷ୍ଟ ହେଲା-ଆମରି କଲେଜର ସେ ଛାତ୍ରୀ ଥିଲେ । ଅନ୍ତତଃ ବର୍ତ୍ତମାନ ବିଷୟରେ ଦି'ପଦ ପଚାରିବା ଅଶୋଭନୀୟ ହେବନି ।

ମୁଁ ଅଗ୍ରସର ହେଲି । ମନଟା କେମିତି ଲାଗୁଥାଏ । କାଳେ କିଛି ଭାବିବେ-ଏ ଭୟ ବି ମୋର ପ୍ରକୃତରେ ଥାଏ ।

"ଆପଣ ଆମରି କଲେଜରେ ପଢୁଥିଲେ । ଏଇଲାଏ କଣ କରୁଚନ୍ତି ?" ମୋ ଅପ୍ରତ୍ୟାଶିତ ପ୍ରଶ୍ନ ପାଇଁ ସେ ସମ୍ପୂର୍ଣ୍ଣ ଅପ୍ରସ୍ତୁତ ଥିଲେ । ତେଣୁ ଟିକିଏ ସଂକୁଚିତ ହୋଇ ପଡ଼ିଲେ । କହିଲେ- ମୁଁ B.A. B.L. ପରେ I.A.S ପାଇଁ ପ୍ରସ୍ତୁତ କରୁଚି । ପରୀକ୍ଷାଟା ଖୁବ୍ ନିକଟେଇ ଆସିଲାଣି । ଏଠି ଜଣେ ପ୍ରସୂତି ଭବନରେ ପଡ଼ିଚନ୍ତି । ମୋ ଫ୍ରେଣ୍ଡରର ବଡ଼ ଭଉଣୀ । ସେ ତାଙ୍କୁ ଦେଖିବାକୁ ଭିତରକୁ ଯାଇଚନ୍ତି । I cannot stand that sight. ମୁଁ ଏଠି ତାଙ୍କୁ ଅପେକ୍ଷା କରିଚି ।

ଏକାବେଳକେ ମିସ୍ ମହାନ୍ତି ଏତେଗୁଡ଼ାଏ କଥା କହିଯିବେ ବୋଲି ମୁଁ ଭାବି ନଥିଲି । ମୁଁ କେଜାଣି କାହିଁକି ମୋ କାନକୁ ପ୍ରଥମେ ଅବିଶ୍ୱାସ କଲି ।

ଏଇ ମିସ୍ ମହାନ୍ତି । ଠିକ୍ ସେଇ ଲୋକ । ଛୋଟ ଛୁଆଟାକୁ ଛାତିରେ ଜାକି ଯେ ବାରମ୍ବାର ଚୁମା ଦେଉଥିଲେ - ପୁଣି ପ୍ରକାଶ୍ୟରେ - ସେ ଆଇ.ଏ.ଏସ୍. ପରୀକ୍ଷା ଦେବେ । ହୁଏତ ଖୁବ୍ ବଡ ଅଫିସର ବି ହେବେ । ରହିବେ ଅବିବାହିତା । ନିଜର



Digitized by PPRACHIN, SOA

ରକ୍ତରୁ ନିଗାଡ଼ି ଶିଶୁଟିଏ ଦୁନିଆର ଆଲୁଅକୁ ଆଣିବାକୁ ତାଙ୍କର ଉତ୍ସାହ ନାହିଁ । ଆଗ୍ରହ ନାହିଁ । ସେଥିପାଇଁ ପୁଣି ତାଙ୍କର ଝୁଙ୍କ୍ ନଥିବା ମୁଁ ତାଙ୍କ କଥାରୁ ଅନୁଭବ କଲି ।

ସବୁ ଗୋଳମାଳିଆ ମନେହେଲା । ସେଇ ପ୍ରସୂତି ଭବନକୁ ମୁଁ ଆସିଥିଲି । ମୋ ସ୍ତ୍ରୀ ସେଠି ଆସନ୍ନ ପ୍ରସବା । ପ୍ରଥମ ସନ୍ତାନକୁ ଦୁନିଆର ଆଲୁଅକୁ ଆଣିବାକୁ ତାଙ୍କର ଅଦମ୍ୟ ଆଗ୍ରହ ମୁଁ ଅନୁଭବ କରିଚି । ଆଉ ମୋ ଦେହ ମନ ସେମିତି ଅନନୁଭୂତ, ଅଜଣା ଏକ ପିତୃତ୍ୱର ପୁଲକରେ ବାରମ୍ବାର ପୁଲକିତ ହୋଇ ଉଠୁଚି । ଉପର ମହଲାର ନିର୍ଦ୍ଦିଷ୍ଟ କୋଠରୀକୁ ଯିବାପୂର୍ବରୁ ମୁଁ କେତେ କେତେ ପ୍ରସୂତିଙ୍କ କ୍ରନ୍ଦନ ଶୁଣି ଚମକୁଚି । ଶୁଣି ଆସନ୍ନ ପ୍ରସବର ବେଦନାର୍ତ୍ତ ଚିତ୍କାରରେ ହେଉଚି ଶଙ୍କାକୁଳ । ତଥାପି ଦେଖୁଚି ସେଇ ଯନ୍ତ୍ରଣା ଭିତରେ ଅନାଗତକୁ କୋଳକୁ ଆଣିବାକୁ ପ୍ରସୂତି ମୁହଁରେ ଯେମିତି ଲାଗି ରହିଚି ଏକ ସ୍ୱର୍ଗୀୟ ସ୍ମିତି । ସମସ୍ତ କ୍ଲେଶକୁ ତାର ମାଂସପେଶୀ ଅତି ଆଗ୍ରହରେ ଆମନ୍ତ୍ରଣ କରୁଚି । ଅଥଚ ମିସ୍ ମହାନ୍ତି ।

ପ୍ରଗଲ୍‌ଭା ମିସ୍ ମହାନ୍ତି ମୋ ନୀରବତାପାଇଁ ବୋଧହୁଏ ଆହତ ହେଲେ । ହୁଏତ ଆଉ କିଛି ଅନୁଭବ ବି କଲେ । କାରଣ ମୋ ହାତରେ ଥିଲା ଅନାଗତ ଶିଶୁ ପାଇଁ ଗୋଟାଏ ଛୋଟ ଦୋଳି ଆଉ ଖଣ୍ଡେ ରବର ସିଟ୍ ।

ମୁଁ ପଚାରିଲି "ତାପରେ......."

ମିସ୍ ମହାନ୍ତି କହିଲେ ମୁଁ ତାହାହିଁ ମନସ୍ଥ କରିଚି । ଦେଖୁନାହାନ୍ତି ଏ ଅଭାବ ଯୁଗରେ ପରିବାର, ପିଲାପିଲି ନେଇ ଚଳିବା କେଡ଼େ ମୁଷ୍କିଲ୍ । ଅନ୍ତତଃ ମଣିଷ ମନର ଫୁର୍ତ୍ତି, ଆଗ୍ରହ ସବୁ ମରିଯିବ ।

ମୁଁ କହିଲି – "ବେଶ୍......... ବେଶ୍ ........."

ତା'ପରେ ସେ ପୃଥିବୀର ପରିସ୍ଥିତି, ଜୀବନର ଅନିଶ୍ଚିତତା ଚାର୍ବାକ୍ ମତବାଦ, ଦେଶର ଜନସଂଖ୍ୟାବୃଦ୍ଧି ଓ ଖାଦ୍ୟାଭାବ ସମସ୍ୟା ପରିବାର ନିୟନ୍ତ୍ରଣ ଯୋଜନା, ମେଗାଟନ୍ ବମ୍‌ର ଉତ୍ତର ପୁରୁଷ ଉପରେ ପ୍ରତିକ୍ରିୟା ଆଦି କେତେକ ଅତ୍ୟାଧୁନିକ ବିଷୟରେ ସଂକ୍ଷିପ୍ତ ଭାଷଣ ଦେଇ ବସିଲେ । ତାଙ୍କ କଥା ଭିତରେ ମୁଁ ଗୋଟାଏ ରୁଦ୍ଧ ନିରୁକ୍ତ ବେଦନାବୋଧ ଅନୁଭବ କରୁଥିଲି ।

ମୁଁ ଅବାକ୍ ହୋଇଗଲି । ମୋର ସକଳ ଇନ୍ଦ୍ରିୟ ନାରୀ ମନର ଛଦ୍ମ ପ୍ରକାଶ ବିରୁଦ୍ଧରେ ପୁଞ୍ଜିଭୂତ ଭାବେ ବିକ୍ଷୋଭ କରିବାକୁ ଉତ୍ତେଜିତ ହୋଇ ଉଠୁଥିଲେ ।

ମୁଁ କହିଲି – ସେ ସବୁ ବଡ଼ ବଡ଼ କଥା ଛାଡ଼ନ୍ତୁ । ଆପଣଙ୍କୁ ବର୍ତ୍ତମାନ ବୋଧହୁଏ ଛବିଶବର୍ଷ ପୂରିନି । କାରଣ ଆଇ.ଏ.ଏସ୍. ପରୀକ୍ଷା ଦେଉଚନ୍ତି । ଅନ୍ତତଃ ଚାଳିଶ ବର୍ଷ ବେଳେ ଆଉ ଥରେ ଆପଣଙ୍କୁ ଭେଟିବାର ସୁଯୋଗ ପାଇଲେ ମୁଁ ଖୁସି ହେବି । ହଉ ଥାଆନ୍ତୁ । ଆସୁଚି ।"

ମୁଁ ଆଗକୁ ଅଗ୍ରସର ହେଲି । ଦେଖିଲି ମିସ୍ ମହାନ୍ତିଙ୍କ ମୁହଁ ଯେପରି ହଠାତ୍ ବିବର୍ଣ୍ଣ ହୋଇ ପଡ଼ିଲା । ସେ ନିଜପକ୍ଷ ନେଇ ଆଉ କଣ କହିବାକୁ ଯାଉ ଯାଉ ଯେମିତି କହି



Digitized by PPRACHIN, SOA

ପାରିଲେନି । ଭିତରୁ କେହି ଯେପରି ନିର୍ମମ ଭାବରେ ତାଙ୍କ କଣ୍ଠରୋଧ କଲା ।

ମୁଁ ପାହାଚ ଅତିକ୍ରମ କରି ଉପରକୁ ଉଠିଲାବେଳେ ଭାବୁଥିଲି ବନ୍ଧୁ କୃଷ୍ଣପ୍ରସାଦଙ୍କ କଥା । "ସବୁ ନାରୀ ସମାନ । ମାଆ ହେବାକୁ ସମସ୍ତେ ଚାହାନ୍ତି ।" କିନ୍ତୁ ଏଇ ମିସ୍ ମହାନ୍ତି ? ଉଦ୍‌ଗତ ଅତୀତର ଉଦ୍ଦାମ ଛାଇ ପୁଣିଥରେ ମୋ ଆଖି ଆଗରେ ନାଚି ଉଠିଲା । ମିସ୍ ମହାନ୍ତି ହୁଏତ ଭୁଲିଚନ୍ତି । କିନ୍ତୁ ତୁହାଇ ତୁହାଇ ମତେ ସେଇ କଥା ଯେମିତି ଶୁଣା ଯାଉଥିଲା "ମୁଁ ଆକୁ ମୋ ପାଖରେ ରଖିବି ।" ଏ ପରିବର୍ତ୍ତନର କାରଣ ସ୍ୱଭାବିକ ନୁହେଁ । ହୁଏତ କୌଣସି ସଂକଳ୍ପ, କୌଣସି ଚରମ ପ୍ରତ୍ୟାଶାରେ ମୋହଭ୍ରଷ୍ଟ ହୋଇ ମିସ୍ ମହାନ୍ତି ନିଜକୁ ନିର୍ବିକାର କରିଚନ୍ତି । ଏମିତି ହୁଏତ ଗୋଟାଏ କିଛି ଶକ୍ତ ଧକ୍‌କା ତାଙ୍କୁ ଜୀବନପ୍ରତି କରିଛି ଉଦାସୀନ । ସଂସାର ପ୍ରତି କରିଚି ଅନାସକ୍ତ ।

ଉପର ମହଲାର ଝରକାବାଟେ ଚାହିଁଲି । ମିସ୍ ମହାନ୍ତି ଆଖିରୁ ଲୁହ ପୋଛୁଚନ୍ତି । ମୁଁ ନିଜକୁ ଅପରାଧୀ ମନେ କଲି । ନାରୀର କୋମଳ ପ୍ରବୃତ୍ତି ଉପରେ ଆଘାତ କରି ମୁଁ ତାଙ୍କୁ ବ୍ୟଥା ଦେଇଚି ବୋଲି ମୋ ଅନ୍ତର ସମବେଦନାରେ ଭରିଗଲା ।

ଚଢ଼େଇଗୁଡ଼ାକ କୃଷ୍ଣଚୂଡ଼ା ଗଛରୁ ଉଡ଼ିଯାଉଥିଲେ । ବାହାରର କୋଳାହଳ କ୍ରମେ କମିଆସୁଥିଲା । ଦରୱାନ ହାତପିଟା ଘଣ୍ଟିରେ ଖୁବ୍ ଜୋରରେ ସାତଥର ପିଟିଲା । ପ୍ରସୂତି ଭବନରୁ ନିଷ୍କ୍ରାନ୍ତ ହେବାର ଏହା ହିଁ ହେଉଛି ନିର୍ଘଣ୍ଟ ଆଉ ନିର୍ଦ୍ଦେଶନାମା । ମୁଁ ଧୀରେ ଧୀରେ ପାହାଚରେ ତଳକୁ ଓହ୍ଲାଉଥିଲି । ବାହାରକୁ ଆସି ଦେଖିଲି ମିସ୍ ମହାନ୍ତି ନାହାନ୍ତି । ମୋ ଆଗରୁ ସେ ହୁଏତ ମେଡ଼ିକାଲ ହତା ପାର ହୋଇ ଯାଇଛନ୍ତି ।

ରିକ୍‌ସାରେ ଆସିଲାବେଳେ ମୁଁ ତାଙ୍କରି କଥା ହିଁ ଭାବୁଥିଲି । ଆଠବର୍ଷ ତଳର ମିସ୍ ପ୍ରଣୀତା ମହାନ୍ତି । ଆଠଟି ମିନିଟ୍ ଭିତରେ ସେ କେତେ କଥା କହିଗଲେ । ଅଥଚ ମୋର ମନସ୍ତତ୍ତ୍ୱ ଗବେଷଣା ପାଇଁ ରଖିଗଲେ ଗୋଟାଏ ସଂଜ୍ଞାହୀନ ନିପାତନ । ମୁଁ ଭାବି ଭାବି ଯାହାର କାରଣ ନିର୍ଣ୍ଣୟ କରି ପାରୁ ନଥିଲି । କେବଳ ଭାବୁଥିଲି ........





Digitized by PPRACHIN, SOA

# ଚିଠି

ପାଞ୍ଚାଳୀ ଶବ୍ଦର ନା ସ୍ମୃତିର ? ପୁରାଣର ନା ବାସ୍ତବ ଜୀବନର ? କ'ଣ ବା ଥିଲା ତାର ସ୍ଥିତି - ଯେଉଁଥିପାଇଁ ଶ୍ରୀମତୀ ଦାସ ଏତେ ଉଦ୍‌ବିଗ୍ନ ହେଉଥିଲେ । ଦିହରେ ଯଥେଷ୍ଟ ମାଂସ ଲାଗି ନଥିବା ପାତଳୀ -ପେଚିମୁହାଁ ଝିଅଟିଏ । ବୟସ କୋଡ଼ିଏ ହୁଏତ ହେବ । କିନ୍ତୁ କେହି ତାକୁ କୋଡ଼ିଏ ବୋଲି ଭାବିବେ ନାହିଁ । ତା' ଭାଇ ଓ ତା ନିଜର ବାଧ୍ୟବାଧକ ନିମନ୍ତ୍ରଣରେ ମୁଁ କଟକ ଫେରିବା ରାସ୍ତାରେ ତାଙ୍କ ଘରେ ସେଦିନ ରାତିରେ ଅତିଥି ହୋଇଥିଲି । ଅବଶ୍ୟ ଏକାନ୍ତ ଆକସ୍ମିକ ଥିଲା ଏପରି ପରିଚୟ । ସେମାନେ କଳାହାଣ୍ଡିରୁ ବଲାଙ୍ଗୀର - ସମ୍ବଲପୁରଦେଇ ଢେଙ୍କାନାଳ ଫେରୁଥିଲେ ଟ୍ରେନ୍‌ରେ । ମୁଁ କଟକ ଫେରୁଥିଲି ବସ୍‌ରେ । ସମ୍ବଲପୁରଠାରେ ଏକା ବସ୍‌ରେ ଆମେ ମାନେ ଉଠିଥିଲୁ । ବସ୍ ରେଢ଼ାଖୋଲ ଠାରେ ପହଞ୍ଚିଲାବେଳକୁ ରାତି ହୋଇଯାଇଥିଲା । ଆକାଶକୁ ଘୋଟି ରହିଥିଲା ବର୍ଷୁକୀ ମେଘର ଘନ କଳା ବଳୟ । ଥଣ୍ଡା ଥଣ୍ଡା କୋହଲା ପବନ ଦେହକୁ ବେଶ୍ ଶୀତଳେଇ ଦେଉଥାଏ । ତାରା ବା ଚନ୍ଦ୍ର କାହାରି ସୂଚନାଇ ନଥାଏ ନୈଶ ଆକାଶରେ । ବୋଧହୁଏ ବିଜୁଳିବତି ସବୁ ଲିଭିଯାଇଥାନ୍ତି କରେଣ୍ଟ୍ ନଥିବାରୁ । କେବଳ କେତୋଟି ପେଟ୍ରୋମାକ୍ସ ଓ ଡିବିରି ଆଲୁଅ ଦୋକାନମାନଙ୍କୁ ଚିହ୍ନାଇ ଦେଉଥାଏ । ସେଇଠି ଯାତ୍ରୀମାନେ ଜଳଖିଆ ପାଇଁ ଓହ୍ଲାଇଗଲା ପରେ କୁଙ୍କୁଡ଼ିକାଙ୍କୁଡ଼ି ହୋଇ ସ୍କାର୍ଫ୍ ବେହରଣ ଭିତରେ ଗୋଡ଼ ଦୁଇଟାକୁ ବସ୍ ସିଟ୍ ଉପରେ ଜାକି ବସିରହିଥିବା ସହଯାତ୍ରୀ ଝିଅଟିକୁ ମୁଁ ବିସ୍କୁଟ୍ କେତୋଟି ବଢ଼େଇ ଦେଇଥିଲି । ସେ ବି ବିନା ସଂକୋଚରେ ଗ୍ରହଣ କରିଥିଲା । ବାସ୍ ସେତିକିରୁ ଆରମ୍ଭ ଆମର ପରିଚୟ । ସେ ଯେତେବେଳେ ଜାଣିଲା ମୁଁ କୌଣସି କଲେଜର ଜଣେ ବରିଷ୍ଠ ଅଧ୍ୟାପକ- କେବେ ତାଙ୍କ ଗାଁ ପାଖ କଲେଜକୁ ବାର୍ଷିକ ଉତ୍ସବରେ ବି ଯାଇଥିଲି ଓ ଉତ୍ତେଜନାପୂର୍ଣ୍ଣ ଭାଷଣ ଦେଇଥିଲି - ପେଣ୍ଡାଲରେ ବସିଥିବା ଅଧ୍ୟକ୍ଷ ଓ ଅଧ୍ୟାପକଙ୍କ ସହିତ ମୋ ଫଟୋ ଅଛି ତାଙ୍କ ଘରେ - କାରଣ ତା ଭାଇ ମଧ୍ୟ ସେ କଲେଜର ଅଧ୍ୟାପକ –ବେଶ୍ ଉଷୁମ୍ ଉଷୁମ୍ ଲାଗିଥିଲା ପରିଚୟର ଏଇ ପ୍ରଥମ ଆସରଟି ।

ତା' ପରେ ପରେ ଗାଡ଼ି ଚାଲିଲାପରେ ଭାଇଭଉଣୀ ଦିହେଁ ମୋତେ ବାଧ୍ୟ କରିଥିଲେ କଟକଯାତ୍ରା ବାତିଲ କରି ତାଙ୍କ ଘରେ ରାତିଟି କଟାଇ ସକାଳେ ଫେରିଯିବାକୁ । ଅନୁରୋଧ କ୍ରମେ ଗଭୀର ଆନ୍ତରିକତାରେ ପରିଣତ ହୋଇଥିଲା ଅନୁଗୁଳ ବସ୍‌ଷ୍ଟାଣ୍ଡରେ । ଏଠାରେ ବସ୍ ରହିବାପରେ ମୁଁ କିଛି ସମୟ ଓହ୍ଲାଇଥିଲି ଓ ସାଥେ



Digitized by PPRACHIN, SOA

ସାଥେ ପାଞ୍ଚାଳୀ ମଧ୍ୟ । ଖଣ୍ଡେ ଦିଖଣ୍ଡ ମ୍ୟାଗାଜିନ୍ ମୁଁ ଷ୍ଟଲରୁ କିଣି ଆଣି ପାଞ୍ଚାଳୀକୁ ପ୍ରେଜେଣ୍ଟ୍ ଦେଇଥିଲି ।ଅବଶ୍ୟ ଜାଣିଥିଲି ସେ ପଢାଶୁଣାରେ ଏତେ ଆଗ୍ରହୀ ନୁହେଁ – ନଚେତ୍ ପ୍ରାଇଭେଟ୍ ଭାବେ ବି.ଏ. ପରୀକ୍ଷା ଦେବାକୁ ସେ କାହିଁକି ଚାହୁଁଥିଲା ତା ନିଜ ଭାଇ କଲେଜ ଅଧ୍ୟାପକ ଥାଉ ଥାଉ ?

ଢେଙ୍କାନାଳ ବସ୍‌ଷ୍ଟାଣ୍ଡରେ ସେମାନଙ୍କର ଓହ୍ଲେଇଯିବା କଥା । ରାତ୍ରି ସେତେବେଳକୁ ବାରଟା ହେବ । ଭାଉଭଉଣୀ ଦିହେଁ ମୋତେ ଏତେ ଜୋର୍‌ଦାର ଅନୁରୋଧ କରି ମୋ ବ୍ୟାଗ୍‌ପତ୍ର ଓ ବ୍ରିଫ୍‌କେଶଟି ଜବରଦସ୍ତ ଧରି ଓହ୍ଲାଇ ଯିବେ ବୋଲି ମୁଁ ଭାବି ନଥିଲି । ଏ ଆପିଲ କ୍ରିକେଟ୍ ଖେଳର ସଂଗଠିତ ଆପିଲ୍ ଠାରୁ ମଧ୍ୟ ଆହୁରି ଥିଲା ଶକ୍ତିଶାଳୀ । ବିଶେଷତଃ ତନୁପାତଳୀ ସେଇ ସ୍କାର୍ଫ ଘୋଡ଼ି ହୋଇ ରହିଥିବା ଝିଅଟି ମୋତେ ଥରେ ଦି'ଥର କରୁଣ ଆଖିରେ ଚାହିଁ ରାତିକ ତାଙ୍କ ଘରେ ରହିଯିବାକୁ ଅନୁରୋଧ କରିବା ଭିତରେ ମୁଁ ପ୍ରାୟ ତରଳି ଯାଇଥିଲି । ରାତି ୨ଟାରେ ବାଦାମବାଡ଼ିରେ ଓହ୍ଲେଇ ରିକ୍‌ସା ଧରି ମୋ ଘର ତୁଳସୀପୁର ଯାଏ ଯିବାର ଭୟ ବି ମୋତେ କିଛି କିଛି ଜଡ଼ସଡ଼ କରୁଥିଲା । ବାସ୍ ମୋ ବ୍ରିଫ୍‌କେଶ ସେମାନେ ଧରି ଯେତେବେଳେ ଓହ୍ଲେଇ ଯାଇଛନ୍ତି ମୋର ବା ଆଉ ଉପାୟ କ'ଣ ଥିଲା ।

କ'ଣ ଥିଲା ଏ ଆକସ୍ମିକ ସଂପର୍କରେ ? ମୁଁ ତ ତରୁଣ ନଥିଲି କି ପାଞ୍ଚାଳୀ ମଧ୍ୟ ତରୁଣୀ ନଥିଲା । ସେ କିଶୋରୀଟିଏ ପରି ଦେଖା ଯାଉଥିଲା । ଲମ୍ବା ନଳୀ ଟ୍ରାଉଜର ଓ ପଂଜାବୀ ଉପରେ ତାକୁ ସଂପୂର୍ଣ୍ଣ ଆବୃତ୍ତ କରି ରଖିଥିବା ସ୍କାର୍ଫଟିରୁ ତା' ଦେହର ଦନ୍ତୁରିତ ଉଚ୍ଚତା ପ୍ରାୟ ବାରି ହେଉ ନଥିଲା । ଦୀର୍ଘ ବସ୍ ଯାତ୍ରାରେ ସେମାନେ ଏତେ ଶ୍ରାନ୍ତ ହୋଇ ପଡ଼ିଥିଲେ ଯେ ମୁହଁଟି ତାର ପ୍ରାୟ ଶୁଖିଲା ଦିଶୁଥିଲା । ତଥାପି ତାର ବାରମ୍ବାର ଅଳି କ୍ରମେ ଜିଗରରେ ପରିଣତ ହୋଇଥିଲା । ମୁଁ ଅନନ୍ୟୋପାୟ ହୋଇ କଣ ଓହ୍ଲାଇ ଯାଇଥିଲି ନା – କିଛିଥିଲା ସ୍ୱାଭାବିକ ଉଦ୍ଦୀପନା ? କିଛି ସଂପର୍କ ଗଢ଼ିବାର ଆଗ୍ରହ ? ଏଇଆ ତ ? ବାସ୍ ସେଥିପାଇଁ କୁଣ୍ଠିତ ହେବାପରି କିଛି ନ ଥିଲା ମୋର । କିନ୍ତୁ ସେ ଚାହୁଁ ଥିଲା ତାର ଅଧ୍ୟାପକ ଭାଇ ଭାଉଜଙ୍କୁ ବୁଝାଇ ମୁଁ ତାର ନାମ କୌଣସି ମହିଳା କଲେଜରେ ଲେଖାଇ ଦେବି ଓ ହଷ୍ଟେଲରେ ରହିବା ବ୍ୟବସ୍ଥା କରିଦେବି । ତା'ହେଲେ ଜଣେ ରେଗୁଲାର୍ ଛାତ୍ରୀଭାବେ ସେ ପରୀକ୍ଷା ଦେଇପାରିବ ଓ ଉପରକୁ ଉପର ପାଠପଢ଼ିବ ।

ସେଦିନ ବିଳମ୍ବିତ ରାତିରେ ସମଗ୍ର ପରିବାରର ଆତିଥ୍ୟରେ ମୁଁ ବିମୋହିତ ହୋଇ ପଡ଼ିଥିଲି । ଛୋଟ ଦି' ବଖୁରିଆ ଘରର ମେନ୍ ବେଡରୁମ୍‌କୁ ମୋ ଉଦ୍ଦେଶ୍ୟରେ ଛାଡ଼ି ଦେଇ ସମଗ୍ର ପରିବାରଟି ସେଦିନ ଗୋଟିଏ ଘରେ କିପରି ରାତ୍ରିବିତାଇଥିବେ–ସେକଥା ଭାବି ଅନେକ ଦିନଯାଏ ମୁଁ ଅଭିଭୂତ ହୋଇ ପଡ଼ିଥିଲି । ତା'ପରେ ଅନୁଗୁଳ ଯିବା ଆସିବା ରାସ୍ତାରେ ଥରେ ଦି'ଥର ବସ୍‌ରୁ ଓହ୍ଲାଇ ସେମାନଙ୍କୁ ଦେଖା କରି ଆସିଛି – ବିଶେଷତଃ ପାଞ୍ଚାଳୀର ପାଠପଢ଼ା ପାଇଁ କିଛି ଯତ୍ନ ମଧ୍ୟ ନେଇଛି । ସେମାନଙ୍କର ଏତେ ଆନ୍ତରିକତା ଓ ଆତିଥ୍ୟର ସୁଯୋଗ ନେବା ଉଚିତ ନୁହେଁ ଭାବି ବେଳେବେଳେ ପାଞ୍ଚାଳୀର



Digitized by PPRACHIN, SOA

ଅଜସ୍ର ଅନୁରୋଧକୁ ଟାଳଟୁଳ କରି ଜରୁରୀ କାମ ବାହାନାରେ ଚାଲି ଆସିଛି ମଧ୍ୟ ।

ପାଞ୍ଚାଳୀର ଚିଠିରେ କ'ଣ ଥିଲା ମୁଁ ଜାଣିନାହିଁ - ତେବେ ମୋ ଅନୁପସ୍ଥିତିରେ ଚିଠିଟି ପାଇ ଶ୍ରୀମତୀ ଦାସ ଏତେ ଉତ୍ତ୍ୟକ୍ତ ଥିଲେ ଯେ ମୁଁ ବାରଦିନ ଟୁର୍ ପରେ ଫେରି ଘରେ ପାଦ ନ ଦେଉଣୁ ସେ ବୋମାଟିଏ ଫୁଟେଇ ଦେଲେ ।

"ଏ ପାଞ୍ଚାଳୀ ପୁଣି କିଏ ? ତା' ସହିତ ପୁଣି କି ଭଳିଆ ସଂପର୍କ ଗଢ଼ିଲଣି ! ଯାଅ - ତାରି ଘରେ ରହିବ । ଏଠିକି ଆସିବା ଆଉ ଦରକାର ନାହିଁ । ବୁଢ଼ା ହେଲଣି । ତୁମକୁ ଲାଜ ନାହିଁ । ଘରକୁ ବସ୍‌ରେ ଆସୁ ଆସୁ ଓହ୍ଲାଇଯାଇ ଅପରିଚିତ ଲୋକଙ୍କ ଘରେ ରହିଯାଉଚ ?"

ଏକା ଦମ୍‌ରେ ଏତେଗୁଡ଼ିଏ ପ୍ରଶ୍ନ ମୋତେ ଚାରିଆଡୁ ଛୁଟି ଆସୁଥିବା ତୀରଗୁଡ଼ିଏ ପରି ବିଦ୍ଧ କରୁଥିଲା । ମୁଁ ସଂପୂର୍ଣ୍ଣ ଅପ୍ରସ୍ତୁତ ଥିବାରୁ ଆତ୍ମରକ୍ଷାର ଉପାୟ ହଠାତ୍ ଖୋଜି ପାଉ ନଥିଲି । ବାଟରୁ କେଡ଼େ ସଉକରେ କିଣି ଆଣିଥିବା ବଡ଼ ବଡ଼ ଚିଙ୍ଗୁଡ଼ି, ନନା ଦୋକାନର ଭଲ ରସଗୋଲା-ଡଟକା ପରିବାପତ୍ର- ଏସବୁ ଆଉ ଦେଖେଇବା ଅବସ୍ଥାରେ ମୁଁ ନଥିଲି । ପୁଅମାନେ ବି ଆସି ମାଆଙ୍କ ସାଙ୍ଗରେ କେତେବେଳୁ ଯୋଗ ଦେଇ ସାରିଥିଲେ ଓ ବାପାଙ୍କ ଉଦ୍ଦେଶ୍ୟରେ କିଛି କିଛି କଟୂକ୍ତି ମନ୍ତବ୍ୟ ବି ଛାଡୁଥିଲେ ଲକ୍ଷ୍ୟସ୍ଥିର ହୋଇ ନଥିବା ତୀରନ୍ଦାଜମାନଙ୍କ ଭଳି ।

ଘର ଭିତରକୁ ନ ଯାଇ ଫେରିଯିବି କି ? ଆତ୍ମଗୋପନ କରିବି ଏଇ ସହରର କୌଣସି ଲଜିଂରେ - ଅନ୍ତତଃ ତିନିଚାରୋଟି ଦିନ ପାଇଁ । ତାପରେ ଏମାନେ ବୁଝିବେ ପାଞ୍ଚାଳୀ ମିଥ୍‌ଟିଏ ମାତ୍ର - ପୁରାଣ ପୃଷ୍ଠାର ବିକୃତ ଛିନ୍ନ ପତ୍ରଟିଏ । ସଂପର୍କର ସେତୁଟି ଆପେ ଆପେ ସମୟର ସୁଅରେ ଭାସିଯିବ । ସତରେ ଯଦି ଆଉ କିଛି ଥାନ୍ତା ସେ ଝିଅଟି ସହ ମୋ ସଂପର୍କ - ଏମାନେ ମୋତେ ମୋଡ଼ିମାଡ଼ି ମୋ ହାତଗୋଡ଼ ଭାଙ୍ଗି ଦିଅନ୍ତେ ପରା । ସେ ଝିଅଟାକୁ ଦେଖିଲେ ଜାଣନ୍ତେ ଅତନ୍ତଃ ତାଙ୍କ ସ୍ୱାମୀଙ୍କର ଆସ୍‌ଥେଟିକ୍ ସେନ୍ସ କେବେ ବିପର୍ଯ୍ୟସ୍ତ ହୋଇ ନଥିବ । ଏ ବୟସରେ କିଏ ପୁଣି ପ୍ରେମରେ ପଡ଼େ ? ଆଉ ସେକ୍ସ-ସେ ନିଷିଦ୍ଧ ଇଲାକାକୁ ଯିବା କଥାହିଁ ଦୁଷ୍କର । ବୟସର ବ୍ୟବଧାନ ଏତେ ବେଶି ଯେ କେଉଁ ଅଠର କୋଡ଼ିଏ ବର୍ଷୀୟା ଝିଅ ଅବା ଘରୁ ଗୋଡ଼ କାଢ଼ି ଆସି ବୁଢ଼ାମାନଙ୍କ ସାଙ୍ଗରେ ହୋଟେଲରେ ରାତି ବିତେଇ ପାରିବ ? ଖୁବ୍ ବେଶିହେଲେ ପିଠିରେ ଥରେ ଦି'ଥର ହାତ ଥାପୁଡ଼ିବାକୁ ବିନା ଆପତ୍ତିରେ ଗ୍ରହଣ କରିନେଇପାରେ । ତା'ଛଡ଼ା ଆଉ ବା କ'ଣ ? ଶ୍ରୀମତୀ କଣ ଏସବୁ ବୁଝିପାରନ୍ତି ନାହିଁ । ନା-ବୁଝି ମଧ୍ୟ ଆଘାତ ହାଣି ଲହୁଲୁହାଣ କରିଦେବା ତାଙ୍କର ପତ୍ନୀତ୍ୱର ରକ୍ଷାକବଚ ବୋଲି ମନେ କରନ୍ତି ।

ଆଉ ମାଆ କଥାରେ ନାଚୁଥିବା ଏ ପୁଅମାନେ ? ସେମାନେ କ'ଣ ଚିଠି ପଢ଼ିଛନ୍ତି । କ'ଣ ବା ଚିଠିରେ ଲେଖାଯାଇଛି ? ଦେଖଉନା-ଦେଖାଅ- ମିଛୁଟାରେ ଧୂଆଁଳିଆ କୁହୁଡ଼ି ସୃଷ୍ଟିକରି ମୋତେ ଡରେଇବାର ଅର୍ଥ କ'ଣ ହୋଇପାରେ ? ବାଘ ତ ନୁହେଁ କାଗଜ ବାଘ ।" ଏତେ ଗୁଡ଼ାଏ ପ୍ରଶ୍ନ ପରେ ପରେ ସେଦିନ ଘରେ ଯେଉଁ ଝଡ଼



Digitized by PPRACHIN, SOA

ଉଠିଲା ତା’ ମୋ ବତୁରା ବତୁରା ଶୋକରେ ଓ ଲାଜରେ ଧୂସର ହୋଇ ପଡୁଥିଲା । ମୁଁ ଏତେ ସଉକରେ ଖୋଜି ଖୋଜି ଆଣିଥିବା ବଡ଼ ବଡ଼ ଚିଙ୍ଗୁଡ଼ି ତରକାରି ଛୁଇଁ ପାରି ନଥିଲି । ଅଳ୍ପଗଣ୍ଡେ ଭାତ ଖାଇ କଲେଜକୁ ଚାଲିଗଲି ଓ ତା’ପରେ ପ୍ରାୟ ୩/୪ ଦିନ ପାଇଁ ମୋ’ ଗାଁ ଘରେ ଏକାନ୍ତ ଆତ୍ମଗୋପନ । ଗାଁର ସନ୍ଦେହୀ ଆଖିକୁ ଏଡ଼େଇବା ପାଇଁ କିଛି କିଛି କୈଫିୟତ ଦେବାକୁ ହୋଇଥିଲା । ପୂଜାଛୁଟି ଆଗକୁ ମାସେ ଥିଲାବେଳେ ଏପରି ଅସମୟରେ ଦିନେ ହେଲେ ମୁଁ ଗାଁକୁ କେବେ ଆସି ନାହିଁ । ତେଣୁ ଗାଁ ଲୋକେ ବିସ୍ମିତ ହେବା ସ୍ୱାଭାବିକ ।

ପାଞ୍ଚାଳୀ ଚିଠିରେ କ’ଣ ଲେଖିଥିବ ? ମୁଁ ପ୍ରାୟ ଅନେକ ଦିନଯାଏ ଭାବିପାରୁନଥାଏ । କିଛି ଉଭଟତା ସୃଷ୍ଟି କଲାପରି ଚିନ୍ତାଶୀଳ ଝିଅ ସେ ନୁହେଁ । ଭାଷାରେ ଆବେଗ ସୃଷ୍ଟିକରି ଗୋଟାଏ ଘରେ ଝଡ଼ ଉଠାଇବା ପରି କିଛି ଘଟଣା ମଧ୍ୟ ଘଟିନାହିଁ । କୋଡ଼ିଏ ବର୍ଷର ଝିଅଟାଏ ହେଲେ ବି ଦେହର ସ୍ୱାଭାବିକ ଉଚ୍ଚନୀଚ ଚେହେରା ତାର ବୋଧହୁଏ ନଥିଲା । ସେଥିପାଇଁ ସେ ତା ଦେହକୁ ଅତି କଠିନ ଆବରଣ ଭିତରେ ବାନ୍ଧି ଲୁଚେଇ ରଖୁଥିଲା । ମୁଁ କ’ଣ କେବେ ସେଇ ଦେହଟାକୁ ଦେଖିବାକୁ ଲୋଭାତୁର ହୋଇଥିଲି ? କହିହେଇଚି କିଛି କଥା ଯାହା ହୁଏତ ମୋର ମନେ ନାହିଁ । ଏତେ ବେଶି ମୋ ସ୍ମୃତିକୁ ସେ ଆନ୍ଦୋଳିତ କରିଥିବା ପରି କାହିଁ ମନେ ହେଉନିତ ? ତେବେ ଚିଠିରେ କ’ଣ ବା ତା’ର ଲେଖିବାର ଥିଲା । ପୁଣି ମୋତେ ଚିଠି ଲେଖି ଡକେଇବାର ଉଦ୍ଦେଶ୍ୟ ବା କ’ଣ ? ମୋର ସୁସ୍ଥି-ପୀଡ଼ିତ ପରିବାର ଏପରି ଚିଠିକୁ ସ୍ୱାଭାବିକ ଭାବରେ ଗ୍ରହଣ କରିନଥିଲେ ସେମାନଙ୍କୁ ବା ମୁଁ କାହିଁକି ଦୋଷ ଦେବି ? କିଛି ଗୋପନୀୟ କାରଣ ନଥିଲେ ଝିଅଟିଏ ତା ବାପବୟସର ପ୍ରୌଢ଼ ପାଖକୁ ଏପରି ଚିଠିଟିଏ ଲେଖିବ ବା କାହିଁକି ?ପୁଣି ବାରମ୍ବାର ରାଣ ନିୟମ ପକାଇ ଡକାଇବ । କେଉଁ ସାହସରେ ?

ଅନେକଦିନ ଯାଏ ଶ୍ରୀମତୀ ମୋତେ ବାରମ୍ବାର ଏଇ ଚିଠିର ନାନାଦି ପଙ୍କ୍ତି ଉଦ୍ଧାର କରି ଆଘାତ ଦେବାକୁ ଭଲ ପାଉଥିଲେ । ତାଙ୍କ ଅଭିଯୋଗ ଯେ ମୁଁ ଗୋଟାଏ ଏକାନ୍ତ କାମୁକ, ନୁଙ୍ଗୁରା ଲୋକ । ମୋର ଆତ୍ମସମ୍ମାନ ପ୍ରତି ନିଘାନାହିଁ - ତେଣୁ ଯା’ ତା’ ଘରେ ମୁଁ କୁଆଡେ ଚଳିଯାଇପାରେ । ପୁଣି ଅଳ୍ପ ବୟସର ଏପରି ଝିଅଙ୍କୁ ପ୍ରଚୁର ଅର୍ଥ ଓ ଉପହାର ଦେଇ ଭଳାଇ ଦେଇପାରେ । ତେଣୁ ମୁଁ ଲଜ୍ଜାହୀନ, ଅବିବେକୀ ଓ ଅମଣିଷ ।

ଆତ୍ମରକ୍ଷା ପାଇଁ ମୁଁ ବେଶ୍ କିଛି ବିଦ୍ରୂପର ଶବ୍ଦ ବି ନିକ୍ଷେପ କରେ । ତେବେ କାଇଁଶିକା ଶର ପାଇଁ ମୋର ସେମିତି କିଛି ଶର ଥିଲେତ ? ଚିଠିଟିକୁ ଶ୍ରୀମତୀ ଅବ୍ୟର୍ଥ ଲକ୍ଷ୍ୟଭେଦୀ ଭାବେ ମୋ ଆଡକୁ କୋଷମୁକ୍ତ କରି ଦେଉଥିଲାବେଳେ ମୋ ପାଇଁ ପାଞ୍ଚାଳୀ କ୍ରମେ ମିଥିରେ ପରିଣତ ହୋଇଯାଇଥାଏ । ଏ ଆକସ୍ମିକ ଦେଖାସାକ୍ଷାତ, ଏ ଆମନ୍ତ୍ରଣ ଏତେ ଆତିଥ୍ୟ ଓ ମୋର ସେଠାରେ ରାତ୍ରିଯାପନ - ପୁଣି କେଉଁ ସମସ୍ୟା ମୁଁ ସମାଧାନ କରିବା ପାଇଁ ଅଭିପ୍ରେତ ଯେ - ଚିଠିରେ କୁଆଡ଼େ ସେଇପରି ଏକ ଆବେଗପ୍ରବଣ ଆକୁତି- “ଏଇ ଥରକ ଆସନ୍ତୁ, ଭାଇ ଭାଉଜଙ୍କୁ ସାକ୍ଷାତ କରିବେ । ସେମାନେ ବି



Digitized by PPRACHIN, SOA

ଆପଣଙ୍କ ଆସିବାକୁ ଚାହିଁଛନ୍ତି । ଆପଣଙ୍କୁ ମୋର ଖୁବ୍‌ବଡ଼ ସମସ୍ୟାଟି ସମାଧାନ କରିବାକୁ ହେବ- ଆପଣ ଆମର ଏତେ ଆପଣାର । ଆପଣଙ୍କୁ ଆମେ ସମସ୍ତେ ଏତେ ଭଲ ପାଉ । ସତରେ ଆସିବେ ନାହିଁ ? ନିଶ୍ଚୟ ଆସିବେ । ବେଶୀ ଡେରି କଲେ ମୁଁ ଅଭାଗିନୀ ଥଳକୂଳ ହରେଇ ବସିବି" । ଏମିତି ଥିଲା ଚିଠିର ଭାଷା ବୋଲି କେତେଥର ଶ୍ରୀମତୀ ଛିଗୁଲେଇ କହିଥିଲେ ବି ଚିଠିଟି ମୋତେ ଦେଖାଇନାହାନ୍ତି କାହିଁକି ? ମୋର ବି ଆତ୍ମରକ୍ଷା ପାଇଁ ଏହା ମଧ୍ୟରେ ଢେର ଶକ୍ତି ବଢ଼ି ଯାଇଚି । ମୁଁ କୌଣସି ରୋଷ ବାଣରେ ଜର୍ଜରିତ ହେବାର ନୁହେଁ । ବିଷ ମଧ୍ୟ ମୋତେ କାବୁ କରିବ ନାହିଁ । ବାଣର ମୁନ ଭାଙ୍ଗିଯିବ-କିନ୍ତୁ ବାଣଟି ବୁମେରାଂ ପରି ଶ୍ରୀମତୀଙ୍କ ପାଖକୁ ଶେଷରେ ଫେରିଯିବ ।

ଗୋଟାଏ କଥାକୁ ବାରମ୍ବାର କହିଲେ କଥାଟି ମହତ୍ୱ ଓ ଓଜନ ହରାଏ – ଏକଥା ତୁମେ ଜାଣ ନାହିଁ ଶ୍ରୀମତୀ । ଗୋଟାଏ ଛୋଟିଆ କଥାକୁ ଆଜିଯାଏ ଧରି ରଖି ତୁମେ କି ଆନନ୍ଦ ପାଉଚ ? ନା ମୋତେ ଖାଲି ଲହୁ ଲୁହାଣ କରିବାରେ ତୁମର ଅଭିଳାଷ ? ଦେଖୁନା ମୁଁ କିପରି ଏତେ ସହଜରେ ତୁମ ଶରମାନଙ୍କୁ ଫେରାଇ ଦେଉଚି । ପାଞ୍ଚାଳୀ ମିଥିଟିଏ । ସେ କେଉଁଠି ଥିଲା ବା ମୋର ତା' ସହିତ କାହିଁକି ସାକ୍ଷାତ ହୋଇଥିଲା ମୁଁ ଜାଣେ ନାହିଁ । ମନ ଭିତରେ ଧରି ରଖିବା ପରି ସେପରି କିଛି ନଥିଲା ବେଳେ ତୁମେ କାହିଁକି ବାରମ୍ବାର ତାକୁ ମନେ ପକେଇ ଦିଅ ? ଏଥିରୁ କ'ଣ ବା ପାଅ ତୁମେ ?

କିଛି ନ ଥିଲେ ଏପରି ବ୍ୟାକୁଳ ଭାବେ କିଏ ଚିଠି ଲେଖିପାରେ – ଆଉ ଡକେଇ ପାରେ ତୁମକୁ ? ନିଶ୍ଚୟ କିଛି ଭିତିରି ରହସ୍ୟ ଥିବ ।

ଯେତେ ଯାହା ରହସ୍ୟକୁ ତୁମେ କେବଳ ଉଦ୍‌ଘାଟନ କରିବାକୁ ଏଠି ଅଛ । ତୁମର ଆଉ କିଛି ଗୁରୁତ୍ୱପୂର୍ଣ୍ଣ କାମ ନାହିଁ ?

ଶ୍ରୀମତୀ ଉତ୍‌କ୍ଷିପ୍ତ ହୁଅନ୍ତି ଓ ଉଚ୍ଛନ୍ନ ମାନସିକତାରେ ମୋତେ ବାରମ୍ବାର ଆକ୍ରମଣ କରନ୍ତି ତାଙ୍କ ତୂଣୀରରୁ ସବୁଯାକ ଶର ସରିଗଲା ପର୍ଯ୍ୟନ୍ତ । "ନା ରୂପ ନା ଗୁଣ ? ଆଜିକା ଝିଅମାନେ ଭାରି ଚାଲାକ୍ ? ସହଜରେ ଧରା ଦେବେନି- ଟଙ୍କା ପଇସା ଝଡ଼େଇ ଉଦ୍ଦେଶ୍ୟ ସାଧନ କରି ଖସିଯିବେ"- ଶ୍ରୀମତୀ ଦାସ ଛିଗୁଲେଇଲା ଭଙ୍ଗୀରେ କହୁଥିଲେ ।

"ଜାଣ ତ, ତେବେ ଏଥିପାଇଁ ତୁମେ ଏତେ ବିଚଳିତ କହିଁକି ? ମୋର ଏ ପ୍ରତ୍ୟୁତ୍ତର କେବଳ ନିଆଁରେ ଘିଅ ଢାଳିଲା ପରି ତାଙ୍କୁ ତେଜେଇଥିଲା । ଥରେ ତାତିଗଲେ ଶୀତଳ ହେବାକୁ ତାଙ୍କୁ ବହୁତ ସମୟ ଲାଗେ । ସ୍ଥାନ ଅସ୍ଥାନ, ଲଘୁଜନ ବା ପରିଜନ ଭୁଲି ସେ ଯାହା ପାଟିକୁ ଆସେ ଗୁଡାଏ କହି ଦେଇଯାନ୍ତି ।

ମୁଁ ବା କୋଉ ଶାନ୍ତ ସୁଧାର ମଣିଷଟିଏ । ମୁଁ କଣ ନୀରବରେ ତାଙ୍କର ସବୁ ପ୍ରତିକ୍ରିୟାକୁ ହଜମ କରିଦେଇପାରେ ? ବେଳେବେଳେ ଧ୍ୱନିଠାରୁ ପ୍ରତିଧ୍ୱନି ବଳିପଡ଼େ – ମୁଁ ଖୁବ୍ ଠୋସ୍ ଶବ୍ଦରେ ପ୍ରତିବାଦ ଜଣାଏ – ସତେକି ସମୁଦାୟ ଘର ଉଚ୍ଛୁଳିପଡ଼ିବ- ଲହଡ଼ି ପରେ ଲହଡ଼ି ଉଠିବ- ଘର ଗଛବୃଛ ସବୁ ବୁଡ଼ିଯିବ ସେ ଲହଡ଼ିରେ ।

କ୍ରମେ ଆମ ଘରକୁ ଶାନ୍ତି ଫେରି ଆସୁଥିଲା ଓ ପାଞ୍ଚାଳୀ କଥା ନିଜଆଡୁ



Digitized by PPRACHIN, SOA

ଉଠେଇବାକୁ ଶ୍ରୀମତୀ ଦାସ ଆଉ ଏତେ ତତ୍ପର ହେଉନଥିଲେ । ବୋଧହୁଏ ଡେରିରେ ହେଲେବି ତାଙ୍କର ହୃଦ୍‌ବୋଧ ହେଇଥିଲା ତାଙ୍କ ସ୍ୱଚ୍ଛ ଶରତ ଆକାଶରେ ଭାସମାନ ଧଳାମେଘ ଖଣ୍ଡେପରି ବହୁ ଦୂରକୁ ସେ କଥା ଭାସିଯାଇଛି । କିନ୍ତୁ ମୁଦାପେଡ଼ି ଭିତରୁ ସାପୁଆ କେଳା ପଦ୍ମତୋଳା ବୋଲି ସାପକୁ ଛାଡ଼ିଦେଲା ପରି ଶ୍ରୀମତୀ ଦାସ ବେଳେବେଳେ ତାଙ୍କ ସାଇତା ଅତି ଗୋପନୀୟ ପତ୍ର– ପେଡ଼ିରୁ ପାଞ୍ଚାଳୀର ଚିଠିଟିକୁ ମୋ ଉଦ୍ଦେଶ୍ୟରେ ଛାଡ଼ି ଦେଉଥିଲେ । ସେଇ ଦିନ ମାନଙ୍କରେ କିଛି ସମୟ ପାଇଁ ଉତ୍ତେଜନା ଲାଗି ରହୁଥିଲା ଓ ତା'ପରେ ସ୍ୱାଭାବିକ ଭାବେ ବାତାବରଣ ଶୀତଳ ହେଇଯାଇଥିଲା । ମୁଁ ପାଞ୍ଚାଳୀ କଥା ପ୍ରାୟ ଭୁଲି ବସିଥିଲାବେଳେ ରେଲ ଷ୍ଟେସନ୍‌ରେ ତା' ଭାଇଙ୍କ ସହିତ ମୋର ହଠାତ୍ ସେଦିନ ସାକ୍ଷାତ୍ ହେଲା । ସେ ମୋତେ ସ୍ପଷ୍ଟ ଚିହ୍ନିପାରିଲେ ବି ମୁଁ ଦୋ' ଦୋ' ଚିହ୍ନା ହେଉଥିଲି । ପରିଚୟ ଦେଇ ସେ ପାଞ୍ଚାଳୀ ମୋ ପାଖୁ ଲେଖିଥିବା ଚିଠି କଥାହିଁ ପ୍ରଥମେ ଅବତାରଣା କଲେ ।

"ଆପଣ ତା' ଚିଠିର ଉତ୍ତର ନ ଦେବାରୁ ଓ ଆମ ଘରକୁ ନ ଆସିବାରୁ ସେ ଅନେକ କାନ୍ଦକଟା କରିଥିଲା । ବାରମ୍ବାର କହୁଥିଲା ସାର୍ ଆସିଲେ ସବୁ ସମସ୍ୟା ସମାଧାନ କରିଦେବେ । ସାର୍ ନିଶ୍ଚୟ ଆସିବେ । ମୁଁ ଚିଠି ଦେଇଚି । ନ ଆସିବେ କାହିଁକି ?"

ମୁଁ ବିଚଳିତ ହୋଇ ପଡ଼ିଲି । କହିବାକୁ ପାଟି ଲେଉଟିଲା ନାହିଁ ଯେ ସେ ଚିଠିଟି ଏବେ ବି ମୋ ପାଇଁ ଅପହଞ୍ଚ ରହିଛି ଏବଂ ଆମ ଘରେ କେତେ ଝଡ଼ ଉଠେଇଚି । ତେବେ ମୋର ସ୍ୱାଭାବିକ ପ୍ରତିକ୍ରିୟାକୁ ଅବଦମିତ ରଖି ମୁଁ ତାଙ୍କୁ ପଚାରିଲି - "କଣ ଲେଖିଥିଲା ଚିଠିରେ ?"

"ସେ ପ୍ରାୟ ଆପଣ ଯିବାପାଇଁ ମାସେ ଧରି ଅପେକ୍ଷା କରିଥିଲା ଓ ତା'ପରେ ଆମେ ଦିନେ ସକାଳୁ ଦେଖିଲାବେଳକୁ ତା ଶୋଇବା ଘରେ ସେ ଛାତରୁ ରଶି ଲଗେଇ ଲଟକି ରହିଛି । ବେକ ଚିପି ହୋଇ ଜିଭ ବାହାରି ପଡିଚି ଓ ଗୋଡ଼ ଦିଟା ନାଠିହେଇ ଲଟକି ରହିଚି ।"

ମୁଁ କଥାଟାକୁ ପ୍ରଥମେ ବିଶ୍ୱାସ କରିପାରିଲି ନାହିଁ । ପାଞ୍ଚାଳୀ ଆତ୍ମହତ୍ୟା କରିପାରେ କେଉଁଥିପାଇଁ ? କେଉଁ ଅପବାଦରେ ? ମୋ ମନରେ ସ୍ୱାଭାବିକ ପାପ ଛୁଇଁଲା- ମୋ ପାଇଁ ନୁହେଁ ତ ? ମୁଁ ପ୍ରାୟ ସ୍ଥାଣୁ ପାଲଟି ଯାଉଥିଲି । ତଥାପି ତାଙ୍କୁ ପଚାରି ବସିଲି- "ଏପରି ଘଟଣା କାହିଁକି ଘଟିଲା ?"

ସେ ଅପ୍ରତିଭ ହୋଇ ଉତ୍ତର ଦେଲେ - "ପାଞ୍ଚାଳୀ ଆମ ଟ୍ରେକର୍ ଡ୍ରାଇଭରକୁ ବାହାହେବାପାଇଁ ଜିଦ୍ କରୁଥିଲା । ଆମେ ସେଥିରେ କେହି ଏକମତ ହୋଇ ପାରିଲୁନି । ତାର ବିଶ୍ୱାସ ଥିଲା ଆପଣ ଯାଇଥିଲେ କିଛି ଗୋଟାଏ ବାଟ ଦେଖାଇଥାନ୍ତେ । ଆପଣ ଅନୁମୋଦନ କରିଥିଲେ ଆମେ କେହି ଅରାଜି ହୋଇ ନଥାନ୍ତୁ ବୋଲି ତାର ଭରସା ଥିଲା ।"

ମୁଁ ହତବାକ୍ ହୋଇଗଲି । ମୋ ପ୍ରତି ଏତେ ବିଶ୍ୱାସ ବା ପତିଆରା କଣ ପାଇଁ



Digitized by PPRACHIN, SOA

ଥିଲା ? ମନେ ପଡ଼ିଲା ମୁଁ ଯେଉଁଦିନ ରାତିରେ ତାଙ୍କ ଅତିଥି ହୋଇଥିଲି ଖୁବ୍ ସତର୍କତାର ସହିତ ସେ ମୋ ସହିତ କଥାବାର୍ତ୍ତା କରୁଥିଲା । ତା' ପରଦିନ ସକାଳେ ମୋତେ ଛାତ ଉପରକୁ ଡାକିନେଇ ଦେଖାଇଥିଲା ସେ ଯତ୍ନରେ ବଢ଼େଇଥିବା ଗୋଲାପ ଓ ସିଞ୍ଜିନାଲ୍ ଫୁଲର କୁଣ୍ଡଗୁଡ଼ିକୁ । ସେତେବେଳେ ପୂର୍ବ ଆକାଶରେ ନାଲି ଟୁକୁଟୁକୁ ଗୋଲାପୀ ସୂର୍ଯ୍ୟ ପିଣ୍ଡଟିଏ ଉଇଁ ଆସୁଥିଲା । ଆକାଶ ପୂର୍ବରାତିରେ ବର୍ଷାରେ ଫାଟି ପଡୁଥିଲେ ବି ସକାଳକୁ ସବୁ ଥିଲା ସ୍ୱଚ୍ଛ ଆଉ ସୁନ୍ଦର । ଦଳେ ଚଢ଼େଇ ପାଖ ଗଛରେ ବସି କିଚିରି ମିଚିରି କରୁଥିଲେ । ଅନତି ଦୂରରେ ଓସ୍ତଗଛ ଶୀର୍ଷରୁ ଟିଟିଭ ପକ୍ଷୀଟିଏ ସକାଳୁ ସକାଳୁ ଲମ୍ୱେଇ ଲମ୍ୱେଇ ରାବି ଉଠୁଥିଲା ଉଚ୍ଚରୁ ଉଚ୍ଚତର ସ୍ୱରରେ ଓ ତାପରେ କିଛି ସମୟ ପାଇଁ ସମ୍ପୂର୍ଣ୍ଣ ନିଷ୍କ୍ରାନ୍ତ ହୋଇ ଯାଉଥିଲା ଆସନ୍ନ ବର୍ଷାର ସୂଚନା ଦେଇ । ଆମେ ଦୁହେଁ ଛାତ ଉପରେ ବୁଲି ବୁଲି ଗୋଲାପ ଓ ହରଗଉରିଆ ଫୁଲର ପେଟ୍ଟାଗୁଡ଼ିକୁ ଦେଖୁଥିଲୁ । ପାଞ୍ଚାଳୀ ମୋତେ କ'ଣ କହିବ ବୋଲି କହି ପାରୁ ନଥିଲା ।

"ଆପଣ ଆଉ କେବେ ଆସିବେ ? ମୋର ଗୋଟାଏ ବଡ଼ ସମସ୍ୟା ଅଛି । ଆପଣ ହିଁ ତାର ସମାଧାନ କରିବେ ।" ପାଞ୍ଚାଳୀ କହିଥିଲା ।

ଆଉ ବେଶୀ କଥାବାର୍ତ୍ତା କରିବାକୁ ବେଳ ନଥିଲା ମୋର । ସକାଳ ବସ୍ ବେଳ ହୋଇ ଯାଇଥିଲା । ମୁଁ ଚା ଜଳଖିଆ ଖାଇ ଫେରିବାକୁ ପ୍ରସ୍ତୁତ ହେଲି । ତେବେ "ଆସିବି" ବୋଲି ପ୍ରତିଶ୍ରୁତିଟିଏ ମାତ୍ର ଦେଇଥିଲି ।

ପାଞ୍ଚାଳୀର ଭାଇଙ୍କୁ ମୁଁ କହିଲି - "ସେ ଯଦି ତାହାହିଁ ଚାହୁଁଥିଲା ଆପଣମାନଙ୍କର ଅରାଜି ହେବାର କ'ଣ ଥିଲା ?"

"ସେ ଡ୍ରାଇଭର ଆମ ଜାତିର ନୁହେଁ, ହିନ୍ଦୁ ବି ନୁହେଁ । ଆମେ ମୁସଲମାନ୍ ଟୋକା ପାଇଁ କିପରି ମତ ଦେଇ ପାରିଥାନ୍ତୁ । ଗାଁରେ ଆଉ ସମାଜରେ ଚଳି ପାରିଥାନ୍ତୁ ତ ?" ଅଧ୍ୟାପକ ଖୁବ୍ ସଂଭ୍ରମତାର ସହିତ ଅନୁଚ୍ଚ ସ୍ୱରରେ କହୁଥିଲେ ।

ବୁଝିଲି, ସମସ୍ୟାଟି ଅତ୍ୟନ୍ତ ଜଟିଳ ଥିଲା । ମୁଁ ମଧ୍ୟ ତାକୁ ସମାଧାନ କରି ପାରି ନଥାନ୍ତି । ଆମେ  କେହିବି ପାରିନଥାନ୍ତୁ । ତେବେ ତାକୁ ନିବୃତ୍ତ କରିପାରିଥାନ୍ତି-ତାର ଏତେ ବଡ଼ ଆଗ୍ରହକୁ ଚୂରି ଦେଇ ପାରିବା ଶକ୍ତି ମୋର ଥିଲା କି ?

ସେଇ ହତାଶାରେ ପାଞ୍ଚାଳୀ ଯେ ଆତ୍ମହତ୍ୟା କରିବ- ଏକଥା ମୁଁ ଭାବି ପାରୁନଥିଲି । ପ୍ରେମ କେତେ ଗଭୀର ହେଲେ ଅପ୍ରାପ୍ତିର ଅବସୋସରେ ଜଣେ ଆତ୍ମହତ୍ୟା କରିପାରେ ? ପାଞ୍ଚାଳୀର ଭଲ ପାଇବା ଥିଲା ସେହିପରି ଶୁଦ୍ଧ ଓ ଅବିମିଶ୍ର । କେଉଁ ପରିସ୍ଥିତିରେ ସେ ଏ ମୁସଲମାନ ଯୁବକଟି ପ୍ରତି ଟଳିଥିଲା ତା ହୁଏତ ଗୋପନୀୟ ହୋଇ ରହିଗଲା ସବୁଦିନ ପାଇଁ । ପାଞ୍ଚାଳୀର ଭାଇ କାନ୍ଦ କାନ୍ଦ ହୋଇ ଯାଉଥିଲେ । ମୁଁ ତାଙ୍କ ପିଠି ଥାପୁଡେଇ ଧୈର୍ଯ୍ୟ ଧରିବାକୁ ଅନୁରୋଧ କରିଥିଲି । ପାଞ୍ଚାଳୀକୁ ସେମାନେ ଯେ ଭଲ ପାଉଥିଲେ - ସନ୍ଦେହ ନାହିଁ । କିନ୍ତୁ ଏପରି ଅସହାୟ ଭାବରେ ସେ ଜୀବନ ହାରିଦେବ - ବୋଧହୁଏ ଏ ଆଶଙ୍କା କାହା ମନରେ ନଥିଲା ।



Digitized by PPRACHIN, SOA

ସେଦିନ ମୁଁ ଖୁବ୍ ଭାରାକ୍ରାନ୍ତ ମନନେଇ ଘରକୁ ଫେରିଥିଲି । ଶ୍ରୀମତୀ ଦାସଙ୍କୁ ଏ କଥା ନ ଜଣାଇବାକୁ ମନେ ମନେ ସିଦ୍ଧାନ୍ତ କରିଥିଲି । କାରଣ ସେ ହୁଏତ ନାନା କାଳ୍ପନିକ ଆରୋପରେ ମୋତେ ରକ୍ତାକ୍ତ କରିଦେବେ ଆଉ ପାଞ୍ଚାଳୀକୁ 'ବାଜେଝିଅ'ଟାଏ ବୋଲି କହି ବିଦ୍ରୂପ କରିବେ । ମନ ଭିତରେ କଥାଟିକୁ ଗୋପନୀୟ ରଖିବାକୁ ମୋତେ ବେଶ୍ କିଛି ମାନସିକ ଆଲୋଡ଼ନର ଶିକାର ହେବାକୁ ପଡ଼ିଥିଲା ।

ଅନେକ ଦିନପରେ ପ୍ରାୟ ଏ ଘଟଣାର ବର୍ଷକ ପରେ ସେଦିନ ଶ୍ରୀମତୀ ପୁଣିଥରେ ମୋତେ ସେଇ ଚିଠିର ଶର ନିକ୍ଷେପ କରି ଅତି କୁତ୍ସିତ ଭାଷାରେ "ପାଞ୍ଚାଳୀ ପାଖକୁ ଯାଉନ" କହି ଆକ୍ଷେପ କରୁଥିଲାବେଳେ ମୁଁ ଆଉ ଥୟ ଧରି ନପାରି ତାକୁ କହିଦେଲି- "ସେତ ବର୍ତ୍ତମାନ ସ୍ୱର୍ଗରେ । ମୋତେ କ'ଣ ସେଇଠିକି ଯିବାକୁ ହେବ ।"

ଶ୍ରୀମତୀ ଦାସ ନିଆଁରେ ପାଣି ପଡ଼ିବାପରି ଶୀତଳ ହୋଇଗଲେ ଓ କ୍ରମେ ନରମି ଆସିଲେ ଅତି ସ୍ୱାଭାବିକ ଭାବରେ । ମୋ କଥାର ବ୍ୟଞ୍ଜନାକୁ ସେ ହଠାତ୍ ଅବବୋଧ କରି ପାରୁନଥିଲେ । ତା'ପରେ ସମସ୍ତ ଘଟଣାଟି ମୁଁ ତାଙ୍କୁ ଯଥାରୀତି ବର୍ଣ୍ଣନା କଲାପରେ ସେ ମନ୍ତବ୍ୟ ଦେଲେ -

"ପାଞ୍ଚାଳୀ ଲିଭେଣ୍ଟାରିଟିଏ ହୋଇ ରହିଯିବ । ମୁଁ ତାର ମାଆ ହୋଇଥିଲେ ସେ ମୁସଲମାନ ପିଲାଟି ସହିତ ଘରଛାଡ଼ି ପଳେଇ ଯିବାକୁ ପରାମର୍ଶ ଦେଇଥାନ୍ତି ।"

ମୁଁ ବିସ୍ମୟ ବିସ୍ଫାରିତ ଆଖିରେ ଶ୍ରୀମତୀ ଦାସଙ୍କୁ ଚାହିଁ ରହିଲି । ନାରୀମନର ଏଇ ବିଚିତ୍ର ଦ୍ୱୈତସତ୍ତାରେ ମୁ ଅଭିଭୂତ ହୋଇ ପଡୁଥିଲି । ଆମ ଦୁହିଁଙ୍କ ମନରେ ସମଭାବରେ ପାଞ୍ଚାଳୀ ପ୍ରତି ଏତେ ଶ୍ରଦ୍ଧା ଓ ସମର୍ଥନ ଆଗରୁ କେବେ ପ୍ରକାଶ ପାଇ ନଥିଲା । ଭାବୁଥିଲି ପାଞ୍ଚାଳୀ ଶବ୍ଦର ନା ସ୍ମୃତିର । ପୁରାଣର ନା ବାସ୍ତବ ଜୀବନର । ଲୋକ ଅପବାଦକୁ ଡରିଥିଲେ ପୁରାଣର ପାଞ୍ଚାଳୀ ପାଞ୍ଚଜଣଙ୍କୁ ପତିରୂପେ ଗ୍ରହଣ କରିପାରିନଥାନ୍ତେ । ଆଉ ଏ ପାଞ୍ଚାଳୀର ଲୋକ ଅପବାଦକୁ ନା ନିଜକୁ ଏତେ ଡର ଥିଲା ? କାହାକୁ ଏତେ ଡର ? କାହିଁକି ?





Digitized by PPRACHIN, SOA

# ଶ୍ୱାନ ଉପାଖ୍ୟାନ

ସେମାନେ କ'ଣ ଦୁଇ ବଂଧୁ, ପ୍ରେମିକ ପ୍ରେମିକା ନା ପତିପତ୍ନୀ ? ମୁଁ ସବୁଦିନ ପ୍ରାତଃ ଭ୍ରମଣରେ ଗଲାବେଳେ ସେ ଦୁହିଙ୍କୁ ଦେଖେ । ଅନେକ ସମୟରେ ପାଖାପାଖି ଲଗାଲଗି ହୋଇ ଶୋଇଥାନ୍ତି, କେତେବେଳେ ବା ପରସ୍ପରଠାରୁ କିଛି ବ୍ୟବଧାନରେ । ଜଣକ ଆଖିରେ ସବୁବେଳେ ବିଷଣ୍ଣତା-ସେ ପୁରୁଷ; ଆଉ ଜଣକ ଆଖିରେ ସବୁବେଳେ ଚପଳତା-ସେ ନାରୀ ! ମୁଁ ମୋ ବାଡ଼ି ଦେଖେଇଲେ ବି ସେମାନେ ଘୁଞ୍ଚି ଯାଆନ୍ତିନି-ବୋଧହୁଏ ଜାଣନ୍ତି, ଏଇ ବାଟ ଦେଇ ସବୁଦିନେ ବୁଲିବାକୁ ଯାଉଥିବା ବୁଢ଼ା ଲୋକଟି କେବେବି ବାଡ଼ିରେ ପାହାରେ ପିଟି ଦବନି । କିନ୍ତୁ ଦିନେ ମୁଁ ପୁରୁଷ ଛଉକା ଉପରେ ରାଗିଯାଇଥିଲି ଓ ବାଡ଼ିରେ ପାହାରେ ପକାଇଥିଲି । କାରଣ ତା' ଉପରେ ମୋର କ୍ରୋଧ ଜମାଟ ବାନ୍ଧିଥିଲା । ସେ ବିନାକାରଣରେ ଏକ ସୁନ୍ଦର ଭିଣା ତୁଳା ପରି ଧଳା ଲୋମଶ ବିଦେଶୀବଂଶଜ କୁକୁର ଛୁଆଟିକୁ କାମୁଡ଼ି ଦରମରା କରି ଦେଇଥିଲା । ପ୍ରାଣ ବିକଳରେ ତା ଦାନ୍ତର ଜାବରୁ ଆତ୍ମରକ୍ଷା କରି ଛୁଆଟି ଯେତେବେଳେ ଆଗ ରାସ୍ତାରେ ଦଉଡୁ ଥିଲା ଛଉକା କୁକୁରଟି ତାକୁ ପୁନଶ୍ଚ ଆକ୍ରମଣ କରିବାକୁ ତା' ପଛେ ପଛେ ଗୋଡ଼ାଇଥିଲା । ମୁଁ ନଥିଲେ ସୁନ୍ଦର ଲୋମଶ ଧଳା କୁକୁର ଛୁଆଟି ସେଦିନ ମରିଯାଇଥାନ୍ତା । ମୁଁ ପଛେ ପଛେ ଗୋଡ଼େଇ ଛଉକା ମୁହଁରୁ ତାକୁ କେବଳ ରକ୍ଷା କରି ନଥିଲି, ତାକୁ ପଳାଇଯିବାରେ ସାହାଯ୍ୟ କରିଥିଲି । ସେ ଦଉଡ଼ି ଦଉଡ଼ି ଅନ୍ୟ ଏକ ଇଲାକା ଭିତରେ ପ୍ରବେଶ କରି ସାରିଥିଲା, ଯେଉଁ ଇଲାକାଟି ଥିଲା ଛଉକା କୁକୁରଟି ପାଇଁ ନିଷିଦ୍ଧାଞ୍ଚଳ । ପ୍ରବେଶମାତ୍ରେ ଶତ୍ରୁପକ୍ଷ ତାକୁ ଆକ୍ରମଣ କରିବାକୁ ଭିଡ଼ି ଆସିଥାନ୍ତେ । ଲାଂଗୁଡ଼ ଜାକି ସେ ଫେରି ଆସିଥାନ୍ତା ତା ନିରାପଦ ଅଞ୍ଚଳକୁ, ଯେଉଁ ଅଞ୍ଚଳର ବିସ୍ତୃତି ଥିଲା ଡୁପ୍ଲେକ୍ସ ୨୨ଠାରୁ ୩୦ ପର୍ଯ୍ୟନ୍ତ ପରିବ୍ୟାପ୍ତ ।

ସାହୁବାବୁଙ୍କ ଘର ସାମ୍ନାରେ କିମ୍ବା ଡାକ୍ତରବାବୁଙ୍କ ଘର ସାମ୍ନାରେ ଛଉକା ଓ ନାଲି ପ୍ରାୟ ସବୁବେଳେ ଶୋଇଥା'ନ୍ତି, କିମ୍ବା ବୁଲୁଥାନ୍ତି, କିମ୍ବା ସାହୁବାବୁଙ୍କ ଘରୁ ଦିଆଯାଉଥିବା ରୁଟି ଖାଉଥା'ନ୍ତି । କେହି କାହାଠାରୁ ଅନ୍ତର ହେବା ଅନ୍ତତଃ ମୁଁ ଦେଖିନାହିଁ । ବେଳେବେଳେ ନାଲି କୌଣସି କାରଣରୁ ଦଉଡ଼ିଲେ ଛଉକା ତା' ପଛେ ପଛେ ଗୋଡ଼େଇ ଗୋଡ଼େଇ ଯାଏ । ମା' କ୍ଲିନିକ୍‌ର ସାନ ପିଲାଟିକୁ ଧରି କେହି ଜଣେ ଫାଟକ ଆର ପାଖରୁ ତା' ହାତରେ ରୋଟିର ଟୁକୁରା ଧରାଇ ଦିଅନ୍ତି । ସେ ଟୁକୁରା ଫିଙ୍ଗିବା ମାତ୍ରେ କଳା ଛଉକା ଡେଇଁ ପଡ଼ି ଆଗ ତା ପାଟିରେ ଟୁକୁରାକୁ ଧରିନିଏ । କେବେ ବିସ୍କୁଟର



Digitized by PPRACHIN, SOA

ଟୁକୁରା ବି ନାଲିକି ମିଳେ । କିନ୍ତୁ ତାର ଭାଗ କମ୍ ଥାଏ- କାରଣ ସେ ଛଉକା ପରି ବଳୁଆ ନୁହେଁ । ସେ ନାରୀ- ମିଳିଲେ ଖୁସି, ନ ମିଳିଲେ ନାହିଁ । ପୁରୁଷ ସବୁ କଥାରେ ବଳୀୟାର, ମାଡ଼ିବସି ସବୁ ଖାଇବ, ଟିକେବି ତା ମନରେ ଅନୁକଂପା ନଥିବ ଯଦିଓ ନାଲି କୁକୁରଟି ସବୁଦିନେ ପାଖରେ ଅଛି, ପାଖରେ ଶୋଉଛି । ଖାଉ ଗୋଟାଏ ରୁଟିର ଟୁକୁରା । ତା' ପାଟିରୁ ନ ସରୁଣୁ କୁନି ପିଲାଟି ପକାଉଥିବା ଟୁକୁରାକୁ ସେ ପଛରୁ ଝାଙ୍କି ନେବ, ଭାଗ କିନ୍ତୁ ଦେବ ନାହିଁ । ତାରି ଭିତରେ କେତୋଟି ଟୁକୁରା ଯଦି ନାଲି କୁକୁରଟିର ହାବୁଡ଼ରେ ପଡ଼ିଥିବ ସେଇଥିରେ ତାର ତୃପ୍ତି କହିଲେ ନସରେ । ପେଟ ପଛେ ସବୁବେଳେ କଂକାଳରେ ମିଶିଯାଉଥିବ, ବୋଧହୁଏ ଭୋକରେ ହେଉଥିବ ଆଉଟୁ ପାଉଟୁ, କିନ୍ତୁ ଜୋର କରି ଛଡ଼ାଇ ଆଣିପାରିବନି ତା ଭାଗ । ଶିଶୁଟି କିନ୍ତୁ ବିଚାର ନିରପେକ୍ଷ । ସେ ସୁବିଧା ଦେଖି ମଝିରେ ମଝିରେ ନାଲି କୁକୁରଟା ପାଖୁ ତା ପାଟି ପାଖରେ ପଡ଼ିବା ପରି କାଇଦାରେ ବିସ୍କୁଟ ବା ରୁଟିର ଟୁକୁରା ଫୋପାଡ଼ି ଦେଉଥିବ । ନାଲିର ସେତେବେଳେ ବାଜିମାତ୍ ।

ସବୁଦିନେ ତଥାପି ସେମାନେ ସାଙ୍ଗପାଙ୍ଗ ହୋଇ ଶୋଇଥିବେ, ଦଉଡୁଥିବେ, ଦରକାର ହେଲେ ଆଉ କେଉଁ ଅନୁପ୍ରବେଶକରୀ ଶତ୍ରୁ କୁକୁରକୁ ଖେଦୁଥିବେ । ମୋ ବାଡ଼ିକୁ ତାଙ୍କର କିଛି ମାତ୍ରାରେ ସେଦିନ ଡର ଆସିଯାଇଥିବାରୁ ମୋତେ ଦେଖିଲେ ରାସ୍ତା ଉପରୁ ଉଠି ସାହୁବାବୁଙ୍କ ବାଡ଼ି ଭିତରକୁ ପଶିଯିବେ, ନଇଲେ ରାସ୍ତାକଡ଼କୁ ଆଡ଼େଇ ହୋଇଯିବେ । ମାଡ଼ ଖାଇବା ପରଦିନ ଅବଶ୍ୟ କଳା ଛଉକା କୁକୁରଟା ମୋତେ ଦେଖି ଭୁକି ଉଠିଥିଲା । ମୁଁ କିନ୍ତୁ ମୋ ବାଡ଼ିକୁ ଧରି ତାକୁ ଅବଜ୍ଞା କରି ଧୀରେ ଚାଲି ଯାଇଥିଲି । ଏମିତି ତିନି ଚାରିଦିନ ପରେ ପୁଣି ଆମ ଭିତରେ ସ୍ୱାଭାବିକ ହୋଇଗଲା ପରିବେଶ । ତାର ମୋ ପ୍ରତି ଭୟ ନଥିଲା; କିମ୍ବା ମୋର ତା' ଉପରେ ରାଗ ନଥିଲା । ବଡ଼ ଚୁପ୍‌ଚାପ ସୁଧାର କୁକୁର ଯୋଡ଼ିକ ତାଙ୍କ ଜୀବନଧାରାରେ ମୋତେ ଅନନ୍ୟ ଜଣା ଯାଉଥିଲେ ।

ବର୍ଷାଦିନ ଆସିଲା । ସେମାନେ ଆହୁରି ଆହୁରି ପାଖପାଖ ହୋଇ ଜଡ଼ୀଭୂତ ହେବାକୁ ଚାହୁଁଥିଲେ ବୋଧହୁଏ । କିନ୍ତୁ ଆଖିରେ ପଡ଼ିବା ପରି କୌଣସି ଦୃଶ୍ୟ ମୁଁ ପ୍ରାତଃ ଭ୍ରମଣରେ କେବେ ବି ଦେଖିନାହିଁ । କିନ୍ତୁ ବେଳେବେଳେ ଦ୍ୱିପ୍ରହରରେ ବା ଆସନ୍ନ ସଂଜରେ ଗଲାବେଳେ ଦେଖିଛି ସେମାନେ ଦୁହେଁ ପରସ୍ପରକୁ ଗେଲ କରୁଛନ୍ତି । ଦଉଡ଼ା ଦଉଡ଼ି ଖେଳରେ ମାତିଛନ୍ତି- କିନ୍ତୁ ପ୍ରେମର ପରିଣତି କେବେବି ଦୃଷ୍ଟିଗୋଚର ହୁଏନାହିଁ । ମୁଁ ବୁଝେ ଉଭୟେ ପ୍ରଣୟୀ ଓ ପ୍ରଣୟିନୀ- କିନ୍ତୁ ବର୍ଷା ଋତୁର ପ୍ରଭାବ ସେମାନଙ୍କୁ ଏକାକାର ହୋଇ ଯିବାକୁ କଣ ବାଉଳା କରେ ନାହିଁ ? ମେଳରେ ନଥିବା ସେମାନେ କଣ ଦୁଇଟି ନିଃସଙ୍ଗ ପଦାତିକ । ଗୋଟିଏ ବର୍ଷାଦିନେ ବି ତଥାପି ବିଷଣ୍ଣ ଆଉ ଅନ୍ୟଟି କରକା ପରି ବିଗଳିତ । କ'ଣ ହୋଇପାରେ ସେମାନଙ୍କ ମନସ୍ତତ୍ତ୍ୱ ? ମୁଁ ଆଦୌ ବୁଝିପାରେନା । ବେଳେବେଳେ ସେମାନଙ୍କ କୌତୁକ ଖେଳ ମୋତେ ରହସ୍ୟାତ୍ମକ ଲାଗେ । ପ୍ରେମିକ ପ୍ରେମିକା ନା ସ୍ୱାମୀ ସ୍ତ୍ରୀ ? ମୋର ଯେପରି ମନେହୁଏ ସେମାନେ ସ୍ୱାମୀ ସ୍ତ୍ରୀ । କାରଣ



Digitized by PPRACHIN, SOA

କେହି କାହା ପାଖରୁ ଅନ୍ତର ହେବେ ନାହିଁ । ନିଜ ଇଲାକାକୁ ଭୁଲ୍‌ରେ ଆଉ କେଉଁ କୁକୁର ଆସିଗଲେ ତାକୁ କାମୁଡ଼ି ଗୋଡ଼େଇବେ । ଆଗେ ଆଗେ ଦଉଡ଼ୁଥିବ ଛଉକା ଓ ପଛେ ପଛେ ତାର ପତ୍ନୀ ନାଲିପାନବିବି । ସେମାନେ ମୋତେ ତାସ୍‌ର କାଳିପାନ ରାଜା ଓ ନାଲିପାନ ରାଣୀ ପରି ଲାଗନ୍ତି । ତାଙ୍କ ବିନା ଅନୁମତିରେ ପୁରୁଷ ହେଉ ବା ନାରୀ ହେଉ ଆଉ ଗୋଟାଏ ଚତୁଷ୍ପଦୀ ପଶିଆସିବ ସେମାନେ କିପରି ସେ କଥା ସହି ପାରିବେ ? ମୁଁ ଭାବେ ଏ ଅନୁପ୍ରବେଶକାରୀ ପ୍ରତି ମାଈ କୁକୁରଟିର ଏତେ ଧ୍ୟାନ ନାହିଁ, ଯେତେ ଅଛି କଳା ଛଉକା ପୁରୁଷ କୁକୁରଟିର । ଜୋର୍ ଥାଉ ବା ନଥାଉ ସେ ଧପାଲି ଯିବ । ତାର ଖାମିଦମାନେ ତାର ବଳ । ସେମାନେ ତାକୁ ଓ ନାଲିକୁ ଖାଇବାକୁ ଦିଅନ୍ତି- ଏଠି ତୃତୀୟର ସ୍ଥାନ ନାହିଁ ।

ଏମିତି ଏମିତି ଜୁଲାଇ ଯାଇ ଅଗଷ୍ଟ ମାସ ଅଧାଅଧି ହେଲା । ଆକାଶରେ କଳାହାଣ୍ଡିଆ ମେଘ ଘନ୍ଟେଇ ଉଠିଲେ ଏ ଅଞ୍ଚଳର ବାଳୁତ ଓ ବୃଦ୍ଧ ବୃଷଭମାନେ ଅସମ୍ଭାଳ ହୋଇ ଉଠିବାର ଦେଖାଯାଏ; କିନ୍ତୁ ସେ ଦୁହିଁଙ୍କ ଭିତରେ ଚାଞ୍ଚଲ୍ୟ ତଥାପି କଣ ଆସୁ ନାହିଁ ? ହୁଏତ ରାତିର ନିର୍ଜନ ନିବିଡ଼ତା ଭିତରେ ଆସୁଥିବ । ସେମାନେ ଏକାନ୍ତରେ ପରସ୍ପରକୁ ନିବିଡ଼ଭାବେ ଉପଭୋଗ କରୁଥିବେ । ଦିବାଭାଗରେ କେବଳ କ୍ଲାନ୍ତି ଓ ସୁପ୍ତି । କିନ୍ତୁ ନାଲିକୁକୁରଟିର ହାବଭାବ ଦେଖି ମୋ ମନରେ ସନ୍ଦେହ ଆସେ-ବୋଧହୁଏ ସେମାନେ ଏବେବି ବିବାହ ବଂଧନରେ ବାନ୍ଧି ହୋଇ ନାହାନ୍ତି । ତଥାପି ସେମାନେ ସିନେମାର ହିରୋ ହିରୋଇନ୍‌ମାନଙ୍କ ପରି ବାକ୍‌ଦତ୍ତ ଓ ବାକ୍‌ଦତ୍ତା । କାହିଁ ମାଈ କୁକୁରଟିର ଦେହରେ ରତିତୃପ୍ତିର କୌଣସି ଆଭାସ ଦେଖାଯାଏନି ତ ! ସେମାନେ ସେମିତି ପାଖକୁ ପାଖ ଲାଗି ସକାଳଟାରେ ଶୋଇଥାନ୍ତି । ଅଥଚ, ମୁଖ୍ୟ ରାସ୍ତା ସାରା ଦଳଦଳ କୁକୁରଙ୍କ ଶବ୍ଦାୟିତ ଶୋଭାଯାତ୍ରା ଲାଗି ରହିଥାଏ । ଏମାନେ ସେପରି କୌଣସି ମେଳରେ ନଥାନ୍ତି । ସେମିତି ଏକାକୀ-ସ୍ଥିତିବାଦୀ ଦୁଇଟି ଚରିତ୍ର ପରି ମୋତେ ଭାବିବାକୁ ବେଶ୍ ଉପାଦାନ ଯୋଗାନ୍ତି ।

କିନ୍ତୁ ଦିନେ ଚାରୋଟି ବଳୀୟାର ପୁରୁଷ କୁକୁର ହଠାତ୍ ସକାଳୁ ସକାଳୁ ଏ ଇଲାକା ଭିତରକୁ ଧସି ଆସିଲେ । ସେମାନେ ଦିଗ୍‌ବିଜୟୀ ବୀର ପରି ମନେ ହେଉଥିଲେ । ଏକବାରେ ଉନ୍ମତ୍ତ, ଉଚ୍ଛନ୍ନ ଓ ଦୁର୍ବିନୀତ । ଯେଉଁ ଗଛ ଦେଖିଲେ ସେଥିରେ ଗୋଡ଼ଟେକି ପରିସ୍ରା କରି ବସିଲେ । ନାଚିଲେ, କୁଦିଲେ, ମାଈ କୁକୁରଟିକୁ ସେମାନଙ୍କ ଭାଷାରେ ସୁତୁରେଇ ନାନାପ୍ରକାର ଇଂଗିତ ଦେଲେ, ଆହ୍ୱାନ କଲେ । କଳା ଛଉକାଟି ପ୍ରଥମେ ପ୍ରତିରୋଧ କରିବାକୁ ଭୁକାଭୁକି କରି ତାର ପ୍ରତିବାଦ ଜଣାଇଲା । ସେମାନେ ତା ପ୍ରତିବାଦକୁ ଖାତିର କଲେନି । ଖୁବ୍ ଶୀଘ୍ର ସେମାନେ ମାଈ ନାଲି କୁକୁରଟିକୁ ତାଙ୍କ ଦଳ ଭିତରେ ସାମିଲ କରିଦେଲେ, ତାର ପ୍ରତିବାଦ ନଥିଲା, ବରଂ ଅନୁଚ୍ଚ ସ୍ୱରରେ ମାଈ କୁକୁରଟି ସମ୍ମତିର ପରିଭାଷା ପ୍ରକାଶ କରୁଥିଲା । ସେମାନେ ତାର ସର୍ବାଙ୍ଗକୁ ଶୁଙ୍ଘି ପକେଇଲେ । ସେମାନଙ୍କ ଆଦରରେ ମାଈ ନାଲି କୁକୁରଟି ଦ୍ରବୀଭୂତ ହୋଇଯାଉଥିଲା ।



Digitized by PPRACHIN, SOA

ବିଷଣ୍ଣ ଉଦାସୀନତାରୁ ପାଉଥିଲା ମୁକ୍ତିର ରାହା । ଛଉକା ପୁରୁଷ କୁକୁରଟି ଅନେକ ଭୁକିଲା ଓ ତାକୁ ଚାରିଜଣରୁ ଜଣେ ଆକ୍ରମଣ କରିବାକୁ ଗୋଡ଼େଇ ଆସିବାରୁ ସାହୁଘର ବାଡ଼ି ଭିତରକୁ ପ୍ରାଣ ବିକଳରେ ପଶିଗଲା । ବୋଧହୁଏ ଅନୁଭବ କଲା ଯୁଦ୍ଧ ନୁହେଁ ଆତ୍ମରକ୍ଷାହିଁ ଏ ପରିସ୍ଥିତିରେ ସବୁଠାରୁ ବିଜ୍ଞତା ହେବ । ତଥାପି ଅନ୍ତରାଳରୁ ସେ ପ୍ରତିବାଦର ଲହରିତ ସ୍ୱର ଶୁଣାଉଥିଲା । ତା' ଭାଷାରେ ସେମାନଙ୍କ ସହିତ ଯିବାକୁ ନାଲି କୁକୁରଟିକୁ ବାରଣ କରୁଥିଲା । କିନ୍ତୁ ନାଲି କୁକୁର ସ୍ୱରରେ ଥିଲା କୋମଳତା ଓ ମୁକ୍ତିର ଇସାରା । ସେ ଅନ୍ୟ ଇଲାକାକୁ ଯିବ । ସେ ଅଂଚଳର ମଣିଷ ଓ ପ୍ରକୃତିକୁ ଦେଖିବ । ସବୁଦିନେ ଗୋଟିଏ ସ୍ଥାନରେ ଓ ଜଣକ ଅଧୀନରେ ପଡ଼ି ରହିବା ତା' ପାଇଁ ସ୍ୱାଦ୍ୟ ମନେ ହେଉ ନଥିଲା ବୋଧହୁଏ । ଏଥର ସେ ଦେହ ଓ ମନରେ ମୁକ୍ତି ଚାହେଁ । ଆଗେଇଯିବ ଯେଉଁଆଡ଼କୁ ଦିଗ୍‌ବିଜୟୀମାନେ ତାକୁ ଡାକିନେବେ । ଚାରିଚାରି ଜଣ ବଳିଷ୍ଠ ଓ ସୁନ୍ଦର କୁକୁରଙ୍କ ହେପାଜତରେ ସେ ବିଗଳିତ ହୋଇ ପଡୁଥିଲା । ସମ୍ଭବତଃ ଦୀର୍ଘଦିନ ଧରି ଏଇ ସୁବର୍ଣ୍ଣ ମୁହୂର୍ତ୍ତଟିକୁ ସେ ଅପେକ୍ଷା କରିଥିଲା- ଆଜି ତାହା ଆକସ୍ମିକ ଭାବେ ଉପଗତ । ତଥାପି ତା' ମନରେ ଦ୍ୱନ୍ଦ୍ୱଥିଲା- ସେ ବଂଧନ ଛିନ୍ନ କରି ପାରିବ ତ ? ଦେଖିପାରିବ ଛଉକା ଆଖିର ଧାରଧାର ଲୁହଧାର ? ସେ ଯେତିକି ଯେତିକି ସେମାନଙ୍କ କର୍ଡ଼ନ ମଧ୍ୟରେ ଆଗକୁ ଆଗକୁ ଅଗ୍ରସର ହେଉଥିଲା ସେତିକି ସେତିକି ଛଉକାର ବିକଳ ଆର୍ତ୍ତନାଦ ତାକୁ ଦୋହଲେଇ ଦେଉଥିଲା । ସେ ଭାବୁଥିଲା ମୁକ୍ତିର ଏଇ ଦୁର୍ଲଭ ମୁହୂର୍ତ୍ତରେ ତାକୁ କଠିନ ହେବାକୁ ହେବ । ଜୀବନପାଇଁ ଏ ନୂଆ ସମ୍ଭାବନାକୁ କଣ ଏଡ଼େଇ ହୁଏ ? ନାଲିଟି ସେତେବେଳକୁ ବଳିଷ୍ଠ ଚାରିକୁକୁରଙ୍କ ଗହଣରେ ବେଶ୍ କିଛି ଦୂର ଅଗ୍ରସର ହୋଇ ସାରିଥିଲା । ମୁଁ ପ୍ରଭାତଫେରିରୁ ଆସିଲାବେଳକୁ ତାକୁ ସେମାନଙ୍କ ମେଳରେ ଆବିଷ୍କାର କରି ବିସ୍ମିତ ହେଉଥିଲି । ସେମାନେ ଆଗେଆଗେ ବିଜୟ ପଦପାତରେ ପ୍ରାୟ ଦଉଡ଼ିଲା ପରି ଚାଲି ଯାଉଥିଲେ । ସମ୍ଭବତଃ ନାଲି ମାଈ କୁକୁରଟି ସେତେ ବେଳକୁ ଡୁପ୍ଲେକ୍ସ ଏରିଆଛାଡ଼ି ଡ଼ି.ଏ.ଭି. ସ୍କୁଲର ସାଇଡ଼ ଜନଗହଳି ଶୂନ୍ୟ ରାସ୍ତାରେ ଆଗେଇ ଚାଲିଥିଲା ଓ ତା ସାଙ୍ଗେ ସାଙ୍ଗେ ତାକୁ ଗେଲ କରି କରି ଚାଲୁଥିଲେ ଏ ଚାରି ବୀର ବଳୀୟାର ।

ସେମାନଙ୍କ ଗହଣରେ ନାଲି ମାଈ କୁକୁରଟି କେତେଦିନ ବୋଧହୁଏ ରହିଯାଇଥିଲା-ତାର ସ୍ୱାସ୍ଥ୍ୟରେ ଆସିଥିଲା ବିପୁଳ ପରିବର୍ତ୍ତନ । ନଥିଲା ଉଦାସୀନତା କିମ୍ବା ଏକାକୀତ୍ୱର ବିଚ୍ଛିନ୍ନତା । ସେ ସନ୍ତର୍ପଣରେ ଡରି ଡରି ଫେରି ଆସିଥିଲା ତାର ପୁରାତନ ଇଲାକାକୁ ତାର ପ୍ରିୟତମ ପାଖକୁ । କିନ୍ତୁ ମୁଁ ଲକ୍ଷ୍ୟ କଲି, ଛଉକା କୁକୁରଟି ଆଉ ତାକୁ ଗ୍ରହଣ କରିବାକୁ ପ୍ରସ୍ତୁତ ନଥିଲା । ସେ ବେଶ୍ ବ୍ୟବଧାନ ରକ୍ଷା କରୁଥିଲା; ତାକୁ ଆଉ ଗେଲ କରିବାକୁ ଦେହଲଗ୍ନା ହୋଇ ଯାଉ ନଥିଲା କିମ୍ବା ତା' ପଛେ ପଛେ ଗୋଡ଼ଉ ନଥିଲା । ମାଈ ନାଲି କୁକୁରଟି ମା' ହେବାର ଗୌରବରେ ଥିଲା ଉତ୍‌ଫୁଲ୍ଲିତା । ସେ କ୍ଳାନ୍ତି ଅନୁଭବ କରୁଥିଲା ଓ ଏକାକି ଖରାରେ ଶୋଇ ରହୁଥିଲା- ଖଣ୍ଡେ ଦୂରରେ ଶୋଇ ରହୁଥିଲା ଛଉକା ପୁରୁଷ କୁକୁର । କ୍ୱଚିତ୍ ସେମାନେ ବର୍ଷାଦିନ ସତ୍ତ୍ୱେ ଆଉ



Digitized by PPRACHIN, SOA

ଗୋଡ଼ିଆଗୋଡ଼ି ଖେଳରେ ମାତୁଥିଲେ । ବୋଧହୁଏ ସେମାନଙ୍କ ମଧ୍ୟରେ କଥାବାର୍ତ୍ତା ନଥିଲା । ନାଲିର ସମର୍ପଣ ସୂଚକ କୋମଳ ସ୍ୱର ତାକୁ ଆଉ ବିବ୍ରତ କରିବାର ନଥିଲା । ତା ମନରେ ସେତେବେଳକୁ ଅନେକ ଦ୍ୱନ୍ଦ୍ୱ ଓ ସଂଘର୍ଷ । ସେ ବୋଧହୁଏ ଭାବୁଥିଲା ଆଉ କେଉଁ ମାଈ କୁକୁର ସାଙ୍ଗରେ ମୁକ୍ତିର ଦିଶା ଆବିଷ୍କାର କରି ଏ ଇଲାକା ଛାଡ଼ି ଚାଲିଯିବ । ମାଈ ନାଲି କୁକୁରଟି ପାଇଁ ତାର ନିଷ୍ଠା ଏବେ ଘୋର ପ୍ରତାରଣାରେ ପରିଣତ ହୋଇଛି । ସେ ସ୍ପଷ୍ଟ ଦେଖିପାରୁଥିଲା ମାଈ କୁକୁରଟିର ପେଟ ଫୁଲି ଉଠୁଛି; ଆଉ ରାସ୍ତାର ଈଷତ୍ ଉଷ୍ମ ପିଚୁ ଉପରେ ସବୁବେଳେ ଶୋଇ ରହିବାକୁ ସେ ଚାହୁଁଚି । କେବେକେବେ କାହାଘରର ଅଇଁଠା ବା ବାସି ରୁଟିରୁ ପଟେ ଦି'ପଟ ତା ଭାଗରେ ପଡ଼ିଯାଉଥିବା ବେଳେ ଛଉକା ସେ ଖାଦ୍ୟକୁ ଝାମ୍ପି ନେବାକୁ ଅଗ୍ରସର ହୁଏ ନାହିଁ। ସେ ଉଦାସୀନ ଦୂରତାରେ ମୋଡ଼ିମାଡ଼ି ହୋଇ ଶୋଇଥାଏ । ତାର ବ୍ୟର୍ଥ ପୌରୁଷକୁ ସେ ବୋଧହୁଏ ଅଭିଶାପ ଦେଉଥାଏ ।

ତାକୁ ଆବେଦନ ଜଣାଇ ନାରୀତ୍ୱକୁ ସମର୍ପଣ କରିବାକୁ ଆସିଥିଲା ଗୋଟିଏ କଳାକୁତ୍ତୀ । ବହୁତ ଆକୁଳ ନିବେଦନ କଲା, ଛଉକାର ଦେହମୁଣ୍ଡ ଶୁଙ୍ଘିଗଲା, ନିଜ ଲାଙ୍ଗୁଡ଼ ହଲେଇ ସମ୍ମତି ଜଣାଇଲା । କିନ୍ତୁ ଛଉକାର ସେଥିରେ ଆଉ ପ୍ରତାରିତ ହେବାର ନଥିଲା । କଳାକୁତ୍ତାର ସାମୟିକ ସାନ୍ନିଧ୍ୟକୁ ସେ ପ୍ରତ୍ୟାଖ୍ୟାନ କରିଥିଲା ତାର ପୌରୁଷର ଅହମିକାରେ । ସମ୍ଭବତଃ ଏଣିକି ତାର ଖାଇବା ଅନେକ ପରିମାଣରେ କମିଯାଇଥିଲା- ଦେହର ହାଡ଼ ଗଣି ହୋଇଯାଉଥିଲା । ଆଖିରେ ସ୍ପଷ୍ଟ ଲକ୍ଷ୍ୟ କରି ହେଉଥିଲା ଲୁହର ଶୁଖିଲା ଦାଗ ।

ସମୟ ଗଡ଼ିଚାଲିଥିଲା ତା ନିଜସ୍ୱ ଗତିରେ । ବର୍ଷାପରେ ହେମନ୍ତର ଶୀତଳତାରେ ଘାସ ଉପରେ ଜମିଯାଇଥିଲା ଶିଶିର କଣା । ଦୂର ଦେବାଳୟରୁ ଶୁଭୁଥିଲା ପ୍ରାତଃ ଆଳତିର ଘଣ୍ଟାଧ୍ୱନି । ଭେଣ୍ଡିଂ ଯୋନ୍‌ରେ ପରିବା ବିକାଳିମାନେ ଆସ୍ତେ ଆସ୍ତେ ସେମାନଙ୍କ ପସରା ମେଲେଇ ବସୁଥିଲେ । ଓମ୍‌ଫେଡ୍ ଚାହା ଦୋକାନରେ ଧଳା କୁର୍ତ୍ତା ଓ ପାଇଜାମା ପିନ୍ଧା ଲୋକମାନେ ହାତରେ ଚା' କପେ କପେ ଧରି କଥାବାର୍ତ୍ତା ଜମେଇ ଦେଇଥିଲେ । ବଡ଼ ରାସ୍ତାରେ ସବୁଦିନପରି କଅଁଳା ଗାଈ ଓ ବୁଲା ଷଣ୍ଢମାନଙ୍କର ଭିଡ଼ ଲାଗିଯାଇଥିଲା । ଏ ରାସ୍ତାରେ ଖୁବ୍ ବଡ଼ ପାୱାର ହର୍ଣ୍ଣ ଦେଇ କେତୋଟି କଲେଜ ବସ୍, ଗୋଟିଏ ଦୁଇଟି ଟ୍ରକ୍ ଓ ୩୦୧୦ ନମ୍ବର ଟାଉନ୍ ବସ୍‌ଟି ସ୍ୱାଭାବିକ ଗତିରେ ଅଗ୍ରସର ହେଉଥିଲେ । ମୁଁ ଆଗକୁ ଆଗକୁ ଚାଲିଥିଲି ଯଦିଓ ପ୍ରାତଃଭ୍ରମଣର ସମୟ ଅତିକ୍ରାନ୍ତ ହୋଇଥିଲା ।

ବିପୁଳ ବିସ୍ମୟର ସହିତ ଆବିଷ୍କାର କରି ନାଲିକୁତ୍ତୀଟି ଚାରୋଟି କୁନିକୁନି ଛୁଆଙ୍କୁ ଏହା ମଧ୍ୟରେ କେବେ ଜନ୍ମ ଦେଇ ସାରିଚି । ତିନିଟିର ଦେହର ରଙ୍ଗ ନାଲି, ଗୋଟିଏ କିନ୍ତୁ ଗହମ ରଙ୍ଗର । କିନ୍ତୁ ଛଉକାକୁ ଲକ୍ଷ୍ୟ କଲି ତା' ମନରେ ସରାଗ ନାହିଁ । ସେ ପୂର୍ବପରି ବିଷଣ୍ଣ ଓ ଉଦାସୀନ । କିନ୍ତୁ ମନେହେଉଥିଲା ଭିତରେ ଭିତରେ ସେ କ୍ରୋଧରେ ଜଳୁଛି । ଶକ୍ତିଥିଲେ ସବୁ ଭାଂଗି ପକାନ୍ତା । ନାଲିକୁତ୍ତୀ ସହିତ ଏବେବି ତାର କଥାବାର୍ତ୍ତା ନଥିବା ପରି ମନେ ହେଉଥିଲା । ଛୁଆ ଚାରୋଟି କୁନିକୁନି ପାଦରେ ଛଉକା ପାଖକୁ ଲାଗି



Digitized by PPRACHIN, SOA

ଆସୁଥିଲାବେଳେ ସେମାନଙ୍କୁ ମୁହଁରେ ଆଡ଼େଇ ଦେଇ ସେ ଅନ୍ୟତ୍ର ଉଠିଯାଉଥିଲା । କୌଣସି ଗୋଟିକର ବି ପିତୃତ୍ୱ ସ୍ୱୀକାର କରିବାକୁ ତା'ମନରେ ଆଗ୍ରହ ନଥିଲା; କାରଣ କେହି ଗୋଟିଏ ହେଲେ ବି ତା' ପରି ଛଉକା ହୋଇ ନଥିଲେ । ମୁଁ ବି ଅନୁଭବ କରୁଥିଲି ସେ ଛୁଆଗୁଡ଼ିକ ସେଇ ବଳୀୟାରମାନଙ୍କ ସନ୍ତାନ। ସମ୍ଭବତଃ ଛଉକା ମନେମନେ ସେମାନଙ୍କ ପ୍ରତି କ୍ରୋଧରେ ଜଳି ଉଠୁଥିଲା ।·କିଛି ଦୁଷ୍ଟବୁଦ୍ଧି ତା' ମନରେ ବୋଧହୁଏ ସେତେବେଳକୁ ଉପ୍ତବୀଜ ହୋଇ ସାରିଥିଲା । ମୋରି ଆଗରେ ସେ ଚାରୋଟି ଛୁଆଙ୍କ ମଧ୍ୟରୁ ଗୋଟିକର ବେକକୁ ତା ତୀକ୍ଷ୍ଣ ଦାନ୍ତର ପନ୍‌ଝା ଭିତରେ ହଠାତ୍ କାମୁଡ଼ି ଧରିଲା ଓ ଛୁଆଟି କୁଁ କୁଁ ହେଉଥିବା ସତ୍ତ୍ୱେ ବେକକୁ ଦାନ୍ତରେ ଚିପି ମାରିଦେଲା । ଏ ଘଟଣାଟି ଏତେ କ୍ଷିପ୍ର ଗତିରେ ଘଟିଗଲା ଯେ ମୁଁ ଛୁଆଟିକୁ ଉଦ୍ଧାର କରିବାକୁ ବେଳ ପାଇ ନଥିଲି । ତାର ମୃତ ଶରୀରଟି ସେହିପରି ରାସ୍ତା ମଝିରେ ପଡ଼ି ରହିଥିଲା ଓ ଛଉକା କୁକୁରଟି ସେ ସ୍ଥାନ ଛାଡ଼ି ଦଉଡ଼ି ଦଉଡ଼ି ପଳାଉଥିଲା । ଆଉ ଛୁଆ ତିନୋଟି କିଛି ଜାଣି ନପାରି ସେଇ ମୃତ ଶିଶୁଟି ଉପରେ ଲଦି ହୋଇ ପଡୁଥିଲେ- ସେତେବେଳେ ସେମାନଙ୍କ ମାଆ ବୋଧହୁଏ ଖାଦ୍ୟ ଅନ୍ୱେଷଣରେ କିଛି ଦୂରକୁ ଚାଲିଯାଇଥିଲା । ମୁଁ ପ୍ରାତଃଭ୍ରମଣ ଓ ମନ୍ଦିର ଦର୍ଶନ କରି ଫେରିଲା ବେଳକୁ ଦେଖେତ ମାଆ କୁକୁରଟି ମୃତ ଛୁଆଟିର ବେକରୁ ବୋହି ଆସୁଥିବା ରକ୍ତଧାରକୁ ଚାଟିବାରେ ଲାଗିଚି; ତା ଆଖିରୁ ସ୍ପଷ୍ଟଭାବେ କପୋଳ ଦେଇ ବୋହି ଯାଉଛି ଲୁହଧାର ।

ତା' ପରଦିନ ସକାଳେ ମୁଁ ଆଉ ପ୍ରାତଃଭ୍ରମଣରେ ଯାଇ ପାରି ନଥିଲି; କୌଣସି ଜରୁରୀ କାମରେ ସମ୍ବଲପୁର ଚାଲିଯାଇଥିଲି । ସେଠି ବଡ଼ଗାଁ ନିଗମାନନ୍ଦ ଆଶ୍ରମରେ ମୋର ଥିଲା ଚାରିଦିନର ରହଣି । ଫେରିଲି ଇଣ୍ଟରସିଟିରେ । ମନ ବ୍ୟସ୍ତ ହେଉଥାଏ ସେ ଛୁଆ ମାନଙ୍କୁ ଦେଖିବାକୁ । ଅବଶ୍ୟ ତା' ପରଦିନ ସକାଳ ପର୍ଯ୍ୟନ୍ତ ମୋତେ ଅପେକ୍ଷା କରିବାକୁ ହୋଇଥିଲା । ସକାଳେ ପ୍ରାତଃଭ୍ରମଣରେ ଯାଇ ଦେଖିଲି ଅନ୍ୟ ତିନୋଟି ଛୁଆ ମାଆ ପାଖରେ ନାହାନ୍ତି । ମାଆ କୁକୁରଟି ସେମିତି ଦୁଃଖ ଓ ଲୁହଜଡ଼ସଡ଼ ହୋଇ ଶୋଇ ରହିଛି। ଛଉକା ବେଶ୍ କିଛି ବ୍ୟବଧାନ ରଖି ରାସ୍ତା ଉପରକୁ କିଂଚିତ୍ ମାଡ଼ି ଶୋଇ ରହିଛି । ତା ମୁଣ୍ଡକୁ ପିଟି ତାକୁ ମାରି ଦେବାକୁ ମୋର କ୍ରୋଧ ସଂଚାରିତ ହେଉଥିଲା । ଛୁଆ ତିନୋଟି କୁଆଡ଼େ ଗଲେ ପଚାରିବାକୁ ସାହୁବାବୁଙ୍କ ଘର ବାରଣ୍ଡା ଉପରକୁ ଉଠି ଯାଉଁ ଯାଉଁ ଭେଟିଲି ତାଙ୍କ ବଡ ପୁଅକୁ । କୁକୁର ଛୁଆମାନଙ୍କ ବିଷୟରେ ପଚାରୁ ପଚାରୁ ସେ ଯାହା କହିଲେ ମୁଁ ହଠାତ୍ ବିଶ୍ୱାସ କରି ପାରିଲି ନାହିଁ । ଗୋଟିଏ ଛୁଆ କୌଣସି ଅଜଣା ବ୍ୟକ୍ତିର ମଟର ସାଇକେଲ ଚକାତଳେ ପ୍ରାଣ ଦେଇଛି ଆଉ ଗୋଟିଏ ଛୁଆକୁ ଛଉକା ଦାନ୍ତରେ ଚାପି କାମୁଡ଼ି ମାରି ଦେଇଛି- ଠିକ୍ ଯେଉଁପରି ସେ ପ୍ରଥମ ଛୁଆଟିର ପ୍ରାଣ ନେଇଥିଲା । ତାର ଅହନ୍ତା ପ୍ରଶମିତ ହୋଇଛି ବୋଧହୁଏ- ନଇଲେ ସେଇ ଜାଗାରେ ସେ ବିଜୟ ଦର୍ପରେ ଶୋଇ ରହି ନଥାନ୍ତା । ମାଈ କୁକୁରଟି ସମ୍ଭବତଃ ମୂକ ପାଲଟି ଯାଇଛି କାନ୍ଦି କାନ୍ଦି । ତଥାପି ସାଙ୍ଗ ଛାଡ଼ି ଚାଲିଯାଇନାହିଁ । କିନ୍ତୁ ଉଭୟଙ୍କ ମଧରେ ପୂର୍ବଠାରୁ



Digitized by PPRACHIN, SOA

ଅଧିକ ବ୍ୟବଧାନ ଗଢ଼ି ଉଠିଛି । ଅନ୍ତତଃ ମାସକ ଯାଏ ଆଉ ପାଖପାଖ ଦେହଲଗ୍ନା ହୋଇ ଶୋଇଥିବାର ମୁଁ ସେମାନଙ୍କୁ ଦେଖି ନାହିଁ । ବେଳେବେଳେ ମାଈ କୁକୁରଟି ଲମ୍ବା ସ୍ୱରରେ ଲହରେଇ କାନ୍ଦି ଉଠୁଥିବାର ସ୍ୱର ରାତିରେ ସମସ୍ତେ ଶୁଣନ୍ତି । ବେଶୀ ଶୁଣନ୍ତି ସାହୁବାବୁଙ୍କ ଘର ଲୋକେ । କୁକୁରଟି ବୋଧହୁଏ ତା ମୃତ ସନ୍ତାନମାନଙ୍କ ପାଇଁ ରାତି ଅଧରେ କାନ୍ଦ ଲମ୍ବାଏ । ସେତେବେଳେ ନିରାଲମ୍ବ ହୋଇ ଆନୁପାତିକ ବ୍ୟବଧାନରେ ବୋଧହୁଏ ଶୋଇଥାଏ ବିଷାଦବାଦୀ ଛଉକା ତା'ର ତଥା କଥିତ ସହଧର୍ମିଣୀ ନାଲି ମାଈ କୁତ୍ତୀ । କିଞ୍ଚିତ୍ ଦୂରରେ ଖେଳୁଥାଏ ଗହମ ରଂଗର ଶେଷ ସନ୍ତାନ-ଅଣ୍ଡିରା ଛୁଆଟିଏ, ବାତ୍ୟାଗ୍ରସ୍ତ ଧ୍ୱଂସ ସ୍ତୂପ ମଧ୍ୟରେ ତଥାପି ତିଷ୍ଠି ରହିଥିବା ଗଛଟିଏ ପରି । । ସକାଳକୁ ସେମାନେ ଖାଦ୍ୟ ଅନ୍ୱେଷଣରେ ବାହାରିଯାନ୍ତି- ବେଶୀ ଦୂରନୁହେଁ, ସେଇ ନିରୂପିତ ଇଲାକା ଭିତରେ ତାଙ୍କର ଗତାଗତ । କିନ୍ତୁ ସେମାନେ କୌତୁକ ଖେଳରେ ମାତୁଥିବା ଆଉ ଦେଖିବାକୁ ମିଳେନା । ମୁଁ ଅପେକ୍ଷା କରେ ପରବର୍ତ୍ତୀ ବର୍ଷାଋତୁକୁ । ସେତେବେଳେ ସେମାନଙ୍କର ମନସ୍ତତ୍ତ୍ୱ କଣ ହୋଇଥିବ ବୁଝିବାକୁ ମୋ ମନରେ ସ୍ୱାଭାବିକ କୌତୂହଳ ଲାଗିରହେ । ମୁଁ ଛଉକାକୁ ତଥାପି କାହିଁକି ଆଦର କରେ ? ସେ କଣ ସ୍ଥିତପ୍ରଜ୍ଞ ପ୍ରାଣୀଟିଏ- ଯେ ବଂଚିଥାଏ ସଂଙ୍କଟ୍ଟ, ସହାବସ୍ଥାନ ଓ ସଂହାର ଭିତରେ ? ସେ କଣ ନାଲିକୁତ୍ତୀକୁ ପୂର୍ବପରି ଆଉ ଭଲପାଇ ପାରିବ ? ଗଢ଼ିବ ତାର ଉଜୁଡ଼ା ସଂସାର ? କେଜାଣି ସମୟ ହିଁ ତାର ସମାଧାନ ଦେଇପାରେ- ମୁଁ ନୁହେଁ କି ଆଉ କେହିନୁହେଁ ।





Digitized by PPRACHIN, SOA

# ପୁନଶ୍ଚ ଶ୍ୱାନ ବୃତ୍ତାନ୍ତ

ସେମାନଙ୍କ କଥା ମୁଁ ଆଗରୁ କହିଥିଲି । କଳାଛଉକା କୁକୁର ଓ ନାଲି ମାଈ କୁତୀ ମଧ୍ୟରେ ଚଳିତ ବର୍ଷ ବର୍ଷାଋତୁ ଆସିବାମାତ୍ରେ ବୁଝାମଣା ପରିବର୍ତ୍ତେ ମନୋମାଳିନ୍ୟ ବଢ଼ିବଢ଼ି ଚାଲିଥିଲା । ସମ୍ଭବତଃ ଏହାର କାରଣ ଥିଲା ସେଇ କଷରା ଗହମ ରଂଗର ଏକମାତ୍ର ଜୀବିତ ଥିବା ଅଣ୍ଡିରା ଛୁଆଟି । ସେ ଏ ବର୍ଷକୁ ପରିପୁଷ୍ଟ ହୋଇ କୈଶୋର ଓ ତାରୁଣ୍ୟର ସନ୍ଧିସ୍ଥଳରେ ପହଂଚିସାରିଥିଲା । ସବୁବେଳେ ମାଆ ପଛେ ପଛେ ବୁଲୁଥିଲା, ସାଙ୍ଗହୋଇ ଯାହା ପାଇଲେ ଖାଉଥିଲେ, ଦୌଡ଼ାଦୌଡ଼ି ଖେଳରେ ମାତୁଥିଲେ । ଅନତିଦୂରରେ ଶୋଇ ରହିଥିବା କଳାଛଉକା କୁକୁରଟି ବୋଧହୁଏ ମାନସିକ ସ୍ତରରେ ସେମାନଙ୍କଠାରୁ ଦୂରେଇ ଯାଇଥିଲା ଯେହେତୁ ସେ ମାଆପୁଅଙ୍କ ଆନନ୍ଦଉଲ୍ଲାସରେ ଆଦୌ ଭାଗ ନେଉ ନଥିଲା । ସେ ଥିଲା ଖୁବ୍ ନିଃସଙ୍ଗ ଯଦିଓ ତା ପରିବାର ଥିଲେ ତା' ପାଖେ ପାଖେ । ଗହମରଙ୍ଗର ଅଣ୍ଡିରା ଛୁଆଟିର ପିତୃତ୍ୱକୁ ସେ ସ୍ୱୀକାର କଲାପରି ଆଦୌ ଜଣା ପଡୁ ନଥିଲା । ବର୍ଷାଋତୁର କିଛି ଦିନପରେ ସେ ହଠାତ୍ ସେମାନଙ୍କ ମେଳରୁ କୁଆଡ଼େ ଉଭେଇ ଗଲା । ମୁଁ ଭାବିଲି ବୋଧହୁଏ ଟ୍ରକ୍ ବା ବସ୍ ଚକାତଳେ ସେ ମରିଯାଇଛି । ବିଶେଷତଃ ବର୍ଷାଦିନର ଦୁଇମାସ ମଧ୍ୟରେ ତାକୁ ଏ ଅଞ୍ଚଳରେ ନ ଦେଖି ଯେ କୌଣସି ଲୋକ ସେହିପରି କିଛି ଗୋଟାଏ ଆଶଙ୍କା କରିବା ଅସ୍ୱାଭାବିକ ନୁହେଁ । କିନ୍ତୁ ମାଈକୁତୀଟି ଗତବର୍ଷପରି ବଳୀୟାର ସେ ଚାରିକୁକୁରଙ୍କୁ ଆଦରି ନ ନେଇ ଏ ବର୍ଷ ସେଇ ଗଛମୂଳେ ସବୁବେଳେ ଶୋଇ ରହୁଥିଲା । ଆତ୍ମରକ୍ଷା ପାଇଁ ରାସ୍ତାକଡ଼ର ବାବୁମାନଙ୍କ ବାଡ଼ିରେ ହୁଏତ ଆତ୍ମଗୋପନ କରୁଥିଲା । ତାର ଏକମାତ୍ର ଆନନ୍ଦ ଥିଲା ତାର ପୁଅ । ତାରି ସହିତ ମେଳ ହୋଇ ବୁଲିବା, ଖାଇବା, ଶୋଇବାରେ ତାର ସମସ୍ତ ସମୟ କଟିଯାଉଥିଲା । ବାଲ୍ୟରୁ କୈଶୋର ଓ କ୍ରମେ ଯୌବନପ୍ରାପ୍ତିର ରହସ୍ୟ ମଧ୍ୟରେ ମାଆ କୁକୁରଟି ତାର ନିରାପତ୍ତାକୁ ସ୍ୱପ୍ନାଛନ୍ନ କରି ଦେଉଥିଲା । ବୋଧହୁଏ କଳା ଛଉକାର ଥିବା ନ ଥିବାକୁ ଭୁଲି ବସିଥିଲା । ବର୍ଷାଋତୁରେ ସତେ ଯେପରି ସେ ଥିଲା ଏକ ବ୍ୟତିକ୍ରମ । ଦଳଦଳ କୁକୁରଙ୍କ ମେଳ, ଦୌଡ଼, ସଂଘର୍ଷ ଓ ମୈଥୁନକ୍ରୀଡା ତା' କାନ ଓ ଆଖିକୁ ସମ୍ଭବତଃ ସ୍ପର୍ଶ କରି ପାରୁ ନଥିଲା । ସେ କଣ କଳାଛଉକାକୁ ଝୁରିଝୁରି ଝଡିଯିବାରେ ଲାଗିଥିଲା ନା ଗୋଟିଏ ସନ୍ତାନ ପ୍ରାପ୍ତିରେ ହୋଇ ଉଠିଥିଲା ପରିପୂର୍ଣ୍ଣ ଓ ପରିଷ୍କୀତ । ତା'ଠାରେ ମୁଁ ଲକ୍ଷ୍ୟ କରୁଥିଲି ଅଦ୍ଭୁତ ଏକ ବ୍ୟତିକ୍ରମ । ବର୍ଷାଋତୁର ଆଗମନରେ ତା ଦେହ ଡଉଲଡାଉଲ ମନେ ହେଉଥିଲେ ବି ସମ୍ଭବତଃ ତା ମନ ଥିଲା



Digitized by PPRACHIN, SOA

ବିଷାଦଗ୍ରସ୍ତ ଓ ସଂତାପ ସନ୍ତୁଳିତ । ନା ସେ କଳାଛଉକା ପାଖରେ ଏ ବର୍ଷ ତାର ସତୀତ୍ୱର ପରୀକ୍ଷା ଦେବାକୁ ହୋଇ ଉଠିଥିଲା କୃତସଂକଳ୍ପ ? ଆଶ୍ଚର୍ଯ୍ୟ କଥା, ପାହି ଛାଡ଼ି ମାଆ ବା ପୁଅ କେଉଁଆଡ଼େ ଯାଉ ନ ଥିଲେ, ଆଉ କେଉଁ କୁକୁରର ଆହ୍ୱାନ ଶୁଣିବା ତ ଦୂରର କଥା । ଅଥଚ ମୁଖ୍ୟରାସ୍ତାରେ ଦଳଦଳ ହୋଇ କୁକୁରମାନେ ଦୌଡ଼ୁଥିଲେ ।

ପ୍ରାୟ ବର୍ଷାଋତୁର ଶେଷ ଆଡକୁ ଦିନେ ସକାଳେ ଦେଖିଲି କଳାଛଉକା କୁକୁରଟି ଫେରିଆସି ସେଇ ପଣସଗଛମୂଳେ ରାସ୍ତାକଡ଼ରେ ଶୋଇଛି । ଖଣ୍ଡେ ଦୂରରେ ମାଆ ଓ ପୁଅ ତାକୁ ପ୍ରତ୍ୟାଖ୍ୟାନ କରିଥିବା ପରି ଶୋଇଛନ୍ତି । ତାର ଆସିବା ଓ ଯିବା ମାଇକୁତୀ ଉପରେ ଯେପରି କୌଣସି ପ୍ରଭାବ ପକେଇନାହିଁ । ମା କ୍ଲିନିକ୍‌ର ଗେଟପାଖରୁ ଛୋଟପିଲାଟି ତାର ଅଭ୍ୟାସବଶତଃ ସେମାନଙ୍କ ଉଦ୍ଦେଶ୍ୟରେ ବିସ୍କୁଟର ଟୁକୁରା ପକାଉଛି । କିନ୍ତୁ ମାଆପୁଅ ସିନା ସାଙ୍ଗ ହୋଇ ସେଠାକୁ ଭିଡ଼ି ଯାଉଛନ୍ତି କଳାଛଉକା କିନ୍ତୁ ନିରୁଦ୍‌ବିଗ୍ନ ଭାବରେ ସେମତି ଶୋଇ ରହିଛି । ସତେ ଯେପରି ଏ ପରିବାର ବିରୁଦ୍ଧରେ ସେ ଅନଶନ ଘୋଷଣା କରିଛି । ସେ ଫେରି ଆସିଥିବାରୁ ମା ପୁଅଙ୍କ ମନରେ ଉଲ୍ଲାସର ସାମାନ୍ୟତମ ସୂଚନା ବି ମିଳୁନାହିଁ । ସେ ଯେପରି ଅପରିଚିତ ଅଜଣା ଅତିଥିଟିଏ; ଚାଲିଚାଲି କ୍ଳାନ୍ତ ହୋଇ ଗଛ ଛାଇରେ କିଛି ସମୟ ପାଇଁ ଆଶ୍ରୟ ନେଇଛି; ତା'ପରେ ତା' ବାଟେ ବାଟେ ସେ ଚାଲିଯିବ । ତାକୁ ମାଆପୁଅ ଚିହ୍ନନ୍ତି ନାହିଁ; ତେଣୁ ସ୍ୱାଗତ ବା କାହିଁକି କରିବେ ।

ସଂଧ୍ୟାପୂର୍ବରୁ କାଳିଆଛଉକା କୁକୁରଟି ସେ ସ୍ଥାନଛାଡ଼ି ବୋଧହୁଏ ଚାଲିଯାଇଥିଲା, ତାର ଏତେ ଦିନର ପରିଚିତ ସାଥୀ ନାଲି କୁକୁର ତାକୁ ରହିଯିବାକୁ ପଦେବି କହି ନଥିଲା, ନେହୁରା ହେବା ତ ଦୂରର କଥା । ସେ ଯେପରି କାହୁଁ ଆସିଲା ବିଦେଶୀଟିଏ; ତାକୁ ସେମାନେ ଚିହ୍ନନ୍ତିନି କି ଜାଣନ୍ତିନି । ମାଆ ନାଲିପାନବିବି ଓ ପୁଅ ଗହମରଙ୍ଗର ଏକବର୍ଷର କୈଶୋରେତ୍ତୀର୍ଣ୍ଣ କୁକୁରଟିର ସଂସାରରେ ଆଉ କେହି ତୃତୀୟ କେବେ ନଥିଲା- ଏହିପରି ଏକ ଏକାନ୍ତ ଅନାସକ୍ତ ଉଦାସୀନତା ମାଆ କୁକୁରଟିର ଆକୃତି ଓ ଆଚରଣରେ ସ୍ପଷ୍ଟ ହୋଇ ଉଠୁଥିଲା । ସେମାନେ ଖରାକୁ ପିଠି କରି ପାଖକୁ ପାଖ ଜାକିଜୁକି ହୋଇ ଶୋଇଥିଲେ । ଭୟ ନାହିଁ, ଭ୍ରାନ୍ତି ନାହିଁ; ଏତେ ସକାଳୁ ସମାନ୍ତରାଳ ପ୍ରଶସ୍ତ ରାସ୍ତା ଉପରେ ତଥାପି ଗୋଟିଏ କୁତୀ ପଛରେ ଦଶପନ୍ଦରଟି ପୁରୁଷ କୁକୁର ପରସ୍ପର ମଧ୍ୟରେ ସମଝୋତା କରି ଦଉଡ଼ି ଚାଲିଥିଲେ ବି ସେ ଆଡକୁ ମଧ ନାଲିକୁତୀର ଦୃଷ୍ଟି ଆକର୍ଷିତ ହେଉ ନଥିଲା । ବୋଧହୁଏ ସେ ଏ ବର୍ଷ ମାଆ ହେବାକୁ ଚାହେଁ ନାହିଁ, କିମ୍ବା ଗୃହତ୍ୟାଗୀ କାଳିଆଛଉକା ଆଗରେ ପ୍ରମାଣ କରି ଦେବାକୁ ଚାହେଁ ଯେ ସେ ପୁରୁଷ ସାଂଗ ବ୍ୟତୀତ ମଧ୍ୟ ବଞ୍ଚିପାରେ । ତାର ପୁଅହିଁ ତାର ସବୁକିଛି । ତାର ଇଚ୍ଛା ବିରୁଦ୍ଧରେ ସେ ଯେ ଆରବର୍ଷ ଚାରି ଚାରିଟା ବଳୀୟାର କୁକୁରଙ୍କ ଅକ୍ତିଆର ଭିତରେ ତାର ସ୍ୱାମୀ କଳାଛଉକାଠାରୁ ଦଶପନ୍ଦର ଦିନପାଇଁ ଉଭାନ୍ ହୋଇଯାଇଥିଲା ସେଥିପାଇଁ ସେ ଦାୟୀ ନ ଥିଲା । ତାକୁ ନିରାପତ୍ତା ଦେବା ପରିବର୍ତ୍ତେ ଅଭିମାନରେ କାଳିଆ ହୋଇଥିଲା ଗୃହତ୍ୟାଗୀ । ସେ ଦୁଃଖକୁ ସେ ଏବେ ବି



Digitized by PPRACHIN, SOA

ଭୁଲିନାହିଁ । ମନଇଚ୍ଛା ଚରିବୁଲି ଆଉ ଆଉ ନୂଆ କୁତୀଙ୍କ ମେଳରେ ସମୟ କାଟି ଫେରି ଆସିଥିବା କାଳିଆକୁ ସେ ଆଉ ତା ମନରେ ସ୍ଥାନ ଦେଇ ନପାରେ – ଏହାହିଁ ଥିଲା ତାର ସିଦ୍ଧାନ୍ତ । ଚାରିଚାରିଟି ଛୁଆ ଜନ୍ମ କରି ବି ମାତ୍ର ଗୋଟିଏ ଛୁଆ ସହିତ ସେ ବଞ୍ଚିଚି । ଅନ୍ୟମାନେ ମୃତ । ସେଥିପାଇଁ କାଳିଆ ସହାନୁଭୂତି ଜଣାଇନାହିଁ । ଅଧିକଂତୁ ମୁହଁଟାକୁ ଉଷୁନା ଧାନହାଣ୍ଡି ପରି କରି ଆସି ପଣସଗଛମୂଳେ ଶୋଇଛି । ଯାଇଥିଲା ତ ଭଲ ହୋଇଥିଲା, ତାକୁ ମାଆପୁଅ ଭୁଲି ବସିଥିଲେ । ପୁଣି କେଉଁ ମୁହଁରେ ନିର୍ଲଜ ଫେରିଆସି କ'ଣ ଚାହୁଁଚି ? ଦେଖିବାକୁ ଆସିଚି କି ଏ ଋତୁରେ ତା' ପେଟ ଫୁଲିଉଠିଛି କି ସେ ପିଲା ଦେଇଛି । ମୂର୍ଖ, କାହାଁକା କେଉଁଠିକାର । ଟିକିଏ ହେଲେ ବୁଝିବା ଶକ୍ତିନାହିଁ । ଯେଉଁ ଅପରାଧ ପାଇଁ ଅସହାୟ ମାଈ କୁକୁରଟିଏ କେବେ ବି ଦାୟୀ ହୋଇ ପାରିବନି ସେଇଆକୁ ଗଣ୍ଠିକରି ଛଉକା ଗୃହତ୍ୟାଗୀ ହୋଇଛି । ଯାଇଥିଲୁ ତ ପୁଣି କେଉଁ ମୁହଁରେ କାହିଁକି ଫେରି ଆସିଲୁ ? ଭାବିଥିଲୁ କି ତତେ ଫୁଲହାର ଦେଇ ଆମେ ମାଆପୁଅ ପୁଣି ଘରକୁ ପାଛୋଟି ଆଣିବୁ ! ପୋଡ଼ିଗଲା ତିଅଣରେ ଆଉ କଣ ସୁଆଦ ଥାଏ ?

ମାଈ ନାଲିକୁତୀଟିର ଅଧାସ ଅନୁତପ୍ତ ଚେହେରା ପ୍ରତି ଛଉକା କୁକୁରଟିର ସହାନୁଭୂତି ନଥିଲା । ତାର ଅନପଚିତ ନାରୀତ୍ୱ ପ୍ରତି ନ ଥିଲା ମଧ ପରିଭୋଗର ସ୍ପୃହା ବା ଦୁରନ୍ତ ପରିମର୍ଷ । ଅଦ୍ଭୁତ ବେଖିଆଲୀ ତାର ଉଦାସୀନତା ତା ଦେହର ବେପମାନ ସମ୍ଭୋଗ ଇଚ୍ଛାକୁ ନିଃଶେଷ କରି ଦେଇଥିଲା । ସେ ଏକାଧିକ ମାଈକୁତୀଙ୍କ ସହ ଏ ବର୍ଷ ବର୍ଷାକାଳ କଟେଇଥିଲେ ବି ତଥାପି କାହିଁକି ତାର ଏକାନ୍ତ ନିଜର ନାଲିକୁତୀଟି ପ୍ରତି ମନର କେଉଁ କୋଣରେ ଜାଗୁଥିଲା ଏକ ଶୋକାତୁର ଅନୁତାପ । କିନ୍ତୁ ଫେରି ଆସିବାପରେ ମାଆପୁଅଙ୍କ ଉଦାସୀନତାରେ ସେ ଆହତ ହୋଇଥିଲା, ତେଣୁ ସେ ନିଜେ ତ୍ରପିତ ବୋଲି ମଧ କହିପାରି ନଥିଲା । ବେଶ୍ ସବୁ ସଂପର୍କକୁ ତୁଟେଇ ସେ ଏଥର ଚାଲିଯିବ-ଅନେକ ଦୂରକୁ । ଏ ସହରରୁ ଆଉ ଏକ ସହରକୁ- ହୁଏତ ସେଇଠି ପଡିରହି ସେ ଶେଷ ଦିନକୁ ଅପେକ୍ଷା କରିବ । ଘା'ଘାଉଡ଼ ହୋଇ ଘୁଷୁରି ଘୁଷୁରି ମରିବ ପଛେ ଆଉ ନାଲିକୁତୀଟି ପାଖକୁ ଆସିବନି ।

ପ୍ରାୟ ପନ୍ଦର ଦିନର ବ୍ୟବଧାନ ପରେ ମୁଁ ପ୍ରଭାତଫେରିରେ ଯିବାବେଳେ କାଳିଆ ଛଉକାକୁ ଡି.ଏ.ଭି. ସ୍କୁଲ ସାମ୍ନା ପ୍ରଶସ୍ତ ରାସ୍ତା କଡ଼ରେ ଆବିଷ୍କାର କଲି । ଏଇଟା ଥିଲା ଏକଦା ତା ଶତ୍ରୁ କୁକୁରମାନଙ୍କ ଇଲାକା । ସମ୍ଭବତଃ ସେମାନେ କୌଣସି କାରଣରୁ ଏ ସ୍ଥାନ ତ୍ୟାଗ କରିଛନ୍ତି କିମ୍ବା ମ୍ୟୁନିସିପାଲଟି ଗାଡ଼ି ସେମାନଙ୍କୁ ଧରି ନେଇ ଖାସ୍ତୁକରି ଖଣ୍ଡଗିରି କିମ୍ବା ଉଉରାଛକପରି ଦୂରବର୍ତ୍ତୀ ସ୍ଥାନରେ ଛାଡ଼ି ଦେଇଛି; ମାନେ ସହରର ଉପକଣ୍ଠରେ । ତେଣୁ କାଳିଆ ଛଉକାକୁ କେହି ଆକ୍ରମଣ କରିବାକୁ ଏ ଇଲାକାରେ ନାହାନ୍ତି । କେବଳ ମାଳ ମାଳ ହୋଇ ପେଟ କାଢ଼ି ମାଈ କୁତୀମାନେ ବୁଲୁଛନ୍ତି । ତରୁଣୀ କୁତୀମାନେ ଏ ବର୍ଷ ପାଇଁ କେଉଁ ଗାତ ଭିତରେ ବା ନିକାଞ୍ଚନ ଜାଗାରେ ଛୁଆ ପଲେ ପଲେ ଜନ୍ମ କରି ଲୁଚି ରହିଛନ୍ତି । କ୍ୱଚିତ ଆସୁଛନ୍ତି ରାସ୍ତା ଉପରକୁ ।



Digitized by PPRACHIN, SOA

ମୁଁ ଉତ୍ସୁକତାରେ କଳା ଛଉକା ପାଖୁ ଆସି ଖୁବ୍ ଧ୍ୟାନର ସହିତ ତାକୁ ନିରୀକ୍ଷଣ କଲି । ଦେହସାରା ଆଉ କେଉଁ ବଳୀୟାର କୁକୁରମାନଙ୍କର ଦଂଶନର ଦାଗ ପିଠିର ରୁମ ଭିତରୁ ତଥାପି ସ୍ପଷ୍ଟ ବାରିହେଉଛି । ଦେହରେ ଗତବର୍ଷର ତେଜ ଓ ଦୀପ୍ତି ନାହିଁ । କେମିତି ମୁମୂର୍ଷୁ ଓ ମଳିନ ମନେ ହେଉଛି ଛଉକା । ମୁଁ ପାଖ ଦୋକାନରୁ ଛୋଟ ବିସ୍କୁଟ ଡବାଟିଏ ଆଣି କେତୋଟି ବିସ୍କୁଟ ତା ଉଦ୍ଦେଶ୍ୟରେ ତଳେ ପକେଇଦେଲି । ସେ ଧୀରେ ଉଠି ବିସ୍କୁଟ କେତୋଟି ଖାଇଲା- ବୋଧହୁଏ ଥିଲା କ୍ଷୁଧାତୁର । ମାଆପୁଅଙ୍କ ଇଲାକାକୁ ସେ ଯାଉ ବୋଲି ମୁଁ ଚାହୁଁଥିଲି ଓ ସେ ରାସ୍ତାରେ ଆଉ ଗୋଟିଏ ବିସ୍କୁଟ ପକେଇ ତା' ଦୃଷ୍ଟି ଆକର୍ଷଣ କଲି । ସେ ତଥାପି ଲୋଭରେ ଆସିଲା ଓ କ୍ରମେ ମାଆପୁଅଙ୍କ ଇଲାକା ଭିତରକୁ ଚାଲିଆସିଲା । କିନ୍ତୁ ମୁଁ ବିସ୍ମିତ ହୋଇ ଲକ୍ଷ୍ୟ କଲି ମାଆ ଓ ପୁଅ ତାକୁ ସ୍ୱାଗତ କରିବା ପରିବର୍ତ୍ତେ ଦଉଡ଼ି ଦଉଡ଼ି ଦୂରକୁ ପଳାଇ ଯାଉଛନ୍ତି । ସେମାନଙ୍କ ମଧ୍ୟରେ ମିଳାମିଶାର ସୁଯୋଗଟିଏ ସୃଷ୍ଟି କରିବାର ଉଦ୍ୟମ ମୋ ପାଇଁ ବିଫଳ ହୋଇଗଲା । ବିସ୍କୁଟରେ ପ୍ରଲୋଭନ ମଧ୍ୟ ମାଆପୁଅଙ୍କୁ କଳାଛଉକା ପାଖକୁ ଟାଣି ଆଣିପାରିଲା ନାହିଁ । ସେ କ୍ରମେ ବିସ୍କୁଟ ତକ ଖାଇ ମୋ ସହିତ ଆସିଥିବା ଇଲାକାକୁ ଧୀରେ ଧୀରେ ଚାଲିଗଲା । ତା' ଚାଲିରେ ମୁଁ ସ୍ପଷ୍ଟ ଭାବେ ବାର୍ଦ୍ଧକ୍ୟ ଓ ଅନୁତାପର ପ୍ରତିଫଳନ ଲକ୍ଷ୍ୟ କରୁଥିଲି । ତା' ପରଦିନ ସକାଳେ ମୁଁ ଯଥା ସ୍ଥାନରେ ମାଆପୁଅଙ୍କୁ ଭେଟିଲି ସତ, କାଳିଆ କିନ୍ତୁ ସେଠି ନଥିଲା । ମୁଁ ଅନୁଭବ କଲି ମାଆପୁଅ ତାକୁ ପୂର୍ଣ୍ଣରୂପେ ପ୍ରତ୍ୟାଖ୍ୟାନ କରିଛନ୍ତି; ଆଉ ସେମାନଙ୍କ ମଧରେ ମିଳାମିଶା ସମ୍ଭବ ନୁହେଁ । କାଳିଆ କିନ୍ତୁ କାଲି ଯେଉଁ ସ୍ଥାନରେ ଥିଲା ସେଇଠି ଶୀତ ସକାଳର ଉଷୁମ ଖରାରେ ଶୋଇ ରହିଛି । ମୋତେ ହୁଏତ ସେ ଦେଖିଲା, କିନ୍ତୁ ତା' ଠାରେ ମୁଁ କୌଣସି ସ୍ପନ୍ଦନ ବା ଚାଞ୍ଚଲ୍ୟ ଦେଖୁ ନଥିଲି । ମୁଁ ମୋ ରାସ୍ତାରେ ମନ୍ଦିର ଯାଏ ଆଗେଇ ଗଲି ଓ ଫେରିବା ରାସ୍ତାରେ କେବଳ ମାଆପୁଅଙ୍କୁ ଭେଟିଲି । ସେଠି କାଳିଆ ନ ଥିଲା ।

କିନ୍ତୁ ପ୍ରାୟ ଛ' ସାତ ଦିନପରେ ପୁଣି ଥରେ ସକାଳୁ ସକାଳୁ ଚାଲୁଥିଲା ବେଳେ ଦେଖିଲି କାଳିଆ ଚାଲିଚାଲି ଆସୁଚି ଓ ତାକୁ ଜଣେ ଅନୁପ୍ରବେଶକାରୀ ଭାବେ ଘଉଡ଼ାଇ ଦେବାକୁ ମାଆପୁଅ ତା ଉପରକୁ ଭୁକାଭୁକି କରି ମାଡ଼ି ଯାଉଛନ୍ତି । କାଳିଆ କିନ୍ତୁ କୌଣସି ପ୍ରତିବାଦ କରୁନାହିଁ ବା ଆତ୍ମରକ୍ଷା ପାଇଁ ସେମାନଙ୍କ ଉପରକୁ ମାଡ଼ି ଆସୁନାହିଁ; ବା ସେମାନଙ୍କ ଉପରକୁ କୁଦି ପଡୁନାହିଁ । ବରଂ ଲାଙ୍ଗୁଡ଼ ଜାକି କ୍ଷିପ୍ର ପାଦରେ ଫେରି ଯାଉଛି । ଯୁଦ୍ଧରେ ତାର ବିଶ୍ୱାସ ନାହିଁ । ସେ ଜୀବନରେ କାହାକୁ ବି 'ଯୁଦ୍ଧଂ ଦେହି' ଡାକରା କେବେ ଦେଇନାହିଁ । ନିଜେ ଆହତ ହୋଇଛି ପଛେ ଆଉ କେଉଁ ପ୍ରତିଦ୍ୱନ୍ଦ୍ୱୀକୁ ଆଘାତ କରିନାହିଁ । ଦୁଇ ଦୁଇ ବର୍ଷ ବର୍ଷାଋତୁରେ ନାଲିକୁତୀକୁ ବଳୀୟାର କୁକୁରମାନେ ଦଶପନ୍ଦରଦିନ ପାଇଁ ଅପହରଣ କରି ଦେଇଥିଲେ ବି ସେ ଅନ୍ତର ଭିତରେ ଦଗ୍ଧ ହୋଇବି ଓ ନାଲି କୁତୀ ସହିତ ତଥାପି ଜୀବନ ବଞ୍ଚିବାକୁ ପ୍ରୟାସ ରଖିଛି । ତେଣୁ ବାରମ୍ବାର ଫେରି ଆସି ସେଇ ଗଛମୂଳେ ଶୋକାତୁର ଭାବେ ପଡ଼ିରହିଛି । ତଥାପି ନାଲିକୁତୀ ମନରେ ଦୟା



Digitized by PPRACHIN, SOA

ଆସୁନାହିଁ । ଆଜି ପୁଅ ସହିତ ମିଶି ତାକୁ ସେ ଆକ୍ରମଣ କରିବାକୁ ଉଦ୍ୟତ । ସମ୍ଭବତଃ କଳାଛଉକା କୁକୁରଟି ତାର ନିଜ ପରିବାରଠାରୁ ଏପରି ପରିଣତି କେବେ ଆଶା କରି ନଥିଲା; ତେଣୁ ବିମର୍ଷ ବିଷାଦ ରେ ସେ ବଡ଼ ରାସ୍ତା ଉପରକୁ ଫେରି ଆସି କୁଆଡେ ଯିବ ବୋଲି ମନେ ମନେ ଭାବୁଥିଲା । ଜନ୍ମଠାରୁ ଏ ଯାବତ୍ ପ୍ରାୟ ଆଠ ବର୍ଷଧରି ଏଇ ଇଲାକାକୁ ସେ ଭଲପାଇ ଆସିଛି । ଏଇଠି ଥିବା ନାଁ ଅଜଣା ଗଛରେ ଆଦ୍ୟବସନ୍ତରେ ନାନାବର୍ଣ୍ଣର ଫୁଲ ବିମଣ୍ଡିତ ହୋଇ ଯାଉଥିଲା । ଶୀତଋତୁ ପରେ ପରେ ପଣସଗଛରେ ଅସଂଖ୍ୟ ଫୁଲ ଓ କଷି ଭରିଯାଉଥିଲା । ଏଇଠି ଥିବା ଏକାଧିକ କଦମ୍ବଗଛରେ ବର୍ଷାଋତୁରେ ରୋମ ଟାଙ୍କୁରି ଉଠିବା ପରି କଦମ୍ବକୋରକ ପୁଷ୍ପିତ ହୋଇ ଉଠୁଥିଲା । ରାସ୍ତାକଡ଼ରେ ବଗିଚାମାନଙ୍କରେ ବୈଶାଖ ଓ ଜ୍ୟେଷ୍ଠମାସରେ ମଲ୍ଲୀଫୁଲର ବାସ୍ନା ଆଉ ହେମନ୍ତ ଋତୁରେ ଗଙ୍ଗଶିଉଳିର ବାସ୍ନା ତାକୁ ଉଚ୍ଛନ୍ନ କରୁଥିଲା । ସେ ନାଲିକୁତୀଟି ସହିତ ମାତି ଉଠୁଥିଲା ଦୌଡ଼ାଦୌଡ଼ି ଖେଳରେ । କେତେଥର ଅସାବଧାନତାବଶତଃ ମାଇକୁତୀଟିର ମୁହଁକୁ କାମୁଡ଼ି ଦେଇଥିଲା ବୋଲି ସେ କେତେବେଳେ ଯାଏ କୁଁ କୁଁ ହୋଇ କାନ୍ଦିଥିଲା- ତାକୁ କେତେ ପ୍ରକାର ଶବ୍ଦରେ ସାକୁଲେଇଥିଲା କାଳିଆଛଉକା । ସେସବୁ କଥା ମନେ ପଡ଼ି ତା ମନ ଶୋକାତୁର ହୋଇ ଉଠୁଥିଲା । ଏଇଠି ତାର କେହି ଶତ୍ରୁ ନ ଥିଲେ । ଚାରି ପାଞ୍ଚଟି ଘରର ମାଲିକାଣୀମାନେ ତାକୁ ବାସିରୁଟି ଓ ତୋରାଣିଭାତ ପ୍ରାୟ ଦେଉଥିଲେ । ମାଆକ୍ଲିନିକ୍‌ର ଛୋଟ ଶିଶୁଟି ତାକୁ କେତେ ସରାଗରେ ବିସ୍କୁଟ ଖାଇବାକୁ ଦେଉ ଥିଲା । ପାଇଲେ ଖାଉଥିଲା, ନଚେତ୍ ଅନାହାରରେ ଗଛ ଛାଇରେ ଶୋଇ ରହୁଥିଲା । କିନ୍ତୁ କେବେବି ନାଲିକୁତୀ ମୁହଁରୁ ଆହାର ଛଡ଼ାଇ ନେବାକୁ ପ୍ରୟାସ କରୁନଥିଲା । ଏବେ ସେଇ ଇଲାକା ତା' ଜୀବନପାଇଁ ହୋଇଛି ଦୁର୍ବିସହ । ସମ୍ଭବତଃ କଳା କୁକୁରଟି କୁଆଡେ ଯିବ ଓ କ'ଣ କରିବ ଥଳକୂଳ ପାଉ ନଥିଲା । ତା' ନୟନରେ ଥିଲା ଦୁଇଧାର ଲୁହର ସ୍ପଷ୍ଟ ଦାଗ । ସେ ବେଳେବେଳେ କରୁଣ ସ୍ୱରରେ ମୂର୍ଚ୍ଛନା ତୋଳୁଥିଲା- ସେପରି ସ୍ୱରକୁ ଲୋକେ କୁକୁରର ଅଶୁଭ କାନ୍ଦଣା ବୋଲି କହିବେ । ତା' ପୁଣି କୁଆଡ଼େ ଜନପଦପାଇଁ କୌଣସି ଆଶୁବିପଦର ଶଙ୍କା ଭାବେ ହେବ ଗୃହୀତ । ସେ କାନ୍ଦୁଥିଲା ନା ସେଇ କାନ୍ଦିବାର ଲହଡ଼ି ଭିତରେ ତାର ପ୍ରିୟତମା ନାଲିକୁତୀଟିକୁ ଆହ୍ୱାନ କରୁଥିଲା । ନା ଜଣାଇ ଦେବାକୁ ଚାହୁଁଥିଲା- "ଦେଖ୍, ତୋ ବିନା ମୋର କି ଅବସ୍ଥା । ତୁ ଆସିଲୁ ନାହିଁ, ମୋତେ ଜାଗା ଦେଲୁନାହିଁ, ପୁଅକୁ ମୋ ବିରୁଦ୍ଧରେ ଲଗେଇ ଦେଲୁ । ଏବେ ମୁଁ କୁଆଡ଼େ ଯିବି, କଣ କରିବି ?"

ମୁଁ ଅନେକଦୂରଯାଏ କୁକୁରଟିର ହୃଦୟଫଟା କରୁଣ କ୍ରନ୍ଦନର ଶେଷ ମୂର୍ଚ୍ଛନାକୁ ଶୁଣିପାରୁଥିଲି । ମନ୍ଦିର ଦର୍ଶନସାରି ଫେରିଲାବେଳକୁ ସେଇ ରାସ୍ତାରେ ସ୍ୱତଃ ମୋ ପାଦ ଚାଳିତ ହୋଇଯାଇଥିଲା । ମୁଁ କଳାକୁକୁରଟିକୁ ଖୋଜିଖୋଜି ଚାରିଆଡ଼କୁ ଆଖି ପକାଉଥିଲି । ଆଶ୍ଚର୍ଯ୍ୟ- ଏ କ'ଣ ଦେଖୁଚି ! କଳାକୁକୁରଟି ଉପରେ ସମ୍ଭବତଃ ଏଇମାତ୍ର ବସ୍ ବା ଟ୍ରକ୍ ଚଢ଼ିଯାଇଛି- ରାସ୍ତାରେ ବହିଯାଇଛି ତାଜା ବହଳ ରକ୍ତର ଧାର । ତା' ଅନ୍ତ



Digitized by PPRACHIN, SOA

ବୁହୁଳା ବାହାରି ପଡ଼ି ଛିନ୍ନଛତ୍ର ହୋଇ ପଡ଼ିଛି । ତା ଗଣ୍ଠିରୁ ମୁଣ୍ଡ ପ୍ରାୟ ଅଲଗା ହୋଇ ଯାଇଛି । ମୁଁ ବିଶ୍ୱାସ କରିପାରୁ ନଥିଲି । ରାସ୍ତାରେ ଚଳପ୍ରଚଳ ହେଉଥିବା ଏ ଜୀବମାନେ ବେଶ୍ ସତର୍କତାର ସହିତ ଆତ୍ମରକ୍ଷା କରୁଥିବା ବେଳେ କାଳିଆର ଏ କି ଦୁର୍ଦ୍ଦଶା ହେଲା ? ସେ କଣ ଆତ୍ମହତ୍ୟା କଲା ! ନା ଅତିରିକ୍ତ ଦୁଃଖରୁ ରାସ୍ତାରେ ଆସୁଥିବା ଗାଡ଼ିର ଗତି ସଂପର୍କରେ ଜ୍ଞାନଶୂନ୍ୟ ହୋଇଗଲା । ଛାଡ଼ ଗୋଟାଏ ପଶୁର ଜୀବନ ଏମିତି ଅବସାନ ହୋଇଯାଏ । ସେମାନେ ମଟର ଚକାତଳେ କୁଢ଼ କୁଢ଼ ଏମିତି ମରନ୍ତି- ମନକୁ ବୁଝେଇ ମୁଁ ସମାନ୍ତରାଳ ରାସ୍ତାରେ ଘରକୁ ଫେରି ଆସୁଥିଲାବେଳେ ଯଥା ସ୍ଥାନରେ ମାଆପୁଅକୁ ଭେଟିଲି । ସେମାନେ ଦୌଡ଼ାଦୌଡ଼ି ଖେଳରେ ପୂର୍ବପରି ମାତିଛନ୍ତି । ଗହମରଙ୍ଗର ପୁଅ କୁକୁରଟି କେତେବେଳେ ମାଆ ଉପରେ ସବାର ହୋଇ ବସୁଚି- କେତେବେଳେ ତା ମୁହଁକୁ ମାଆର ମୁହଁ ସହିତ ସାମିଲ କରି ମାଆକୁ ଗେଲ କରୁଚି । ମୁଁ ଭାବୁଥିଲି କାଳିଆ କୁକୁରର ବେଦନାସିକ୍ତ ଶେଷମୂର୍ଚ୍ଛନାକୁ କ'ଣ ଏ ଦିହେଁ ଶୁଣି ନାହାଁନ୍ତି ? ନା ଶୁଣି ମଧ ଜାଣି ଜାଣି ପ୍ରତ୍ୟାଖ୍ୟାନ କରିଛନ୍ତି । ସେମାନଙ୍କର କୌତୁକ ଖେଳ ମୋତେ ଅଜବ କିଛି ଧାରଣାରେ ସନ୍ତୁଳିତ କରୁଥିଲା । ମୁଁ ଘରକୁ ଆସି ଜଣେ ପରିଚିତ ପଶୁଡାକ୍ତରଙ୍କୁ ଫୋନ୍ କରି ଏପରି ଖେଳର ଉଦ୍ଦେଶ୍ୟ ସଂପର୍କରେ ପଚାରିଥିଲି । ସେ କହିଲେ- ଏ ବର୍ଷ ସେମାନେ ମାଆପୁଅ ଅଛନ୍ତି; କିନ୍ତୁ ଆର ବର୍ଷାଋତୁରେ ପତି ଓ ପତ୍ନୀ ହୋଇଯିବାରେ କିଛି ବିଚିତ୍ରତା ନାହିଁ । ଏ ଖେଳ ତାର ପୂର୍ବାଭାସ ମାତ୍ର । ଏବେ ମୁଁ ମାଇକୁତୀଟିର ଉଦାସୀନତାର କାରଣ ସ୍ପଷ୍ଟ ବୁଝିପାରିଲି ।





Digitized by PPRACHIN, SOA

## ବୃଷଭ ଉପାଖ୍ୟାନ

(ସଂପୂର୍ଣ୍ଣ କାଳ୍ପନିକ)

ଦୁଇହଜାର ମସିହା ନିର୍ବାଚନର କଥା । ନିର୍ବାଚନ ପ୍ରଚାର ଖୁବ୍ ଜମି ଆସୁଥାଏ । ମଇଦାନରେ ଥାନ୍ତି ମୁଖ୍ୟତଃ କଂଗ୍ରେସ, ବିଜେପି ଓ ବିଜେଡ଼ି ପ୍ରାର୍ଥୀ । ଜିଲ୍ଲାର ମୁଖ୍ୟ ସହର- ନିର୍ବାଚନମଣ୍ଡଳୀ, ତେଣୁ ନେତାମାନଙ୍କର ଖୁବ୍ ଦୃଷ୍ଟିଥାଏ ସେ ନିର୍ବାଚନ ପ୍ରତି । ତିନିଜଣଯାକ ପ୍ରାର୍ଥୀ ଥାଆନ୍ତି ସମସ୍ପର୍ଦ୍ଧୀ । ସେମାନଙ୍କ ମଧ୍ୟରୁ କେହିନା କେହି ଅତୀତରେ ଥରେ ବା ଦି'ଥର ବିଧାନ ସଭାକୁ ନିର୍ବାଚିତ ହୋଇଛନ୍ତି । ତେଣୁ ପ୍ରତ୍ୟେକ ପ୍ରାର୍ଥୀ ଜିତିଯିବେ ବୋଲି ବିଶ୍ୱାସ ରଖି ନିର୍ବାଚନ ଲଢୁଥାନ୍ତି । ନିର୍ବାଚନ ତ ଏ ସମୟକୁ ଖୁବ୍ ବ୍ୟୟବହୁଳ ହୋଇ ପଡ଼ିଥାଏ । କେବଳ ବି.ଜେ.ପି ପ୍ରାର୍ଥୀଙ୍କୁ ଛାଡ଼ିଦେଲେ ଅନ୍ୟ ଦୁଇ ପ୍ରାର୍ଥୀଙ୍କର ଥାଏ ପ୍ରଚୁର ଅର୍ଥବଳ । ବି.ଜେ.ପି ଦଳ ବି.ଜେଡ଼ି. ସହିତ ଶେଷ ମୁହୂର୍ତ୍ତରେ ନିର୍ବାଚନ ବୁଝାମଣା କରିବାରୁ ତା'ର କୌଣସି ଆନୁଷ୍ଠାନିକ ପ୍ରାର୍ଥୀ ନ ଥିଲେ ବି ଏଇ ନିର୍ବାଚନମଣ୍ଡଳୀରେ ଚାରିବର୍ଷଧରି ସଂଗଠନ କରୁଥିବା ଜଣେ ଖୁବ୍ ଉଚ୍ଚଶିକ୍ଷିତ ବ୍ୟକ୍ତି ଜନତାର ଆଗ୍ରହକୁ ସମ୍ମାନ ଦେଇ ନିର୍ବାଚନରେ ଠିଆ ହୋଇଥାନ୍ତି ଅବଶ୍ୟ ସ୍ୱାଧୀନ ଭାବରେ । କିନ୍ତୁ ଜନସାଧାରଣ ତାଙ୍କୁ ବି.ଜେ.ପି ପ୍ରାର୍ଥୀ ବୋଲି ବିଚାର କରୁଥାନ୍ତି କାରଣ ତାଙ୍କରି ଉଦ୍ୟମ ଓ ଅର୍ଥବ୍ୟୟରେ ଏ ଦଳରେ କିଛି ତୃଣମୂଳ ସଂଗଠନ ଗଠିତ ହୋଇ ସାରିଥାଏ । ତୃଣମୂଳସ୍ତରୀୟ ନେତାମାନେ ବି.ଜେ.ଡ଼ିର ପ୍ରାର୍ଥୀଙ୍କୁ ନାନାଦି କାରଣରୁ ସମର୍ଥନ କରିବାକୁ ପ୍ରସ୍ତୁତ ନଥାନ୍ତି; କାରଣ ସେମାନଙ୍କ ଧାରଣା ଥରେ ଗ୍ରାମ୍ୟସ୍ତରରେ ସମର୍ଥନ କଲେ ସେମାନଙ୍କ ନିଜସ୍ୱ ବି.ଜେ.ପି ସଂଗଠନ ଆଉ ଉଧେଇବନି । ବିଜୟୀ ପ୍ରାର୍ଥୀ ମୂଳ ସଂଗଠନକୁ ନିଶ୍ଚୟ ଲୋପ କରିଦେବାକୁ ଉଦ୍ୟମ କରିବେ ଓ କ୍ରମେ ବି.ଜେ.ପି ସଂଗଠନ ନିଶ୍ଚିହ୍ନ ହୋଇ ଯିବ । ତେଣୁ ଠାକୁରମନ୍ଦିର ପ୍ରାଙ୍ଗଣରେ ଏକାଠି ହୋଇ ପାଖାପାଖି ତିନିଶହ ଗ୍ରାମ୍ୟ ନେତା ସେହି ଉଚ୍ଚଶିକ୍ଷିତ ବ୍ୟକ୍ତିଙ୍କୁ ଠିଆହେବାକୁ ଏକପ୍ରକାର ବାଧ କରିଥାନ୍ତି ଓ ଶେଷ ପର୍ଯ୍ୟନ୍ତ ସମର୍ଥନ କରିବେ ବୋଲି ମନ୍ଦିରର ଆରାଧ୍ୟ ଦେବତା ଜଗନ୍ନାଥଙ୍କ ଆଡ଼କୁ ହାତଟେକି ଶପଥ କରିଥାନ୍ତି ।

ନିର୍ବାଚନ ଉଷ୍ମତା ଜମି ଆସୁଥାଏ । ବିଭିନ୍ନ ତରିକାରେ ପ୍ରତ୍ୟେକ ପ୍ରାର୍ଥୀ ପ୍ରଚାରରେ ଲାଗି ପଡ଼ିଥାନ୍ତି । ଗାଁ ଗହଳରେ କଂଗ୍ରେସ ଓ ବି.ଜେ.ଡ଼ିର ପୋଷ୍ଟର ପ୍ରତିଯୋଗିତାମୂଳକ ଭାବେ ଛାଇ ହୋଇ ଯାଇଥାଏ । ପ୍ରତି ପଞ୍ଚାୟତରେ ଖୋଲିଥାଏ ଅନ୍ୟୂନ ତିନୋଟି ଦଳୀୟ ସାଂଗଠନିକ କାର୍ଯ୍ୟାଳୟ । ସେଇଠି ପ୍ରତିଦିନ ସଂଧ୍ୟାରେ



Digitized by PPRACHIN, SOA

ଗ୍ରାମ୍ୟନେତାମାନେ ଓ କେବେ କେବେ ପଞ୍ଚାୟତ ନେତାମାନେ ଏକାଠି ହେଉଥାନ୍ତି । ଭୋଜି ଭାତର ମହକ ଗ୍ରାମ୍ୟବାତାବରଣକୁ ଉତ୍ତେଜନାପୂର୍ଣ୍ଣ କରି ରଖିଥାଏ । ଏ ଦୁଇଦଳର ଏକାଧିକ ପ୍ରଚାରଗାଡ଼ି ଓ ତହିଁରେ ଥିବା ଯୁବ ପ୍ରଚାରକମାନେ ସଂଧ୍ୟାରେ ଆସି ମୁଖ୍ୟ କାର୍ଯ୍ୟାଳୟରେ ଏକାଠି ହୁଅନ୍ତି । ସେଠି ପ୍ରତିଦିନ ରାତିରେ ଖାସିମାଂସ ବା କୁକୁଡ଼ାମାଂସର ବ୍ୟବସ୍ଥା ଥାଏ । ତା' ସହିତ କିଛି କ୍ଳାନ୍ତି ଅପହରଣକାରୀ ପାନୀୟ ମଧ୍ୟ । କିନ୍ତୁ ଗ୍ରାମ୍ୟସ୍ତରରେ ବା ପଞ୍ଚାୟତ ସ୍ତରରେ ଭୋଜିଭାତ ସପ୍ତାହକୁ ଦୁଇ ତିନିଥର ହେଲେ ବି ତାର ମାନ ଏତେ ଉନ୍ନତ ନୁହେଁ । ଅର୍ଥାତ୍ କେବଳ ଭାତ, ଡ଼ାଲମା, ଖିରୀ ଓ ଖଟା । ଏଠି ମଧ୍ୟ ଆଗ୍ରହୀକର୍ମୀଙ୍କ ସଂଖ୍ୟା ମୁଖ୍ୟ କାର୍ଯ୍ୟାଳୟ ତୁଳନାରେ ଖୁବ୍ କମ୍ । ଭାତ ଡ଼ାଲମା ଖାଇବାକୁ କିଛି କିଛି କର୍ମୀ ନୀରବରେ ପ୍ରତିବାଦ ଜଣେଇ ଅନୁପସ୍ଥିତି ରହିଯାନ୍ତି । ସେମାନଙ୍କର ଦାବି ମୁଖ୍ୟ କାର୍ଯ୍ୟାଳୟରେ ଯେଉଁ ବ୍ୟବସ୍ଥା ପଞ୍ଚାୟତ ସ୍ତରୀୟ କାର୍ଯ୍ୟାଳୟରେ ସେଇ ବ୍ୟବସ୍ଥା ଚାଲୁ ରହୁ । ସେମାନେ କଣ ନିଜ ଘରେ ଡାଲମାଖଟା ଖାଉ ନାହାନ୍ତି କି ? ତେବେ କାର୍ଯ୍ୟାଳୟକୁ କାହିଁକି ଯିବେ ?

ନିର୍ବାଚନ ପ୍ରାୟ ଆଉ ସାତଦିନଥାଏ । ନିର୍ବାଚନରେ ବହୁ ନୂଆ ନୂଆ ପ୍ରଚାର ପତ୍ର ଓ ଗବେଷଣାପ୍ରସୂତ ଆକର୍ଷଣକାରୀ ପାମ୍ଫଲେଟ୍ ଗ୍ରାମମାନଙ୍କରେ ପହଞ୍ଚି ଯାଉଥାଏ । ସ୍ୱାଧୀନ ପ୍ରାର୍ଥୀ କିନ୍ତୁ ଅର୍ଥାଭାବରୁ ପ୍ରଚାରରେ ଖୁବ୍ ପଛରେ ପଡ଼ିଯାଇଥାନ୍ତି । କର୍ମୀମାନେ ଜାଣନ୍ତି ତାଙ୍କ ପ୍ରାର୍ଥୀ କେବେବି ଜିତିବେ ନାହିଁ, ଯେହେତୁ ଦଳ ଆଲିଆନ୍ସ ଘୋଷଣା କରି ସାରିଚି । କିନ୍ତୁ ବି.ଜେ.ପି ସଭ୍ୟହେଲେ ବି ସ୍ୱାଧୀନ ପ୍ରାର୍ଥୀଙ୍କୁ ଦଳ ଭିତିରି ସମର୍ଥନ ଜଣାଉଥାଏ । ଦଳ ମଧ୍ୟ ଚାହେଁ ନାହିଁ ଗୋଟିଏ ଗୋଟିଏ ଜିଲ୍ଲାରେ ନିଜ ଦଳର ସତ୍ତା ଲୋପ ହୋଇଯାଉ । ଜିତିବା ପାଇଁ ନ ହେଲେ ବି ସଂଗଠନ ବଞ୍ଚେଇ ରଖିବାକୁ ସେମାନଙ୍କର ମଧ୍ୟ ଥାଏ ଭିତିରି ସମର୍ଥନ । ତେଣୁ ସ୍ୱାଧୀନ ପ୍ରାର୍ଥୀଙ୍କ ପ୍ରତି ସେମାନେ କୌଣସି କଠୋର ପଦକ୍ଷେପ ନେବାକୁ ବ୍ୟଗ୍ର ନଥା'ନ୍ତି । କର୍ମୀମାନେ ନିଜ ନିଜକୁ ବି.ଜେ.ପି ବୋଲି ପରିଚୟ ଦେବାରେ କିଛି ବାଧା ନଥାଏ । କିନ୍ତୁ ଆଲିଆନ୍ସ ଦଳର ପ୍ରାର୍ଥୀ ଏଥିପାଇଁ ଆପତ୍ତି ଉଠାଇଥାନ୍ତି । ରାଜ୍ୟନେତାଙ୍କୁ ଭେଟି ସ୍ୱାଧୀନ ପ୍ରାର୍ଥୀଙ୍କୁ ଦଳରୁ ବହିଷ୍କାର କରିବାପାଇଁ ଜୋର୍‌ଦାର ଦାବି କରିଚାଲିଥାନ୍ତି ।

ଦିନେ ଦେଖାଗଲା ସେଇ ଅଞ୍ଚଳର ଟଗରଫୁଲ ପରି ଧଳା ଖୁବ୍ ସୁସ୍ଥ ସବଳ ଷଣ୍ଢଟିଏର ଗୋଟିଏ ପାଖ ପେଟରେ ହାତ ଚିହ୍ନର ସୁଦୃଶ୍ୟ ଛବିଟିଏ ଆଙ୍କି ଷଣ୍ଢଟିକୁ ଅଡ଼େଇ ଅଡ଼େଇ କିଛି ଯୁବକ ଓ କିଶୋର ପାଖ ସଂଖ୍ୟାଲଘୁ ଗୋଷ୍ଠୀର ଗ୍ରାମ ସୀମାନ୍ତକୁ ଚାଲିଛନ୍ତି । ପୁଣି ଷଣ୍ଢଟିକୁ ବିଡ଼ାବିଡ଼ା ଘାସ ଦେଇ ପ୍ରଲୋଭିତ କରି ଆଗେଇ ଚାଲିଛନ୍ତି ସେଇ ଗ୍ରାମ ଅଭିମୁଖେ । ସମୟ ସକାଳ ଆଠଟା ହୋଇପାରେ । କେହି କେହି ସେତେବେଳକୁ ନିଜ ନିଜର ନିତ୍ୟ କର୍ମସାରି କର୍ମକ୍ଷେତ୍ରକୁ ଯିବାକୁ ପ୍ରସ୍ତୁତ ହେଲେଣି । କେହି ବିଲକୁ ଚାଷ କାମ କରିବାକୁ ବାହାରିଥାନ୍ତି । ପିଲାମାନେ ପାଖ ସହରର ସାଇକେଲ ଦୋକାନ ବା ଗ୍ୟାରେଜ ଅଭିମୁଖେ ଯିବା ପାଇଁ ପ୍ରସ୍ତୁତ ହେଉଥା'ନ୍ତି । ଅଳ୍ପ କିଛି ପିଲା ସ୍କୁଲଯିବାକୁ



Digitized by PPRACHIN, SOA

ଉପକ୍ରମ କରୁଥାନ୍ତି । ସ୍ତ୍ରୀ ଲୋକମାନେ ଘରେ ଥା'ନ୍ତି କାର୍ଯ୍ୟରତ । ଏହିପରି ସମୟରେ ଦଶବାରଜଣ ଯୁବକ ଷଣ୍ଢଟିକୁ ଅଡ଼େଇ ଅଡ଼େଇ ଗାଁ ଭିତରକୁ ପଶି ଆସିଲେ । ଷଣ୍ଢଟିର ଦେହର ଦୁଇ ପାର୍ଶ୍ୱରେ ଦୁଇଟି ହାତଚିହ୍ନ ଅଙ୍କା ଯାଇଥିଲା । କିଛି ଧ୍ୱନି ଓ ନାରାବାଜିବି ହେଲା । ସେମାନଙ୍କ କଥା ଶୁଣିବାକୁ ଯେତେ ନୁହେଁ ହୃଷ୍ଟପୁଷ୍ଟ ଷଣ୍ଢଟିକୁ ଦେଖିବାକୁ ଏବେ ଗ୍ରାମର କିଛି ବିଶିଷ୍ଟ ଲୋକ, କିଛି ପିଲାଛୁଆ ପ୍ରାୟ ସମବେତ ହୋଇଗଲେ । ଘରର ସ୍ତ୍ରୀଲୋକମାନଙ୍କ ମନରେ ବୃଷଭର ଆଗମନ ବା ନାରାବାଜି କିଛିବି କୌଣସି ପ୍ରଭାବ ପକେଇଲାନି । ଏତେ ବଡ଼ ଗ୍ରାମରୁ ଜଣେ ହେଲେବି ଝିଅ, ମାଆ ବା ବୃଦ୍ଧା ଦାଣ୍ଡକୁ ଷଣ୍ଢ ପାଖକୁ ଆସିଲେ ନାହିଁ । ଅବଶ୍ୟ ପ୍ରଚାର କର୍ମୀମାନେ ବେଶୀସଂଖ୍ୟକ ଜନତାକୁ ଆକୃଷ୍ଟ କରି ପାରି ନଥିବାରୁ ଗ୍ଲାନିରେ ହତାଶ ହେଲେ ଓ କିଛି ପ୍ରଚାରପତ୍ର ପିଲାଙ୍କ ହାତରେ ଦେଇ ଓ କିଛି ଇତସ୍ତତଃ ଫିଙ୍ଗି ଷଣ୍ଢ ସହିତ ଗ୍ରାମ ଛାଡ଼ି ଆଗକୁ ଆଗେଇଗଲେ ।

ତା' ପରଦିନ ଆଉ ଏକ ବିଚିତ୍ର ଦୃଶ୍ୟ ଦେଖିବାକୁ ମିଳିଲା । ସେଇ ଷଣ୍ଢଟିର ପେଟର ଦୁଇପାର୍ଶ୍ୱରେ ସବୁଜ ରଂଗରେ ଖୁବ୍ ବଡ଼ ଶଙ୍ଖଚିହ୍ନ ଦୁଇଟି ଅଙ୍କାଯାଇଥିଲା । ଷଣ୍ଢଟିକୁ ବୁଟ ବିରିଚୋପା ଓ ଭୁସିର ଦାନା ଖାଇବାକୁ ଦିଆଯାଇଚି । ପ୍ରଚୁର ଖାଇ ତା' ପେଟ ହୋଇଉଠିଛି ଓଜନିଆ । ଡୋଫାଧଳା ପେଟରେ ଅପୂର୍ବ ଦୁଇଟି ଶଙ୍ଖ ଚିହ୍ନ ଦୁଇପାର୍ଶ୍ୱରେ ଆକର୍ଷଣୀୟ ହୋଇଉଠିଛି । ଗତକାଲି ଷଣ୍ଢଟିର ବାମପଟ ପେଟରେ ଯେଉଁ ଚିହ୍ନଟି ଖୁବ୍ ଦୃଶ୍ୟମାନ ଭାବେ ଅଙ୍କା ଯାଇଥିଲା ସାବୁନ୍ ଓ ପାଣିଯୋଗେ ତାକୁ ଖୁବ୍ ଯତ୍ନରେ ନିଭେଇ ଦିଆଯାଇଛି । ଗତକାଲି ଘାସଖାଇ ଷଣ୍ଢ ଯେତେ ଉଷତ ନଥିଲା ଆଜି ପ୍ରଚୁର ଦାନା ଖାଇ ଖୁବ୍ ଖୁସିଥିବା ମନେ ହେଉଛି । ବେଶ୍ ଶାନ୍ତଶିଷ୍ଟ ଉଦାର ଷଣ୍ଢଟିଏ- ସମ୍ଭବତଃ ଏ ଅଞ୍ଚଳର ବହୁ ଚର୍ଚ୍ଚିତ ଓ ଅନେକ ସନ୍ତାନସନ୍ତତିଙ୍କ ପିତୃତ୍ୱ ବହନ କରିଥିବା ଲୋଡ଼ା ଅଲୋଡ଼ା ପ୍ରାଣୀଟିଏ । କର୍ମୀମାନେ ଖୁବ୍ ଚଳଚଞ୍ଚଳ ଅଛନ୍ତି; ନାରାବାଜିରେ ଗ୍ରାମ ପଡୁଚି ଉଠୁଚି । ଗୁଡାଏ ସବୁଜରଂଗର ପତାକା ଗାଁ ସାରା ଛାଇ ହୋଇ ଯାଇଛି । ଛୋଟ ପିଲାଙ୍କୁ ବିସ୍କୁଟ ଓ ଚକୋଲେଟ୍ ବଣ୍ଟାଯାଉଚି । ଗରିବ ଗୁରୁବାଙ୍କୁ ଗେଞ୍ଜି ଓ ଗାମୁଛା । ସ୍ତ୍ରୀଲୋକଙ୍କୁ ଶାଢ଼ି ଓ ଚାଦର । କେତେଜଣ ଯୁବକ ଅନତିଦୂରରେ ଚାରିପାଞ୍ଚୋଟି ନୂଆ ସାଇକେଲ୍ ଧରି ଠିଆ ହୋଇଛନ୍ତି । ସ୍ୱାଭାବିକ ଭାବେ ଗାଁଟି ସକ୍ରିୟ ହୋଇ ଉଠିଛି । କିନ୍ତୁ ସ୍ତ୍ରୀଲୋକମାନେ ତଥାପି ଦାଣ୍ଡକୁ ଗଡୁନାହାନ୍ତି । କବାଟକୁ ଅଧାଆଉଜା କରି ଷଣ୍ଢର ଶୋଭାକୁ ନିରୀକ୍ଷଣ କରୁଛନ୍ତି । ପେଟରେ ସିନା ଶଙ୍ଖଚିହ୍ନ, କିନ୍ତୁ ବେକ ପିଠି ଓ ଲାଞ୍ଜରେ ଶଙ୍ଖଚିହ୍ନଥିବା ସବୁଜରଂଗର ପତାକାକୁ ଏପରି ସଜାଇ ଦିଆଯାଇଛି ଯେପରି ମନେହେଉଚି ଠାକୁରାଣୀଙ୍କ ଘଣ୍ଟପାଟୁଆ ଦାଣ୍ଡରେ ଚାଲୁଛି । ଗାଁର କିଛି ମୁରବୀ ପ୍ରଚାରକ ଦଳ ପଛେ ପଛେ ଚାଲିବାରୁ କର୍ମୀମାନେ ଉତ୍ସାହିତ ହେଲେ ଓ ଆଶାନ୍ୱିତ ମଧ୍ୟ ହେଲେ । ଖରାଟାଣ ହୋଇ ଆସିବାରୁ ଗାଁଲୋକେ ନିଜ ନିଜ ପେଟ ପାଟଣା ସଂଧାନରେ ପାଖ ସହରକୁ ଚାଲିଲେ ଓ ପ୍ରଚାରକର୍ମୀମାନେ ଷଣ୍ଢକୁ ଅଡ଼େଇ ଅଡ଼େଇ ଚାଲିଲେ ଆଉ ଏକ



Digitized by PPRACHIN, SOA

ଗାଁକୁ । ସେମାନେ ମନେ ମନେ ଆକଳନ କଲେ ଯେ ଆରଦଳ ଅପେକ୍ଷା ସେମାନେ ନିଶ୍ଚୟ ଅଧିକ ଭୋଟ ପାଇବେ । ଲୋକଙ୍କ ସମର୍ଥନ ମିଳିଛି, ପିଲାମାନେ ନାରାବାଜିରେ ଯୋଗ ଦେଇଛନ୍ତି । ନାରୀମାନେ କବାଟକଣରୁ ଚାହିଁ ରହିଛନ୍ତି, ପୁରୁଷମାନେ ଯତ୍‌କିଂଚିତ୍ ପାରିତୋଷିକ ଗ୍ରହଣ କରିଛନ୍ତି । ନାନାଦି କାରଣରୁ ସେମାନଙ୍କର ଆଶାନ୍ୱିତ ହେବାର କାରଣ ଥିଲା । ସେମାନେ ଖୁବ୍ ଉନ୍ମତ୍ତ ଥିଲେ, ଗଡ଼ଜୟ କରିଥିବା ଆନନ୍ଦରେ ଥିଲେ ବିହ୍ୱଳ । ଭାବୁଥିଲେ ଏ ଗାଁକୁ ଆସି ହେଉ ନଥିଲା । ଲୋକେ ସ୍ୱାଗତ କରୁ ନଥିଲେ । ଯାହାହେଉ ଶୁଭସୂଚନା ମିଳିଲା- ଏହା ଆରମ୍ଭ ମାତ୍ର ।

ତା' ପରଦିନକୁ କିନ୍ତୁ ରାଜନୈତିକ ମାନଚିତ୍ର ସଂପୂର୍ଣ୍ଣ ଓଲଟପାଲଟ ହୋଇଗଲା । ସ୍ୱାଧୀନ ବନାମ ବିଜେପି ପ୍ରାର୍ଥୀଙ୍କ ଅଳ୍ପସଂଖ୍ୟକ ବୟସ୍କ କର୍ମୀମାନେ ଏଇ ଗାଁର ଭୋଟରମାନଙ୍କୁ କିପରି ଆକୃଷ୍ଟ କରିବେ ତାର ଉପାୟ ଚିନ୍ତା କରୁଥିଲେ । ସେମାନେ ତ ପଦ୍ମଚିହ୍ନ ବ୍ୟବହାର କରିପାରିବେ ନାହିଁ, ଫାଳନଡ଼ିଆ ଚିହ୍ନ ଲୋକଙ୍କୁ ଏତେ ଆକୃଷ୍ଟ କରୁନାହିଁ । ସେମାନଙ୍କୁ ନଡ଼ିଆ ଅପ୍ରାପତ ନୁହେଁ- ତେଣୁ ନିତିଦିନିଆ ଓ ଦେହଘସା । ତେବେ ଲୋକଙ୍କୁ ବିଶେଷତଃ ଗୃହବନ୍ଦିନୀ ନାରୀ ଓ ଝିଅମାନଙ୍କୁ କିପରି ଗାଁ ଦାଣ୍ଡକୁ ଆଣିପାରିବେ ତାର ଉପାୟ ଚିନ୍ତା କରୁକରୁ କାହାର ଉର୍ବର ମସ୍ତିଷ୍କରୁ କଥାଟିଏ ବାହାରିଲା । କର୍ମୀ ଜଣକ କହିଲେ ମୋ ସହିତ ଦୁଇଜଣ ଆସ ଆମେ ପଦ୍ମପୋଖରୀରେ ପଶି ପାଞ୍ଚ ଶହ ପଦ୍ମଫୁଲ ତୋଳିଆଣିବା । ଷଣ୍ଢତ ଗଛମୂଳେ ଶୋଇ ପାକୁଳି କରୁଚି । ତାକୁ ଆହୁରି ଭଲ ଖାଦ୍ୟ ଦିଅ । ତା ଦେହସାରା ପଦ୍ମଫୁଲରେ ମଣ୍ଡିଦେବା ପନ୍ଦର କୋଡ଼ିଏଟି ପଦ୍ମମାଳ ପିଠି ଉପରେ ବାନ୍ଧିଦେବା । ମୁହଁରେ ତୁଣ୍ଡିଟାଏ ବାନ୍ଧିଦେବା । ବାସ ତାକୁ ସେଇ ଗାଁକୁ ଅଡ଼େଇ ଅଡ଼େଇ ନେବା । ସଦ୍ୟତୋଳା ପଦ୍ମକେଶର ପ୍ରତି ଆକୃଷ୍ଟ ହୋଇ ଭ୍ରମରମାନେ ଉଡୁଥିବେ । ଆମେ ବେଶୀ କିଛି ନାରାବାଜି କରିବାନି । ବରଂ ନୀରବରେ ଗାଁ ଅତିକ୍ରମ କରିବା । ହାତରେ ଯଥେଷ୍ଟ ପଦ୍ମଫୁଲ ଧରିଥିବା ମଧ୍ୟ । ଲୋକମାନେ ଆକୃଷ୍ଟ ହୋଇ ଷଣ୍ଢପାଖୁ ନିଶ୍ଚୟ ଆସିବେ । ତାଙ୍କୁ ଚୁପ୍‌ଚାପ୍ ପ୍ରଚାରପତ୍ର ଧରେଇ ଦେବା । ନାରୀମାନେ ପଦ୍ମଫୁଲର ଲୋଭ ସମ୍ବରଣ କରି ନପାରି ନିଶ୍ଚୟ ଆସିବେ । ତାଙ୍କୁ ପଦ୍ମଫୁଲଟିଏ ସହିତ ଫାଳେ ନଡ଼ିଆ ଧରେଇ ଦେବା । ବ୍ୟଞ୍ଜନରେ ଲାଗିବ ।

କଥାଟା ସମସ୍ତଙ୍କ ମନକୁ ପାଇଲା । ପ୍ରାୟ ଘଣ୍ଟାଏ ମଧ୍ୟରେ ଦୁଇତିନିବେତା ପଦ୍ମଫୁଲ ସେ ପରିତ୍ୟକ୍ତ ପଦ୍ମପୋଖରୀରୁ ତୋଳା ହୋଇଗଲା । ତାର ସୁଗନ୍ଧରେ ଭ୍ରମରମାନେ ପ୍ରମତ୍ତ ହୋଇ ଉଠିବାରେ ଲାଗିଲେ । ସାଙ୍ଗେସାଙ୍ଗେ ଅନେକ ମାଳ ଗୁନ୍ଥା ହୋଇଗଲା ଓ ଷଣ୍ଢର ପୃଷ୍ଠଭାଗ ପଦ୍ମରେ ବିମଣ୍ଡିତ ହୋଇଗଲା । ପଦ୍ମଫୁଲର ଓଜନ ବହନ କରିବାକୁ ଷଣ୍ଢଟିର ଅରାଜି ନଥିଲା । ବର୍ତ୍ତମାନ ସେଇ ଅଳ୍ପ ସଂଖ୍ୟକ ବୁଦ୍ଧିମାନକର୍ମୀ ପ୍ରାୟ ଶହେଟି ନଡ଼ିଆକୁ ଦୁଇଫାଳ କରି ବେତାରେ ଧରି ସେଇ ଲଘୁ ସଂପ୍ରଦାୟ ଗ୍ରାମ ଉଦ୍ଦେଶ୍ୟରେ ଆଗେଇ ଚାଲିଲେ । ଭ୍ରମରମାନଙ୍କ ଗୁଂଜନ ବେଶ୍ ବାରିହୋଇ



Digitized by PPRACHIN, SOA

ଯାଉଥିଲା । ଏଥର ଗାଁର ମୁରବୀଙ୍କଠାରୁ ଆରମ୍ଭ କରି ଯୁବକ ଓ କିଶୋର କିଶୋରୀମାନେ ଗାଁ ଦାଣ୍ଡରେ ଭିଡ଼ ଜମେଇଲେ । ଏ ଅପୂର୍ବ ଦୃଶ୍ୟକୁ ଦେଖିବାକୁ ଓ ଗୋଟିଏ ଗୋଟିଏ ଫାଳନଡ଼ିଆ ସହିତ ପଦ୍ମଫୁଲ ନେଇ ନିଜ ନିଜର ସୌନ୍ଦର୍ଯ୍ୟତୃଷ୍ଣା ମେଣ୍ଟାଇବାକୁ ନାରୀମାନେ ସ୍ୱଚ୍ଛଭାବେ କବାଟ ମେଲାକରି ଗାଁ ଦାଣ୍ଡକୁ ଚାଲି ଆସୁଥିଲେ । ସେମାନେ ସତେ ଯେପରି ପୁରୁଷମାନଙ୍କ କଟକଣାର ଲକ୍ଷ୍ମଣରେଖାକୁ ଲଂଘନ କରି ସାରିଥିଲେ । ସେମାନେ କାହିଁକି ସବୁଦିନେ ପରଦାସୀନ ହୋଇ ରହିବେ- ସେଥିପାଇଁ ମନେ ମନେ ଅସନ୍ତୋଷ ପ୍ରକାଶ କରୁଥିଲେ । କେହି କେହି ପୁରୁଷମାନଙ୍କ ସହିତ ପ୍ରତିବାଦ କରୁଥିବା ଦେଖାଯାଉଥିଲା । ଷଣ୍ଢଟି ଧୀରେ ଧୀରେ ରାଜକୀୟ ଠାଣିରେ ଗାଁ ଦାଣ୍ଡରେ ଚାଲୁଥିଲା । ବେଳେବେଳେ କିଛି ସମୟ ପାଇଁ ଠିଆ ହୋଇ ରୋମନ୍ଥନ କରୁଥିଲା । ସମଗ୍ର ଗ୍ରାମରେ ଏକ ଆମୋଦପ୍ରଦ ବାତାବରଣ ସୃଷ୍ଟି ହୋଇ ସାରିଥିଲା । ଷଣ୍ଢ ପିଠିରେ ଶତାଧିକ ଭ୍ରମର ମଧୁର କରମ୍ବନ ତୋଳି ଉଡ଼ିବୁଲୁଥିଲେ, କେହି ଅବା କେଶର ମଧକୁ ପଶିଯାଉଥିଲେ ।

କର୍ମୀମାନେ ଉତ୍ସାହିତ ହୋଇ ନାରୀ ଓ ଝିଅମାନଙ୍କୁ ପଦ୍ମଫୁଲଟିଏ ଟିଏ ଦେଉ ଦେଉ ଫାଳେ ନଡ଼ିଆ ଚିହ୍ନକୁ ମନେ ରଖିବେ ବୋଲି ବିନୀତ ଅନୁରୋଧ କରୁଥିଲେ । ପଦ୍ମଫୁଲର ସୁଗନ୍ଧ ଓ କୋମଳ ସ୍ପର୍ଶ ସେମାନଙ୍କୁ ସେତେବେଳକୁ ମୋହଗ୍ରସ୍ତ କରି ସାରିଥିଲା । ଦୁନିଆଁରେ ଏତେ ସୁନ୍ଦର ଚିହ୍ନ ଥାଇପାରେ ସେକଥା ଭାବି ସେମାନେ ନିଜନିଜର ସୌନ୍ଦର୍ଯ୍ୟତୃଷ୍ଣାକୁ ଜାଗ୍ରତ କରୁଥିଲେ । ଏଠି ଆଉ ପୁରୁଷର ନାଲିଆଖି ବା ସମାଜର କଟକଣା କିଛି କାମ କରୁ ନଥିଲା । ସେମାନେ ପ୍ରାୟ ମନେ ମନେ ଫାଳ ନଡ଼ିଆ ଚିହ୍ନରେ ଭୋଟ ଦେବାକୁ ସଂକଳ୍ପ କରି ବସିଥିଲେ ।

ସେଦିନ ଥିଲା ପ୍ରଚାରର ଶେଷ ଦିନ । କର୍ମୀମାନେ ସନ୍ତୋଷମନରେ ଗାଁ ଛାଡ଼ିଥିଲେ ଓ ଭାବୁଥିଲେ ଧନ ନୁହେଁ କି ଦ୍ରବ୍ୟ ନୁହେଁ ଫୁଲଟିଏହିଁ କେବଳ ନାରୀକୁ ପ୍ରଲୁବ୍ଧ କରିପାରେ । ତାହାହିଁ ତାର ସହଜାତ ଭାବନା ଓ ପ୍ରବୃତ୍ତି । କିନ୍ତୁ ସମାଜ ତାକୁ ତା ଇଚ୍ଛାରୁ ବଂଚିତ କରି ଚାରିଆଡ଼େ କଟକଣାର କଣ୍ଟାବାଡ଼ ବିଛେଇ ଦେଇଛି । ଦିନେ ନା ଦିନେ ନିଶ୍ଚୟ ଏ ସଂପ୍ରଦାୟର ନାରୀସମାଜ ତାର ସୌନ୍ଦର୍ଯ୍ୟତୃଷ୍ଣାକୁ ଉପଲବ୍ଧି କରିବ ଓ ପର୍ଦାକୁ ହଟେଇ ନିଜର ସୌନ୍ଦର୍ଯ୍ୟରେ ସମାଜକୁ ନୂତନ ରୂପରେଖ ଦେବ । ସେଦିନ ବୋଧହୁଏ ଆଉ ବେଶୀ ଡ଼େରି ନାହିଁ ।

ଦୁଇଦିନପରେ ଭୋଟକେନ୍ଦ୍ରକୁ ସେ ସଂଖ୍ୟାଲଘୁ ସଂପ୍ରଦାୟର ସମଗ୍ର ନାରୀସମାଜ ଏକ ଅପୂର୍ବ ଉତ୍ସାହରେ ଏତେ ସଂଖ୍ୟାରେ ଭୋଟ ଦେବାକୁ ଆସିବା ସେ ଅଞ୍ଚଳ ପାଇଁ ଆଖି ଫିଟାଇ ଦେଇଥିଲା । ସେମାନେ ପୁରୁଷମାନଙ୍କ ଇଚ୍ଛା, ବାଧ୍ୟବାଧକତା, ଅନୁଜ୍ଞା ଓ କଟକଣାକୁ ଅତିକ୍ରମ କରି ନିଜ ମନପସନ୍ଦର ପ୍ରାର୍ଥୀକୁହିଁ ଭୋଟ ଦେବାକୁ ସିଦ୍ଧାନ୍ତ କରି ସାରିଥିଲେ । ଏ ନିଷ୍ପତ୍ତି ଥିଲା ସେମାନଙ୍କର ନିଜସ୍ୱ ଓ ଗୋପନୀୟ । ଦୁଇ ଦଳୀୟ ପ୍ରାର୍ଥୀ



Digitized by PPRACHIN, SOA

ଧରି ନେଇଥିଲେ ଯେ ଏ ଗ୍ରାମରୁ ସେମାନଙ୍କ ସପକ୍ଷରେ ଆଶାଜନକ ଭୋଟ କେବେବି ମିଳିବ ନାହିଁ । ସେମାନଙ୍କ ସମସ୍ତ କୌଶଳ ବ୍ୟର୍ଥ ହୋଇଥିବାରୁ ସେମାନେ ମନେ ମନେ ଆହତ ଯନ୍ତ୍ରଣା ଅନୁଭବ କରୁଥିଲେ ।

ଭୋଟ୍ ପରଦିନ ଭୋରୁଭୋରୁ ଦେଖାଗଲାଯେ ଷଣ୍ଢଟି ରାସ୍ତାରେ ସମ୍ଭବତଃ କୌଣସି ଗାଡ଼ି ଧକ୍କାରେ ଆହତ ହୋଇ ମରି ପଡ଼ିଛି ଓ ତା ପାଟିରୁ ବୋହିଯାଇଥିବା ବହଳିଆ ନାଲିରକ୍ତରେ ଯେଉଁ ଛବିଟି ଆଙ୍କି ହୋଇଯାଇଛି ତାହା ଗୋଟିଏ ସୁନ୍ଦର ମନ୍ଦାରର ଚିହ୍ନପରି ମନେ ହେଉଛି । କିନ୍ତୁ ସେ ଚିହ୍ନ ସହିତ ନା ଅଛି ହାତ, ଶଙ୍ଖ ନା ପଦ୍ମ ଫୁଲର କିଛି ସମ୍ପର୍କ ? ସମ୍ଭବତଃ ନିର୍ବାଚନରେ ପ୍ରତୀକ ଏକ ଏକ ଉଦ୍ଭଟ ପରିକଳ୍ପନା ବୋଲି ଷଣ୍ଢଟି ତା ଜୀବନ ବିନିମୟରେ ସାବ୍ୟସ୍ତ କରିଯାଇଛି ଓ କହିରଖିଛି ଏ ନେତା ମାନଙ୍କର ଆଚରଣ ସହିତ ଏ ସାର୍ବଜନୀନ ଚିହ୍ନମାନଙ୍କର ଏତେଟିକେବି ସଂପର୍କ ନାହିଁ । ଏ ଚିହ୍ନ କେବଳ ପ୍ରତାରଣା ମାତ୍ର ଯେହେତୁ ସେମାନଙ୍କ ଉଚ୍ଚାରଣ ଓ ଆଚରଣ ସଂପୂର୍ଣ୍ଣ ବେଗଳ,ସଂପୂର୍ଣ୍ଣ ବେଖାପ ଓ ପରସ୍ପରର ବିପରୀତ ।





Digitized by PPRACHIN, SOA

# ମାଙ୍କଡ ଉପାଖ୍ୟାନ

ପୁଅଟି ଥିଲା ତ୍ରିପଣ୍ଡ କଳା ଓ କଦାକାର । ବୟସ ହେବ ତେର ବା ଚଉଦ । ଏ ବୟସରେ ବି ପଞ୍ଚମ ଶ୍ରେଣୀରେ ପାଠପଢୁଥାଏ । ପ୍ରତିବର୍ଷ ପରୀକ୍ଷା ଦେଇସାରି ଆଉ ଗୋଟିଏ ବର୍ଷପାଇଁ ତାକୁ ଅପେକ୍ଷା କରିବାକୁ ହୁଏ । ପାଠପଢ଼ାରେ ସଂପୂର୍ଣ୍ଣ ଅମନୋଯୋଗୀ । କିନ୍ତୁ ସ୍କୁଲରେ ସାଇକେଲ ରେସ୍‌ରେ ସବୁବେଳେ ପ୍ରଥମ ସ୍ଥାନର ସେ ଅବିସମ୍ବାଦିତ ଅଧିକାରୀ ।

କେଉଁଠୁ ଶିଖିଲା କେଜାଣି ସେ ପୁଅ ପୁଅ ମଧ୍ୟରେ ସମକାମିତା ? ବର୍ଷେ ରହିଥିବା ହଷ୍ଟେଲରୁ ନା ନିଜ ଗ୍ରାମର ଛତରା ଟୋକାଙ୍କ ମେଳରୁ । ନିର୍ଜ୍ଜନତା ଭିତରେ ସେମାନେ ଦୁଇଜଣ ଏହିପରି କୌଣସି ଖେଳରେ ମାତି ଯାଉଥିଲେ । ଏଡ଼େ ଛୋଟ ପିଲାଟିର ଲିଙ୍ଗ ନା ପରିପୁଷ୍ଟ ନା ଉପଯୋଗୀ । ତଥାପି ତାକୁ ନେଇ ଖେଳିବାରେ ତାର ଥିଲା ଏକପ୍ରକାର ଅବୋଧନୀୟ ଆନନ୍ଦ । ଅନେକ ସମୟରେ ଧରାପଡ଼ି ବାପା ଓ କକାଙ୍କଠାରୁ ସେ ନିର୍ଦ୍ଦୟ ପ୍ରହାର ଖାଉଥିଲା, ବେତ ବେଳେବେଳେ ଭାଙ୍ଗି ଯାଉଥିଲା । ଦେହସାରା ବସୁ ଥିଲା ନୋଳାଦାଗ । ତେବେ ତା କଳା ମଚ୍ ମଚ୍ ଚମ ଭିତରେ ସେ ଫୁଲା ଦାଗଗୁଡ଼ା ଏତେ ସ୍ପଷ୍ଟ ବାରି ହେଉ ନଥିଲା ବାହାରକୁ । ସେ ଦିନ ମାନଙ୍କରେ ପୁଅଟି ନିଜ ଦେହକୁ ବରାବର କୁର୍ତ୍ତା ବା ଟି ସାର୍ଟରେ ଘୋଡ଼େଇ ରଖୁଥିଲା ।

ବାପାମାଆ ବାଧ ହୋଇ ହଷ୍ଟେଲରେ ଛାଡ଼ିଲେ, ଅନ୍ତତଃ ଗାଁ ପିଲାଙ୍କ ବିଜଡ଼ାମୀରୁ ସେ ଦୂରରେ ରହି ପାଠ ପଢ଼ିବ । ବିଶେଷ କିଛି ଲାଭ ହେଲାନାହିଁ । ଗୋଟିଏ ବର୍ଷରେ କ୍ଲାସ ଅତିକ୍ରମ କରିବା ତଥାପି ତା'ପାଇଁ ଥିଲା ଦୁସ୍ତର ଓ ଅନତିକ୍ରମଣୀୟ । ବାଧ୍ୟହୋଇ ବାପାବୋଉ ସହରରେ ଚାକିରୀ କରୁଥିବା ବିନକକାଙ୍କ ଘରେ ତାକୁ ଛାଡ଼ିଲେ । ଇଂରେଜୀ ମିଡ଼ିୟମ୍ ସ୍କୁଲରେ ପଢିବ, ଭଲ ଇଂରେଜୀ କହିବ । ଏତେ ପରିମାଣରେ ବହି ଓ ଖାତା କିଣି ଦେଲେ ଯେ ଗୋଟାଏ ର୍‍ୟାକ୍ ଭର୍ତ୍ତି ହୋଇଗଲା । ଟିଉସନ୍ ପାଇଁ ବ୍ୟବସ୍ଥା ହୋଇଗଲା, ସାଇକେଲ କିଣା ହୋଇଗଲା । ସ୍କୁଲ ଦୂରରେ ଥିବାରୁ ଅଟୋରିକ୍‌ସା ବ୍ୟବସ୍ଥା ହେଲା- କେଉଁଥିରେ କକା ଅବହେଳା କରୁନଥିଲେ । ବିନକକା ସମାଜକୁ ଦିଗ୍‌ଦର୍ଶନ ଦେଉଥିଲା ପରି ଜଣେ ବ୍ୟକ୍ତିତ୍ୱ- ଅଥଚ ତାଙ୍କ ପୁତୁରା କଣ ହେବ ମହାମୂର୍ଖ ? ତାଙ୍କର ଯତ୍ନରେ ଏତେଟିକେବି ଖିଲାପ ନଥିଲା ।

ବିନକକାଙ୍କର ଥିଲା ପାଞ୍ଚ ଛ' ବର୍ଷର ଝିଅଟିଏ । କଥା କହିଲେ ପାଟିରେ ବାଟୁଳି ବାଜୁନଥିଲା । ଟି.ଭି. ଦେଖି କେତେ ଗୀତ ସେ ଶିଖିଯାଇଥିଲା- ତା' କଳନା କରି ହେଉ



Digitized by PPRACHIN, SOA

ନଥିଲା । ଭାଇ ସାଙ୍ଗରେ ଏଣିକି ଟି.ଭି. ଦେଖିବାରେ ଝିଅଟିର ୨ । କିଛି ଦିନ ପରେ ଆନିମାଲ କିଙ୍ଗଡମ୍ ଦେଖିବାର ସଉକ ରଖିଲା ବେଳକୁ ଆଉ କେଁ ୋଗି ରହୁଛି । ଆଉ ସଉକ । ଝିଅଟି ଦେଖିଲା ଭାଇ କାର୍ଟୁନ ଦେଖିବାକୁ ଭଲ ପାଉଚି- ୀରେ ଥିଲେ ସେ ଧରି । ସେ କ୍ରମେ ଆନିମାଲ ୱାରଲର୍ଡରୁ ତାର ସଉକ ପ୍ରତ୍ୟାହାର କରି ୲ଲ ସିଏ ମଧ୍ୟ ସଉକ ସହିତ ସାମିଲ ହୋଇଗଲା ।

ବିନକକା ବିସ୍ମିତ ହୋଇଥିଲେ । ଲିଟୁ ତାଙ୍କ ଜିଦ୍‌ଖୋର ଝିଅକୁ ବି ଚ ସେଇ କରିପାରେ- ସେ ସବୁବେଳେ ଏବେ ତାରି ପଛେ ପଛେ ଲାଗିରହିଛି । ୍ଳା ଓ ପିଇବାରେ ଆଉ ଅଝଟ କରୁନି । ଭାଇ ସାଙ୍ଗରେ ବସି ଖାଇ ଦେଉଚି । ତା ପରି ମହନ୍ତିଙ୍କ ପାଖରେ ଏ.ବି.ସି. ପଢିବାକୁ ବହିଧରି ବସୁଚି । ସିସି କରିଗଲେ ସେହି ପ୍ୟାଣ୍ଟ ବଦଳେ ଦେବ ଓ ତା'ପରେ ପିନ୍ଧେଇ ଦେବ । ଦାଣ୍ଡପଟ ରାସ୍ତାରେ ଲିଟୁ ସାଇକେଲ ଚଢ଼ି ହାତଛାଡ଼ି ଫିଟସ୍ ଦେଖାଇଲା ବେଳେ ଝିଅ ତା'ରି ପଛେ ପଛେ ଦୌଡୁଛି । ହସି ହସି ବେଦମ୍ ହେଉଚି । ବିନକକା ଆଶ୍ୱସ୍ତ ହେଉଥିଲେ । ଯାହାହେଉ ସବୁବେଳେ ଅଝଟ କରୁଥିବା ଜିଦ୍‌ଖୋର ଝିଅର କିଛି ପରିବର୍ତ୍ତନ ହେଉଛି । ଏବେ କାରଣରେ ବା ଅକାରଣରେ ଲିଟୁ ପଢ଼ାଘରେ ତାଙ୍କ ଝିଅ ବହିଧରି ବସୁଛି, ମନ୍ଦ ନୁହେଁ ।

କିନ୍ତୁ ସଂଧ୍ୟାର ପ୍ରାୟାନ୍ଧକାର ଭିତରେ ଯେତେବେଳେ ସେ ଆବିଷ୍କାର କଲେ ଲିଟୁ ଝିଅର ପ୍ୟାଣ୍ଟ ଖୋଲି ତାକୁ ତକିଆ ଉପରେ ମୁଣ୍ଡ ଦେଇ ଶୁଆଇ ଦେଇ ନିଜେ ତା' ପ୍ୟାଣ୍ଟ ବଟନ ଖୋଲି କ'ଣ କରୁଛି ପ୍ରଚଣ୍ଡ ରାଗରେ ତାଙ୍କର ବୁଦ୍ଧିବୃତ୍ତି ହଜିଗଲା । ସେ ଝଡ଼ ବେଗରେ ସେ ଘରକୁ ପଶିଲାବେଳକୁ  ଲିଟୁ ସ୍ଥାନାନ୍ତରିତ ହୋଇ ସାରିଥିଲା । କିନ୍ତୁ ତାଙ୍କ ଝିଅ ସେମିତି ହାତରେ ନିଜ ପ୍ୟାଣ୍ଟଟାକୁ ଧରି ଶୋଇ ରହିଥିଲା ।

ମାଆ କଣ ହେଲାରେ, ସେ ଏଠି କଣ କରୁଥିଲା- ବଡ଼ ବ୍ୟତିବ୍ୟସ୍ତତା ଭିତରେ ବିନକକା ଝିଅକୁ ସାକୁଲା ସାକୁଲି କରି ପ୍ରଶ୍ନ କରୁଥିଲେ ।

ବାପା, ତା ଶୁଶୁକୁ ମୋଶୁଶୁରେ ସେ ମାରୁଥିଲା । ବାସ୍ ସେତିକି ଯଥେଷ୍ଟ ଆଉ ଶୁଣିବାକୁ ତାଙ୍କର ଧୈର୍ଯ୍ୟ ନଥିଲା । ସେଇଠି ସେଇ ଅବସ୍ଥାରେ ବିନକକା ଦି'ହାତରେ ବିଧାଚାପୁଡା ଲିଟୁକୁ କସି ଦେଇ ଯାଉଥିଲେ । ବିନକକାଙ୍କ ହାତ ଦରଜ ହୋଇଯାଉଥିଲା ସିନା ଲିଟୁର ଖେଳୁଆଡ଼ ଦେହ ସେ ସବୁକୁ ଅତି ସହଜରେ ବହନ କରି ନେଉଥିଲା । ବିନକକା ସମ୍ଭବତଃ ସବୁ ବିଚାର ବୁଦ୍ଧି ହରାଇ ଲିଟୁକୁ ଆହୁରି ପିଟି ଚାଲିଥିଲେ - ସେ ନିଜେ ଅବଶ ହେବା ପର୍ଯ୍ୟନ୍ତ ।

ତତେ କାଲି ମୁଁ ତୋ ବାପା ବୋଉଙ୍କ ପାଖକୁ ପଠାଇ ଦେଉଚି ରହ । ପାଠ ପଢିବାକୁ ଆସିଚୁ ନା ଛୋକାରାମି କରିବାକୁ । ଆରେ ଛତରା, ସେ ପରା ତୋ ଭଉଣୀ । ତୁ କଣ କରିବାକୁ ଯାଉଥିଲୁ ? କେଉଁଠୁ ତୁ ଏପରି ନଷ୍ଟକଥା ଶିଖିଲୁ ? ସେଇ ହଷ୍ଟେଲରେ ବର୍ଷକ ଭିତରେ ଏଇକଥା ଶିଖି ଆସିଚୁ ? କିଏ ସେ ତୋ ସାଙ୍ଗ ଯାହା ସହିତ ପଡ଼ି ତୁ ଅମଣିଷ ହୋଇଯାଇଚୁ ? କହ କିଏ ସେ ?



Digitized by PPRACHIN, SOA

ଆମ ରଘୁସାର ସବୁଦିନ ରାତିରେ ମୋତେ ତାଙ୍କ ଶୋଇବା ଖଟ ଉପରକୁ ଡାକି ନିଅନ୍ତି । କହନ୍ତି ଖେଳୁଆଡ଼, ଗୋଡ଼ମୋଡ । ଭଲ କରି ମୋଡ଼ିବୁ । ଥାନ ଅଥାନ ବାକି ରଖିବୁନି । ଲାଜ ସଂକୋଚ କରିବୁନି ।

ସେ ଶଳା ମାଷ୍ଟରକୁ ମୁଁ ଯଦି ଏଇଲାଏ ପାଖରେ ପା'ନ୍ତି ତାକୁ କଟୁରୀରେ ହାଣି ଦିଅନ୍ତି- ବିନକକା ଗର୍ଜନ କରୁଥିଲେ । ସେ ତ ସହଜେ ଡାଇବେଟିକ୍ ରୋଗୀ । ନିନାଖୁଡ଼ୀ ଆସି ତାଙ୍କୁ ଧରାଧରି କରି ସାନ୍ତ୍ୱନା ଦେଉଥାନ୍ତି । ତୁମେ ଏତେ ରଢ଼ି କରନା ମୋରାଣ । ଛାତିରେ ଆଘାତ ଲାଗିବ । ନିଶ୍ୱାସପ୍ରଶ୍ୱାସ ବନ୍ଦ ହୋଇଯିବ । ଯାହା ହେବାର ତ ହେଲାଣି । ପିଲାଙ୍କ କଥା । କାହାକୁ କହି ଲୋକଲଜ୍ଜା ଡାକି ଆଣିବ ? ତୁମେ ଆଗ ଚୁପ୍ ପଡ଼ିଲ । ଚାଲିଲ ଏ ଘରୁ । ଝିଅକୁ କାଖେଇ ନେଇ ବିନକକାଙ୍କ ହାତ ଧରି ଏକପ୍ରକାର ଟାଣିଟାଣି ନେଉଥିଲେ ନିନାଖୁଡ଼ୀ ।

ନା' ଏ ଛତରାଟୋକାକୁ ଏ ଘରେ ରଖିବାକୁ ହେଲେ ଗୋଟାଏ ଝିଅକୁ ଆଣିବି ତାକୁ ଜଗିବାକୁ । କା'ଲି ଗାଁକୁ ଯାଇ ଗାଁରେ ବୁଲୁଥିବା ଗରିବଗୁରୁବା ଝିଅଟିଏ ଆଣି ନ ଆସିଲା ଯାଏ ତାକୁ ତା ପଢ଼ାଘରେ ଚାବିପକେଇ ରଖିବି । ଭାଉଜଙ୍କୁ ଲେଖି ଜଣାଇବି ତାଙ୍କ ଏକୋଇରବଳା ବିଶିକେଶନର କାଣ୍ଡକାରଖାନା ନିଜେ ଆସି ଦେଖିଯା'ନ୍ତୁ । ତାକୁ ଏଠି ମୁଁ ସମ୍ଭାଳି ପାରିବିନି । ଆଉ ତୁମକୁ ତ କାମର ପ୍ରେସର ଅଧିକ ପଡୁଛି ଏଣିକି । ଦି'ଦିଟା ପିଲାଙ୍କୁ ସମ୍ଭାଳିବା, ସେମାନଙ୍କୁ ସ୍କୁଲ ପାଇଁ ପ୍ରସ୍ତୁତ କରିବା ଏତେ ସହଜ କଥା ନୁହେଁ । ଝିଅଟାଏ କାମ କରିବ, ଅଧେ ସମ୍ଭାଳିବ । ତୁମକୁ ବେଶ୍ ସାହାଯ୍ୟ ହେବ । ନା, କଣ କହୁଚ ?

ତୁମେ ଯାହା ଉଚିତ ମନେ କରୁଚ ତା'କର । ମୋର କଣ କେଉଁଦିନ ତୁମ କଥାରେ ଆପତ୍ତି ଥିଲା ନା' ଅଭିଯୋଗ ଥିଲା ? ଝିଅଟାଏ ଆସୁ- ଗାଁରୁ ତ ଚାଉଳ ଚୂଡ଼ା, ମୁଗ ଆସୁଚି । ଆଉ କେତେ ବା ଖର୍ଚ୍ଚ ? ନିନାଖୁଡ଼ୀ ଅଙ୍ଗୀକାର ଦେଇଦେଲେ ବିନା ଦ୍ୱିଧାରେ ।

ଦିନେ ନୁହେଁ ପ୍ରାୟ ଦଶଦିନର ଅପେକ୍ଷାପରେ ଗାଁରୁ ଆସିଲା ଝିଅଟିଏ । ଗୋରୀ, ସୁସ୍ଥ, କର୍ମଦକ୍ଷ । ରୋଷେଇବାସ ଯାହା କିଛି ଶିଖିଚି ସହରମାନିଆ ନହେଲେ ବି ବର୍ତ୍ତମାନ ପାଇଁ ଚଳିଯିବ । କ୍ରମେ ସହରର ଆଦବ କାଇଦା ସେ ଶିଖିନେବ । ଅନ୍ଦାଜ ଅଠର ବର୍ଷର ଝିଅଟିଏ ହେବ । ତାକ ନାଁ ରାନି- ଭଲ ନା ବିଳାସିନୀ । ବିନକକା ଭାବୁଥିଲେ ବେଶ୍ ଭଲ ନାଁ ତ ଦେଇଚନ୍ତି ମଫସଲରେ । ବିନକକାଙ୍କ ଆଇଁଷିଆ ଆଖି ରାନିର ଦେହ ଓ ମୁହଁ ଉପରେ ପହଁରି ଯାଇଥିଲା କ୍ଷିପ୍ରଗତିରେ । ସାଙ୍ଗରେ ଆସିଚନ୍ତି ବାପମାଆ । ସେମାନଙ୍କର କହିବାର କଥା ଝିଅର ବାହାଘର ଆପଣଙ୍କୁ ଲାଗିଲା । ଆମେ ମାସିକ ଦରମା ଚାହୁଁନା । ସିଏ ବର୍ଷକଯାଏ ଗାଁକୁ ନ ଗଲେ ବି ଚଳିବ । ଆପଣ ଯେତେବେଳେ ଯିବେ ସାଙ୍ଗରେ ନେଇଯିବେ ।

ଗାଁ ଲୋକଙ୍କ ସହଜ ବିଶ୍ୱାସ କଥା ଭାବି ବିନକକା ବିସ୍ମିତ ହେଉଥିଲେ ।



Digitized by PPRACHIN, SOA

ବୁଢ଼ାବୁଢ଼ୀଙ୍କୁ ଖୁଆପିଆ ପରେ କିଛି ପାଥେୟ ଦେଇ ଗାଁକୁ ବିଦାକଲେ । କିଛି ଦିନ ପରେ ବିନକକା ଅନୁଭବ କଲେ ଦିନପରେ ଦିନ ଲିଟୁ ରାନି ପଛେ ପଛେ ଲାଗି ରହୁଛି । ଆଉ ତାଙ୍କ ପାଞ୍ଚବର୍ଷର ଟିକିଝିଅ ପ୍ରତି ତାର ସରାଗ ନାହିଁ । ରାନି ରୋଷେଇ ଘରେ ଥିଲେ ସେ ପହଞ୍ଚିଯାଉଚି ସେଠି କୌଣସି ନା କୌଣସି ଆଳରେ । ତଳ ବଖରାରେ ଥିଲେ ସିଏ ମଧ ଯାଇ ସେଇଠି । ତାର ଆବଭାବକୁ ବରାବର ଲକ୍ଷ୍ୟ କରୁଥିଲେ ବିନକକା ।

ରାନି ଆସିବାର ଦୁଇମାସ ପରେ...... । ଯେଉଁ ଘରେ ଲିଟୁ ପାଠପଢ଼େ ସେଇ ଘରେ ରାନିର ଶୋଇବା ବ୍ୟବସ୍ଥା ହୋଇଥାଏ । ସାଦା ଖଟଟିଏ ଓ ତା'ଉପରେ କନ୍ଥା ଓ ବିଛଣା ଚଦର । କିଛି ଦୂରରେ ଲିଟୁର ପଢ଼ା ଟେବୁଲ ଓ ଚେୟାର । ଲିଟୁ ଏଣିକି ତା' ନିଜ ଶୋଇବା ଘର ଛାଡ଼ି ପଢ଼ାଘରେ ଅଧିକ ସମୟ କାଟୁଥିବା ବିନକକାଙ୍କ ଦୃଷ୍ଟିରୁ ବାଦ ଯାଉ ନଥିଲା । ଟିଉସନରୁ ଆସି ରାତି ଖିଆ ପରେ ଟି.ଭି. ଦେଖିବା ଅଭ୍ୟାସଥିଲା ଲିଟୁର । ବିନକକାଙ୍କ କଡା ହୁକୁମ୍ ରାତି ୧୧ଟାଯାଏ ଟେବୁଲ ପାଖରେ ବସି ପାଠ ପଢିବୁ । ରାତି ଏଗାରଟାରେ ଆସିବୁ ଶୋଇବାକୁ । ତା'ପରେ କବାଟ ଦେଇ ସେ ଘରେ ରାନି ଶୋଇବ ।

କିନ୍ତୁ ଲିଟୁ ପଢୁଥିଲାବେଳେ ସେଦିନ କାମ ସାରି ରାନୀ ସାଢ଼େ ଦଶଟାରେ ଶୋଇବାକୁ ଚାଲିଗଲା । ସାଢ଼େ ଏଗାରଟା ହେଲାପରେ ଲିଟୁ ଶୋଇବା ଘରକୁ ନ ଆସିବାରୁ ବିନକକା ଧୀର ସନ୍ତର୍ପଣରେ ପଢ଼ାଘରକୁ ଆସି ଦେଖିଲେ ଲାଇଟ୍ ଲିଭାଯାଇଛି । ଲିଟୁ ରାନିର ଛାତିଉପରେ ମାଙ୍କଡଛୁଆ ମାଆ ମାଙ୍କଡ଼କୁ ଜାକି ଧରି ଲେପଟେଇ ପଡ଼ିଲାପରି ଶୋଇ ରହିଛି । ତାର ଦି' ହାତରେ ସେ ଆଲିଙ୍ଗନବଦ୍ଧ କରି ରଖିଚି ରାନିକୁ ଓ ତାକୁ ସମଭାବରେ ରାନି ମଧ । ଏ ଦୃଶ୍ୟ ଦେଖି ବିନୁକକାଙ୍କ ମୁଣ୍ଡରେ ତାରଗୁଡ଼ାକ ଟକ୍‌ଟାକ୍ ହୋଇ ଉଠିଲେ । ସେ ଧୀର ପଦପାତରେ ଯାଇ ସମ୍ଭବତଃ ଆଖି ବନ୍ଦ କରି ଶୋଇଥିବା ରାନି ଉପରୁ ଜୋର୍ କରି ଲିଟୁକୁ ଟାଣି ଆଣିଲାବେଳେ ରାନି ମୁଣ୍ଡରେ ବଜ୍ରପାତ ହୋଇଗଲା । ସେ ଗୋଡ଼ଧରି ତାଙ୍କୁ କଣ କହୁଥିଲା- ସେ କଥା ଶୁଣିବାକୁ ତାଙ୍କର କାନ ଚାହୁଁ ନଥିଲା । ବିଧାଚାପୁଡ଼ାରେ ଲିଟୁକୁ ପୋତି ଦେଇଗଲେ ବିନକକା । ଘୋଷାରି ଘୋଷାରି ଆଣିଲେ ତା ଶୋଇବା ଘରକୁ । ପ୍ରବଳ ଚପେଟାଘାତରେ ସଂତ୍ରସ୍ତ ଲିଟୁ ମନେ ହେଲା ମାଙ୍କଡ଼ ଛୁଆଟେ ପରି ଚେଁ ଚାଁ କରୁଚି । କଣ କହୁଚି ସ୍ପଷ୍ଟ ବୁଝିହେଉନି ।

ଲିଟୁ କହୁଥିଲା ମୁଁ ଖଟ ଉପରେ ବସି ପଢୁଥିଲି ରାନି ମୋତେ ତା' ଛାତି ଉପରକୁ ଟାଣିନେଲା ।

ଖଟ ଉପରେ ବସି ତୁ ବେଧୁଆ, କାହିଁକି ପଢୁଥିଲୁ ? ତୋ ଚେୟାର ଟେବୁଲ କୁଆଡେ ଗଲା ? କିଏ ଲିଭେଇଲା ପଢ଼ାଘରର ବିଜୁଳିବତୀ ?

କକା, ମୁଁ ସତ କହୁଚି, ରାନି ଲିଭେଇଦେଇ ମୋତେ ତା' ଛାତି ଉପରକୁ ଟାଣିନେଲା ।



Digitized by PPRACHIN, SOA

ଆରେ ଭାଡ୍ରୁଆ, ତୁ ପରା ଚଉଦ ବର୍ଷର ବାଳକଟିଏ । ତୋର ଏତେପ୍ରେମ କିପରି ଉଚ୍ଛୁଳି ପଡୁଚି ? ମୁଁ ଦେଖୁଚି ରାନି ଏ ଘରକୁ ଆସିଲାଦିନୁ ତୁ ତା' ପଛେ ପଛେ ଲାଗି ରହୁଚୁ- କାୟା ପଛେ ପଛେ ଛାୟା ପରି । କ'ଣ ତୋର ମତଲବ ? ତୁ କଣ ସେଦିନ ମାଡ଼ ଭୁଲିଗଲୁ ? ମୁଁ ଭାବୁଥିଲି ଏଣିକି ତୁ ଭଲ ପିଲାଟିଏ ହୋଇଗଲୁଣି । ରୂପ ଯେମିତି ଗୁଣ ବି ସେମିତି । ଅଙ୍ଗାରକୁ ଯେତେ ଧୋଇଲେ ତା ଦେହରୁ କଳା କଣ ଛାଡ଼ିବ । ଆରେ ହେ କାଲିବାନ୍- କାଲି ସକାଳେ ତୋତେ ତୋ ବାପା ମାଆଙ୍କ ପାଖୁ ପଠେଇଦେବି ଆଉ ରାନିକୁ ତା ଘରକୁ । ତୁ ପାଠପଢ଼ିବାକୁ ଆସିଚୁ ନା ଭାଡ୍ରୁଆମି କରିବାକୁ ? ତୁ ମୋ ପାଞ୍ଚବର୍ଷର ଝିଅ ସାଙ୍ଗେ ଲାଗିଲୁ । ଇଏତ ତୋ ଠାରୁ ପାଞ୍ଚ ବର୍ଷ ବଡ଼ ଝିଅଟାଏ । ତୁ ତା ପେଟ ଓ ଛାତି ଉପରେ ଶୋଇବା ଲାଏକ୍ କି ? କାହିଁକି ଶୋଇଥିଲୁ ? ମାଙ୍କଡ଼ କାଲିବାନ୍ । ରୂପ ଯେମିତି ଗୁଣ ବି ସେମିତି । ବିନକକା ରାଗିଗଲେ ବାରମ୍ବାର ଏଇ ବାକ୍ୟଟି ଦୋହରେଇଥା'ନ୍ତି ।

ନିଘୋଡ଼ ନିଦରେ ଶୋଇଚନ୍ତି ପତ୍ନୀ ନିନାଖୁଡ଼ୀ । ଲିଟୁକୁ ତା' ଶୋଇବା ଘରେ ପୁରେଇ ବାହାରୁ କବାଟ କିଳିଦେଲେ ବିନକକା । ତା'ପରେ ସେ ଲିଟୁର ପଢ଼ାଘରକୁ ଆସି ରାତିର ସେଇ ରାକ୍ଷସୀୟ ଅନ୍ଧକାର ଭିତରେ ରାନୀକୁ ଘଟଣାକ'ଣ ପଚାରୁ ପଚାରୁ ରାନୀ ଲୁହ ଆଉ କୋହରେ ଫାଟି ପଡ଼ି ତାଙ୍କୁ ତାର ଅକ୍ଟୋପାଶ ଆଲିଙ୍ଗନ ଭିତରେ ଖୁବ୍ ଜୋର୍‌ରେ ଛନ୍ଦି ରଖିଲା । ତା' ପରେ ତାଙ୍କ ମୁହଁ ଓ ଓଠ ରେ ଦେଇଚାଲିଲା ଅସୁମାରୀ ଚୁମ୍ବନ । ବିନକକା ତଟସ୍ଥ ହୋଇଯାଉଥିଲେ । ସେ ନିରୁପାୟ ହୋଇ ସେଇଠି ଖଟ ଉପରକୁ ଟେକିନେଇ ରାନିକୁ ଶୁଆଇଦେଲେ ଓ ଏକ ରାକ୍ଷସୀୟ କ୍ଷୁଧାରେ ତା ଦେହର ଅନ୍ତର୍ବାସକୁ ଉନ୍‌ମୋଚନ କରି ଦେଉଥିଲେ । ତାଙ୍କୁ ମନେ ହେଉଥିଲା ଲିଟୁ ନୁହେଁ ନିଜେ ସେ ଗୋଟାଏ ମାଙ୍ଗଡ଼ ଛୁଆ; ମା' ମାଙ୍କଡ଼ ଛାତିରେ ଦି ହାତକୁ ଛନ୍ଦିଧରି ତାଠାରୁ କ୍ଷୀର ଶୋଷୁଛନ୍ତି । ମା' ମାଙ୍କଡ଼ ପରମତୃପ୍ତିରେ ବକ୍ଷଉନ୍ମୁକ୍ତ କରି ଶୋଇ ରହିଛି । ସମ୍ଭବତଃ ତା' ଆଖିପତା ଲାଗି ଆସୁଚି । ତାଙ୍କୁ ପୁଣି ମନେ ହେଉଥିଲା ଲିଟୁ ଗୋଟାଏ ଦନ୍ତାମାଙ୍କଡ଼ ଭଳି ତା' ଶୋଇବାଘରୁ ଖୁଁକାରୀ ହେଉଚି । ଦେହର ପରମ ତୃପ୍ତିରେ ଉଠିଯାଇ ଲିଟୁ ଘର କବାଟ ଖୋଲିଦେଲେ ବିନୁକକା । ମାଡ଼ ଆଘାତରେ ସେ ଆଃ ଓଃ ହେଉଚି । ମୁଣ୍ଡ ଚିପି ଧରୁଚି ବାରମ୍ବାର । ବିନକକା ଲିଟୁକୁ କୋଡ଼କୁ ଆଉଜେଇ ଆଣୁ ଆଣୁ କହୁଥିଲେ- ତୁ ଓ ମୁଁ ସେଇ ଦନ୍ତାମାଙ୍କଡ଼ର ବଂଶଧର । ଆମେ ଏଣିକି ଆଉ ମାଙ୍କଡ଼ ହେବାନି, ମାଙ୍କଡ଼ାମି କରିବାନି- ମଣିଷ ହେବା । ଲିଟୁ ଶୋଇପଡ଼, ରାତି ବାରଟା ହେବଣି । ମୁଁ ତୋ ବୋଉକୁ ଆଜି କଥା ଆଉ କହିବିନି । କିନ୍ତୁ କାଲିଠାରୁ ମୁଁ ଯେମିତି ସେ ଦୃଶ୍ୟ ଆଉ ପୁନରାବୃତ୍ତି ହେବାର ନ ଦେଖେ । ଏଠି ରହିବାକୁ ହେଲେ ତୋତେ ଏଇ ସର୍ତ୍ତଟି ମାନିନେବାକୁ ହେବ- ତୁ ରାନିଠାରୁ ଦୂରରେ ରହିବୁ । ତୁ ପାଠ ପଢିବାକୁ ଆସିଚୁ- ତା' ସହିତ ଏତେ ଗପିବା କଣ ଦରକାର । ଜାଣିଚୁ ମାଇମାଙ୍କଡ଼ ସାଙ୍ଗରେ କାଳେ ଲାଗିବ ବୋଲି ଦନ୍ତାମାଙ୍କଡ଼ ଅଣ୍ଡିରାଛୁଆମାନଙ୍କୁ ମାରିଦିଏ । ଦେଖିଚୁ ସେ ଦୃଶ୍ୟ ? ମନେକର ମୁଁ ସେଇ



Digitized by PPRACHIN, SOA

ଦନ୍ତାମାଙ୍କଡ଼ ଆଉ ତୁ ଗୋଟିଏ ନିରୀହ ଅଣ୍ଡିରା ମାଙ୍କଡ଼ ଛୁଆ । ଆଉ ବେଶୀ ବୁଝାଇବା ଦରକାର ନାହିଁ । ତୁ ବୁଝି ପାରୁଥିବୁ । ଏଣିକି ସାବଧାନ ରହିବୁ- ବୁଝିଲୁ ।

ଲିଟୁ 'ହୁ'ଟିଏ ମାରି କଡ଼ ବୁଲେଇ ଶୋଇବାକୁ ଚେଷ୍ଟା କରୁଥିଲା । ସମ୍ଭବତଃ ତା ଖୁଆ ଓ ପିଠିରେ ସେ କିଛି ଯନ୍ତ୍ରଣା ଅନୁଭବ କରୁଥିଲା । ବିନ କକା ନିଜ ଶୋଇବା ଘରକୁ ଯାଇ ଶୋଇବାକୁ ଯେତେ ଚେଷ୍ଟା କଲେବି ନିଦ ଆସୁ ନଥିଲା । ବାହାରେ ବୋଧହୁଏ ଅସରାଏ ବର୍ଷା ହେଇଗଲା । ଘର ଲାଗିଲା ବେଶ୍ ଶୀତୁଆ । ରାତ୍ରିର ଶେଷ ପ୍ରହରରେ ତାଙ୍କୁ ନିଘୋଡ଼ ନିଦ ଘୋଟି ଆସିଥିଲା । ସେ ନିଜ ପତ୍ନୀଙ୍କ ପ୍ରତି ଆଜି ଯେଉଁ ବିଶ୍ୱାସଘାତକତା କଲେ ତା'କଣ ସେ କାହାକୁ କହି ପାରିବେ ନା ସହିପାରିବେ ? ମାଧବଙ୍କୁ ସ୍ମରଣ କରୁ କରୁ ଆଖି ମୁଦି ହୋଇ ଆସୁଥିଲା ।





Digitized by PPRACHIN, SOA

# ଯେନଦୀ ମରୁପଥେ

ସୁକେଶୀ ଆଖିରୁ ଲୁହ ଗଡ଼ଉଛି । ନିମନ୍ତ୍ରଣ ପତ୍ର ଆସିଚି ଆଜି ବନବିହାରୀଙ୍କ ବିଭାଘର । ବରପିତା ପ୍ରୀତିଭୋଜନ ପାଇଁ ନିମନ୍ତ୍ରଣ କରିଛନ୍ତି । ସୁକେଶୀ ବିଶ୍ୱାସ କରିପାରୁନି- ପୁରୁଷ ଜାତି ଏତେ ସ୍ୱାର୍ଥପର, ଏତେ ନୀଚ ହୋଇପାରନ୍ତି । ତା ଦେହରେ ଯାହାର ରକ୍ତର ସ୍ରୋତ ପ୍ରବାହିତ ତାକୁ ଏପରି ଅସହାୟ ଅବସ୍ଥାରେ ଫିଙ୍ଗିଦେଇ ପୁଣି ଜୀବନ ପାଇଁ ନୂତନ ସ୍ୱପ୍ନରେ ବନବିହାରୀ ବିଭୋର ହୋଇପାରେ ? ଏହା ସତ୍ୟ ନା କାଳ୍ପନିକ ? ଆଖି ଲୁହରେ ସୁକେଶୀକୁ ସବୁକିଛି ଝାପ୍‌ସା ଦେଖାଯାଉଛି । ସେ ଚାଲୁଚାଲୁ ବାରମ୍ବାର ଝୁଣ୍ଟି ପଡୁଚି । ଆଖି ସାମ୍ନାରେ ବିଚ୍ଛନ୍ଦଜୀବନର ନିରଙ୍କୁଶ ଅତୀତକୁ ଉପହାସ କରି କୁଣ୍ଡଳୀକୃତ ବଳୟଗୁଡ଼ା ନିଭିଯାଉଛନ୍ତି- ପୁଣି ପଲକୁପଲ ବଳୟ ସୃଷ୍ଟି ହେଉଛନ୍ତି, ପୁଣି ନିଭି ଯାଉଛନ୍ତି ।

ସୁକେଶୀ ଲୁହ ପୋଛିଲା । ଜୀବନର ଏ ଚରମ ଅବଶୋଷ ଓ ପରାଜୟ ପାଇଁ ସେ କାହାକୁବା ଦୋଷ ଦେବ ? ଆପଣା ପରିଚିତ ପରିଧି ତା' ପାଇଁ ବିଷାକ୍ତ । ସବୁ ପୁରୁଷଗୁଡ଼ା ସମାନ । ମନ ହେଲା ଏଇ ମୁହୂର୍ତ୍ତରେ ସୁଯୋଗ ପାଇଲେ ସେ ଦୁଇଜଣଙ୍କୁ ହତ୍ୟା କରନ୍ତା ଓ ସେମାନଙ୍କ ରକ୍ତରେ କରନ୍ତା ନାରୀତ୍ୱର ତର୍ପଣ- ଜଣେ ପରମହିତୈଷୀ ବୋଲାଉଥିବା ଭଗ୍ନୀପତି ବଳିଦତ୍ତ ଓ ଆଉ ଜଣେ ଠକପ୍ରେମିକ ବନବିହାରୀ ।

ଅତୀତ ଆଡ଼କୁ ତା' ମନ ଝୁଙ୍କିଗଲା । ବାପା ମଲାବେଳକୁ ତାକୁ ହୋଇଥିଲା ମାତ୍ର ତିନିବର୍ଷ । ଭଲ ଭାବରେ ସେ କଥା ସେ ବୁଝିପାରିନି । କିନ୍ତୁ ବୋଉ ଯେଉଁଦିନ ତାକୁ ଅସହାୟ ଅବସ୍ଥାରେ ଭଉଣୀ ଆଉ ଭିଣୋଇ ପାଖରେ ଛାଡ଼ି ଆଖି ବୁଜିଲା ସେତେବେଳକୁ ତାକୁ ନଅବର୍ଷ । ମନ ଭରି ସେ କାନ୍ଦିଥିଲା । ଅଭୟ ଦେଇଥିଲେ ବଡ଼ ଭଉଣୀ କଲ୍ୟାଣୀ ଓ ତାଙ୍କ ପତିଦେବତା ବଳିଦତ୍ତ । ବାପାମାଆଙ୍କର ସବାସାନଝିଅ ସୁକେଶୀ ଜୀବନର ଦିଗହରା ସ୍ୱପ୍ନର ସରଣୀରେ ଯେତେବେଳେ କଳ୍ପନାର ଡ଼େଣା ମେଲୁଥିଲା ସେତେବେଳେ ତା ପାଇଁ ସମସ୍ୟାର ଲହଡ଼ି ଛୁଟିଲା । ଭିଣୋଇ ଓ ଭଉଣୀଙ୍କ ଅସରନ୍ତି ସ୍ନେହ ସୋହାଗ ଭିତରେ ତଥାପି ସେ ବୋଉକୁ ମନେ ପକେଇ କଇଁ କଇଁ ହୋଇ ବେଳେବେଳେ କାନ୍ଦି ଉଠୁଥିଲା । ରାତିରେ ଶୋଇଥିଲେ ଦୀର୍ଘ ନଅ ବର୍ଷର ଅଭ୍ୟାସ ନେଇ ଶୋଇବା ଶେଯର ପାଖ ଅଣ୍ଡାଳେ । ନା- କେହି ନାହିଁ । କେବଳ ନିଶା ଗର୍ଜୁଛି ।



Digitized by PPRACHIN, SOA

ମଣିଷର ମନ ଓ ଭାବନାର ଅସହାୟତାକୁ ଉପହାସ କରି ନିଶା ଗର୍ଜୁଛି- ସାଇଁ ସାଇଁ । ଆଖି ବୁଜି ଅଦମ୍ୟ କୋହ ଆଉ ନିଶା ଭୀତିରେ ଶୋଇଲା ଶେଯର ପାଖ ଅଣ୍ଡାଳେ ଷୋହଳ ବର୍ଷରବଢ଼ିଲା ଝିଅ ସୁକେଶୀ । ହାତ ବାଜେ ଗୋଟେ ପୁରୁଷ ଦେହରେ । ଚୋର ପରି ଲୁଚି ଲୁଚି ସେ ପାଖରେ ଆସି ବସିଚି । ଅଣ୍ଡାଳୁଚି ତା ଦେହରେ ଗଢ଼ି ଉଠିଥିବା ଦୁଇଟି ପଦ୍ମ କଢ଼ିକୁ । ତା' ହାତର ମୁଠା ଭିତରେ ଏହା ମଧ୍ୟରେ ସେ ଆୟତ୍ତ କରି ନେଇଚି ସୁକେଶୀ ଦେହର ସେଇ ଅପୂର୍ବ ସୌନ୍ଦର୍ଯ୍ୟର ସୁନ୍ଦର ପଦ୍ମ କୋରକକୁ । ଅଥଚ ସେ କିଛି ନ ଜାଣିଲା ପରି କୈଫିୟତ ଦେଉଚି "କାହିଁକି ବିଳିବିଳଉଥିଲୁ ଏତେ ରାତିରେ । ନିଦ ଭାଙ୍ଗିଗଲା । ଉଠି ଆସିଲି । କିଛି ଖରାପ ସ୍ୱପ୍ନ ଦେଖିଲୁକି ?"

ଦୃପ୍ତ ସିଂହ ଭୀରୁ ଶୃଗାଳର ନଜିର ଦେଇ ଲାଙ୍ଗୁଡ଼ ଯାକି ଚୁପ୍‌ଚାପ୍ ଉଠିଯାଏ । ସୁକେଶୀର ମୁଣ୍ଡ ବୁଲାଏ । ଦେହ ଥରେ- ସେ ଉଠି ବସେ । ପାଣି ପିଏ । ପୁଣି ଆଖି ବୁଜି ଶୋଇବାକୁ ଚେଷ୍ଟା କରେ । ଦେହରେ ଛନକା; ଭାବେ ଆପାକୁ ଡାକିବ । କେଜାଣି କାହିଁକି ନିରସ୍ତ ହୁଏ । କୁଆ କା' ରଡ଼ି କରେ, କୋଇଲି ଲହରେଇ ଗୀତ ଗାଇଲା ପରି ରାବ କରେ, କୁମ୍ଭାଟୁଆ ବି ରାବେ । ସେ ବୁଝେ ସକାଳ ଆସନ୍ନ ।

ପୁଣି ପରବର୍ତ୍ତୀ ରାତିରେ ହୁଏ ଏଇ ଅଭିଜ୍ଞତାର ପୁନରାବୃତ୍ତି । ପଶୁମନର ଅନବଦମିତ କାମନା ଚାହେଁ ତାର ନିର୍ବହଣ-ଚାହେଁ ପ୍ରବୃତ୍ତିର ଯଥେଚ୍ଛାଚାରିତା । ପଶୁଠାରେ ଦାୟିତ୍ୱର ଭାବସତୀତ୍ୱ ନଥାଏ, ପ୍ରତିବାଦ କରେ, ତାଙ୍କ ହାତକୁ ନିଜର ଯଥାସମ୍ଭବ ଶକ୍ତି ଦେଇ ଅପସାରିତ କରେ । ତଥାପି ପଶୁର ପିପାସା ନିର୍ବାପିତ ହୁଏ ନାହିଁ । ସେ ଅଧିକରୁ ଅଧିକ ସୁକେଶୀକୁ ନିଜ ଆୟତ୍ତ ମଧ୍ୟକୁ ଆଣି ତା' ଦେହର ସ୍ୱର୍ଗୀୟ ସଂପଦକୁ ଲୁଣ୍ଠନ କରି ନେବାକୁ ଚାହେଁ ।

ମନେ ପଡ଼ନ୍ତି ବୋଉ । ତାଙ୍କ ସ୍ମୃତିର ପାଉଁଶ ବି କ୍ରମେ ନିଶ୍ଚିହ୍ନ ହୋଇ ଯାଇଛି । ତଥାପି ଆଖି ଆଗରେ ତାଙ୍କରି ବରଦଦାୟୀ ରୂପଟି ଚହଟି ଉଠୁଛି । ମନକୁ ଆଶ୍ୱସ୍ତ କରୁଚି ପୁଣି ତାର କ୍ଳେଶର ପୃଥିବୀକୁ ଆଲୋଡ଼ିତ କରୁଚି ତାଙ୍କରି ମୁହଁ ଓ ସ୍ମୃତି ।

"ଅପାଲୋ.... ଏଣିକି ତୋରି ପାଖରେ ମୁଁ ଶୋଇବି । ଭାରି ଡ଼ର ମାଡୁଚି ରାତିରେ ।''

"ପାଗେଲୀଟା''- ବଡ ଭଉଣୀ କଲ୍ୟାଣୀ ସୋହାଗରେ ତା ବାଳକୁ ଆଉଁସି ଦିଅନ୍ତି । ସୁକେଶୀ ଗାଲରେ ଦିଅନ୍ତି ଗୋଟିଏ ସରୁଚାପୁଡ଼ା ।

"ନାଇଁ, ମୁଁ ଆଉ ସେ ଅଲଗା ଘରେ ଶୋଇବିନି । କବାଟରେ ଭିତରୁ କିଳିବାକୁ ଝଂଜିର ନାହିଁ । ମୋତେ ଭାରି ଡ଼ର ମାଡୁଚି ।"

"ମୋ ସଉତୁଣୀ ହେବୁକି''- ହସି ହସି କହନ୍ତି କଲ୍ୟାଣୀ ।

ସୁକେଶୀ ଚମକି ଉଠେ- ତାଙ୍କୁ ଚାହିଁରହେ - ମନେ ମନେ ଉଚ୍ଚାରଣ କରେ- "ସଉତୁଣୀ" । ମନରେ ତାର ତୋଫାନ ଉଠେ । ଚିନ୍ତାରେ ଛୁଟେ ଅସରନ୍ତି ଝଡ଼ । ସେ ଝଡ଼ରେ କେତେ ଗଛ ଭାଙ୍ଗିଯାଏ, ଚାଳ ଉଡିଯାଏ, ଭୟଙ୍କର ବର୍ଷା ଓ ବତାସ ଆସେ ।



Digitized by PPRACHIN, SOA

ଅବିରାମ ଗର୍ଜୁଥାଏ ମେଘ ଅନ୍ଧାର ରାତି । କଳା ବାଦଲାରେ ବେଳେବେଳେ ବିଜୁଳି ଚମକି ଉଠେ । ଆହୁରି ଭୟଙ୍କର ହୋଇଉଠେ ପରିବେଶ । ସେ ଏ ବତାସକୁ ସାମ୍ନା କରିପାରିବତ !!

ସୁକେଶୀ ନିମନ୍ତ୍ରଣ ପତ୍ରଟାକୁ ଆଉଥରେ ନିରେଖି ପଢିବାକୁ ଲାଗିଲା । ତା ହାତ ଥରି ଉଠିଲା । ବନବିହାରୀଙ୍କ ସହିତ କନକଲତାର ବିବାହ ଉତ୍ସବ ଉପଲକ୍ଷେ ବରପିତା ଅଜାମିଳ ପଟ୍ଟନାୟକଙ୍କ ମଙ୍ଗଳ କାମନା-ସବାନ୍ଧବ ପ୍ରୀତିଭୋଜନ ପାଇଁ ଏକ ବିନୀତ ନିମନ୍ତ୍ରଣ ପତ୍ର । ସୁକେଶୀ ରାଗରେ ଜଳି ଉଠିଲା । ବନବିହାରୀ, ବଳିଦତ୍ତ, ଅପା, ବୋଉ, ବାପା-ସମସ୍ତଙ୍କ ରୁଦ୍ର କରୁଣ ମୂର୍ତ୍ତି ତା' ଆଖିଆଗରେ ନାଚି ଉଠିଲା । ବନବିହାରୀ- ଧୂର୍ତ୍ତ ଓ ଚତୁର । ହସିହସି ସେ ଅଭୟ ଦେଇଥିଲେ- "ସୁକେଶୀ; ତୁମ ବ୍ୟତୀତ ଜୀବନରେ ମୁଁ ଆଉ କାହାକୁ କେବେବି ଚାହିଁବିନି । ତୁମେ ହେବ ମୋର ଇହ ଓ ପର ଜନ୍ମର ସାଥୀ । ବାପା ଚାହାନ୍ତି ସଂପତ୍ତି, ଦାନ ଯୌତୁକ, କିନ୍ତୁ ମୁଁ ଏସବୁ କିଛି ଚାହେଁ ନାହିଁ । ମୁଁ କେବଳ ତୁମକୁହିଁ ଚାହେଁ । ଆମେ ବଞ୍ଚିଥିଲେ କେତେ ସମ୍ପତ୍ତି କମେଇବା । ଆମେ ମନପ୍ରାଣ ଦେଇ ପରସ୍ପରକୁ ଭଲ ପାଇବା- ସେଇଥିରେ ଆମ ଛୋଟ ସଂସାର ପୂରି ଉଠିବ ।"

ଅପା ଆଗରେ ଭିଣୋଇ ବଳିଦତ୍ତ କହୁଛନ୍ତି- "ଝିଅ ନାମରେ ତିରିଶ ଏକର ସମ୍ପତ୍ତି ଅଛି । ଆଉ ଯେଉଁଠି ସେ ବିଭା ହେଲେ ଆଇନ ଅନୁସାରେ ଏ ସମ୍ପତ୍ତି ସେ ସାଙ୍ଗରେ ନେଇଯିବ । କଣ କରିବା କଲ୍ୟାଣି ? ଏତେ ଗୁଡ଼ାଏ ଧନର ମୋହ ତୁଟେଇ ଦେଇ ଆମେ ବଞ୍ଚି ପାରିବା ତ ?

ଅନ୍ତରାଳରୁ ସୁକେଶୀ ଦେଖୁଛି- ଅପା ନୀରବ । ମୁହଁରେ ତାର ବେଦନାର କଳାଛାଇ ସ୍ପଷ୍ଟ ଘୋଟି ଯାଉଛି । ଆଗରେ ତାର ଚତୁର ସ୍ୱାମୀ କଥା କହି ତାକୁ ଭୁଲେଇ ଦେଉଛି । ନାରୀ ମନର ନିଷ୍ଫଳ ଆବେଦନ ମନରେ ନେଉଚି ସମାଧି । ସେ ମୁରୁଛି କିଛି କହି ପାରୁନି ।

ସୁକେଶୀ ଭାବୁଚି- ବୋଉ ମଲାବେଳେ କହି ଯାଇଥିଲା- "ତୋତେ ସୁକେଶୀ ଲାଗିଲା କଲ୍ୟାଣୀ । ସେ ବାଇଆଣୀଟା, ତାକୁ ଝିଅପରି ଦେଖିବୁ । ପର ଘରକୁ ଗଲେ କଥା ସରିଲା । କଣ ବା ସେ ତୋ'ଠାରୁ ଭାଗ ନେବ ? ତା' ବାପା ତା' ପାଇଁ ସବୁ ରଖି ଦେଇଯାଇଛନ୍ତି । ତା ପାଇଁ କିଛି ଅଭାବ ହେବନି । ସୁଖ ମନରେ ତାକୁ ବିଦା କରିବୁ । ଭଲ ଘର ଦେଖି ଥୋଇବୁ । ଯେତେ ଖର୍ଚ୍ଚ ହେଲେବି ପଛେଇବୁନି- ତା' ଜମି ବିକି ସବୁ କାମ କରିବୁ ।"

ଆଉ ବଳିଦତ୍ତକୁ କହୁଛନ୍ତି- "ତୁମକୁ ତ ମୁଁ ପୁଅଠାରୁ ଅଧିକ କରିଚି । ସୁକେଶୀ ମୋ ଝିଅ ନୁହେଁ ତୁମ ଝିଅ । ତା'ପ୍ରତି କେବେବି ଯେପରି ଅବିଚାର ନ କର ।"

ବୋଉର ଆଖି ମୁଦି ହୋଇ ହୋଇ ଆସୁଚି । ସଂସାରର ଦିଆନିଆ ଆଉ କୋଳାହଳ ଭିତରୁ ଲୁଚି ଯାଉଚି ମାଟିର ଚେତନଶୀଳ ନିର୍ମାଣ । କାହାପାଇଁ ମରଣମୁଖୀ



Digitized by PPRACHIN, SOA

ଏଇ ମଣିଷଟିର ମୁହଁରେ ଏତେ ବିଷାଦର ଛାୟା । କାହାର ସ୍ମୃତିର ପରିଧିରେ ପ୍ରେତର ପାରିଧି ରଚି ସେ ଫେରିବାର ଆଶାରେ ଆଖି ବୁଜୁଚି ? ସୁକେଶୀ- ଆହା ଜୀଇଁ ଥାଉ ଥାଉ ସେ ହାତକୁ ଦି'ହାତହେବାର ବୋଉ ଦେଖି ପାରିଲେ ନାହିଁ । ନିଜ ହାତରେ ପିନ୍ଧେଇ ଦେଇଥା'ନ୍ତେ ଅଳିତା, ସିନ୍ଦୂର । ନିଜ ହାତରେ ଗୁଣ୍ଡାବଳି ପୁଅଟି ମୁହଁରେ ଦେଇଥା'ନ୍ତେ ଆଶିଷର ଅନ୍ନ ଆହାର, ଶୁଣାଇଥା'ନ୍ତେ କେତେ ଆଶାର ଆଶାବରୀ । କିନ୍ତୁ ସୁକେଶୀତ ତଥାପି ପିଲାଟିଏ...... ।

ସୁକେଶୀ କାନ୍ଦିଉଠିଲା । ଅସରା ଅଶ୍ରୁର କେତୋଟି ବିନ୍ଦୁ ବର୍ତ୍ତମାନ ଜୀବନର କଳଙ୍କିତ କାଳି ଉପରେ ସକାଳ ସୂର୍ଯ୍ୟର ଚକମକ୍ ଦେଖି ଥରେଇ ଦେଲା ତା ଜୀବନର ଅତୀତ ଇତିହାସକୁ । ସୁକେଶୀ ମନ ବାପାବୋଉଙ୍କ ପ୍ରତି ଆର୍ଦ୍ରକରୁଣାରେ ଭିଜିଗଲା । ବାପା ଠିକ୍ ମନେ ପଡୁନାହାନ୍ତି । ସେତେବେଳକୁ ସେ ମାତ୍ର ତିନିବର୍ଷର ହୋଇଥିଲା । ବୋଉ କହେ 'ସେ' ଘରେ ଥିଲେ ସବୁବେଳେ କୁଆଡ଼େ ସୁକେଶୀକୁ କୋଳରେ ଧରି ଗେହ୍ଲା କରନ୍ତି । ଗାଲ ଚିପନ୍ତି, ଚୁମା ଦିଅନ୍ତି, କଥା କହି ଶିଖାନ୍ତି । ଆଉ ସବୁବେଳେ ବୋଉକୁ କୁଆଡ଼େ କହନ୍ତି- ସୁକେଶୀ ମୋ ଝିଅ, ତୁମର ତା ଠେଇଁ ଭାଗ ନାହିଁ ।

ଆହୁରି ଅସହାୟ ଭାବରେ କାନ୍ଦିଉଠିଲା ସୁକେଶୀ । ମନକୁ ମନ କହୁଥିଲା- "ସୁକେଶୀ କାହାର ନୁହେଁ, ସେ ମରୁ । ତା' ସ୍ମୃତି ହଜିଯାଉ । ତା ଅସ୍ତିତ୍ୱ ନିଭିଯାଉ ।"

ଭାତ ହାଣ୍ଡିରେ ଭାତ ଭରା ହୋଇ ଆସୁଚି । ଢେଙ୍ଗ ତଳକୁ ପଡୁଚି ଓଲଟପାଲଟ ହେଉ ହେଉ କେତୋଟି ଭାତ । ମଣିଷ ଜୀବନରେ ଆଶ୍ରା ଖୋଜି ଅଣ୍ଡାଳି ହେଉ ହେଉ ଏମିତି ବି ବେଳେବେଳେ ଉତୁରିପଡ଼େ । ସଂସାରର ଘୋରଣା ଭିତରେ ଓଲଟପାଲଟ ହେଉ ହେଉ ହଜାଇବସେ ନିଜର ଅସ୍ତିତ୍ୱ । ତଳେ ପଡ଼ିଥିବା ଭାତ ଆଉ ଯେପରି ହାଣ୍ଡିକୁ ନ ଯାଇ ଚୁଲିକୁ ଯାଏ ମଣିଷ ଅବସ୍ଥା ଉଣାଅଧିକେ ସେହିପରି ।

ମନରେ ପୁଣି ସ୍ମୃତିର ରୋମନ୍ଥନ । ଆକାଶୀ ଗୁଡ଼ି ପରି କେଉଁ ସୂତ୍ରଧରର ଇଚ୍ଛାରେ ଅନ୍ତରୀକ୍ଷରେ ନାଚି ବୁଲୁଚି ନାଲିନେଳି କାଗଜର ଛୋଟ ଗୁଡ଼ିଟିଏ । ସୂତା ଦିଶୁନି । ବହୁତ ଦୂରରେ ମାଟିରେ ଠିଆ ହୋଇଚି ମଣିଷ । ପାଖରେ ଉଠୁଚି ଆଉ ଗୋଟିଏ ଗୁଡ଼ି । ସେ ଛଂଚାଣ ପରି ନଖ ଦେଖେଇ ନିରୀହ ପକ୍ଷୀଟିକୁ ଆକ୍ରମଣ କରିବାକୁ ଆଗେଇ ଆସୁଚି । ସେଥିପାଇଁ କୌଶଳ ପ୍ରୟୋଗ କରୁଚି ଚତୁର ଆଉ ଏକ ଗୁଡ଼ିଉଡ଼ାଳୀ । ବଡ଼ଗୁଡ଼ି ଛୋଟଗୁଡ଼ିକୁ କାଟୁଛି । ଟାଣସୂତା ସରୁସୂତାକୁ କେତେବାଗରେ ଘୋରି ଘୋରି କାଟିପକାଉଛି । ଏଥର ଛୋଟ ଗୁଡ଼ିଟି କେଉଁ ଅପନ୍ତରାରେ ଉଡ଼ି ଉଡ଼ି ପଡ଼ିବ । ତାର ସମସ୍ତ ଆକାଶୀ ଉଡ଼ାଣର ପ୍ରଲୋଭନ ଓ ଆକୁଳତା ବ୍ୟର୍ଥ ହେବ ।

ସୁକେଶୀ ଭାବୁଚି ତା ଜୀବନର ବିପର୍ଯ୍ୟୟ କଥା । ଏଇ ବନବିହାରୀ ଭରସାଦେଲେ, ହସିଲେ ଅର୍ଥଭରା ହସ । ମନ୍ଦିରରେ ଗାନ୍ଧର୍ବ ମତରେ ବିବାହ କଲେ । ଲୁଚି ଲୁଚି ସଂସାର ଗଢ଼ିଲେ କେତେଦିନ । ଆଗରେ ସାକ୍ଷୀ ରହିଲେ କଟକଚଣ୍ଡୀ । ନିକଟରେ ଘିଅ ଦୀପର ପ୍ରଜ୍ୱଳିତ ଶିଖା । ଉଭୟେ ଦେଲେ ଉଭୟଙ୍କ ବେକରେ



Digitized by PPRACHIN, SOA

ବରଣମାଳା । ମାତ୍ର ତିନୋଟି ରାତି ତାଙ୍କ ସାଂଗରେ ବିତିଛି । ଜୀବନର ଅସରନ୍ତି କ୍ଷୀଅ ଭିତରୁ କାଗଜର ଗୁଡ଼ି ପରି ଛିଣ୍ଡିଯାଇଛି ସବୁକିଛି । ସେ ପୁଣି ନୂତନ ପ୍ରଣୟ ପାଇଁ ବିଭୋର । ନିଜେ ପୁଣି ହାତରେ ଲେଖିଛନ୍ତି ନିମନ୍ତ୍ରଣ ପତ୍ର ଉପର ଠିକଣା । ସବୁ ସେ ଏତେ ସହଜରେ ଭୁଲିଗଲେ ? ପିଲାଙ୍କ ସଢ଼େଇ ବାଲି ଖେଳର ବାହାଘର ପରି ଭାଙ୍ଗି ଦେଲେ ବିଭାଘର ? କେଡ଼େ ଭୟଙ୍କର ବନବିହାରୀ, କେଡ଼େ ନୀଚ, କେଡ଼େ ସ୍ୱାର୍ଥପର ।

ସୁକେଶୀ ନିମନ୍ତ୍ରଣ ପତ୍ରଟିକୁ ଦି'ତିନିଥର ଏପାଖ ସେପାଖ କଲା । ବନବିହାରୀ ବିବାହ କରୁଛନ୍ତି । ମାସର ଆଜି ଛ'ଦିନ । ତାଙ୍କ ଆମନ୍ତ୍ରଣ ଜୀବନ ପାଇଁ ନୁହେଁ, ଭୋଜି ପାଇଁ । ସୁକେଶୀ ଟିକିଟିକି କରି ନମନ୍ତ୍ରଣ ପତ୍ରକୁ ଚିରି ବସିଲା । ପ୍ରତି ଟୁକୁରା ଭିତରେ ଯେପରି ଜଣେ ଲଂପଟପୁରୁଷର ଆତ୍ମା ପ୍ରଲୋଭନର ରଡ଼ ଜାଳି ଜଳି ଉଠୁଛି । ପ୍ରତିଟି ବିଚ୍ଛିନ୍ନ ଟୁକୁରା ଭିତରେ ସତେ ଯେପରି ଅତୀତର ସ୍ମୃତି ପ୍ରତାରଣାର ଗରଳଗ୍ରାସରେ ହେଉଛି ଅସ୍ତମିତ । ଉଗ୍ର ପ୍ରତିହିଂସା ଓ ନାରୀତ୍ୱର କୋମଳ ଅଭିମାନ ଯୁଗପତ୍ ସୁକେଶୀର ସୁନ୍ଦର ମୁହଁରେ ଛାପି ଦେଇଗଲା ସଜଳ ଅଶ୍ରୁର କଜ୍ଜଳଗାର । ଜୀବନର ସମସ୍ତ ସମ୍ଭାବନା, ଆଶାର ଅସରନ୍ତି ମହୋତ୍ସବ- ସବୁ ତାର ଧୋଇହୋଇ ଯିବାକୁ ବସିଛି । ଦୁନିଆ ଯେପରି ତା' ଆଖି ଆଗରେ ଢ଼େଙ୍ଗୁରା ବାଢ଼େଇ କହିଚାଲିଚି- ତତେ ସେ ଭଣ୍ଡି ଖଣ୍ଡିଉଡ଼ା ଦେଇ ଚାଲିଗଲା ସୁକେଶୀ । ତୁ ପତିତା, ତୁ କଳଙ୍କିନୀ । ତୁ କାହିଁକି ଗୋପନୀୟ ଭାବେ ଏପରି ଜଣେ ପ୍ରତାରକକୁ ବିବାହ କରୁଥିଲୁ ? ପବନରେ, ଗଛପତ୍ରର ମର୍ମରରେ, ବର୍ଷାର ଆସରରେ, ସତେ ଯେପରି ଏଇ କଥା ଚତୁର୍ଦ୍ଦିଗରେ ବ୍ୟାପି ଯାଉଚି- ସୁକେଶୀ ପତିତା, ପରିତ୍ୟକ୍ତା ।

କ୍ରୋଧ ଆଉ ଭୟଙ୍କର ନିରାଶାରେ ସୁକେଶୀର ଆଖି ଲାଲ ପଡ଼ି ଆସୁଚି । ମୁହଁ ଦିଶୁଚି ପାଣ୍ଡୁର- କଳା ଆଉ ଧଳା ମଝିରେ ମିଶାମିଶି ଏକ ବିଭାହୀନ ଅଦ୍ଭୁତ ରଙ୍ଗ- ଧୂସର ଓ ମ୍ଳାନ । ସୁକେଶୀ ଭାବୁଚି ତା' ଜୀବନକୁ କେନ୍ଦ୍ର କରି ତା' ଅସହାୟତାର ସୁଯୋଗ ନେଇ ସମସ୍ତେ ତାକୁ ଠକିଛନ୍ତି । ନିଜର ଆତ୍ମୀୟ ମାମୁଁ ତା' ସହିତ ବନବିହାରୀଙ୍କ ଗୋପନ ବିବାହର ଥିଲେ ଆୟୋଜକ । ଅପା ଖୁସି ହୋଇଥିଲା ମୁଣ୍ଡରୁ ବୋଝ ଯାଇଥିଲା ବୋଲି । ତା' ସ୍ୱାମୀଙ୍କ ପ୍ରତି ଅପା ମନରୁ ଆଶଙ୍କା ମଧ୍ୟ ତୁଟିଥିଲା । କିନ୍ତୁ ବିତୃଷ୍ଣ ହୋଇଚନ୍ତି ଜଣେ- ସେ ତାର ଭିଣୋଇ ବଳିଦଉ । ସେ ହୁଏତ ଅପା ଭୟରେ ବନବିହାରୀଙ୍କ ସହିତ ବିବାହ ପ୍ରସ୍ତାବରେ ରାଜି ହୋଇଛନ୍ତି । କିନ୍ତୁ ଭିତରେ ଭିତରେ ସେ କୁହୁଳୁଛନ୍ତି । ଜବାବରେ ରଖିଛନ୍ତି ସ୍ପଷ୍ଟ ପ୍ରତାରଣା । ଏମିତି ବହୁତ ସ୍ଥାନରେ ତାର ପ୍ରସ୍ତାବ ପଡ଼ିଛି ଓ ଭାଙ୍ଗିଛି । ତା ନାମରେ ଜମି ଅଛି ତିରିଶି ଏକର । ତାର କିଛି ଅଭାବ ନାହିଁ – ଏଇ ଜମିକୁ ଅନ୍ତତଃ ବିଭାହେବାକୁ ବହୁ ଗନ୍ଧର୍ବ ପୁରୁଷ ଆଗଭର ହୋଇ ଆସନ୍ତେ । କିନ୍ତୁ ଭିଣୋଇ ଭିତରେ ଭିତରେ କିଛି କିଛି କନ୍ଦି କରି ସେସବୁ ଭାଂଗି ଦେଇଛନ୍ତି । ଶେଷକୁ ବନବିହାରୀଙ୍କ ସହିତ ସେ ଯେ ପ୍ରତାରଣା କରି ନଥିବେ କିଏ କହିବ ?



Digitized by PPRACHIN, SOA

ସୁକେଶୀ ଭାବୁଚି ବନବିହାରୀଙ୍କ କଥା । କନକଲତା- କିଏ ସେ ଭାଗ୍ୟବତୀ ? ନିଷ୍ପାପ ନିଷ୍କଳଙ୍କ ଝିଅଟି । ତା' ମନରେ କେତେ ଆଶାର ଭଉଁରୀ ଭାବୀପତିର ଜୀବନସ୍ରୋତର ପରିଧିରେ ଘୁରି ବୁଲୁଥିବ । କେତେ ସ୍ୱପ୍ନ ନେଇ ସେ ହେଉଥିବ ବିଭୋର, ଆଶାୟିତ । ସୁକେଶୀ ପରି ସେ ପୁଣି ଛିନ୍ନମୂଳ ହେବନିତ ?

ସୁକେଶୀର ଆଖିରୁ ଛୁଟିଚାଲିଛି ଅଶ୍ରୁଧାର । ଦୃଷ୍ଟିପଡ଼ିଲା ବନବିହାରୀ ଦେଇଥିବା ମୁଦି ଉପରେ । ବନବିହାରୀଙ୍କ ଏକମାତ୍ର ପ୍ରୀତି ଉପହାର । ଆଖିର ଲୁହ ଆଙ୍ଗୁଠିର ମୁଦି ଉପରେ ସୃଷ୍ଟି କରୁଚି ଇନ୍ଦ୍ରଧନୁ-କିନ୍ତୁ ସୁକେଶୀ ମନରୁ ନିଭିଚି ରଙ୍ଗର ସମାହାର । ଅତି ଦୟନୀୟ ଭାବେ ସେ ରଂଗହୀନ, ନିଷ୍ପ୍ରଭ ।

ଏକ ଅସହାୟ ନିରୁକ୍ତ କ୍ରୋଧରେ ସୁକେଶୀ ହାତରୁ ମୁଦିଟିକୁ କାଢ଼ି ଅଗ୍ନିକୁ ନିକ୍ଷେପ କଲା । ତା' ସହିତ ଅତୀତର ସମସ୍ତ ଅଭିମାନ ଓ ଦୁର୍ବଳତାକୁ ମଧ୍ୟ ସେ ଜଳନ୍ତା ନିଆଁ ଭିତରକୁ ନିକ୍ଷେପ କରି ତା'ଠାରୁ ଚାହିଁଲା ନିଷ୍କୃତି । ମୁଦି ତରଳିବାରେ ଲାଗିଲା । ନିଆଁର ବର୍ଣ୍ଣସାମ୍ୟ ଭିତରୁ ସ୍ମୃତିର ଅତୀତକୁ ଆଉ ଖୋଜି ବସିବାରେ କିଛି ଅର୍ଥ ନାହିଁ । ଧ୍ୱଂସର ପାଉଁଶ ବି ନରହୁ । ସ୍ମୃତିର ଆଘାତରେ ସୁକେଶୀର ଅଶରୀରୀ ପ୍ରେତାତ୍ମାକୁ ସେ ଯାହା ଖାଲି ଛଟପଟ ଓ କଲବଲ ହିଁ କରିବ । ଏଇ ନିଆଁର ସର୍ବଗ୍ରାସୀ ଦହନ ମଧ୍ୟରେ ତାର ସକଳ ଆତ୍ମପ୍ରତ୍ୟୟ ବି ପୋଡ଼ି ପାଉଁଶ ହୋଇଯାଉ । ସେ ଚାହେଁ ଆଉ ଏକ ପ୍ରତାରକ ଭବିଷ୍ୟତଠାରୁ ମୁକ୍ତି । ଆଖି ବୁଜିଲେ ତାକୁ ଚାରିଆଡ଼ ଅନ୍ଧକାର ଦେଖାଯାଉଛି । ସେଇ ଅନ୍ଧାର ଭିତରେ ଜଣେ ଆତ୍ମୀୟ ପରିଚିତ ଲୋକର ଅକ୍‌ଟୋପାସ ହାତ ତା ଛାତି ଉପରକୁ ବଢ଼ି ଆସୁଚି । ସେ ଚାହେଁ ତାର ଉଶୃଙ୍ଖଳ କାମନାର ନିର୍ବାପନ । ନାରୀତ୍ୱର ଅମର୍ଯ୍ୟାଦା କରି ସୁକେଶୀ ସେଥିରେ ସମ୍ମତି ଜଣାଇ ପାରିବକି ? ଚିତ୍କାର କରିବ ହୁଏତ । ଚିତ୍କାରର ଅର୍ଥନାହିଁ । ଦୁନିଆଁର ଆଉ ଦ୍ୱିତୀୟ କେହି ସୁପୁରୁଷ ତାକୁ ଛାତି ଉପରକୁ ଆଉଜେଇ ନେବାକୁ ଆଗଭର ହୋଇ ଆସିବନି । ତା' ଜୀବନରେ ପ୍ରେମର ପରୀକ୍ଷା ସରିଚି । ପ୍ରେମ-ମୂଲ୍ୟହୀନ, ପ୍ରେମ-ପ୍ରତାରଣା ଓ ପରିତାପ, ପରାଭବ ।

ସୁକେଶୀ ଘର ଭିତରୁ ପଦାକୁ ବାହାରି ଆସିଲା । ସେତେବେଳେ ଗୋଧୂଳିର ମଳିନ ସୂର୍ଯ୍ୟ ଦିଗନ୍ତରେ କ୍ରମେ ହଜି ହଜି ଯାଉଥିଲେ । ପାଖ ପଡୋଶୀଙ୍କ ରେଡ଼ିଓରେ ସେଇମାତ୍ର କଲିକତା ସେଣ୍ଟରରୁ ପ୍ରଚାର ହେଉଥିଲା ଆସନ୍ନ ସାଂଧ-ସଂଗୀତ- ରବୀନ୍ଦ୍ରନାଥଙ୍କ ଅମର କୃତି - "ଯେ ନଦୀ ମରୁପଥେ ହାରାଲୋ ଧାରା........

ଜାନି ହେ ଜାନି ତାରା ହୟେନି ହାରା ।"

ସୁକେଶୀ ଭାବୁଥିଲା ତା' ଜୀବନର ମରୁପଥରେ ସବୁ ଆଶାର ଧାର ହରେଇଥିବା ପ୍ରାଣସ୍ରୋତରେ ସତେ କ'ଣ ଆଉ ପ୍ରବାହ ଆସିବ ? ନା- ସେଇ ମରୁପଥରେ ସବୁଦିନ ପାଇଁ ଅଜ୍ଞାତ ଭାବେ ହଜିଯିବ ? ସେ ପଛେ ଚିରଦିନ ପାଇଁ ହଜିଯିବ-କଦାପି କୌଣସି ମୁହୂର୍ତ୍ତରେ ବି ତାର ପ୍ରତାରକ ଆତ୍ମୀୟ ପାଖରେ ଆତ୍ମସମର୍ପଣ କରିବ ନାହିଁ । ଆଜି ରାତିରେ ହୁଏତ ସେ ଚିତ୍କାର କରି ଅପାକୁ ସବୁକଥା ଜାଣାଇଦେବ । ସେମାନେ ଘରୁ



Digitized by PPRACHIN, SOA

ବାହାର କରିଦେଲେ ସେ ଗାଁକୁ ଚାଲିଯିବ । ସେଠି ନୂଆ ଭାବରେ ଜୀବନ ଗଢ଼ିବ । ଯେ କୌଣସି ଦୁଃଖ ଓ କଷ୍ଟର ଭଉଁରୀ ଭିତରେ ଉଭାନ ହୋଇ ଜଳମଗ୍ନ ହେବାରେ ତାର ଆଉ ଭୟ ନାହିଁ । ତାର ଆଉ ଭୟନାହିଁ ଶାର୍ଦ୍ଦୂଳ ଓ ସରୀସୃପ ମାନଙ୍କୁ । ସେ ଏଇ ଅଠର ବର୍ଷ ମଧ୍ୟରେ ଢ଼େର ଅଭିଜ୍ଞତା ସଂଚୟ କରିଚି – ତାହାହିଁ ହେବ ତା ଅବଶିଷ୍ଟ ଜୀବନ ପାଇଁ ବଞ୍ଚିବାର ପାଥେୟ ।

ସୁକେଶୀ ଉତ୍ତୀର୍ଣ୍ଣ ସଂଧ୍ୟାରେ ଘରକୁ ଫେରି ନିଶ୍ଚଳ ଭାବେ କେବଳ ବସି ରହିଲା । ଅପା ଯେତେ ଡାକିଲେବି ଜବାବ ଦେଲାନି କିମ୍ବା ଉଠି ଦୌଡ଼ି ଗଲାନି । ସେ ସମ୍ଭବତଃ ତା ଭବିଷ୍ୟତ ବିଷୟରେ ସିଦ୍ଧାନ୍ତ ନେଇ ସାରିଥିଲା । କେବଳ ଆସନ୍ତା କାଲିକୁ ଯାହା ପ୍ରତୀକ୍ଷା । ତାକୁ ଭୋକ ନାହିଁ । ଆଜି ରାତିରେ କିଛି ଖାଇଲାନି । ସବୁକଥା ଏକ ଦୀର୍ଘ ଚିଠିରେ ଅପାକୁ ଲେଖି ଆସନ୍ତାକାଲିକୁ ଅପେକ୍ଷା କଲା । ତାର ନିଷ୍ପତ୍ତି ଅପରିବର୍ତ୍ତନୀୟ ବୋଲି ଅପାକୁ ଲେଖିଲା ବେଳେ କେଜାଣି କାହିଁକି ପୁଣି ତା' ଆଖିରେ ଲୁହ ଭର୍ତ୍ତି ହୋଇଗଲା । ସେ ଆଉ ଅଧିକ ଲେଖିପାରିଲାନି । ସବୁ ଦିଶିଲା ରାତ୍ରିର କୁହୁଡ଼ି ପରି ଧୂସର ଓ ପାଣ୍ଡୁର ।

ବଳିଦତ୍ତ ଅସମାହିତ କାମନାର ଉତ୍ତାପରେ ସେଦିନ ରାତିରେ ମଧ୍ୟ ନିରୂପିତ ବେଳାରେ ସୁକେଶୀର ଶୟନ କକ୍ଷରେ ପ୍ରବେଶ କଲେ । ସୁକେଶୀ ତ ଶୋଇ ନଥିଲା, କେବଳ ବିଛଣାରେ ପଡ଼ି ଛଟପଟ ହେଉଥିଲା । ବଳିଦତ୍ତ ତାକୁ ଆଲିଙ୍ଗନ କରିବାକୁ ହାତ ପ୍ରସାରଣ କରନ୍ତେ ଖୁବ୍ ଜୋର୍‌ରେ ସେ ତାଙ୍କ ଆଙ୍ଗୁଠିକୁ କାମୁଡ଼ି ତାଙ୍କୁ ରକ୍ତାକ୍ତ କରି ଦେଲା ଓ ବଡ଼ ପାଟିରେ ଅପା, ଅପା ବୋଲି ଚିତ୍କାର କଲା । ବଳିଦତ୍ତ ସୁକେଶୀର ଏପରି ଉଗ୍ର ମୂର୍ତ୍ତି ଦେଖି ସମ୍ଭବତଃ ଭୟଭୀତ ହୋଇ ଧୀରେ ଧୀରେ ନିଜ ଶୟନକକ୍ଷରୁ ନିଭୃତରେ ବାହାରି ଯାଇଥିଲେ । ରାତି ପାହିବାକୁ ବେଶୀ ଡ଼େରି ନଥିଲା । ସୁକେଶୀ ତାର ବ୍ରିଫ୍‌କେଶରେ ତାର କେତୋଟି ପରିଧାନ ଓ ଆବଶ୍ୟକୀୟ ଜିନିଷକୁ ସଜାଡ଼ି ରଖି ସକାଳକୁ ଅପେକ୍ଷା କଲା ଓ ସକାଳୁ ସକାଳୁ ବସ୍‌ଷ୍ଟାଣ୍ଡ ଉପଲକ୍ଷେ ଚାଲିଚାଲି ବାହାରି ଗଲା । ଅପା ଓ ବଳିଦତ୍ତ ତାକୁ ଯେତେ ନେହୁରା ହେଲେ ବି ପାହାଡ଼ରେ ଟେକାବାଜି ଚୁରିହୋଇଗଲା ପରି ସବୁ ବ୍ୟର୍ଥ ହେଉଥିଲା । ସେମାନେ କିଛିଦୂର ତା ପଛେ ପଛେ ଅବଶ୍ୟ ଅନୁସରଣ କରିଥିଲେ । କିନ୍ତୁ ସୁକେଶୀ ଯେ ଆଉ ଫେରିବ ନାହିଁ ସେମାନେ ନିଶ୍ଚିତ ହେଲାପରେ ଗାଁ ମୁଣ୍ଡରୁ ଫେରି ଆସିଲେ ଓ କଥାକୁ ଯଥାସମ୍ଭବ ଗୋପନୀୟ ରଖିବାକୁ ସିଦ୍ଧାନ୍ତ କରିଥିଲେ । ସୁକେଶୀ ଆଗକୁ ଆଗକୁ ଚାଲିଥିଲା – ସତେ ଯେପରି ସେ ଏକ ମୁକ୍ତ ବିହଙ୍ଗ । ସେ ଆଜି ନିଜ ଇଚ୍ଛାରେ ଉଡ଼ିଯିବ, ତାକୁ ବାଧାଦେବାକୁ କେହିନାହିଁ । ତା'ର ଯାହା କିଛି ଶିକ୍ଷାଦୀକ୍ଷା ଅଛି ସେଥିରେ ସେ ଗାଁ ଅଙ୍ଗନବାଡ଼ି ବା ସର୍ବଶିକ୍ଷା ଅଭିଯାନରେ କାମଟିଏ ପାଇଯିବା ଅସମ୍ଭବ ହେବ ନାହିଁ । ସେ ଆଗକୁ ଆଗକୁ ଦ୍ରୁତ ପଦକ୍ଷେପରେ ଆଗେଇ ଯାଉଥିଲା । ସମ୍ଭବତଃ ବସ୍‌ଷ୍ଟାଣ୍ଡ ଆଉ ବେଶୀ ଦୂରବର୍ତ୍ତୀ ନଥିଲା ।





Digitized by PPRACHIN, SOA

# ତିନୋଟି ହତ୍ୟାର କାହାଣୀ

ବାନାମ୍ବର ଆଖିରୁ ସେତେବେଳେ ଟୋପାଏ ହେଲେ ଲୁହ ବୋହି ନଥିଲା । ଅଥଚ ସୁନ୍ଦରୀ ସ୍ତ୍ରୀ, ଆହୁରି ସୁନ୍ଦରୀ ଅଠର ବର୍ଷୀୟା ଯୁବତୀ କନ୍ୟା ଓ ଏକମାତ୍ର ପନ୍ଦର ବର୍ଷର ପୁଅ ଅଲଗା ଅଲଗା ହୋଇ କୋଠରୀରେ ପଂଖାରୁ ଦଉଡ଼ି ମାଧ୍ୟମରେ ଝୁଲି ରହିଥିଲେ । ତଦାରଖକାରୀ ପୋଲିସମାନେ କିଛି ଥଳକୂଳ ପାଉ ନଥିଲେ । ଏସବୁ ହତ୍ୟା ନା ଆତ୍ମହତ୍ୟା ? ସେମାନେ କୌଣସି ନିଷ୍ପତ୍ତିରେ ବି ପହଂଚି ପାରୁ ନଥିଲେ । ରାତିରେ ଥାନା ଡ଼ିଉଟିରେ ଥିବା ଲୋକଟା କେତେବେଳେ ବା ଆସି ଏପରି କାଣ୍ଡ କରି ବସିଲା ? ହୁଏତ ଅତିରିକ୍ତ କ୍ରୋଧରେ ମଣିଷ ସ୍ତ୍ରୀକୁ ମାରି ଦେଇପାରେ କିଂତୁ ନିଜର ଦୁଇଟା ସନ୍ତାନଙ୍କୁ କଣ ଏପରି କେହି ମାରିପାରେ ? ଅବଶ୍ୟ ସାଇପଡ଼ିଶା ଲୋକେ କହିବେ ଯେ ସେ ଲୋକଟା ତା' ସ୍ତ୍ରୀ ପ୍ରତି ସବୁବେଳେ ରୁକ୍ଷ ବ୍ୟବହାର କରୁଥିଲା । ରାଗରେ ପାଚିପାଚି ତାକୁ ବରାବର ମାରଧର କରୁଥିଲା । ତାଙ୍କ ଭିତରେ କଥା କଟାକଟି, ପାଟିତୁଣ୍ଡ ସମସ୍ତେ ପ୍ରାୟ ଶୁଣୁଥିଲେ । ହୁଏତ ସେଦିନ ରାତିରେ ଉଭୟଙ୍କ ମଧ୍ୟରେ କଳିକଜିଆ କ୍ରମେ ଉତ୍ତେଜନାପୂର୍ଣ୍ଣ ହୋଇ ଉଠିଥିବ । ସ୍ତ୍ରୀକୁ ମାରିଲାବେଳେ ବଡ଼ପିଲା ଦୁଇଜଣ ମାଆପକ୍ଷ ନେଇ ବାପାକୁ ବାଧା ଦେଇଥିବେ । ଅତିରିକ୍ତ କ୍ରୋଧରେ ସେ କୌଣସି ଶକ୍ତ ଜିନଷରେ ଜଣକପରେ ଜଣକ ମୁଣ୍ଡରେ ଅତି କ୍ଷିପ୍ର ଗତିରେ ପ୍ରହାର କରି ଚାଲିଥିବ ଓ ତା'ପରେ ସେମାନେ ଦଉଡ଼ି ଦେଇଛନ୍ତି ବୋଲି ପ୍ରମାଣ କରିବାକୁ ଅର୍ଥାତ୍ କୌଣସି କାରଣରୁ ଆତ୍ମହତ୍ୟା କରିଛନ୍ତି ବୋଲି ଏକ ପରିବେଶ ସୃଷ୍ଟି କରିବାକୁ ସେ ଜଣକ ପରେ ଜଣକୁ ଦଉଡ଼ିରେ ଟାଙ୍ଗିଦେଇଥିବ । ତେବେ ହଣାହଣି କରି ଥିଲେ ତ ଗୁଡ଼ାଏ ରକ୍ତ ଘରସାରା ପଡ଼ିଥାନ୍ତା । ଦେହରେ ବି ଥାନ୍ତା କ୍ଷତଚିହ୍ନ । ସେସବୁ କିନ୍ତୁ କିଛି ନଥିଲା । ତେବେ ଟଣାଟଣି କରି ତିନି ତିନିଜଣଙ୍କୁ ବେକଚିପି ମାରି ଦଉଡ଼ିରେ ଲଟକାଇ ଦେଇଥିବାର ସମ୍ଭାବନା କାହା କାହା ମନରେ ଦାନା ବାନ୍ଧୁଥିଲା । ଜଣକ ବେକ ଚିପିଲା ବେଳେ ଆଉଜଣେ ଆସି ବାଧା ଦେଇଥିବ । ହୁଏତ ମାଆକୁ ମାରି ସାରିବା ପରେ ଜଣକ ପରେ ଜଣେ ଏ ଦୁଇ ପୁଅଝିଅଙ୍କ ବେକ ଚିପି ଟଙ୍ଗାଇ ଦିଆଯାଇଥିବ । ସେମାନଙ୍କ ମଧ୍ୟରୁ ଜଣେ ଦଉଡ଼ି ଯାଇ ପାଖ ପଡ଼ିଶା ମାନଙ୍କୁ ଚିତ୍କାର କରି ଡାକିପାରିଥାନ୍ତେ । ଅନ୍ତତଃ ପଡ଼ିଶା କେହି ପହଞ୍ଚି ଯାଇଥିଲେ ବାନାମ୍ବର ଏପରି ଘାତକକର୍ମ କରିବାକୁ ସାହାସ କରି ନଥାନ୍ତେ । ତା' କିନ୍ତୁ ହୋଇ ନଥିଲା ।

ବିଷପ୍ରୟୋଗ କରି ଏ ତିନିଜଣଙ୍କୁ ଏକାବେଳକେ ମାରିଦିଆ ଯାଇପାରିଥାଏ ।



Digitized by PPRACHIN, SOA

କୌଣସି ଏକ ପାନୀୟରେ ସେମାନଙ୍କ ଅଜାଣତରେ ବିଷ ପ୍ରୟୋଗ କରି ସେମାନଙ୍କୁ ଧରେଇ ଦେଇ ନିଜେ ବି ଗୋଟିଏ ଗ୍ଲାସ ପିଇବାର ଅଭିନୟ କରି ପାରିଥାଏ ବାନାମ୍ବର । ତା'ହେଲେ ସେତେବେଳେ କ୍ରୋଧର ପରିବେଶ କେବେ ନଥିବ; ବରଂ ଥିବ ବେଶ ଆନନ୍ଦ ଓ ଆବେଗର ପରିବେଶ । ଅବଶ୍ୟ ବାନାମ୍ବର ନାମକ ଚତୁର ବ୍ୟକ୍ତି ଜଣକ ସବୁ ପ୍ରମାଣକୁ ନଷ୍ଟ କରି ଦେବାପାଇଁ କୋକାକୋଲା ପାନୀୟ ବୋତଲ ସମେତ ଗ୍ଲାସ ଗୁଡ଼ିକୁ ନଷ୍ଟ କରିଦେଇଥିବ, ପାଖ ପୋଖରୀକୁ ଫୋପାଡ଼ି ଦେଇପାରିଥାଏ। ତା'ପରେ ତା' ମୁଣ୍ଡରେ ଆତ୍ମରକ୍ଷା ପାଇଁ ଜାଗ୍ରତ ହୋଇଥିବ ଏକ ଦୁଷ୍ଟ ବୁଦ୍ଧି । ଜଣ ଜଣ କରି ତିନିଜଣଙ୍କୁ ଟାଣି ଟାଣି ଦଉଡ଼ିରେ ବାନ୍ଧି ଟଙ୍ଗାଇ ଦେବାକୁ ସେ ସେତେବେଳକୁ ଯଥେଷ୍ଟ ଶକ୍ତି ସଂଚୟ କରି ସାରିଥିବ । ସେମାନଙ୍କ ଦେହରେ ନିଜର ଟିପଚିହ୍ନ ବି ନ ବସାଇବାକୁ ସେ ହାତରେ ଗ୍ଲୋଭସ୍ ପରି କିଛି ବ୍ୟବହାର କରିଥାଇପାରେ ଓ ସେପରି ଏକ ଜିନିଷକୁ ପାଣିରେ ଫୋପାଡ଼ିଲେ ଭାସିବ ବୋଲି ଭାବି ନିଆଁରେ ପୋଡ଼ି ଦେଇ ବି ପାରିଥାଏ ।

ଆଉ କିଛି ସମ୍ଭାବନା ବି ଥାଇପାରେ । ସବୁଦିନେ ଖଟ୍‌କା ଲଗାଉଥିବା ଏ ଦୁଷ୍ଟ ଲୋକଟାଠାରୁ ସବୁଦିନ ପାଇଁ ହଟିଯିବାକୁ ମାଆ ଝିଅ ଓ ପୁଅ ବସି ମସୁଧା କରିଥାଇ ପାରନ୍ତି ଓ ଶେଷକୁ ସମବେତ ଆତ୍ମହତ୍ୟାକୁ ଶ୍ରେଷ୍ଠ ପନ୍ଥା ଭାବେ ବାଛି ନେଇ ଥାଇପାରନ୍ତି । କିମ୍ବା ମାଆ ପ୍ରଥମେ ଆତ୍ମହତ୍ୟା କରିବାର ଦେଖି କାଣ୍ଡଜ୍ଞାନଶୂନ୍ୟ ହୋଇ ପିଲା ଦୁହେଁ ପରେ ପରେ ଆତ୍ମହତ୍ୟା କରିଥାଇ ପାରନ୍ତି । କିନ୍ତୁ ତଦାରଖକାରୀ ଅଫିସର ଓ ସାମ୍ବାଦିକମାନେ ପହଂଚି ଦେଖନ୍ତି ଯେ ବେକରେ· ଯେପରି ଗଣ୍ଠି ପଡ଼ିଚି ସେଥିରେ ବେକ ଚିପି ହୋଇ ରହିଥିବାର ସଂକେତ ନାହିଁ । ଗଣ୍ଠି ବରଂ ଥୋମଣି ତଳକୁ ରହିଛି ଓ ବେକଠାରୁ ବ୍ୟବଧାନ ରକ୍ଷା କରିଚି ଆଉ ଜଣେ ଗୋଡ଼ ଲଗାଇଲା ପରି ଚଟାଣରେ ପ୍ରାୟ ଠିଆ ହୋଇ ରହିଛି । କାହାରି ଜିଭ ବାହାରି ପଡ଼ିନି; ମୁହଁରେ ବିକୃତି ବା ଆତଙ୍କର ଚିହ୍ନ ମଧ ନାହିଁ । ତେଣୁ ଜଣେ ସାମ୍ବାଦିକ ଦୃଢ଼ସ୍ୱରରେ କହିଲେ ଏହା ଆତ୍ମହତ୍ୟା ନହେଇପାରେ । ଏହା ଶୀତଳ ହତ୍ୟା (cold blooded murder) ଛଡ଼ା ଆଉ କିଛି ନୁହେଁ ।

ସେଇ ଗ୍ରାମର ଜଣେ ଆବେଗପ୍ରବଣ କବି ଘଟଣା ସ୍ଥଳରେ ପହଂଚି ତିନୋଟି ଶବକୁ ଦେଖି ବିଗଳିତ ହୋଇ ପଡ଼ିଲେ । ତାଙ୍କ ଆଖିରୁ ଧାର ଧାର ଲୁହ ବୋହିବାକୁ ଲାଗିଲା । ବିଶେଷତଃ ସୁନ୍ଦର ପୁଅଝିଅ ଦୁଇଟି ଦୁନିଆଁକୁ ଚିହ୍ନିବା ପାଇଁ ବଞ୍ଚି ରହିବା ଉଚିତ ଥିଲା ବୋଲି ସେ ଭାବୁଥିଲେ । ତେବେ ସେଇ ସାଇର ବାସିନ୍ଦା ହୋଇଥିବାରୁ ସେ କିଛି ସାହସ କରି କହିପାରୁ ନଥିଲେ । ତାଙ୍କ ମତାମତ ଜାଣିବା ପାଇଁ ଜଣେ ସାମ୍ବାଦିକ ତାଙ୍କ ପାଟି ପାଖକୁ ମାଇକ୍ରୋଫୋନ୍‌ଟି ଯୋଖି ଦେଲା ବେଳକୁ ସେ ଅଧୀର ଭାବରେ କେବଳ କାନ୍ଦିବାକୁ ଲାଗିଲେ । ଏତେ କୋହରେ ସେ ଫାଟି ପଡୁଥିବାର ଦେଖି କେହି ଜଣେ ଆଉ ଜଣକ କାନରେ କହୁଥିଲା- ଦେଖ ପ୍ରେମର କରାମତି ! କାହାପାଇଁ କବି ଆଉ କବିତା ଲେଖିବେ ? ଭଲ ହୁଏତ ପାଉଥିଲେ ମନେ ମନେ । କିନ୍ତୁ ବାନାମ୍ବର ଡିହାଡ଼ି କି ଡ଼ରି ବିବାହ ପ୍ରସ୍ତାବ ଦେବାର ସାହସ ତାଙ୍କର ନଥିଲା । ଏବେ କବିତାର ଭୟ ମରି ଲଟକିଛି



Digitized by PPRACHIN, SOA

ପଙ୍ଖାରେ । ପ୍ରେମ କ୍ରମେ ଗଭୀର କାରୁଣ୍ୟରେ ଛଟପଟ ହେଉଛି ଠିକ୍ ନକ୍ର ମୁହଁରେ ସୁନ୍ଦର ଜୀବଟିଏ ପରି । ନିରୀହ ସନ୍ତାନ ଦୁଇଜଣଙ୍କୁ ଭଗବାନ ଏ ଚରମ ଦଣ୍ଡ ଦେଇଥିବାରୁ କବି ଭଗବାନଙ୍କୁ ଏଣିକି ହୁଏତ ଅସ୍ୱୀକାର କରିବେ । ତା'ପରେ କଣ ହେବ ଦେଖାଯାଉ ।

ସେଠି ଘାତକ ସପକ୍ଷରେ ସାକ୍ଷୀ ଦେବାପାଇଁ ତା ସାନଭାଇ ବ୍ୟତୀତ ଆଉ କେହି ନଥିଲେ । ସାମ୍ବାଦିକମାନଙ୍କୁ ସାନ ଭାଇ କହୁଥିଲା ଯେ- ଭାଇ ପିଲାମାନଙ୍କୁ ଜୀବନରୁ ଅଧିକ ଭଲ ପାଉଥିଲେ । ସେ ସେମାନଙ୍କୁ ମାରି ଦେଇ ପାରିବେ କିପରି ? ରାତିରେ ଘରକୁ ଆସି ସେ ପୁଣି ଅଫିସକୁ ଗଲେ । ବୋଧହୁଏ ତାଙ୍କର ରାତି ଡ଼ିଉଟି ଥିଲା । ସେ ଆଉ ଅଫିସରୁ ଆସି ନାହାନ୍ତି । ଏସବୁ ଆତ୍ମହତ୍ୟା ଛଡ଼ା ଅନ୍ୟ କିଛି ହୋଇନପାରେ ।

ତାଙ୍କୁ କେହି ଜଣେ ସାମ୍ବାଦିକ ବୋଧହୁଏ ପଚାରିଲେ- "ତମ ଭାଇ ଭାଉଜଙ୍କ ଭିତରେ ସଂପର୍କ କିପରି ଥିଲା ?"

ବାନାମ୍ବର ତିହାଡ଼ୀଙ୍କ ସାନଭାଇ ଇତସ୍ତତ ହୋଇ ପଡ଼ିଲେ । ଏତେ ବଡ଼ ମିଛ କଥାଟାକୁ କହିବାକୁ ବୋଧହୁଏ ସେ ସାହସ ସଂଗ୍ରହ କରୁଥିଲେ । ଏହା ମଧ୍ୟରେ ସେତିକି ସଂଗ୍ରହ କରିନେଇ ସେ କହିଥିଲେ- "ସବୁ ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ ଯେଉଁ ପରି ସଂପର୍କ ଥାଏ ତାହା ତାଙ୍କ ମଧ୍ୟରେ ଥିଲା । ଭାଉଜ ଭାଇଙ୍କ ସହିତ ଛୋଟ ଛୋଟ କଥାରେ କଳି କରୁଥିଲେ । ସେ ହୁଏତ ରାଗି ରୁଷି କେତେବେଳେ ଚାପୁଡ଼ାଟାଏ ପକାଇଥିବେ । ଏଇଟା ସବୁଘରେ ହୁଏ ।"

ସାମ୍ବାଦିକ ଆଉ ଅଧିକ ପ୍ରଶ୍ନ ପଚାରିବାକୁ ପ୍ରସ୍ତୁତ ନଥିଲେ । ଏହା ମଧ୍ୟରେ ପୋଲିସ ଦଳ ମୃତକମାନଙ୍କ ବେକରୁ ଦଉଡ଼ିକୁ କାଟି ସେମାନଙ୍କୁ ତଳେ ଉତ୍ତାନ କରି ଶୁଆଇ ସାରିଥିଲେ । ଦେହର ଉଠପଡ ଦନ୍ତୁରିତ କୋମଳତା ଆବରଣର ଅନ୍ତରାଳରୁ ବେଶ୍ ବାରି ହେଉଥିଲା । କେତେ ସ୍ୱପ୍ନ ସେ ଜୀବନ ପାଇଁ ଦେଖି ନଥିବ ଅଥଚ ସ୍ୱପ୍ନଗୁଡ଼ା ଆଜି ତାର ମୃତଦେହରେ ଲହଡ଼ୀ ତୋଳିବା ଅବସ୍ଥାରେ ନାହାନ୍ତି । ନିର୍ବେଦ ମୃତ ଶରୀରଟି ଜୀବନର ସବୁ ସମ୍ଭାବନାକୁ ହରେଇ ବସି ଏକ ପ୍ରଚଣ୍ଡ ପରାଜୟ ଓ କାକୁସ୍ଥ ଶୀତଳତାକୁ ଆବୋରି ବସିଛି । ପୁଅଟି ତଥାପି ଖେଳ ନିଶା ଛାଡ଼ି ନଥିଲା । ତାର କ୍ରିକେଟ ବ୍ୟାଟ ସେମିତି କାନ୍ଥରେ ଲଟକି ରହିଛି । ସାଙ୍ଗ ସାଥୀମାନେ ତା'ପାଇଁ ଅଳ୍ପ ଦୂରରେ ଠିଆ ହୋଇ ଲୁହ ଗଡ଼ାଉଛନ୍ତି । ଏକାନ୍ତ ସୁଧାର ଓ ମେଳାପୀ ଏ ପୁଅଟିର ଅସହାୟତା ସମସ୍ତଙ୍କୁ ଏପରି କାବୁ କରି ବସିଚି ଯେ ସେମାନେ ଆଉ ପରସ୍ପର ମଧ୍ୟରେ କଥାବାର୍ତ୍ତା ମଧ୍ୟ ହେଉନାହାନ୍ତି ।

ବାନାମ୍ବରଙ୍କ ବାଡ଼ିପଟ ବଗିଚାରେ ଜାତିଜାତିକା ଫୁଲଗଛ । ଶୀତଦିନେ ସେ ଫୁଲଗୁଡ଼ା କେତେ ସୁନ୍ଦର ଦିଶୁଛନ୍ତି । ମଣ୍ଡା କୁସୁମର ଶୋଭା ବଗିଚାଟିକୁ ରମଣୀୟକରି ରଖିଛି । ତା' ସହିତ ତିନିଚାରି ପ୍ରକାରର ଗୋଲାପ ଫୁଲ ଓ ମନ୍ଦାର ମଧ୍ୟ । ସମସ୍ତେ କହୁଛନ୍ତି ସୁନୀତା ଫୁଲକୁ ଭାରୀ ଭଲ ପାଉଥିଲା । ବାରବର୍ଷବେଳୁ ତାର ନାନାଦି ଫୁଲ ପ୍ରତି ମୋହ । ଘଣ୍ଟା ଘଣ୍ଟା ଧରି ସେ ସେମାନଙ୍କ ପରିଚର୍ଯ୍ୟା କରେ । ମଲା ପତ୍ରଗୁଡ଼ା ଛିଡ଼େଇ ଫୋପାଡ଼ିଦିଏ । ଦୈନିକ ଫୁଲଗଛରେ ପାଣିଦେବା ତାର ନିଧାର୍ଯ୍ୟ କର୍ମ ଥିଲା ।



Digitized by PPRACHIN, SOA

ଫୁଲକୁ ଏତେ ଭଲ ପାଉଥିବା ଅଠର ବର୍ଷର ଝିଅଟି ଘର ଓ ସୁନ୍ଦର ବଗିଚାଟିକୁ ଛାଡ଼ି କିପରି ଆତ୍ମହତ୍ୟା କରିପାରିଲା ? ଜୀବନର ଅର୍ଥ ବୁଝିବାକୁ ଅଠରବର୍ଷ କିଛି କମ୍ ସମୟ ନୁହେଁ। ଟିନ୍ ଏଜ୍‌ର ଦୁର୍ବଳତା କ୍ରମେ ଜୀବନର ମର୍ମବୋଧରେ ସମାହିତ ହୋଇଯିବା କଥା ।

ତାର ଟିନ୍‌ଏଜରେ ଜଣେ ସଂପର୍କୀୟ ମାମୁଁ ଥିଲେ ତାର ପ୍ରଥମ ଗ୍ରାହକ । ଦେହ ଜ୍ୟାମିତିର ନାନାଦି ଉତ୍ଥାନ ପତନକୁ ବୁଝିବା ପୂର୍ବରୁ ସେ ତାର ଏକାନ୍ତତାକୁ ଓ ନିଷିଦ୍ଧ କୋମଳତାକୁ ସ୍ପର୍ଶ କରୁଥିଲେ ସୁବିଧା ଓ ସୁଯୋଗ ଦେଖି । ଦେହରେ ହଠାତ୍ ବଢ଼ି ଉଠୁଥିବା ନରମ ପଦ୍ମକୋରକ ଦୁଇଟିରେ କଣ ଏପରି ଆକର୍ଷଣ ଥାଇପାରେ ? କିନ୍ତୁ ଏକ ଅବୋଧ ଆନନ୍ଦରେ ସେ ତାର ବକ୍ଷବାସକୁ ଇଚ୍ଛାନୁସାରେ ନିରାଭରଣ କରି ଦେଉଥିଲେ। ସେ ମହୁମାଛି ପରି ଶେଷବିନ୍ଦୁ ମଧୁକୁ ସଂଗ୍ରହ କରିନେବାରେ ତତ୍ପର ଥିଲେ । ଅଥଚ ଏସବୁ ବୁଝିବାକୁ ବୟସ ତାର ସେତେ ହୋଇ ନଥିଲା । ମାମୁଁଙ୍କ ପାଇଁ ଦିନର ଯେ କୌଣସି ସମୟ ଥିଲା ଅବାରିତ । ସେ ତାକୁ ସ୍କୁଲରୁ ଆଣିବାକୁ ପ୍ରାୟ ପ୍ରତିଦିନ ଯାଉଥିଲେ ଓ ବାଟରେ ନଈବନ୍ଧର ଗଛମୂଳେ କିଛି ସମୟ ବସିବାକୁ ପସନ୍ଦ କରୁଥିଲେ । ସେତେବେଳେ ତାଙ୍କ ପକେଟରେ ଥାଏ ନାନାଦି ଚକୋଲେଟ୍ । ସୁନୀତାର ଏଇ ଚକୋଲେଟ ପ୍ରତି ଥିଲା ଅବାରିତ ପ୍ରଲୋଭନ । ବୋଉର ସଂପର୍କୀୟ ଭାଇ ହୋଇଥିବାରୁ ମାମୁଁଙ୍କ ଯିବା ଆସିବାରେ କୌଣସି କଟକଣା ନଥିଲା । ସୁନୀତା ମଧ୍ୟ ସାହସ ସଞ୍ଚୟ କରି ଏ ବିଷୟରେ ବୋଉକୁ କିଛି କହି ପାରୁ ନଥିଲା । କାହା ବିରୁଦ୍ଧରେ ଓ କାହା ପାଖରେ ବା ସେ ଅଭିଯୋଗ କରିବ ? ବୋଉ ଏସବୁ ଅଭିଯୋଗ ପାଇଁ ତାରି ମୁଣ୍ଡରେ ଦୋଷ ନଦିଦେବ ଓ ତା' ଭାଇକୁ ଦେବ ଆବରଣ । ତା'ପରେ ମାମୁଁଙ୍କ ହସ ହସ କଥା ଓ ତା' ସହିତ ପ୍ରାୟ ଦୈନନ୍ଦିନ ଦେଖା ସାକ୍ଷାତରେ ହୁଏତ ହଠାତ୍ ପୂର୍ଣ୍ଣଚ୍ଛେଦ ପଡ଼ିଯିବ । ମାମୁଁ ତ ଯୁବକ ନୁହନ୍ତି । ପ୍ରାୟ ମଧ୍ୟ ବୟସ୍କ । ତାଙ୍କ ପ୍ରତି ସୁନୀତାର ଥିଲା ଏକପ୍ରକାର ଭୟମିଶା ଭକ୍ତି । ମାଇଁ ପ୍ରତି ଚିର ଅସନ୍ତୁଷ୍ଟ ମାମୁଁ ତା' ଦେହରେ କଣ ଏପରି ଅଧିକା ସନ୍ଧାନ କରୁଥିଲେ ଯେ ସେଥିପାଇଁ ସେ ଘରେ ଅଯଥା ଝଡ଼ ଉଠେଇବ । ତାର ସେଥିରେ ସେପରି କିଛି କ୍ଷତି ନଥିଲା ଓ ମାମୁଁଙ୍କ ବ୍ୟବହାର କ୍ରମେ ତାର ଦେହସୁହା ହୋଇ ଯାଇଥିଲା । ବୋଉଟା ଓଲୀ ନିଶ୍ଚୟ । ସେ ବି ତା' ଆଡ଼ୁ କିଛି କଟକଣା ଜାରି କରୁ ନଥିଲା । ପ୍ରାୟ ସବୁଦିନେ ଆସୁଥିବା ଲୋକଟା ପ୍ରତି ତା' ମନରେ ତିଳେମାତ୍ର ସନ୍ଦେହ ଜାତ ନ ହେବା ତାର ଦୁର୍ବଳତା ନୁହେଁ ତ ଆଉ କଣ ?

ସୁନୀତା ମନରେ ବେଳେବେଳେ ସନ୍ଦେହ ହୁଏ - ମାମୁଁ ଓ ବୋଉ ଅନ୍ଧାରରେ କଣ ଏତେ ଚୁପ୍‌ଚାପ୍ ହେଉଛନ୍ତି । ବେଳେବେଳେ ସେମାନେ କବାଟ ବନ୍ଦ କରି ଦିଅନ୍ତି ଓ ଭିତରୁ କିଳିଣୀ । ସୁନୀତା ମନରେ ସନ୍ଦେହ ଜମାଟ ବାନ୍ଧେ– ତେବେ କଣ ଉଭୟଙ୍କ ଭିତରେ କିଛି ନିଷିଦ୍ଧ ସଂପର୍କ ଅଛି ? ଏବକୁ ମାମୁଁଙ୍କ ଆସିବାକୁ ବାପା ମଧ୍ୟ ଏତେ ସହଜ ଭାବେ ଗ୍ରହଣ କରି ପାରୁ ନାହାନ୍ତି । ବୋଉ ସହିତ ମାମୁଁଙ୍କୁ ନେଇ ଅଧିକାଂଶ ସମୟ ଝଗଡ଼ା ଲାଗୁଛି । ବୋଉ କଣ ବୁଝେଇବାକୁ ଚେଷ୍ଟା କରୁଛି– ବାପା ବୁଝିବାକୁ ପ୍ରସ୍ତୁତ



Digitized by PPRACHIN, SOA

ନୁହନ୍ତି । ମାମୁଁ କଣ ଜଣେ କାମୁକ ଲୋକ ? ସେ ବହୁପ୍ରକାର ଦ୍ରବ୍ୟ ବୋଉକୁ ଓ ଆମମାନଙ୍କୁ ଉପହାର ଦେଉଛନ୍ତି । ବେଳେବେଳେ ଖୁବ୍ ଦାମିକିଆ ଜିନିଷ ମଧ୍ୟ । ଏଇ ଯେପରି ତା' ବାର୍ଥ ଡ଼େରେ ସେ ପ୍ରାୟ ଏକ ହଜାର ଟଙ୍କା ମୂଲ୍ୟର ଘଣ୍ଟାଟିଏ ଉପହାର ଦେଇଥିଲେ । ବୋଉକୁ ଦେଇଥିଲେ ତା ବିବାହ ତିଥିରେ ଦାମୀ ଶାଢ଼ୀଟିଏ । ସାନ ଭାଇକୁ ନାନାଦି ଛୋଟ ବଡ଼ ଜିନିଷ ମାମୁଁ ଦିଅନ୍ତି । ସେ ତାଙ୍କ ରୋଜଗାର ଏମିତି ଉଡ଼େଇ ଦେଉଥିବାରୁ ମାଇଁ ତାଙ୍କ ଉପରେ ଅସନ୍ତୁଷ୍ଟ ହେଉଥିବେ । ସୁନୀତା ମନରେ ଭାବନାର ବଉଦ ଜମାଟ ବାନ୍ଧେ । ପୁଣି ବା କେବେ ମନର ଆକାଶ ହେଇଉଠେ ସ୍ୱଚ୍ଛ ଓ ସୁନ୍ଦର । ଏଠେ ଏଠେ ବଉଦ କୁଆଡ଼େ ଅକସ୍ମାତ ଭାସି ଯାଆନ୍ତି- ଆକାଶ ପୁଣି ଦେଖାଯାଏ ପୂର୍ବପରି ସୁନୀଳ ଓ ସୁନ୍ଦର । ସୁନୀତାର ମନର ଅବସ୍ଥା ଆଜିକାଲି ଏହିପରି ।

ବାପା ଥରେ ଦିଥର ମାମୁଁଙ୍କୁ ବୋଉ ସହିତ ସୋଫାରେ ଦେହଲଗ୍ନା ହୋଇ ବସିଥିବାର ଦେଖିଛନ୍ତି । କିଛି ପଚାରି ନାହାନ୍ତି ସତ, ହେଲେ ତାଙ୍କ ମନରେ ବିରକ୍ତି ଓ ଅସନ୍ତୋଷ ଯେ କ୍ରମେ ଜମାଟ ବାନ୍ଧୁଛି- ସୁନୀତା ବେଶ୍ ବାରିପାରେ । ସେତେବେଳେ ସେଥିଲା ସ୍କୁଲ ଛାତ୍ରୀ । ବର୍ତ୍ତମାନ କଲେଜର ୨ୟ ବର୍ଷର ଛାତ୍ରୀ । ତା ଭାବନାର ପରିସର କେବଳ ବିସ୍ତାରିତ ହୋଇ ନାହିଁ ତା ମନରେ କ୍ରମେ ଯୌକ୍ତିକତା ଓ ପତିମୁଖତାର ଝଡ଼ ଉଠୁଛି । ପୁଣି ମନକୁ ମନ ସେ ଝଡ଼ ହୋଇ ଯାଉଛି ଶାନ୍ତ ଓ ନୀରବ । ମାମୁଁଙ୍କ ପ୍ରତି ତା' ମନରେ ରାଗ ନ ଆସୁଛି ନୁହେଁ, କିନ୍ତୁ ବୋଉ ସହିତ ତାର ସଂପର୍କର ନିବିଡ଼ତାକୁ ସୁନୀତା ଆକଳନ କରି ପାରୁନି । ମାମୁଁ ତା' ପ୍ରତି ତାର ତେର ବର୍ଷ ବେଳେ ଯେଉଁପରି ଆଚରଣ କରୁଥିଲେ ଆଜି ବି ସେଇ ଆଚରଣର ହେଉଛି ବାରମ୍ବାର ପୁନରାବୃତ୍ତି- ତା'ଠାରୁ ଅଧିକ କିଛି ନୁହେଁ । ତେବେ ବାପା, ବୋଉ ସହିତ ତାଙ୍କର ସଂପର୍କକୁ ଦୈହିକ ବୋଲି ଭାବୁ ନାହାନ୍ତି ତ ! ମାମୁଁଙ୍କୁ ସେ ସିଧା ନ ଆସିବାକୁ କହି ଦେଇପାରନ୍ତେ । ତା' ପାରୁ ନାହାନ୍ତି କାହିଁକି ? ଅର୍ଥାତ୍ ତାଙ୍କ ସନ୍ଦେହ ଏବେବି ଆଧାରହୀନ । ବିନା ପ୍ରମାଣରେ ଜଣେ ପୋଲିସ କର୍ମଚାରୀ ଜଣେ ନିରୀହ ଲୋକକୁ ଦଣ୍ଡଦେବା ସମୀଚୀନ ନୁହେଁ ବୋଲି ବାପା ହୁଏତ ଭାବୁଥିବେ । ବାପାଙ୍କ ଅବସ୍ଥା ଠିକ୍ ଭୂଇଁରେ ପଡ଼ି ଛଟପଟ ହେଉଥିବା ମାଛଟିଏ ପରି ।

କିନ୍ତୁ ସୁନୀତା ମନରେ ବୋଉ ପ୍ରତି କ୍ରମେ ଘୃଣା ଓ ବିଦ୍ୱେଷ ବସା ବାନ୍ଧୁଥିଲା । ତାର ଇଚ୍ଛା ହେଉଥିଲା ମାମୁଁ ବୋଉର ଶୋଇବା ଘରେ ପଶିଥିବାବେଳେ ସେ କବାଟ ବାଡ଼େଇ ତାଙ୍କୁ ସିଧା ସିଧା କହି ଦିଅନ୍ତା – ଏ ଘର ଗୋପ ଗୁଆଳୀର ଘର ନୁହେଁ, ବା ତୁମେ ରସିକ କାହ୍ନୁ ନୁହଁ । ବାପା ନ ଥିଲାବେଳେ ତୁମେ ଆସ କାହିଁକି ? କଣ ତୁମର ବୋଉ ସହିତ ସଂପର୍କ ?

କିନ୍ତୁ କହିପାରେନା ସୁନୀତା । ତାର ସଂଚିତ ସାହାସ କ୍ରମେ ଘିଅ ପରି ତରଳି ଯାଏ । ସେ ପାରେ ନାହିଁ । ମାମୁଁ ଙ୍କ ହସ ହସ କଥା ଆଉ ତା ସହିତ କେତୋଟି ମୁହୂର୍ତ୍ତର ନିଷିଦ୍ଧ ସାନ୍ନିଧ ତାକୁ ଭଲ ଲାଗେ । ଆଶ୍ଚର୍ଯ୍ୟ କଥା ସେମାନେ ସୋଫାରେ ଦେହଲଗ୍ନା



Digitized by PPRACHIN, SOA

ହେଇ ବସିଥିବାବେଳେ ବୋଉ କେବେବି ଆସେନା । ସେ ତେବେ କଣ ମାମୁଁଙ୍କୁ ଜାଣିଜାଣି ଏପରି ପ୍ରଶ୍ରୟ ଦିଏ ? ସୁନୀତାର ମୁଣ୍ଡ ଗୋଳମାଳ ହୋଇଯାଏ ।

ସେଦିନ ଥିଲା ବର୍ଷୁକୀମେଘର ମୁହଁ ସଂଜ । ବାପା କୌଣସି ଫୌଜଦାରୀ କେଶ୍‌ରେ ସାକ୍ଷ ଦେବାକୁ ସହରକୁ ଯାଇଥିଲେ । ତାଙ୍କର ସେଦିନ ଫେରିବାର ନଥିଲା । ସଂଧ୍ୟା ପରେ ପରେ ମାମୁଁ ଆସିଥିଲେ ଚିରାଚରିତ ରୀତିରେ । ତାଙ୍କ ସହିତ ଦୀର୍ଘ ସମୟ ଧରି ଦେହଲଗ୍ନା ହୋଇ ସୁନୀତାକୁ ବସିବାକୁ ହୋଇଥିଲା । ସେ ସୁନୀତାକୁ ନାନା ପ୍ରଶ୍ନ ପଚାରି ଚାଲିଥିଲେ ।- ଯଥା ତାର ପରୀକ୍ଷା ଫଳାଫଳର ସମ୍ଭାବନା । ଗ୍ରାମୀଣ କବିଙ୍କ ସହିତ ସୁନୀତାର ସଂପର୍କ- ସୁନୀତାର କୌଣସି କ୍ଲାସମେଟର କୌଣସି ପ୍ରେମିକ ସହିତ ପଳାୟନର ରହସ୍ୟ- ନିଜ ବୋଉ ପ୍ରତି ସୁନୀତାର ଏବକୁ ପରିବର୍ତ୍ତିତ ଆଚରଣର କାରଣ- ଆଗ ପରି ତାଙ୍କ ପ୍ରତି ସୁନୀତାର ଆନୁଗତ୍ୟ ନଥିବାର କାରଣ- ଏହିପରି ନାନା ଅବାନ୍ତର ପ୍ରଶ୍ନ । ତାରି ମଝିରେ ସେ ବାରମ୍ବାର ଚା' ପିଉଥିଲେ ଓ ସେଠାରେ ରାତ୍ରିଭୋଜନ ପାଇଁ ମଧ୍ୟ ଥିଲା ନିମନ୍ତ୍ରଣ । ଆପାତତଃ ସେଦିନ ସୁନୀତାର ବୋଉ ମଧ୍ୟ ଥିଲେ ଏକାନ୍ତ ନିରଂକୁଶ ଓ ଭୀତିହୀନ । ମଧ୍ୟ ରାତ୍ରି ପର୍ଯ୍ୟନ୍ତ ସେମାନେ ଗପସପ ପରେ ସୁନୀତା ନିଦ୍ରା ହେତୁ ତା କକ୍ଷକୁ ଚାଲିଗଲା ପରେ ମାମୁଁ ନିଷ୍କ୍ରାନ୍ତ ହୋଇ ଯିବାର ଛଳନା କରିଥିଲେ ବି ସୁନୀତାର ମାଆଙ୍କ ସହିତ ହିଁ ରାତ୍ରିଯାପନ ପାଇଁ ସମ୍ମତି ପାଇଥିଲେ ।

ବାନାମ୍ବର ସହରରୁ ଫେରି ଆସିଥିଲେ ସେଇ ରାତ୍ରିରେ । ତାଙ୍କୁ ସୁନୀତା ହିଁ କବାଟ ଖୋଲି ଦେଇଥିଲା । ସେଦିନ ତା' ମନରେ ଥିଲା ଏଇ ଶଠ ପୁରୁଷଟି ପ୍ରତି ପ୍ରତିଶୋଧ ନେବାର ଆଗ୍ନେୟ ଆକାଙ୍‌କ୍ଷା । ଅସହାୟଭାବେ ଶୟନ କକ୍ଷରେ ତାଙ୍କୁ ଭେଟି ବାନାମ୍ବର ତିହାଡୀଙ୍କ ସମସ୍ତ କ୍ରୋଧ ପତ୍ନୀଙ୍କ ଉପରେ ହୋଇଥିଲା ପୁଞ୍ଜିଭୂତ । ଏଇ ପରିସ୍ଥିତିରେ ମାମୁଁ ଅବଶ୍ୟ ନିଷ୍କ୍ରାନ୍ତ ହୋଇଯାଇଥିଲେ । ବାନାମ୍ବର ତାଙ୍କ ଶୟନକକ୍ଷରେ ପତ୍ନୀଙ୍କ ବେକଚିପି ମାରିବା ବେଳେ ସୁନୀତା ଅସହାୟ ଭାବେ ଆକୁତି କରିଚାଲିଥିଲା- ତାର ସମସ୍ତ ଅଶ୍ରୁ ଓ ଆକୁତି ବାପାଙ୍କ ପ୍ରଚଣ୍ଡ କ୍ରୋଧକୁ ସମ୍ଭାଳିବାରେ ସମ୍ଭବତଃ ହୋଇଥିଲା ଅସମର୍ଥ । କିନ୍ତୁ ସେହିଁ ଥିଲା ଏହି ହତ୍ୟାର ପ୍ରଥମ ସାକ୍ଷୀ । ତା'ପରେ ପରେ ବାନାମ୍ବରଙ୍କ ହାତର କ୍ରୁଦ୍ଧ ପନ୍‌ଝା ସୁନୀତାର ବେକ ଉପରେ ଜାବ ବସେଇ ଦେଲାବେଳେ ତାଙ୍କ ଗୋଡ଼ଧରି ଅସହାୟ ଭାବେ ନାନୀକୁ ଛାଡ଼ି ଦେବାକୁ ପନ୍ଦର ବର୍ଷର ପୁଅ ବିକଳ ଆର୍ତ୍ତନାଦ କରୁଥିଲା । ଘାତକ ହାତରେ ଅସହାୟ କୁକୁଡ଼ାଟିଏର ବେକ ମୋଡ଼ି ହେଇଗଲା ପରି ସୁନୀତାର ମୋଡ଼ାବେକ ଓ ନିଷ୍ପ୍ରାଣଶରୀର ଚଟାଣ ଉପରେ ସେତେବେଳକୁ ଲୋଟି ସାରିଥିଲା । ତା'ପରେ ବାନାମ୍ବରଙ୍କ ଆଖି ପଡ଼ିଲା ଏଇ ପନ୍ଦର ବର୍ଷର ଅସହାୟ ପୁଅଟି ଉପରେ । ଘଟି ଚାଲିଥିବା ଅଘଟଣର ସେହିଁ ବର୍ତ୍ତମାନ ଏକମାତ୍ର ଦ୍ରଷ୍ଟା । ପୋଲିସ ବିଭାଗରେ ଚାକିରୀ କରୁଥିବା ବାନାମ୍ବର ତିହାଡ଼ୀ ତାଙ୍କ ପାପର ଶେଷ ସାକ୍ଷୀଟିକୁ ମଧ୍ୟ ସେଇ ବିଭୀଷିକାମୟ ଅନ୍ଧକାର ଭିତରେ ସେଇ ସମାନ ପଦ୍ଧତିରେ ଖତମ୍ କରି ଦେଇଥିଲେ । ଏ ଶୀତଳମୃତ୍ୟୁର ଆଉ କେହି ସାକ୍ଷୀ ନଥିଲେ । ଟୋପେ ରକ୍ତର ଛିଟା



Digitized by PPRACHIN, SOA

କେଉଁଠି ଲାଗିବାର ସମ୍ଭାବନା ମଧ୍ୟ ନଥିଲା । ତା'ପରେ ତାଙ୍କ ପୈଶାଚିକ ମାନସରେ ଜାଗି ଉଠିଥିଲା ଏମାନଙ୍କ ଆତ୍ମହତ୍ୟାର ସମ୍ଭାବନା । ଗୋଟିକପରେ ଗୋଟିଏ ତିନୋଟି ଶବକୁ ସେ ଦଉଡ଼ି ସାହାଯ୍ୟରେ ଛାତ ପଙ୍ଖାରୁ ଲଟକାଇ ଦେବାକୁ ବେଶ୍ କିଛି ଶ୍ରମ କରିଥିଲେ ଓ ତା'ପରେ ଥାନା ଅଫିସକୁ ନିଷ୍କ୍ରାନ୍ତ ହୋଇ ଯାଇଥିଲେ ସେଇ ରାତ୍ରିର ନିସ୍ତବ୍ଧ ପ୍ରହରରେ ।

ସକାଳୁ ଫୁଲବଗିଚାର ଫୁଟିଲା ଫୁଲମାନେ ଖୋଜୁଥିଲେ ସୁନୀତା ହାତର ସ୍ପର୍ଶ । ସେମାନେ ସବୁ ଦିନପରି ଆଜି ଦୋଳାୟିତ ନଥିଲେ । ସକାଳ ଥିଲା ନିଷ୍ପନ୍ଦ ଓ ନିର୍ବିକଳ୍ପ । ଫୁଲବଗିଚା ବୋଧହୁଏ ପ୍ରଥମ ଥର ପାଇଁ ସୁନୀତାର କୋମଳ ହାତରୁ ସେଦିନ ପାଣି ପାଇ ନଥିଲା । ବଗିଚାର ଅନତିଦୂରରେ ସବୁଦିନ ପରି ସୁନୀତାକୁ ଦେଖିବାପାଇଁ ଗ୍ରାମୀଣ କବି ଜଣକ ଠିଆ ହୋଇ ରହିଥିଲେ । ସୁନୀତା କିନ୍ତୁ ଆସୁ ନଥିଲା । କେବେ ପପିୟାଟିଏ ନିଜ ଦେହକୁ ଗୋଲାପର କଣ୍ଟାରେ ବିଦ୍ଧ କରି ତାର ରକ୍ତରେ ଫୁଟାଇ ପାରିଥିଲା ସୁନ୍ଦରତମ ଲାଲ ଗୋଲାପ ପରି ଫୁଲଟିଏ । ପ୍ରଜାପତିଟିଏ, ଭ୍ରମରଟିଏ ଓ ମହୁମାଛି କେତୋଟି ସେଦିନ ଫୁଲବଗିଚାରେ ନିଜ ନିଜ ମନର ଉଚ୍ଛ୍ୱଳା ଦରଦରେ ଫୁଲଗୁଡ଼ିକୁ ଫୁଟାଇବାକୁ ଯେତେ ଯତ୍ନକରୁଥିଲେ ବି ସେମାନେ ନିଜନିଜର ପାଖୁଡ଼ାଗୁଡ଼ିକୁ ମୁଦି ଦେଉଥିଲେ । ସବୁସୁନ୍ଦର ଓ ସୁକୁମାର ଯେପରି ପୃଥିବୀରୁ ହଠାତ୍ ଲୋପ ପାଇ ଯାଉଥିଲା । ସମଗ୍ର ପ୍ରାତଃକାଳକୁ ଏକ ଅସହ୍ୟ ଶୀତଳତା ଆବୋରି ବସିଥିଲା ଓ ତାର ଉଲଗ୍ନ ଉପହାସରେ ସୁନୀତାର ଫୁଲବଗିଚା ହୋଇ ଉଠୁଥିଲା ନଷ୍ଟଭ୍ରଷ୍ଟ ।





Digitized by PPRACHIN, SOA

# ଅବଶିଷ୍ଟ ଅବଶୋଷ

କଟକରୁ କେନ୍ଦ୍ରାପଡ଼ା ଆଡକୁ ବସ୍‌ରେ ଗଲାବେଳେ ବହୁଗ୍ରାମ ବସ୍‌ଷ୍ଟପ୍‌ରେ ସୌରେନ୍ଦ୍ରକୁ ଖିଲିପାନ ବିକୁଥିବାର ଆପଣ ହୁଏତ ଦେଖିଥିବେ । ଛୋଟ ଭଂଗା ଟିଣ ବାକ୍ସଟିରେ କେତୋଟି ଖୋଳ ନ ଥିବା ପୁରୁଣା ଡବା ତାର ସମ୍ବଳ । କେଉଁ ଡବା ଭିତରେ ଭଂଗା ଗୁଆ କିଛି ତ କେଉଁ ଡବାରେ ହାସିମ୍‌ମିଆଁ କଡାଗୁଣ୍ଡିରୁ ପୁଞ୍ଜିଏ ପଡ଼ିଥାଏ । ସୁବାସିତ ଖିଲିପାନ ବିକିବାର ବ୍ୟାବହାରିକ ବିଜ୍ଞାପନ ପାଇଁ ମୋହିନୀ ଜରଦାର ପୁରୁଣା ଶିଶି ଗୋଟିଏ ଦିଟି ଆଉ ଶସ୍ତା ରଙ୍ଗବେରଙ୍ଗ ଡବାରେ କିଛି ମସଲା ବି ତା ପାଖରେ ଥାଏ । ହେଲେ ମଫସଲ ଲୋକଙ୍କ ପାଖରେ ଏସବୁର ଚାହିଦା ନଥାଏ; ଖାଲି କଡ଼ା ଧୂଳିଗୁଣ୍ଡି ହେଲେ ଚଳିଲା ।

ସୌରେନ୍ଦ୍ର ଅନ୍ଧ । ସୁନ୍ଦର ନାମଟିଏ ହୁଏତ କେହି ଆତ୍ମୀୟ ସ୍ୱଜନ ତାକୁ ଦେଇ ଥିଲେ- ଯଦିଓ ସେ ସୁରଲୋକର ଇନ୍ଦ୍ର ନଥିଲା; ଥିଲା ମର୍ତ୍ତ୍ୟର ବ୍ୟାଧିଗ୍ରସ୍ତ ମଣିଷଟିଏ । ଆଖି ହରେଇ ନିଜ ନାମର ଅର୍ଥଭରା ଆଭିଜାତ୍ୟକୁ ସେ ବହୁଦିନରୁ ଭୁଲି ବସିଚି । ତା ଛାତିର ଦକ୍ଷିଣ ଭାଗରେ ଥିବା ବିସ୍ତାରିତ କଳାଜାଇକୁ ଦେଖି ସେଦିନ ବହୁଲୋକ ତାକୁ ଏକ ପ୍ରକାର ସୂଚନା ଦେଇଥିଲେ ବଡ଼ ହେଲେ ସେ ଖୁବ୍ ଧନୀ ହେବ । ବ୍ୟାଧିଗ୍ରସ୍ତ ଅନ୍ଧ ସୌରେନ୍ଦ୍ରକୁ ଅଦୃଷ୍ଟର ଅନ୍ଧାରୀନିଶା ବେଳେବେଳେ ଚହଲେଇ ଦିଏ । ତାକୁ କରେ କର୍ମଚପଳ । ହଠାତ୍ ବଡ଼ଲୋକ ହେବାର ମୁଲାୟମ ସ୍ୱପ୍ନ ମାଟିରେ କ୍ରମେ ମିଳେଇ ଯାଉଥିଲେ ବି ତା ଭିତରେ ନୂଆଗଛର ଉଷୁମ ଆଗ୍ରହ ଗଜାଧରେ । ବୋଧହୁଏ ସେଇଥି ପାଇଁ ସେ ଭିକ ନ ମାଗି ଛୋଟ ଉଠାଦୋକାନଟିଏ ବସେଇଚି । ଲୋକେ କହନ୍ତି ସୌରେନ୍ଦ୍ରର ଆତ୍ମସମ୍ମାନ ଜ୍ଞାନ ଢେର ବେଶୀ । ବିନା ଆମନ୍ତ୍ରଣରେ ସେ କାହା ଦ୍ୱାରରେ ପତ୍ର ପକାଏନି । ତାର ସେଇ ଛୋଟ ଉଠା ଦୋକାନଟି ଏକମାତ୍ର ସମ୍ବଳ । ସେଇ ଦୋକାନ, ସେଇଟି ଅନ୍ଧ ସୌରେନ୍ଦ୍ର ପାଇଁ ଉଜ୍ଜଳ ଭବିଷ୍ୟତର ପ୍ରତ୍ୟାଶା । ସୌରେନ୍ଦ୍ର ବେଳେବେଳେ ଆନନ୍ଦରେ ଅଧିର ହୋଇ ଉଠେ । ତାକୁ କେମିତି କେମିତି ଲାଗେ ତା ଭିତରେ ଅପ୍ରକାଶ୍ୟ ଏକ ବିଚିତ୍ର ଅନୁଭୂତି ଡାଳ ମେଲୁଚି । ସୌରେନ୍ଦ୍ର ନିରାଶ ନ ହୋଇ ସ୍ୱପ୍ନର ମିନାର ଗଢେ ।

ସରକାରୀ ବସ୍‌ଷ୍ଟାଣ୍ଡକୁ ଲାଗି ତାର ଉଠା ଖିଲିପାନ ଦୋକାନ । ଗରାଖ ନ ଥିଲାବେଳେ ବସଷ୍ଟାଣ୍ଡର କାନ୍ଥକୁ ଆଉଜି ଦୁଇ ହାତକୁ ଆଣ୍ଠୁରେ ଛନ୍ଦି ସେ ଢୁଳାଏ । ମେଲାବାକ୍ସ ଭିତରେ ପାନଗୁଆ ଖଇର ଆଦିର ସାଇତା ଡବାସବୁ ସେତେବେଳେ ନିଦ



Digitized by PPRACHIN, SOA

ଯା'ନ୍ତି । ବସ୍ ଆସିଲେ ଶବ୍ଦବାରି ସୌରେନ୍ଦ୍ର ହଠାତ୍ ଉଠିପଡ଼େ- କାଳେ କିଏ ପାନ ଖଣ୍ଡେ ଦି'ଖଣ୍ଡ ନେବାକୁ ଆସିଯିବ । ସେଇମାନେ ତ ତାର ପୋଷଣାହାରୀ । ତାଙ୍କୁ ସେ କ'ଣ ଅବହେଳା କରିପାରିବ ? ଦୁରନ୍ତ ଆଗ୍ରହରେ ସେ ଗରାଖଙ୍କୁ ଅପେକ୍ଷା କରେ । ବସ୍ ଯାଏ । ସୌରେନ୍ଦ୍ର ମନର ତାତିଲା ଆଶା ଶୀତଳ ହୁଏ । ପାଖ ସୁଦୃଶ୍ୟ ପାନ ଦୋକାନରେ ରେଡ଼ିଓର କଳତାନ- ଗରାଖଙ୍କୁ ସେ ଆକର୍ଷଣ କରି ନିଏ । ଗରାଖ ଭୁଲନ୍ତି । ସୌରେନ୍ଦ୍ର ପୁଣି ଆଣ୍ଠୁରେ ହାତ ଛନ୍ଦି ଢୁଳେଇବାକୁ ଉଦ୍ୟମ କରେ ।

୨୦୦୬ ମସିହା ଅଗଷ୍ଟ ମାସ ପନ୍ଦର ତାରିଖ । ଇତିହାସର ଏଇ ନାଲି ତାରିଖ ସୌରେନ୍ଦ୍ର ମନ ଓ ପ୍ରାଣରେ ସେଦିନ ସ୍ପନ୍ଦନ ଆଣିଥିଲା । ଉଠା ଖିଲିପାନ ଦୋକାନକୁ ଫୁଲ ଆଉ ପତ୍ରରେ ସଜେଇ ସେ ବି ତା ଛୋଟ ସଂସାରରେ ଜାତୀୟ ଦିବସକୁ ସମ୍ମାନ ଦେଇଥିଲା । ଦଳଦଳ ଲୋକେ ସହରକୁ ଯାଉଥିଲେ । ସମସ୍ତଙ୍କ ମନରେ ଏ ଦିନର ତାତ୍ପର୍ଯ୍ୟ ପାଇଁ ନୁହେଁ ସାଙ୍ଗମେଳରେ ମଉଜ ମସ୍ତି କରିବା ପାଇଁ ଏକପ୍ରକାର କଳରୋଳ । ସହରରେ କେତେ ପ୍ରକାର ମେଢର ଶୋଭାଯାତ୍ରା ଓ ମିଲିଟାରୀ ପ୍ୟାରେଡ଼ ହେବ । ଶହ ଶହ ଛାତ୍ରଛାତ୍ରୀ ଏକାପ୍ରକାର ପୋଷାକ ପିନ୍ଧି ମୁଖ୍ୟମନ୍ତ୍ରୀଙ୍କୁ ସାଲ୍ୟୁଟ୍ ଦେବେ । ସହର ଆଡକୁ ଉତ୍ସୁକ ଜନତାର ଭିଡ଼ କ୍ରମେ ଆଗେଇ ଚାଲିଥାଏ । ସୌରେନ୍ଦ୍ର ଯାହା କେବଳ ଠଉରାଉଥାଏ । ବୁଝୁଥାଏ ଜନତାର ଆନନ୍ଦ ଓ ଉଦ୍‌ବେଗ । ଜାତୀୟ ଦିବସର ଅର୍ଥ ନ ବୁଝି ଏତେ ଲୋକ ଧାଇଁଛନ୍ତି ସହରକୁ । ସେଠି ଗୋଟିଏ ଜାତିର ଆଟୋପ ଓ ଛଳନା ଦେଖି ଫେରିବେ । ସ୍ୱାଧୀନତାର ଆସ୍ୱର୍ଦ୍ଧାତଳେ ଗୋଟାଏ ଦେଶ ଯେ ଦୁର୍ନୀତିରେ କ୍ରମେ ତଳକୁ ତଳ ଭୁଷୁଡ଼ି ଯିବାରେ ଲାଗିଛି ସେସବୁ ସେମାନେ ଆକଳନ କରି ପାରିବେନି । ପ୍ରଜ୍ଞାପନ ମେଢର ଚାକଚକ୍ୟ କେବଳ ମିଛ ପ୍ରତିଶ୍ରୁତିର ଛଳନା- ଏକଥା ବୁଝି ପାରିବେନି । ମଉଜ କରିବେ । ଆଳୁଦମ୍ ଦହିବରା ଖାଇବେ । ଗୁପ୍‌ଚୁପ୍ ଓ ଚାଟ୍ ଖାଇବେ । ବେଳହେଲେ ସିନେମା ଦେଖିବେ- ତା'ପରେ ନିଜ ନିଜ ଗାଁକୁ ଫେରିବେ । ସହର ତଳି ଅଞ୍ଚଳର ଏଇ ଲୋକମାନେହିଁ ପ୍ୟାରେଡ୍ ପଡ଼ିଆରେ ଭିଡ଼ ଜମାନ୍ତି । ସହରର ଲୋକେ ଏତେ ସଂଖ୍ୟାରେ ଏ ଦୃଶ୍ୟ ଦେଖିବାକୁ ପ୍ରାୟ ଯାଆନ୍ତିନି- ସେମାନଙ୍କ ପାଇଁ ଏସବୁ ଘଷରା ଦୃଶ୍ୟର ବିଶେଷ ତାତ୍ପର୍ଯ୍ୟ ନଥାଏ । ଜନପଦରୁ ଆସିଥିବା ଏ ଲୋକମାନେ ଏବେ ଆଉ ବୃତ୍ତି ପ୍ରତି ଏତେ ଆସକ୍ତ ନୁହନ୍ତି । ବି.ପିଏଲ୍ ଚାଉଳ ତାଙ୍କୁ କ୍ରମେ କର୍ମବିମୁଖ କରି ଦେଇଛି । ସାମାନ୍ୟ କିଛି ସଂଚୟକୁ ଧରି ମଉଜ ମଜଲିସ୍‌କୁ ସେମାନେ ଏବକୁ ହାତଛଡ଼ା କରୁନାହାନ୍ତି ।

ସୌରେନ୍ଦ୍ର ପାନଖିଲ ମୋଡୁ ମୋଡୁ କାହାକୁ କାହାକୁ ସୁବିଧା ଦେଖି ଏଣୁ ତେଣୁ ଦି'ପଦ ପଚାରି ଦଉଚି । ତା'ପରି ଅବାଞ୍ଛିତ ଲୋକଟା ପାଇଁ କେହି ସହୃଦୟ ବ୍ୟକ୍ତି ଦି'ପଦ ଉତ୍ତର ଫୋପାଡ଼ି ଜନମେଳରେ କ୍ରମେ ମିଶିଯାଉଛନ୍ତି । ସୌରେନ୍ଦ୍ର ମୁରୁକି ମୁରୁକି ହସୁଚି । ଖାଲି ଅନୁଭବ କରୁଚି ତୋକେ ପିଇ ଦଣ୍ଡେ ଜୀଇ ରହୁଥିବା ଏଇ ଅପାଙ୍‌କ୍ତେୟ ମଣିଷ । ସେଇମାନଙ୍କ ମନରେ ଅଗଷ୍ଟ ପନ୍ଦରର ଛୁଇଁଲା ନିଶା । ବୁଝନ୍ତୁ ନ ବୁଝନ୍ତୁ ତଥାପି



Digitized by PPRACHIN, SOA

ସେମାନଙ୍କର ଆମୋଦ ପାଇଁ ମନ ଅଛି ଯାହା ଶିକ୍ଷିତ ବଡ଼ଲୋକଙ୍କ ଭିତରେ ଆଜିକାଲି ଦୁର୍ଲଭ ।

ସୌରେନ୍ଦ୍ର ପଚାରିଲା -"କିଏ ମଣିଭାଇ କି । କଟକରେ କଣ ସୁନାରୂପା ବଣ୍ଟା ହେଉଚିକି ? ଶାଗୁଣା ମଢପାଖକୁ ଧାଇଁଲା ପରି ଏମାନେ ଏତେ ସଂଖ୍ୟାରେ ଧାଇଁଚନ୍ତି କାହିଁକି ?"

ମଣିସାହୁ ଟିକେ ବିରକ୍ତ ହେଲେ । ସଉରା ଅନ୍ଧ କେତେ ବାଗରେ ଆଜିକାଲି କଥା କହୁଚି, ମନ୍ତବ୍ୟବି ଦେଉଚି- ଏକଥା ବୋଧହୁଏ ତା ପସନ୍ଦକୁ ଆସିଲାନି । ଦିକ୍‌ଦାର ସ୍ୱରରେ କହିଲା- "କିରେ ସଉରା, ପାଖରେ ମାଲପାଣି କିଛି ହେଲାଣିକି ? କିରେ ଆଜି ପରା ଜାତୀୟ ଦିବସ । କହୁଚୁ କଣ ନା ଶାଗୁଣା ।"

ସୌରେନ୍ଦ୍ର ଚତୁରତାର ସହିତ କହିଲା-" ମଣିଭାଇ, ତୁମେ ଘରକୁ ଫେରିଯାଅ । ଏ ପରା ଦିନେ ମୋର ପଦେ କଥା ତ ସହିପାରୁନା । ଏ ସରକାରତ କଥା କହିବାକୁ ମନା କରିନି । ଅଧିକାର ବି ଦେଇଚି । ମୁଁ ଯେମିତି ବୁଝିଚି ସେମିତି ଅରଥେଇଲି । ତୁମେ ଯାଅ, ହେଇ ଆଉ ଖଣ୍ଡେ ପାନ ନିଅ । ମନେ କରୁଥିବ ।"

ପୁଣି ଦଳେ ନୂଆ ଯାତ୍ରୀ- ସହର ଅଭିମୁଖୀ । ସୌରେନ୍ଦ୍ର ପାନ ଉପରେ କୋଡ଼ିଏ ବର୍ଷର ଅଭ୍ୟାସସୁଲଭ ହାତ ଚଳଉ ଚଳଉ କହିଲା -"କିଏ ଗୋବରାନା ! ଆଜି କଣ ମୂଲ ମିଳିଲାନି କି ? ସରକାର କ'ଣ ଦଉଚି ଅଗଷ୍ଟ ପନ୍ଦରରେ କାମ ନ କରି ସହରକୁ ଧାଇଁଚ । କିଓ ଏଇଠି ଜାତୀୟଦିବସ ପାଳନ କରୁନା ।"

ଗୋବର୍ଦ୍ଧନ କଥାଟା ବୁଝିଲେ । ସତେତ ସଉରା ନାକରା କଥା କହୁନାହିଁ । ଅନ୍ଧ ହ୍ୟାଲ୍‌ପ ଏ ପରା ଦିନେ ପାନ ଭାଂଗୁଚି- ସେଇ ପଇସା ପାଇଁତ । ଆଉ ଆମେ ନାଲିଆ ଗାମୁଛା କାନ୍ଧରେ ପକାଇ ଗତକାଲିର ମଜୁରୀ .ବାବଦ ଖର୍ଚ୍ଚରୁ ବଳିଥିବା ପାଞ୍ଚଟଙ୍କା ଧରି ବାହାରିଚୁ ମେଡ଼ଦେଖି । ହେଲେ ଏ ସଉରାଟା ଯଖଟାଏ । ବେଶ୍ କିଛି ସଂଚୟ କଲାଣି । ଅଗଷ୍ଟ ପନ୍ଦର ବି ମାନୁନି, ପାନବାକ୍‌ସ ମେଲେଇ ବସିଚି ।" ଗୋବର୍ଦ୍ଧନ ଆଗେଇଲେ ।

ସୌରେନ୍ଦ୍ର ପ୍ରତୀକ୍ଷା କଲା । ପୁଣି ଆସିଲେ ଦଳେ ସହରାଭିମୁଖୀ ଆଗନ୍ତୁକ । ସେମାନଙ୍କ କଥାବାର୍ତ୍ତାରେ ଅଗଷ୍ଟ ପନ୍ଦରର ହାଓ୍ୱା ଛୁଟୁଥାଏ । ସତ୍ୟଯୁଗର ଧର୍ମବକ ପରି ସୌରେନ୍ଦ୍ର ପାଣୁମାଝିର ପାଟି ଠଉରେଇ ଡାକ ଛାଡ଼ିଲା-"କିରେ ପାଣୁଭାଇ, କ'ଣ ଭଲ ହୋଇ ଗଲୁଣିକି ? ଅମୁହାଁ କୁଆଡ଼େ ଧାଇଁଚୁ- କଟକ କିରେ ?"

"ଯାଉଚି ସରକାରଙ୍କୁ ମୋ ଅବସ୍ଥା ଜଣେଇବି । କଣ୍ଟା ତ ରହିଲିଣି । ଓଷଦ ନାହିଁ । ଖାଇବାକୁ ନାହିଁ । ଆଜି କୁଆଡ଼େ ସରକାର କଥା ଶୁଣନ୍ତି । ସରକାରଙ୍କୁ ମୋ ଅବସ୍ଥା ଜଣେଇବି । ସେ ତ କାରଖାନା ଯାଗାକୁ ଆସିବେ ।.ମୁଁ ହାତଯୋଡ଼ି ମୋ ଦୁଃଖ ଜଣେଇବି । ସେ ତ ମାଆ ବାପ । ରଖିଲେ ରଖିବେ, ମାରିଲେ ମାରିବେ । ତାଙ୍କ ଇଚ୍ଛା ।" ଆଶାର ଠେଲାରେ ଥଙ୍ଗେଇ ଥଙ୍ଗେଇ ପାଣୁମାଝି ତା' ମନକଥା କହିଗଲା ।



Digitized by PPRACHIN, SOA

ସୌରେନ୍ଦ୍ର କହିଲା, "ଭଲ ଗତି ଅଛି ଯେବେ ଘରକୁ ଫେରିଯା । ସହରରେ ମଲେ ଅକାରଣ ତୋ ମଢ଼ ମେହେନ୍ତର ନେଇ ନଈଦାଢ଼ରେ ପକେଇ ଦେଇ ଆସିବ । କୁଆ ଶାଗୁଣା ବେଢ଼ିଯିବେ । ଏଠି ତ ହେଲେ ତୁ ଜନ୍ମ ହେଇଚୁ । ଏଠିକା ବିଲୁଆ କୁକୁର ତୋ ଚିହ୍ନା ପରିଚିତ । କିରେ, ସରକାର କଣ ଜଣେ ଲୋକ ହୋଇଚି ଯେ ଆଜିର ଭିଡ଼ ଭିତରେ ତୋ କଥା ଶୁଣିବାକୁ ଚାହିଁ ବିସିଥିବେ । ସେ ଥିବେ ମଂଚ ଉପରେ ଆଉ ତୁ କାହିଁ କେତେ ଦୂରରେ ଠିଆ ହୋଇଥିବୁ । ତୁମ ମଝିରେ ଥିବେ ଶହ ଶହ ପଲଟନ । ସେମାନେ ପାଦେବି ଆଗେଇବାକୁ ଦେବେନି । ଲାଠି ଭୂଷା ଦେଇ ତୋତେ ଠେଲି ନେବେ । ତୁ ମନ୍ତ୍ରୀଙ୍କୁ ଦେଖା କରିବାର ସୁଯୋଗ ଆଜି ଜମାରୁ ପାଇବୁନି ।"

ପାଣୁମାଝି କଣ ବୁଝିଲା କଣ ନାହିଁ ତଥାପି ଆଗେଇଲା । ସୌରେନ୍ଦ୍ର ଦୀର୍ଘଶ୍ୱାସ ନିକ୍ଷେପ କଲା । ସରଳ ମଣିଷର ଏଇ ବିଶ୍ୱାସଟିକହିଁ ତା ଜୀବନସଂଗ୍ରାମର ଦୂରନ୍ତ ଜୀବନିକା- ଏମିତି କିଛି ଭାବନାରେ ସେ ବୁଡ଼ିଗଲା ।

ଆସିଲେ ରାମ ଗୋଛେଇତ, ହରିକାଣ୍ଡି, ବିଭୂତି ମିଶ୍ରେ- ତାଙ୍କ ପଛେ ପଛେ ଚଂପା ଗୋଡ଼େଇଥାଏ । ଗତ ଆଠବର୍ଷର ଆଭ୍ୟାସିକ ଅତ୍ୟାଚାର ଭିତରେ ଥିଲାବାଲା ମଣିଷମାନଙ୍କ ପ୍ରବୃତ୍ତିର ଦୌରାତ୍ମ୍ୟକୁ ଚଂପା ପ୍ରକାଶ୍ୟରେ ଉପହାସ କରି ଆସିଚି । ତା'ର ଅଭିଶାପ କିନ୍ତୁ ବଳବତ୍ତର ରହିଚି ଏଇ ତିନିଜଣ ମଣିଷଙ୍କ ଉପରେ ଯେଉଁମାନେ ତାକୁ ଶିଖେଇ, ଖାଇବାକୁ ଦେଇ ତା'ର ଦେହକୁ ଉପଭୋଗ କରିଚନ୍ତି ଆଉ ନିଷ୍ଠୁର ଭାବରେ ଫିଙ୍ଗି ଦେଇଛନ୍ତି ରାଜରାସ୍ତା ଉପରକୁ । ସେଠି ତାର ପରିଚୟ- ଚଂପା ବାଇଆଣୀ । ବିଭୂତି ମିଶ୍ରଙ୍କ ପ୍ରତିପତ୍ତି ଏ ଅସହାୟ ନାରୀଟିର ଆତ୍ମପରିଚିତିକୁ ତିମିରିତ କରି ତା ଉପରେ ପାଗଳୀର ମୋହର ବାଡ଼େଇ ଦେଇଚି ସମୟ କ୍ରମେ ।

ସୌରେନ୍ଦ୍ର ଖଣ୍ଡିକାଶ ମାରିଲା ଓ କହିଲା- "ପାନନିଅ ମିଶ୍ର ଆପଣେ ।" ସୌରେନ୍ଦ୍ରର କଥାରେ ବିଦ୍ରୂପର ଅଣନିଶ୍ୱାସ ଝଡ଼, ଯୁଦ୍ଧର ଡାକରା । ସମାଜ ଯେଉଁଠି ଭୟରେ ସଂକୁଚିତ ହୁଏ ସୌରେନ୍ଦ୍ର ସେଇଠି ବୁଝେ କଥା କହିବାର ରହସ୍ୟ । ନଗାପଘା ନଥିବା ଅନ୍ଧର ବେଖାତିର ମନ୍ତବ୍ୟକୁ ସହି ନପାରି ମୁରବୀ ସ୍ଥାନୀୟ ବ୍ୟକ୍ତିମାନେ ହସରେ ଉଡ଼ାଇ ଦିଅନ୍ତି । ସୌରେନ୍ଦ୍ର ନୀରବ ହୁଏ ।

"କିରେ ସଉରା, ଆଜି ସ୍ୱାଧୀନତା ଦିବସ । ଅନ୍ଧବୋଲି କଣ ଦିନରାତିକୁ ସମାନ ମଣୁଚୁ । ଆଜି ଦିନଟିକୁ ସେହିପରି ସାଧାରଣ ଦିନଟିଏ ପରି ଭାବୁଚୁ ନୁହେଁ । କିରେ କଟକ ଯିବୁ ତ ଆ । ଜାତୀୟ ଦିବସ ପାଳନ କର । ବିକ୍ରୀବଟା ଆଜି ବନ୍ଦ କର ।"

ସଉରା କହିଲା – "କଟକରେ ଆଉ ଅଧିକ କ'ଣ ମିଳିବ ? ଏଇ ବାକ୍ସଟି ହିଁ ମୋର ସ୍ୱାଧୀନତା । ସ୍ୱାଧୀନତା କହିଲେ ମୁଁ ବୁଝେ ସତ୍ ଉପାୟରେ ରୋଜଗାରର ସ୍ୱାଧୀନତା । ସେଠି ମନ୍ତ୍ରୀ ଭାଷଣ ଦେବେ । ଆଚ୍ଛା ମୋ କଥାଠାରୁ ସେ ଅଧିକା କଣ କହିବେ ମତେ ଆସି ତୁମେ କହିଯିବ ?"

ବିଭୂତିମିଶ୍ର ରାଗିଗଲେ । କହିଲେ-"ଅନ୍ଧ ହ୍ୟାଲ୍‌ପ । ତୋ' ଆଖିକୁ ମଣିଷ ତ



Digitized by PPRACHIN, SOA

ଦେଖାଯାଉନାହାନ୍ତି । ତୁ କଣ ଭାବୁଚୁ ଦୁନିଆଯାକ ସବୁଠାରେ କେବଳ ଅନ୍ଧାର ।" ବିଭୂତି ମିଶ୍ର ଆଗେଇଲେ ।

ସୌରେନ୍ଦ୍ର ଚିନ୍ତିତ ହେଲା । ବିଭୂତି ମିଶ୍ରେ କଥା କଥାକେ ଯୋଡୁଥିବା ଉତ୍ତାପହୀନ ସଂବନ୍ଧ ଭିତରେ ସେ ଦେଖିଲା. ସେମାନଙ୍କ ଅସ୍ଥି ମଜ୍ଜାରେ ପୂରିରହିଚି ବେଖାତିରଭାବ । ମଣିଷ ପ୍ରତି ମଣିଷର ଆଦର ନାହିଁ, ମମତା ନାହିଁ । ସମ୍ବଳ ନ ଥିଲା ଦରିଦ୍ର ଉପରେ ଏ ଦେଶରେ ଏବେବି ଥିଲାବାଲାଙ୍କର ଅକଥନୀୟ ଅତ୍ୟାଚାର ଲାଗିରହିଛି । କାଲି ବ୍ରିଟିଶ ରାଜା ଯାଇଛି ସିନା ହେଲେ ଦରିଦ୍ରକୁ ଶୋଷିବାର ନିଶା ଏ ଦେଶର ମଣିଷମାନଙ୍କ ରକ୍ତରୁ ଏବେବି ନିଭିନାହିଁ । ସହସ୍ର ଚଂପା କାନ୍ଦିକାନ୍ଦି ମୁଣ୍ଡ ବାଡ଼େଇ ଦେଲେ ବି ତା' ଦୁଃଖରେ ଆହା କହିବାକୁ ଭଲ ମଣିଷଟିଏ ଆଗେଇ ଆସିବନି । ଆଗରେ ସମାଜର ବଡ଼ ପଣ୍ଡା, ଦଣ୍ଡଧର । ତା' ହାତରେ ପ୍ରତାପୀ ମୂଷଳ ଠେଙ୍ଗା । ସେଠି ନିଃସ୍ୱ ସମ୍ବଳହୀନ ମଣିଷମାନେ ଶୃଗାଳ ପରି ଲାଙ୍ଗୁଳ ଜାକି ଆପେ ସଂକୁଚିତ ହେବାକୁ ବାଧ୍ୟ ।

ଅଚାନକ ଭାବେ ୧୯୪୨ ଅଗଷ୍ଟର ସ୍ମୃତି ସୌରେନ୍ଦ୍ରକୁ ଦୋହଲେଇ ଦେଲା । ଆତ୍ମସଂଗୋପନର ପରୀକ୍ଷାରେ ସଫଳକାମୀ ସୌରେନ୍ଦ୍ର ମନରେ ମଣିଷର ଅପବ୍ୟବହାର ବେଳେବେଳେ ଏମିତି ହଜିଲା ଅତୀତକୁ ଆକସ୍ମିକ ଭାବେ ତା' ଆଗରେ ଠିଆ କରେ । ମନରେ ମହାତ୍ମାଗାନ୍ଧିଙ୍କ ବାର୍ତ୍ତା, ପଛରେ ଅହିଂସ ସତ୍ୟାଗ୍ରହୀର ବେପରୁଆ ଆତ୍ମୋଚ୍ଛ୍ୱାସ । ଭାରତ ଛାଡ଼ର ନିର୍ଭୀକଧ୍ୱନି ବାୟୁର ହିଲ୍ଲୋଳରେ ତୋଳୁଛି ପ୍ରତିଧ୍ୱନି । ଜନଜୁଆରରେ ଯୁବନେତା ସୌରେନ୍ଦ୍ର ଆଗେଇ ଚାଲିଛନ୍ତି । ଆଗରେ ଠିଆ ହୋଇ ବଂଧୁକଧରି ପ୍ରୋଲିସ୍ ରାସ୍ତା ଅବରୋଧ କରୁଛି । ଯେ କୌଣସି ସମୟରେ ଜନତା ଉପରେ ଲାଠିମାଡ଼ ହୋଇଯାଇପାରେ । ତଥାପି ମରଣ ବିଜୟୀ ଜନତାର ଉଦ୍‌ବେଳ ଉଚ୍ଛ୍ୱାସ ନୀରବ ହୋଇଯାଉ ନାହିଁ । 'ବନ୍ଦେମାତରଂ', 'ମହାତ୍ମାଗାନ୍ଧିକୀ ଜୟ' ଧ୍ୱନିରେ ଆକାଶ ପ୍ରତିଧ୍ୱନିତ ହେଉଛି । ଜନତା ଢେଉପରି ମାଡ଼ି ଚାଲିଛନ୍ତି । ମୁହଁରେ ଗୋଟିଏ ମାତ୍ର ମନ୍ତ୍ର "କୁଇଟ୍ ଇଣ୍ଡିଆ- ଭାରତ ଛାଡ଼"ର ବଜ୍ର ନିର୍ଘୋଷ ବାରମ୍ବାର ହେଉଛି ଉଚ୍ଚାରିତ । ସୌରେନ୍ଦ୍ରଙ୍କ ମୁଣ୍ଡରେ ବସିଲା ଲାଠିର ମାଡ଼ । ତା'ପରେ ପରେ ସର୍ବାଙ୍ଗ ଶରୀରରେ ସିପାହୀମାନେ ଲାଛି ଦେଇଗଲେ ନିର୍ମମ ପ୍ରହାର । ସୌରେନ୍ଦ୍ର ଅଚେତନ ହେଇ ତଳେ ପଡ଼ିଗଲେ । ସଂଗ୍ରାମୀମାନେ ତାଙ୍କୁ ବୋହିନେଲେ ଚିକିତ୍ସା ପାଇଁ । ଦୀର୍ଘ ଦୁଇବର୍ଷପରେ ମେଡ଼ିକାଲରୁ ସେ ଯେତେବେଳେ ବାହାରିଲେ ହରାଇବସିଥିଲେ ଦୁଇଟି ଆଖିର ଜ୍ୟୋତି । ସବୁଦିନ ପାଇଁ ଦୁନିଆର ଆଲୋକ ତାଙ୍କ ଆଖିରୁ ନିଭିଗଲା । ମୁକ୍ତି ସଂଗ୍ରାମର ସୈନିକ ସୌରେନ୍ଦ୍ର ଆତ୍ମ ପରିଚୟ ଗୋପନରଖି ବହୁସ୍ଥାନ ବୁଲିବୁଲି ଶେଷରେ ପହଂଚିଲେ ଏଇ ବହୁଗ୍ରାମର ବସ୍‌ଷ୍ଟାଣ୍ଡରେ । ନିଜ ପାଇଁ ସ୍ୱାଧୀନ ବ୍ୟବସାୟଟିଏ ବାଛି ନେଇ ଏଇଠି ଖୋଲିଲେ ତାଙ୍କ ପାନ ଦୋକାନ । ସେ ପ୍ରାୟ ଅଗଷ୍ଟ ବିପ୍ଳବର ଚାଳିଶ ବର୍ଷର ପରବର୍ତ୍ତୀ ଘଟଣା । ସେ ଜଣେ ଆପାଙ୍‌କ୍ତେୟ ଅବହେଳିତ ଅନ୍ଧ ମଣିଷ- ସଉରା



Digitized by PPRACHIN, SOA

ଅନ୍ଧ । ତାଙ୍କ ଜନ୍ମ ସ୍ଥାନର ପରିଚୟ ରହିଲା ଅଜ୍ଞାତ । ତାଙ୍କ ପରିବାର, ଜ୍ଞାତି, କୁଟୁମ୍ବ ବିଷୟରେ କେହି କିଛି ଜାଣିଲେ ନାହିଁ; କାହାକୁ ସେ ବିଷୟରେ ଜଣାଇବାକୁ ସୌରେନ୍ଦ୍ର ପ୍ରସ୍ତୁତ ନଥିଲେ । ସମ୍ଭବତଃ ସ୍ୱାଧୀନ ଭାରତରେ ଗାନ୍ଧିମହାତ୍ମା ପରବର୍ତ୍ତୀ ଶାସନ ବ୍ୟବସ୍ଥା, ଦେଶ କାର୍ଯ୍ୟ ନାମରେ ଲୁଣ୍ଠନ, ପାରିବାରିକ ରାଜନୀତି, ମହାନ୍ କଂଗ୍ରେସ ଦଳର ନେତାମାନଙ୍କ ସ୍ୱାର୍ଥସର୍ବସ୍ୱତା ତାଙ୍କୁ ଏତେ ମାତ୍ରାରେ ବ୍ୟଥିତ କରୁଥିଲାଯେ ସେ ନିଜ ସଂପର୍କରେ କିଛି ବି କାହାକୁ କହୁ ନଥିଲେ । ୧୯୮୦ ଠାରୁ ଏଇ ବସ୍‌ଷ୍ଟାଣ୍ଡରେ ତାଙ୍କର ପାନଦୋକାନ । କ୍ରମେ ଏଇ ଅଞ୍ଚଳର ଲୋକମାନଙ୍କୁ ସେ ଚିହ୍ନିଲେ, ଆପଣାର ମଣିଲେ । କିନ୍ତୁ ଦିନେ ହେଲେ ବି କାହାପାଖରେ ଅଭାବ ଅନାଟନରେ ହାତ ପାତି ନ ଥିଲେ । ପାନଦୋକାନର ଆୟରୁ କୌଣସିମତେ ଚଳିଯାଉଥିଲେ । ଏବେ ସେ ଅଶି ଅତିକ୍ରମ କରିଥିବା ଜଣେ ବୃଦ୍ଧ । ପୁଣି ଚକ୍ଷୁହୀନ । କେହି ଦୟାକରି ତାଙ୍କୁ ସାହାଯ୍ୟ କରିବାକୁ ଆଗେଇ ଆସିଲେ ସେ ମନେ ମନେ ବ୍ୟଥିତ ହୁଏ- ମନା କରିପାରେନି । ସେମାନେ ଭାତ ଗାଳି ଦିଅନ୍ତି । ତା'ପରେ ତର୍କାରୀ ଛୁଙ୍କ କରିଦିଅନ୍ତି । ଚକ୍ଷୁହୀନ ବୃଦ୍ଧ ଲୋକଟି ଉଦାର ଭାବରେ ସେମାନଙ୍କୁ କୃତଜ୍ଞତା ଜଣାଏ, ଆଶୀର୍ବାଦ ଦିଏ ।

ହଠାତ୍ ଏତେଗୁଡ଼ାଏ ବର୍ଷପରେ ସୌରେନ୍ଦ୍ର ଆଜି କାହିଁକି ଅସ୍ଥିର ହୋଇ ପଡୁଥିଲେ । ଶୂନ୍ୟତାର ଏକ ଅନୁଭବ ତାଙ୍କ ସମଗ୍ର ଶରୀରକୁ କାବୁ କରି ବସିଥିଲା । ସେଥିପାଇଁ ଅଗଷ୍ଟ ପନ୍ଦର ପ୍ରଶେସନ ଦେଖିବାକୁ ଯାଉଥିବା ପରିଚିତ ଲୋକମାନଙ୍କୁ ସେ ଏପରି ନୈରାଶ୍ୟର ବାଣୀ ଶୁଣାଉଥିଲେ । ସେ ସମ୍ଭବତଃ ପରିବର୍ତ୍ତିତ ପରିସ୍ଥିତି ସହିତ ନିଜକୁ ଖାପ ଖୁଆଇ ପାରୁ ନଥିଲେ ।

ବିଭୂତି ମିଶ୍ରଙ୍କ ବଡ଼ପାଟି ଏବେବି ଶୁଣାଯାଉଥିଲା । ସେ ତାଙ୍କ ଦୁର୍ବୃତ୍ତ ସାଥୀମାନଙ୍କ ମେଳରେ କଟକଯିବାପାଇଁ ବସ୍‌କୁ ଅପେକ୍ଷା କରୁଥିଲେ । ଚଂପା ଧର୍ମକୁ ସାକ୍ଷୀ ରଖି ଗୁଣୁଗୁଣୁ ହୋଇ ତାଙ୍କୁ କେତେ କଣ ଅଭିଶାପ ବର୍ଷି ଚାଲିଥିଲା । ଅସ୍ଥିର ହୋଇ ପିଚୁ ରାସ୍ତାରେ ହାତଗୋଡ଼ ବାଡ଼ଉଥିଲା । ବେଳାଭୂମିର ପରିତ୍ୟକ୍ତ ପୋଡ଼ାକାଠଟାଏ ସେ । ତାର ଆଉ ଜଳିବାର ଶକ୍ତି ନାହିଁ, ଅଛି କେବଳ ଜଳିଯାଇଥିବାର କଳଙ୍କିତ କଳାଦାଗ ।

ସୌରେନ୍ଦ୍ର ଚଂପାକୁ ପାଖକୁ ଡାକିଲେ । "ଆଲୋ ଚଂପା, ତୁ ବାୟାଣୀ-ମଇଳା କୋତରା ଚିରାକନା ପିନ୍ଧୁଥିବୁ । ବୟସ ଥାଇ ବି ତୁ ବୁଢ଼ୀ ପରି ଦିଶୁଥିବୁ । ମୁଁ ତ ସହଜେ ଅନ୍ଧ । ଦୁନିଆର ଚହଟ ଚିକ୍କଣ ରୂପ ମୋ ଆଖି ଆଗରେ ଅଂଜନ ପରି ବିଛିକିଟିଆ କଳା । ଥିଲା ନ ଥିଲା ସବୁ ମୋ ପାଇଁ ସମାନ । ହେଲେ ଏ ଯେଉଁ ଲୋକଙ୍କୁ ସବୁ ତୁ ଦେଖୁଚୁ ଏ ସମସ୍ତେ ମୋ ଠାରୁ ଆହୁରି ଅନ୍ଧ । ମୋଠାରୁ ସେମାନେ ଆହୁରି ଦୁର୍ଭାଗା । ଆଖି ଥାଇ ବି ସେମାନେ ଅନ୍ଧ । ମଣିଷକୁ ଫିଙ୍ଗି ଫୋପାଡ଼ି ତାରି ଉପରେ ଗୋଡ଼ ଦେଇ ଯେ ଉପରକୁ ଉଠେ ତାଠାରୁ ଅମଣିଷ ଆଉ ଅଧିକ କିଏ ଅଛି କହିଲୁ । ତଣ୍ଟିଚିପା ଗୁଡ଼ା । ଦେଶର ସ୍ୱରାଜ୍ୟକୁ ଏମାନେ ଖାଇଲେ । ତୁ ବାୟାଣୀ ବୋଲି ସତ କଥା କହିଲେ



Digitized by PPRACHIN, SOA

ସେମାନେ ହସି ଉଡ଼େଇ ଦେବେ । କିନ୍ତୁ କଥା କହିବାର ସ୍ୱାଧୀନତା ତୋର ଯେତେ ଅଛି ସେମାନଙ୍କର ସେତେ ନାହିଁ । ତେଣୁ ତୁ ପ୍ରକୃତରେ ସ୍ୱାଧୀନ । ମୁଁ ମୋ ଛୋଟ ପାନଦୋକାନଟିକୁ ନେଇ ଆହୁରି ସ୍ୱାଧୀନ । ଆମ ଧନ୍ଦାରେ ପରନିର୍ଭରତା ନାହିଁ ।

ଚଂପା ବାୟାଣୀ ମେଲା ଆଖିରେ ଅବାକ୍ ହୋଇ ସଉରା ଅନ୍ଧ ବୁଢ଼ାକୁ ଚାହିଁ ରହିଲା । ତା' କଥାରୁ କିଛି ଠଉରେଇ ପାରିଲାନି । ତୁନି ତୁନି ତା ପାନବାକ୍ସ ଭିତରେ ହାତ ପୂରେଇ ମେଂଚାଏ ଗୁଣ୍ଡି ଓ ଗୁଆ ଧରି ସେ ଦୌଡ଼ି ଦୌଡ଼ି ପଳେଇଲା । ଜନଜୁଆର ପାଟୁଆର ପରି ଆସୁଥିଲେ । ବସ୍‌ଷ୍ଟାଣ୍ଡରେ ଜମି ଯାଉଥିଲା ଜାଗ୍ରତ ସ୍ୱାଧୀନତାର ନକଲି ଶୋଭାଯାତ୍ରା । ସୌରେନ୍ଦ୍ର ଖିଲିପାନ ବାକ୍ସରେ ଚାବି ପକେଇ ସ୍ୱାଧୀନତାର ଜୀବନ୍ତ ସିପାହୀ ନିର୍ବାସିତ ସୈନିକ କାହା ଉଦ୍ଦେଶ୍ୟରେ କେଜାଣି କ୍ଷଣକାଳ ହାତଯୋଡ଼ି ଠିଆ ହୋଇ ରହିଲେ । କାହାକୁ ଜୁହାର ହେଲେ । ମାଟିରୁ ମୁଠାଏ ଆଣି ମୁଣ୍ଡରେ ମାରିଲେ । ତା'ପରେ ଛାତିଫଟେଇଁ ତାଙ୍କ ଅଭ୍ୟନ୍ତରରୁ ଏକ ଦୀର୍ଘଶ୍ୱାସ ବାହାରିଗଲା; କୁହୁଳାମନର ଗୋଟାଏ ଜଳନ୍ତା ଅବଶୋଷ । ସୌରେନ୍ଦ୍ର ବାକ୍ସଟିକୁ ମୁଣ୍ଡ ଉପରକୁ ଉଠେଇଲେ । ବାଡ଼ି ଧରି ଧୀରେ ଧୀରେ ତାଙ୍କ ଛୋଟିଆ କୁଡ଼ିଆ ଅଭିମୁଖେ ଚାଲିଲେ । ସଂଧ୍ୟା ନଇଁ ଆସୁଥିଲା । ଆକାଶ ହୋଇଉଠିଥିଲା ଗୋଧୂଳିରେ ରକ୍ତାଭ । ଘରବାହୁଡ଼ା ପକ୍ଷୀମାନଙ୍କ କାକଳିରେ ମୁଖରିତ ହେଉଥିଲା ଆକାଶ । ଚଂପାବାୟାଣୀ ତଥାପି କାହା ଉଦ୍ଦେଶ୍ୟରେ ତାର ଅନବଦମିତ କ୍ରୋଧ ବର୍ଷଣ କରି ଚାଲିଥିଲା- କିଛି ଶୁଭୁଥିଲା, କିଛି ଶୁଭୁ ନଥିଲା । ଅଗଷ୍ଟ ପନ୍ଦର ତା' ପାଇଁ ଥିଲା ଅବାନ୍ତର । ତାକୁ ଏପରି ଦିନରେ କେହି ପେଟପୂରା ଗଣ୍ଡାଏ ଖାଇବାକୁ ଦେଇ ନଥିଲେ ବୋଲି ତାର କ୍ରୋଧ ଥିଲା ଅପରିମିତ । ସୌରେନ୍ଦ୍ର ଧୀରେ ଧୀରେ ନୀଡ଼ାଭିମୁଖୀ ହେଉଥିଲେ ।





Digitized by PPRACHIN, SOA

# ଜ୍ୟୋତିଷବାଣୀ

ବହୁ ପ୍ରତୀକ୍ଷା ପରେ ଦିନନାଥଙ୍କ ପତ୍ନୀଙ୍କ ପ୍ରଥମ ଗର୍ଭରେ କନ୍ୟା ସନ୍ତାନଟିଏ ହିଁ ଜନ୍ମ ହେଲା । ସେଥିପାଇଁ ସମଗ୍ର ପରିବାର କୁରୁଳି ଉଠିଥିଲା । ଦିନନାଥ ପଡୋଶୀଙ୍କ ଘରେ ମିଠେଇ ଓ ପରିବାର ମଧ୍ୟରେ ରସଗୋଲା ବାଣ୍ଟିଥିଲେ । ଏକୋଇଶାଦିନ ଜଣେ ଗାଆଣଙ୍କୁ ଡାକି ଠିଆ ପାଲା କରାଇଥିଲେ । ଖୁବ୍ ଉତ୍ସାହରେ ପ୍ରିୟ ଓ ପଡୋଶୀମାନଙ୍କୁ ଭୋଜି ବି ଦେଇଥିଲେ । ତାଙ୍କର ଉଲ୍ଲାସ ଓ ଆନନ୍ଦର ସୀମା ନଥିଲା । ବିଖ୍ୟାତ ଜ୍ୟୋତିଷୀ ନୟନ ଗୋସ୍ୱାମୀଙ୍କୁ ଘରକୁ ଡକାଇ ପିଲାର କୋଷ୍ଠି ତିଆରି କରାଇଥିଲେ । ପାଠ, ବ୍ୟକ୍ତିତ୍ୱ, ଲେଖାଲେଖି ଓ ସଂଗଠନ ସବୁ କ୍ଷେତ୍ରରେ ଏ ଝିଅ ହେବ ଅସାଧାରଣ । ଖୁବ୍ ବଡ଼ ସରକାରୀ ଚାକିରୀ କରିବ । ପିତାମାତାଙ୍କର ଆନନ୍ଦର କାରଣ ହେବ । କିନ୍ତୁ.....

ଚମକି ପଡ଼ିଲେ ଦିନାନାଥ । କିନ୍ତୁ ପୁଣି କଣ ?

ଜ୍ୟୋତିଷ ପ୍ରବର ଏତେବଡ଼ ନିଷ୍ଠୁର ସତ୍ୟକୁ ଲେଖିଦେଇଥିଲେ ସିନା, କିନ୍ତୁ ମୁହଁରେ ଉଚ୍ଚାରଣ କରିବାକୁ ବାରମ୍ବାର କୁଣ୍ଠା ରଖୁଥିଲେ । ସେ ଗୋପନୀୟ ରହସ୍ୟଟି କଅଣ ଜାଣିବାକୁ  ସ୍ୱାମୀ ସ୍ତ୍ରୀ ହୋଇ ଉଠୁଥିଲେ ଉଦ୍‌ଗ୍ରୀବ । ଜ୍ୟୋତିଷବାଣୀରେ ଦିନନାଥଙ୍କର କେବେବି ବିଶ୍ୱାସ ନଥିଲା । ଥିଲା କିନ୍ତୁ ଶ୍ରୀମତୀଙ୍କର । ସେ ନିଜ ଜାତକକୁ ବିଂଶାଧିକ ଗଣକଙ୍କ ପାଖରେ ଏହା ମଧ୍ୟରେ ଦେଖେଇ ସାରିଥିଲେ । ଦୁଇଜଣ ଜ୍ୟୋତିଷ ପରସ୍ପର ବିପରୀତ କଥା କହିଲେ ବି ଶ୍ରୀମତୀ ଦାଶ ଉଭୟଙ୍କୁ ସତ ମଣୁଥିଲେ । ଥଟ୍ଟା କରୁଥିଲେ ଦିନନାଥ । ଏଇ ଜ୍ୟୋତିଷଗୁଡ଼ାକ ପାଜି ଓ ଭଂଡ଼ ହୋଇ ନଥିଲେ ଗୋଟିଏ ଜାତକକୁ ସାଧିଲାବେଳେ ଜଣେ କିପରି କହୁଛନ୍ତି  - ଦୀର୍ଘଜୀବୀ ହେବ; ଆଉଜଣେ କହୁଛନ୍ତି ସ୍ୱଳ୍ପଜୀବୀ ହେବ । ମାତ୍ର ତିରିଶ ବର୍ଷରେ ହେବ ମୂଲ୍ୟବାନ ଜୀବନର ଅବସାନ । ତା'ହେଲେ ନାରୀଟି ପଚିଶ ବର୍ଷଠାରୁ  ମରିବାକୁ ଆରମ୍ଭ କରିବ । ସବୁବେଳେ ବିମର୍ଷ ରହିବ । ନିଜ ଉପରୁ ତା'ର ଆସ୍ଥା ହୁଏତ ତୁଟିଯିବ ।

ଅଥଚ ତିରିଶ ବର୍ଷ କାହିଁକି ଚାଳିଶ ବର୍ଷପରେ ମଧ୍ୟସେ ଶୁଭଲଗ୍ନଟି ଆସିବ ନାହିଁ । ଖୁବ୍ ଦୃଢ଼ତାର ସହିତ କହନ୍ତି ଦିନନାଥ । ଶ୍ରୀମତୀ ଦାଶ କହନ୍ତି ଶୁଭଲଗ୍ନ କିପରି ?

ଦିନନାଥ କହନ୍ତି- ତୁମ ବଂଧୁ ଦୀପକମିଶ୍ର ଯାହା ଲେଖିଛନ୍ତୁ ତୁମେ କଣ



Digitized by PPRACHIN, SOA

ଭୁଲିଗଲଣି । ମୃତ୍ୟୁ ବିଶୁଦ୍ଧ ବିଭୂତିପରି କାନ୍ଧରେ ଝରି ପଡୁଚି । ମୃତ୍ୟୁକୁ ସ୍ପର୍ଶ କଲେ ମଣିଷ ସାବାଳକ ହୁଏ । ମୃତ୍ୟୁ ଜଣେ ପ୍ରିୟତମ ଦୋସର । ସବୁ ଅପୂର୍ଣ୍ଣତା, ଅଚରିତାର୍ଥତା ଓ ଅକ୍ଳାନ ପଣିଆର ସମାପ୍ତି ଘଟେ ତାର ସ୍ପର୍ଶରେ । ପୁଣି ରମଣୀର କୋଳାପରି ସେ ଏକ ମଧୁର ଉପଲବ୍ଧି । "ମୃତ୍ୟୁଚେତନା ମୋ ଅନୁଭୂତିର /ଏକ ପ୍ରତ୍ୟକ୍ଷ ରାଗାନୁଗା ପର୍ଯ୍ୟାୟ/ଏ ଆଲିଙ୍ଗନ ନିଜ ସହିତ ନିଜର ।"

ପୁଣି ଶତପଥୀ କବିଙ୍କ 'ଦୁର୍ଦ୍ଦାନ୍ତ ପ୍ରେମିକ' ଓ 'ସବା ସାନପୁଅ' କବିତାକୁ କଣ ତୁମେ ଭୁଲିଗଲଣି ? ତେବେ ଏତେ ବିମର୍ଷ କାହିଁକି ହେଉଥିଲ ? ଜ୍ୟୋତିଷଙ୍କ କଥା ସତ ନା ଏ କବିମାନଙ୍କ କଥା ସତ- ଏ ଦ୍ୱନ୍ଦ୍ୱ ତୁମ ଭିତରୁ ବୋଧହୁଏ ଆଜିଯାଏ ତୁଟିନାହିଁ ?

"ରୁହ, ସେସବୁ ଅବାନ୍ତର କବିତା କଥା ଶୁଣାନି । ଜ୍ୟୋତିଷ ବସିଚନ୍ତି, ସେ କଣ ଭାବିବେ ?"

ଯଦି ତାଙ୍କ ସିଦ୍ଧାନ୍ତ କିଛି ଭୟଙ୍କର ଭବିଷ୍ୟତକୁ ଆଙ୍ଗୁଠି ଦେଖାଉଥିବ ତୁମେ ତାହା ସହି ପାରିବତ-ଦିନନାଥ ପଚାରିଲେ ।

ଜ୍ୟୋତିଷ କହିଲେ ନା ପିଲାର ଭବିଷ୍ୟତ ଖୁବ୍ ସୁନ୍ଦର, ଖୁବ୍ ଦୀର୍ଘାୟୁ ଏ ପିଲା ହେବ । ମାତ୍ର ଗୋଟିଏ, ସନ୍ତାନର ଜନନୀହେବ ଓ ପରିପୂର୍ଣ୍ଣ ବୈବାହିକ ଜୀବନ ଯାପନ କରିବ । ଖୁବ୍ ପ୍ରତିଷ୍ଠା ଓ ସମ୍ମାନର ହେବ ଅଧିକାରୀ । ତା' କୋଷ୍ଠି ଏତେ ଉଚ୍ଚରେ ଅଛିଯେ, ସେମିତି କୋଷ୍ଠି ଖୁବ୍ କମ୍ ମୁଁ ଦେଖିଛି । ତେବେ ତା'କୋଷ୍ଠି ପିତାମାତାଙ୍କ ପାଇଁ ଟିକେ ବାଧକ ହେଉଛି ।"

ହସି ଉଠିଲେ ଦିନନାଥ । "ଏଇକଥାତ । ଆପଣ ତା' ନକହି ଏତେ ନାଟକୀୟ ଉତ୍କଣ୍ଠା ସୃଷ୍ଟି କରୁଛନ୍ତି କାହିଁକି ? ଆଜିକାଲି ସଚରାଚର ଅନେକ କଥା ଘଟୁଛି । ପୁଅଝିଅମାନେ ବାପାମାଆଙ୍କ ମୃତ୍ୟୁଶଯ୍ୟା ପାଖରେ ମଧ ଉପସ୍ଥିତ ହୋଇପାରୁନାହାନ୍ତି । କିଏ ଆମେରିକାରେ ତ କିଏ ଲଣ୍ଡନରେ ।"

ଜ୍ୟୋତିଷ କହିଲେ- "ନା, ସେପରି କଥା ନୁହେଁ; ମାତ୍ର କୋଷ୍ଠି କହୁଚି ଯେ ଏ ଝିଅ ପିତାମାତାଙ୍କ ବିଚ୍ଛେଦର କାରଣ ହେବ ।"

"ଏଇ କଥା କହିବାକୁ ଆପଣ ଏତେ ସଂକୁଚିତ ହେଉଥିଲେ କାହିଁକି ଜ୍ୟୋତିଷ ମହାଶୟ ? ଆଜିକାଲି ବହୁ ସ୍ୱାମୀ ସ୍ତ୍ରୀ ମଧ୍ୟରେ ବିଚ୍ଛେଦ ହୋଇ ଯାଉଛି । ବିଦେଶରେ ସେସବୁର ପରିସଂଖ୍ୟାନ ଖୁବ୍ ବିପୁଳ । ଆମ ଦେଶରେ ବି ଏଣିକି ପରିବାର ଗୁଡ଼ିକରେ ସଂହତି ଆଗପରି ରହୁନି । ପୁଣି ଉଭୟେ ଅର୍ଥ ଉପାର୍ଜନ କରୁଥିଲେ "ସାମାନ୍ୟ ସାମାନ୍ୟ କଥାରେ ମନ ମନାନ୍ତର ବିବାହ ବିଚ୍ଛେଦରେ ପରିଣତ ହେଉଛି । ସେଥିପାଇଁ ନବଜାତ ଶିଶୁ କାହିଁକି କାରଣ ହେବ ?"

ଜ୍ୟୋତିଷ ସମ୍ଭବତଃ ନୀରବତା ଅବଲମ୍ବନ କରିବାକୁ ଶ୍ରେୟ ମଣୁଥିଲେ । ତାଙ୍କ



Digitized by PPRACHIN, SOA

ପ୍ରାପ୍ୟ ନେଇ ସେ ଯିବାପରେ ଦିନନାଥ ଖୁବ୍ ଆଶ୍ୱସ୍ତି ଅନୁଭବ କଲେ । ଯେତିକି ଭଣ୍ଡ ଜ୍ୟୋତିଷ ଏମିତି ଚମକପ୍ରଦ କାହାଣୀ ସୃଷ୍ଟି କରି ପରିବାରରେ ନିଆଁ ଲଗାଇ ଦେଇ ଯାଉଛନ୍ତି । ଏ ଶାସ୍ତ୍ର ପ୍ରତି କେଜାଣି କାହିଁକି ଦିନନାଥ ତାଙ୍କ କୈଶୋରରୁ ହିଁ ଥିଲେ ବିରକ୍ତ । ତାଙ୍କୁ ସେତେବେଳେ ଏଗାରବାର ବର୍ଷ ହେବ । ଗାଁ ପାଖ ଜଇଆ ନାହାକ ବେଶ୍ କିଛି ଚାଉଳ ଓ ପଇସା ନେଇ କହିଦେଇଗଲା- "ଏ ପିଲା ଏ ଘରେ ରହିବନି । ଗାଆଁରେ ଆଉ ଜଣଙ୍କ ଘରକୁ ପୁଅ ହୋଇଯିବା ତା କୋଷ୍ଠି ଡାକୁଚି ।"

ସେତେବେଳେ ଦିନନାଥଙ୍କୁ ପୁଅ କରିନେବାକୁ ଗ୍ରାମର ଜଣେ ବୃଦ୍ଧା ଓ ବୃଦ୍ଧ ତାଙ୍କ ଦଦେଇ ଦେଠେଇଙ୍କ ସହ ନାନାଦି ମନ୍ତ୍ରଣା କରୁଥାନ୍ତି । ତାଙ୍କର ଥିଲା ଅଳ୍ପକିଛି ଭୂସଂପତ୍ତି । ଦିନନାଥ କିନ୍ତୁ ଗୋଠ ଛାଡ଼ି ଆଉ କେଉଁଠିକୁ ଯିବାକୁ ପ୍ରସ୍ତୁତ ନଥିଲେ- ହେଉପଛେ ତାହା ନାମକୁ ମାତ୍ର ପୁଅ ହୋଇଯିବା । କିନ୍ତୁ ଜଇ ନାହାକ ଦିନନାଥଙ୍କ ବୋଉ ଓ ବୁଢ଼ୀମାଆଙ୍କ ସାମ୍ନାରେ ଏ କଥାଟା କହିବାପରେ ତା' ଯେପରି ହୋଇଗଲା ବେଦର ଗାର । ସେ ବୁଢ଼ାବୁଢ଼ୀ ଜଇଆ ନାହାକକୁ ପଇସାପତ୍ର ଦେଇ ଶିଖାଶିଖି କରି ପଠେଇ ନଥିଲେ ତ ? ସେପରି ସମ୍ଭାବନା ଆଦୌ ନଥିଲା । କାରଣ ସେ ଅଂଚଳରେ ଜଇଆ ନାହାକର ଗଣନା ଅଭ୍ରାନ୍ତ ବୋଲି ସମସ୍ତେ ଜାଣିଥିଲେ ଓ ତାକୁ ବେଶ୍ ଖାତିର କରୁଥିଲେ । ସେ ତ ଜାତକ ଦେଖେନି, ଦିନନାଥଙ୍କର ନିଜର ମଧ ଜାତକ ନଥିଲା । ଖାଲି କପାଳକୁ ଚାହିଁ, ହାତ ପାପୁଲିକୁ ମଳି ସେ କଣ ସବୁ ଗୋଟାଳିରେ ଭୂଇଁରେ ଗାରକାଟି ସାବ୍ୟସ୍ତ କରେ । ତା' ହୋଇଯାଏ ଅଟଳ ଅନୁଶାସନ ।

ଦିନନାଥ ବହୁତ ପ୍ରତିବାଦ କରିଥିଲେ, କାନ୍ଦି ଗଡ଼ିଥିଲେ, ବୋଉକୁ ବିଧାଚାପୁଡ଼ା ମାରି "ତୁ କାହିଁକି ରାଜି ହେଲୁ" ବୋଲି ଅଭିଯୋଗ କରିଥିଲେ । ନନା (ବାପା) ଓ ବୋଉ କିନ୍ତୁ ସେ ଘରେ ଥିଲେ ଅପାଙ୍‌କ୍ତେୟ । ସବୁକିଛି ନିଷ୍ପତ୍ତି ନେଉଥିଲେ ବଡ଼ ଦଦେଇ । ତାଙ୍କ କଥାକୁ ବା ଇଚ୍ଛାକୁ ଟାଳିଦେବାର ସାମର୍ଥ୍ୟ କାହାର ନଥିଲା; କାରଣ ବହୁକୁଟୁମ୍ବୀ ପରିବାରର ସେ ଥିଲେ ଏକମାତ୍ର ପୋଷଣାହାରୀ । ପୁଣି ନନା ତାଙ୍କ ସାମ୍ନାରେ ପଦେକଥା ବି ସାହସ କରି କହି ପାରୁନଥିଲେ । ସେ ବୁଝାଇଥିଲେ ଯେ ବୁଢ଼ାବୁଢ଼ୀ ଆଉ କେତେଦିନ । ସଂପତ୍ତି ସବୁ ଦିନା ନାଁରେ କରିଦେବେ । ବ୍ରତ କରିବେ । ସେ ବି ଦାଶକୁ ଆମେ ବି ଦାଶ । ସ୍କୁଲରେ ତ ତୋ ନାଁ ପିତା ଓ ଅଭିଭାବକ ଭାବରେ ବସିଚି । ତା' କଣ ଆଉ ବଦଳି ପାରିବ ? ତିନିଟାଘର ପରେ ତାଙ୍କ ଘର । କଣ ଫରକ୍ ପଡ଼ିବ ପୁଅ ଏଠି ବା ସେଠି ବ୍ରତ ହେବାରେ- ସେ ତ ଜମିବାଡ଼ି ତା' ନାମରେ ଲେଖିଦେବେ ଓ ଆଗକୁ ଜମି ବିକି ଉପରକୁ ପାଠ ପଢ଼େଇବେ ବୋଲି କହୁଚନ୍ତି ।

ନନା (ବାପା) ବୋଉ ବୁଝି ଯାଇଥିଲେ । ଜଇଆ ନାହାକ କଥା ସତ ହେଲା । ଦିନନାଥ ପୁଅ ହୋଇଗଲେ ଓ ସେଇ ବୁଢ଼ାବୁଢ଼ୀଙ୍କ ଘରେ ବ୍ରତ ହେଲେ । କିନ୍ତୁ ରହିଲେ



Digitized by PPRACHIN, SOA

ନିଜ ଘରେ ସବୁଦିନ । ପାଇଲେ କିଛି ଭୂସଂପତ୍ତି । ତାଙ୍କ ଜୀବନରେ ଜ୍ୟୋତିଷବାଣୀ ଅନ୍ୟଥା ହେଇ ନଥିଲା । କିନ୍ତୁ ତା ଥିଲା ତାଙ୍କର କୈଶୋର । ସ୍କୁଲ ବା କଲେଜରୁ ଛୁଟିରେ ଆସିଲେ ପ୍ରଥମେ ପଡୁଥିଲା ତାଙ୍କ ପୈତୃକ ଘର । ସେଇଠି ବ୍ୟାଗପତ୍ର ରଖି ବୁଢ଼ାବୁଢ଼ୀଙ୍କୁ ମୁଣ୍ଡିଆ ମାରି ଆସୁଥିଲେ । ବେଳେବେଳେ କୁଳୁହାଁ ପରି ସେ ନିମନ୍ତ୍ରିତ ହେଉଥିଲେ ମଧ୍ୟାହ୍ନ ବା ରାତ୍ରି ଭୋଜନକୁ । ତାଙ୍କର ଗାଈ ଥିଲା । ବୁଢ଼ୀ ପ୍ରତିଦିନ ଗିଲାସେ ଶିଝା କ୍ଷୀର ଧରି ପିଇବାକୁ ଦେଇ ଯାଉଥିଲେ । ଶିଝି ଶିଝି ସେ କ୍ଷୀର ବରଅଠା ପରି ହଳଦିଆ ଦିଶୁଥିଲା । ଗିଳାସ ସାରା ବିନ୍ଦୁ ବିନ୍ଦୁ ହୋଇ ଭାସୁଥିଲା ଘିଅ । ଦଶବର୍ଷଠାରୁ ଦିନନାଥ ଦୂରରେ ରହି ପାଠ ପଢୁଥିଲେ । ତେଣୁ ଗାଁ ଥିଲା ଛୁଟିର ସାଥୀ । ବୁଢ଼ାବୁଢ଼ୀ ଜାଣିଥିଲେ ଏ ଟୋକା କେବେବି ତା ଭାଇଭଉଣୀ ବାପାମାଆଙ୍କୁ ଛାଡ଼ି ତାଙ୍କ ଘରକୁ ଯିବନି । କିନ୍ତୁ ତାଙ୍କ ଭଲମନ୍ଦ ବୁଝିବାକୁ ଦିନନାଥଙ୍କ ପିତୃବ୍ୟ ଓ ବୋଉ ସବୁବେଳେ ସତର୍କ ଥିଲେ । ରୋଗବ୍ୟାଧିରେ ଔଷଧ ଠାରୁ ଘରେ ପଥ୍ୟ ପ୍ରସ୍ତୁତ କରିବା ପର୍ଯ୍ୟନ୍ତ କେଉଁଥିରେ ଅବହେଳା ନଥିଲା । ସେମାନେ ସେତିକି ହିଁ ଲୋଡୁଥିଲେ- ବାସ୍ ପାଇଗଲେ । ଜଇ ନାହାକଙ୍କ ପ୍ରତି ତଥାପି ଦିନନାଥଙ୍କ ମନରେ ଥିଲା କ୍ରୋଧ ଓ ଜୁଗୁପ୍ସା । କିନ୍ତୁ ତାଙ୍କୁ ଭେଟିବାର ସୁଯୋଗ ସେ ପାଉଥିଲେ କ୍ୱଚିତ୍ । ସମ୍ଭବତଃ ସେ କଲେଜପଢ଼ା ଶେଷ କଲାବେଳକୁ ଜଇ ନାହାକ ଆଉ ସଂସାରରେ ନଥିଲେ ।

ଏବେ ପୁଣି ଆଉ ଜଣେ ପାଠୁଆ ଜ୍ୟୋତିଷ ତାଙ୍କ ତାରୁଣ୍ୟକୁ ଆହତ କରିଛନ୍ତି ତାଙ୍କ ଅଭ୍ରାନ୍ତ ଗଣନା ଓ ପ୍ରଖର ଜ୍ୟୋତିଷ ଜ୍ଞାନରେ । କିନ୍ତୁ କେଜାଣି କାହିଁକି ଦିନନାଥ କଥାଟାକୁ ଆଦୌ ଗୁରୁତ୍ୱ ଦେଉନଥିଲେ । ସମ୍ଭବତଃ ସେ କଥା ଭାବିବାକୁ ସେ ଷାଠିଏ ବର୍ଷ ହେବାପର୍ଯ୍ୟନ୍ତ କୌଣସି ସୁଯୋଗ ମଧ୍ୟ ପାଇ ନଥିଲେ । କିନ୍ତୁ ଯେଉଁଦିନ ଝିଅ ତାର ପ୍ରଥମ ଚାକିରୀ କ୍ଷେତ୍ରରୁ ଏ ସହରକୁ ବଦଳି ହୋଇ ଆସିଲା, ସାଙ୍ଗରେ ଥିଲା ତାର ଅଢ଼େଇବର୍ଷର ଛୋଟ ଝିଅ, ସେ ସ୍ୱାଭାବିକ ଲୋଡ଼ିଲା ତା ବୋଉକୁ । ବୋଉ ଏଣିକି ବାପାଙ୍କ ପାଖରେ ନରହି ରହିବ ତା ପାଖରେ । ଛୋଟ ପିଲାଟାର ହେପାଜତ କରିବ, ଦେଖାଚାହାଁ କରିବ- ଏଥିରେ ଦିନନାଥଙ୍କର ଅରାଜି ହେବାର କିଛି ନଥିଲା । ସେ ଏଇ ସହରରେ ପୁଣି ମାତ୍ର ଗୋଟିଏ କିଲୋମିଟର ଦୂରରେ ଘରଭଡ଼ା ନେଇଛି । ପ୍ରତିଦିନ ଦେଖାଚାହାଁ ହୋଇ ପାରିବ । ସେ ତ ଅମଣିଷ ନୁହନ୍ତି ଝିଅକୁ ମନା କରିଦେବେ; ଯଦିଓ ତାଙ୍କର ଅବସର କାଳ ବେଶ୍ ପାଖେଇ ଆସୁଥିଲା, ସେ ମନା କଲେ ନାହିଁ; କୌଣସି ବାପାମଧ୍ୟ ଝିଅ ଅସୁବିଧାରେ ଚଳୁ ଏ କଥା ଚାହିଁବେ ନାହିଁ । ସେତେବେଳେ ଜୋଇଁ ଥିଲେ ତାଙ୍କ ଚାକିରୀ କ୍ଷେତ୍ରରେ ଅନ୍ୟ ଏକ ପ୍ରଦେଶରେ । ତେଣୁ ନିଜ ବୋଉ ବ୍ୟତୀତ ଝିଅ ପାଇଁ ବିକଳ୍ପ କିଛି ନଥିଲା । କିନ୍ତୁ ଯେଉଁଦିନ ଶ୍ରୀମତୀ ଦାଶ ଦିନନାଥଙ୍କ ସରକାରୀ ଘର ଛାଡ଼ି ଝିଅ ପାଖରେ ରହିବାକୁ ସମସ୍ତ ଆସବାବ ସହିତ ଚାଲିଗଲେ ସେଦିନ ମଧ୍ୟ



Digitized by PPRACHIN, SOA

ଦିନନାଥ ଏହାପଛରେ ମାଆ ଝିଅଙ୍କର କଛି ଅଭିସନ୍ଧି ଅଛି ବୋଲି ଜାଣି ନଥିଲେ । ଭାବିଥିଲେ ଯାଆନ୍ତୁ- ଏଇ ଏକ କିଲୋମିଟର ଦୂରରେ ତ' ଭଡ଼ାଘରେ ରହିବେ । ପ୍ରାୟ ପ୍ରତିଦିନ ଦେଖାହେବ । ଶ୍ରୀମତୀ ଦାଶ ଶନିବାର ରବିବାର ନାତୁଣୀକୁ ଧରି ଏ ସରକାରୀ ଘରକୁ ଆସିପାରିବେ ଏଠି ରାତ୍ରିଯାପନ ପାଇଁ । କିନ୍ତୁ ଚତୁର ଝିଅ ଓ ନିଜସ୍ୱ ସ୍ୱାଧୀନତା ହରାଇ ବସିଥିବା ମାଆଙ୍କ ଚିନ୍ତାଧାରା ଥିଲା ସଂପୂର୍ଣ୍ଣ ଭିନ୍ନ । ସମ୍ଭବତଃ ସେଇଦିନଠାରୁ ସଶରୀର ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ ବିଚ୍ଛେଦ ହୋଇଯାଇଥିଲା । ସେଥିପାଇଁ କୋର୍ଟ କଚେରୀକୁ ଯାଇ ବିଚ୍ଛେଦ ପାଇଁ ଆବେଦନ କରିବାର ଆବଶ୍ୟକତା ନଥିଲା । ଅବଶ୍ୟ ମଝିରେ ମଝିରେ ପରିବା କିଣିଦେବା ପାଇଁ ଦିନନାଥ ଝିଅ ଘରକୁ ଯାଇ ଚା' କପେ ପିଇ ଫେରୁଥିଲେ । ଝିଅ ଜଣେ କବି ଓ ମାଆ ଗାଳ୍ପିକା ହୋଇଥିଲେ ବି ସେମାନଙ୍କ ଲେଖା ଓ ଆଚରଣରେ ଆଉ ସାମଞ୍ଜସ୍ୟ ରହୁନଥିବା ସେ ଅନୁଭବ କରୁଥିଲେ । ଷାଠିଏ ବର୍ଷ ଯଦି ଆଜିକାଲି ବାର୍ଦ୍ଧକ୍ୟର ( Senior Citizen) ସମୟ ଭାବେ ଗୃହୀତ ହେଉଥାଏ ତେବେ ସେମାନେ କିପରି ଚିନ୍ତା କଲେ ନାହିଁ- ବୁଢ଼ା ଲୋକଟିଏ ଜୀବନସାରାତ ହାତରେ ରାନ୍ଧି ଖାଇନାହିଁ; ସେ କଣ ଏ ବୟସରେ ହାତରେ ରାନ୍ଧି ଖାଇବ, ନିଜର ଲୁଗାପଟା ନିଜେ ସଫା କରିବ, ଘରଦ୍ୱାରର ଯତ୍ନ ନେଇପାରିବ ? ଅବଶ୍ୟ ବାସନ ମାଜିଦେବା ଓ ଘର ସଫା କରିବାକୁ ସେ ସହରରେ ସବୁବେଳେ କାମବାଲୀମାନେ ମିଳୁଥିଲେ । ଦିନନାଥ ପୁରାପୁରି ନିଃସଙ୍ଗ ହୋଇ ପଡୁଥିଲେ; ବେଳେବେଳେ ଅନୁଭବ କରୁଥିଲେ ନିଃସଙ୍ଗତାର ପୀଡ଼ା ଓ ଯନ୍ତ୍ରଣା । ଅନେକ ଦୁଃସ୍ୱପ୍ନ ଦେଖୁଥିଲେ । ହାତରେ ରୋଷେଇ କରି ଖାଉ ଖାଉ ହିଟରରେ ପ୍ରାୟ ମଝିରେ ମଝିରେ ଭାତ ପୋଡ଼ି ଘରସାରା ଗନ୍ଧ ହେଉଥିଲା । ତରକାରୀର ବିଶେଷ ସ୍ୱାଦ ନଥିଲା । କେବଳ ଭାତ ଓ ଡାଲମା ହୋଇଗଲେ ଯଥେଷ୍ଟ । ତେବେ ଝିଅଘରେ ପରିଚାରିକା ଥିବାରୁ ନାନାଦି ବ୍ୟଞ୍ଜନ ପ୍ରସ୍ତୁତ ହେଉଥିଲା । ଅନ୍ତତଃ ପ୍ରତିଦିନ ମଧ୍ୟାହ୍ନରେ ସ୍କୁଟରରେ ଯାଇ ସେ ଖାଇଫେରି ପାରନ୍ତେ । କିନ୍ତୁ ସେପରି କିଛି ବ୍ୟବସ୍ଥା ମାଆ ଝିଅ କରି ନଥିବାରୁ ନିଜଆଡୁ ପ୍ରସ୍ତାବ ଦେବାକୁ ଦିନନାଥଙ୍କ ଆତ୍ମାକୁ ବାଧୁଥିଲା । ସେ ଅନୁଭବ କରୁଥିଲେ ତାଙ୍କ ଘରକୁ ସେ ବାରମ୍ବାର ଯିବାରେ ଝିଅର କୌଣସି ଆଗ୍ରହ ନଥିଲା । ବରଂ ସେ ତା ମାଆ ଉପରେ ଏଥିପାଇଁ ବିରକ୍ତ ହେଉଥିଲା । କେବଳ ସେମାନଙ୍କ ଆବଶ୍ୟକତା ପାଇଁ ସେମାନେ ବରାବର ଫୋନ୍ କରୁଥିଲେ କିମ୍ବା ଡାକ୍ତରଖାନା ବା ଶିଶୁଡାକ୍ତରଙ୍କ ପାଖକୁ ଯିବାକୁ ହେଲେ ଦିନନାଥଙ୍କୁ ଲୋଡୁ ଥିଲେ- ଯେହେତୁ ସହରର ବିଶିଷ୍ଟ ଶିଶୁ ଡାକ୍ତର ଥିଲେ ଦିନନାଥଙ୍କ ସ୍କୁଲମେଟ୍ । କୌଣସି ତ୍ୱରିତ କାମ ପାଇଁ ଡ୍ରାଇଭର ନ ମିଳିଲେ ଦିନନାଥ ହିଁ ସେ କାମ ତୁଲାଉଥିଲେ । ଶ୍ରୀମତୀ କହୁଥିଲେ-"ତୁମପରି ନିର୍ଭୁଲ ଗାଡ଼ିଚାଳକ ଖୁବ୍ କମ୍ ମିଳିବେ । ଆରୋହୀଟିଏ ନିଧଡ଼କ ଶୋଇଯାଇପାରେ ।"

କିନ୍ତୁ ଯେଉଁଦିନ ନିଜେ ଗାଡ଼ିଚାଳନା କରି ଅନତିଦୂରସ୍ଥ କର୍ମକ୍ଷେତ୍ରକୁ ଯାଉ ଯାଉ



Digitized by PPRACHIN, SOA

ଶ୍ରୀମତୀ ଦାଶ  ଚାରିଛକରେ ନିଜର ଅସାବଧାନତା ଯୋଗୁ ମସ୍ତବଡ଼ ଆକ୍‌ସିଡେଣ୍ଟଟିଏ ଭୋଗିଲେ-ସେତେବେଳେ କାନ୍ଦ କାନ୍ଦ ହୋଇ ଫୋନ୍ କରିଥିଲେ ଦିନନାଥଙ୍କୁ । "ଶୀଘ୍ର ଆସ, ଆଉ ଗାଡ଼ି ଅବସ୍ଥା ନାହିଁ । ମୋର ଅବଶ୍ୟ କିଛି ହୋଇନି । କିନ୍ତୁ ଆମ୍ବାସାଡ଼ର ଗାଡ଼ିଧକ୍କାରେ ଆମଗାଡ଼ି ୩୬୦ଡିଗ୍ରୀରେ ଘୁରିଯାଇ ରାସ୍ତାକଡ଼ରେ ଭଂଗାରୁଜା ହୋଇ ପଡ଼ିଛି । ଧକ୍କା ଦେଇଥିବା ଗାଡ଼ିର ନମ୍ବର ପାଖ ଦୋକାନୀ ଜଣେ ଟିପିରଖିଛନ୍ତି । ଥାନାକୁ ଯିବାକୁ ହେବ ।"

ଦିନନାଥ ବିଚଳିତ ହୋଇ ପଡ଼ିଲେ । କ୍ଲାସ ଛାଡ଼ି ଧାଇଁଲେ ଆକ୍ସିଡେଣ୍ଟ ସ୍ପଟ୍‌କୁ । ଝିଅ ସେଦିନ କୌଣସି ସରକାରୀ କାର୍ଯ୍ୟରେ ଦିଲ୍ଲୀ ଯାଇଥିଲା । ଏ ଆକସ୍ମିକ ଦୁର୍ଘଟଣା କଥାଶୁଣି ସେ ବିବ୍ରତ ହେବା ଛଡ଼ା ଆଉ କିଛି କରିବାର ନଥିଲା । ଗାଡ଼ି ଟଣା ହୋଇ ପ୍ରଥମେ ଥାନାକୁ ଓ ତା'ପରେ ଗ୍ୟାରେଜକୁ ନିଆହେଲା । ସେ ଦିନମାନଙ୍କରେ ଦିନନାଥଙ୍କୁ ରୋଷେଇ କରି ଖାଇବାକୁ ସମୟ ମିଳୁ ନଥିଲା; ତଥାପି ଶ୍ରୀମତୀ ଦାଶ କହି ନଥିଲେ "ଏଇଠି ଝିଅଘରେ ଖାଇ ଦେଇଯିବ ।" ସମ୍ଭବତଃ ଝିଅପ୍ରତି ଭୟ କିମ୍ବା ନିଜସ୍ୱ ନିଷ୍ଠୁରତା ତାଙ୍କ ମଧରୁ ମଣିଷ ପଣିଆକୁ ଅପସାରିତ କରି ଦେଇଥିଲା । ସେଦିନମାନଙ୍କରେ ଥାନା, ଏସ୍.ପି. ଗ୍ୟାରେଜ ଓ କ୍ଲାସ- ଏସବୁ ଭିତରେ ଦିନନାଥ ପେଷି ହୋଇଯାଉଥିଲେ । ବେଳେବେଳେ କ୍ୟାଣ୍ଟିନ୍‌ରେ ଖାଉଥିଲେ, କେତେବେଳେ ଭଉଣୀ ଘରେ । ଭାବୁଥିଲେ ଜ୍ୟୋତିଷବାଣୀ କଥା- ଏତେ ଅଭ୍ରାନ୍ତ ହୋଇପାରେ ଜ୍ୟୋତିଷବାଣୀ, ଯାହା ବିଚ୍ଛେଦକୁ ଏତେ ବିଭବବନ୍ତ କରିଦିଏ । ଖୋଲିଦିଏ ଜୀବନପାଇଁ ଏକ ଏକତରଫା ରାସ୍ତା- ଯେଉଁ ରାସ୍ତାରେ କେବଳ ଯିବାକୁ ହୁଏ, ଫେରିବାର ବାଟ ସଂପୂର୍ଣ୍ଣ ରୁଦ୍ଧ ।

ଶ୍ରୀମତୀ ଦାଶ କହିଲେ ଏ ଗାଡ଼ି ଗ୍ୟାରେଜ୍‌ରୁ ଉଠିଲାପରେ ତୁମେ ନେଇ ବ୍ୟବହାର କର । ମୋତେ ନୂଆଗାଡ଼ିଟିଏ କିଣିବା ପାଇଁ ଗାଡ଼ିର ମୂଲ୍ୟବାବଦକୁ ପଚାଶହଜାର ଦେଲେ ଚଳିବ । ତୁମର ତ ଟଙ୍କା ପଇସାର ଅଭାବ ନାହିଁ । ନାନା ଦିଗରୁ ତୁମର ରୋଜଗାର । ମୋତେ ଏତିକି ସାହାଯ୍ୟ କରିପାରିବନି ? ମୁଁ ଏତେ ତୁମ ସାଙ୍ଗରେ ଥାନା ଓ ଇନ୍‌ସୁରାନ୍‌ସ ଅଫିସକୁ ଦଉଡ଼ି ପାରିବିନି ।

ଏ ପ୍ରସ୍ତାବ ପ୍ରତି ଦିନନାଥ ଅସମ୍ମତ ନଥିଲେ । ଘରକୁ ଆଉ ଗୋଟିଏ ଗାଡ଼ି ଆସିବ- ତାହାହିଁ ଯଥେଷ୍ଟ । କିନ୍ତୁ ମର୍ମେ ମର୍ମେ ଅନୁଭବ କରୁଥିଲେ ଶ୍ରୀମତୀ ଦାଶଙ୍କ ନିଷ୍ଠୁରତାକୁ । ତାଙ୍କର କଣ ଟଙ୍କାର ଅଭାବ ଅଛି ଯେ ସେ ଦିନନାଥଙ୍କୁ ଏଥିପାଇଁ ଅଧଲକ୍ଷେ ଟଙ୍କା ମାଗୁଚନ୍ତି ? ଦିନନାଥ ବର୍ତ୍ତମାନ ଚାକିରୀରୁ ଅବସର ପ୍ରାପ୍ତ । ଘରଟିର ସଂପ୍ରସାରଣରେ ଅନେକ ଟଙ୍କା ଖର୍ଚ୍ଚ କରିବାକୁ ହେବ । ପୁଣି କାମ କରିବା ପାଇଁ ପାଖରେ ରହିବ ପିଲାଟିଏ । ତା'ର ସମସ୍ତ ଦାୟିତ୍ୱ- ତାର କଲେଜ ପଢ଼ା ଓ ଭବିଷ୍ୟତ ଦିନନାଥଙ୍କୁ ଚିନ୍ତିତ କରୁଥିଲା । ତଥାପି ସେ ଦୁର୍ବଳତାବଶତଃ ହଁ କରି ଦେଇଥିଲେ ଓ ଥରେ ପ୍ରତିଶ୍ରୁତି



Digitized by PPRACHIN, SOA

ଦେଲେ ଫେରିଆସିବା ତାଙ୍କ ହାତକରେ ନଥିଲା । ସେଇ ପିଲାଟି ଏବେ ତାଙ୍କ ଘରେ ରହୁଚି ।

ଅବସର ପ୍ରାପ୍ତି ପରେ ଦିନନାଥ ଅଫିସ ଓ ସରକାରୀଘର ଛାଡ଼ି ନିଜେ କିଣିଥିବା ସାତ କିଲୋମିଟର ଦୂରବର୍ତ୍ତୀ ଘରକୁ ଚାଲି ଯାଇଥିଲେ । ବିଡମ୍ବନାର କଥା ଦୁଇଟିଯାକ ଏ ସହରର ଘର ସେ ଶ୍ରୀମତୀ ଦାଶଙ୍କ ନାମରେ ହିଁ କିଣିଥିଲେ । ଫଳରେ ଦିନେ ଦିନନାଥଙ୍କ ସାମାନ୍ୟ କିଛି ତ୍ରୁଟିକୁ ଖୁବ୍ ବଡ଼ କରି ମାଆଝିଅ ଦୁହେଁ କହିବାକୁ ସାହସ କରିଥିଲେ "ତୁମେ ଏ ଘର ଛାଡ଼ି ବରଂ ଭଡ଼ା ଘରେ ରୁହ । ଏ ଘର ଭଡ଼ା ଦେଲେ ଯାହା ମିଳିବ ସେଥିରୁ ତୁମ ଭଡ଼ାଘରର ମାସିକ ରେଣ୍ଟ ଦିଆଯିବ ।"

ଦିନନାଥ ତାଜୁବ୍ ହୋଇଗଲେ । ଏ କି ପ୍ରସ୍ତାବ-ପ୍ରଥମେ ଝିଅ ଓ ପରେ ମାଆ ଏଥକଥା କହିବାକୁ କିପରି ସାହସ କରିପାରିଲେ ? ଦିନନାଥ ବାରମ୍ବାର ଜ୍ୟୋତିଷବାଣୀ କଥା ଏଣିକି ଭାବୁଥିଲେ-"ଏ ଝିଅ ବାପା ମାଆଙ୍କ ବିଚ୍ଛେଦର କାରଣ ହେବ ।" ବର୍ଷ ବର୍ଷ ଧରି ବାରବର୍ଷ ବିଚ୍ଛେଦ ପରେ ସେମାନଙ୍କ ଜୀବନଧାରା ଭିନ୍ନ ହୋଇ ଉଠିଥିଲା । ନା ଥିଲା ସଂଗତି, ନା ଥିଲା ବୁଝାମଣା ? ଜୀବନ ଅବଶ୍ୟ ଗଡ଼ି ଗଡ଼ି ଚାଲିଥିଲା ତା ନିଜସ୍ୱ ଗୁଳାରେ- କିନ୍ତୁ ଦିନନାଥ ଜ୍ୟୋତିଷବାଣୀର ଉତ୍କଟତାକୁ ଭୁଲି ପାରୁ ନଥିଲେ । ବାରମ୍ବାର ଭାବୁଥିଲେ କୋର୍ଟର ଆଶ୍ରୟ ନେବେ; ପ୍ରଥମେ ଛାଡ଼ପତ୍ର ଓ ପରେ ସଂପତ୍ତି ବିଭାଜନ- କିନ୍ତୁ ଯାହାହେଲେବି ତାଙ୍କ ମାନସମ୍ମାନ ଉପରେ ନିଶ୍ଚୟ ଆଂଚ୍ ଆସିବ । ଏ ବୁଢ଼ା ବୟସରେ ସେ ସହରର ଓକିଲମାନଙ୍କ ପାଖକୁ ଦୌଡ଼ି ପାରିବେନି । ହୁଏତ କେଶ୍‌ଟିଏ ଦାୟର କଲେ ତାହା ସାମ୍ବାଦିକ ମାନଙ୍କୁ ଚମତ୍କାର ଉପାଦାନ ଯୋଗାଇଦେବ- ସେମାନେ ଆସି ଦିନନାଥଙ୍କ ବାର୍ଦ୍ଧକ୍ୟକୁ ଖିନ୍‌ଭିନ୍ କରିଦେବେ, ନାନା ମନଗଢ଼ା କାହାଣୀରେ ତାଙ୍କ ଜୀବନରୁ ଅବଶିଷ୍ଟ ଶାନ୍ତି ଟିକକୁ ଅପହରଣ କରିନେବେ । ନା- ତା ହେବାକୁ ସେ ଦେବେ ନାହିଁ ।

ଦିନନାଥଙ୍କର ପ୍ରାୟ ଚାଳିଶବର୍ଷ ତଳ କଥା ମନେ ପଡୁଥିଲା । ବଡ଼ ବଡ଼ ଆଖି, ଉଚ୍ଚକପାଳ ଓ ଉଜ୍ଜଳବର୍ଣ୍ଣା ଏଇ ଛୋଟ ଝିଅଟିକୁ ତିନିଚକିଆ ସାଇକେଲରେ ଠେଲି ଠେଲି ସେ ରାସ୍ତାରେ ନେଉଛନ୍ତି । ସେ ହସି ହସି ଗଡ଼ିଯାଉଚି । ସେଇ ଅବସ୍ଥାରେ କେତେ ଫଟୋ ଉଠାଯାଇଛି । ପୁଣି ଆଉ ଟିକିଏ ବଡ ହେଇଗଲାପରେ ସେଇ ଝିଅକୁ ସାଇକେଲ ପଛରେ ବସାଇ ଯାଉଛନ୍ତି- ତା ଗୋଡ଼ ଚକାରେ ପଶି ଚାପି ହୋଇ ଯାଇଚି- ସେଥିରୁ ବହି ଚାଲିଛି ରକ୍ତଧାର । ଦିନନାଥ ବିବ୍ରତ ହୋଇ ପାଖ କୌଣସି କ୍ଲିନିକ୍‌କୁ ଧାଉଁଚନ୍ତି । ପୁଣି ସେଇଝିଅ ଚାଲିଚାଲି ଯାଉଛି ସ୍କୁଲକୁ । ରାସ୍ତାରେ ପ୍ରାୟ ସବୁବେଳେ ଗହଳି, ଅନେକ ଗାଡ଼ିମଟରର ଗତାଗତ-ମନରେ ପାପ ଛୁଉଁଚି ତାର ଆକ୍ସିଡେଣ୍ଟ ହୋଇ ଯିବନିତ ରାସ୍ତାରେ । ଭଗବାନଙ୍କୁ ମନେମନେ ଡାକୁଛନ୍ତି- ପ୍ରଭୁ ସେପରି କିଛି ନହେଉ । ଭଲରେ



Digitized by PPRACHIN, SOA

ଭଲରେ ସ୍କୁଲରୁ ଫେରିଆସୁ ।

ଏହା ଭିତରେ ଝିଅ କେତେ ପାଠ ପଢ଼ିଲାଣି । ଖୁବ୍ ବଡ଼ ଚାକିରୀରେ ଯୋଗ ଦେଲାଣି । ଦେଶର ରାଜଧାନୀ-ସହରରେ ରିସର୍ଚ୍ଚ କଲାଣି । କିନ୍ତୁ ଦିନନାଥଙ୍କ ମନରୁ ଦକ ଯାଉନି । କାଳେ କେତେବେଳେ କେଉଁ ଅଘଟଣ ଘଟିଯିବ । ତାଙ୍କୁ କେହି ଜଣେ ଫୋନ୍ କରି ଜଣାଇବ ଆପଣଙ୍କ ଝିଅ ବସ୍‌ରୁ ଖସିପଡ଼ି ଗୋଡ଼ଭାଂଗି ବସିଛି । ଶୀଘ୍ର ଆସନ୍ତୁ ।

ଦିନନାଥ ଦଉଡ଼ୁଥିବେ ଡାକ୍ତରଖାନାର ଅର୍ଥୋପେଡ଼ିକ୍ସ ଡିପାର୍ଟମେଣ୍ଟକୁ । ସେଠି ପ୍ଲାଷ୍ଟର ହୋଇ ଝିଅ ପଡ଼ିଥିବ- ଦିନେ ନୁହେଁ ମାସାଧିକ । ଗୋଡ଼ର ହାଡ ଭାଙ୍ଗି ଦୁଇଗଡ଼, ଗୋଡ଼ର ଇଲମ ପ୍ରାୟ ବିନଷ୍ଟ । ନୀରବରେ ଆଖିରୁ ଲୁହ ପୋଛୁଥିବେ ଦିନନାଥ । ପଭୁଙ୍କୁ ଡାକୁଥିବେ-"ଏ କଣ କଲ ଠାକୁରେ । ମୋ ଗୋଡ଼ କି ହାତଟା ହେଲେ ଭାଂଗି ଦେଇଥାନ୍ତ - ମୋ ସୁନ୍ଦରୀ ଝିଅକୁ ଏପରି ଛଟପଟ କାହିଁକି କଲ ଠାକୁରେ ।"

ଏହା ଭିତରେ ସେହି ଝିଅ ହୋଇଗଲାଣି ବଡ଼ କବି । ଲେଖିଲାଣି କେତେ କବିତା । ଦ୍ୱିତୀୟ ବହିର ଉନ୍‌ମୋଚନ ଉତ୍ସବ ସେ ଯୋଗାଡ଼ କରିଛି ସ୍ଥାନୀୟ ବଡ଼ ହୋଟେଲରେ । ସହରର ସମସ୍ତ ବଡ଼ବଡ଼ ଲେଖକ ନିମନ୍ତ୍ରିତ । ହଲ୍ ଭରପୁର୍ । ସେ ପୁଣି ନିଜ କବିତା ସଂପର୍କରେ ତାର ଅନୁଭବକୁ ବୟାନ କରି ଭାଷଣ ଦେଉଛି । ଶ୍ରୋତା ମନ୍ତ୍ରମୁଗ୍ଧ । ଆବୃତ୍ତି କରୁଛି ଗୋଟିଏ କବିତା । "ନା- ଆଉ ଗୋଟିଏ ଆବୃତ୍ତି କରନ୍ତୁ ।"- ଶ୍ରୋତାଙ୍କ ତରଫରୁ ଅନୁରୋଧ ଓ କରତାଳି ।

ଦିନନାଥ କିନ୍ତୁ ଖାଦ୍ୟପେୟ ବ୍ୟବସ୍ଥା ପର୍ଯ୍ୟବେକ୍ଷଣ କରୁଛନ୍ତି । ସେ ନିଜସ୍ୱ ଆନନ୍ଦରେ ଏ ବ୍ୟୟଭାର ବହନ କରିଛନ୍ତି । ପୁଣି ଆସି ବସୁଛନ୍ତି ଶ୍ରୋତୃମଣ୍ଡଳୀରେ । ତନ୍ମୟ ହୋଇ ଶୁଣୁଛନ୍ତି ସମସ୍ତଙ୍କ ଅଭିଭାଷଣ । ପୁସ୍ତକଟି ଉନ୍‌ମୋଚନକଲେ ସହରର ସବୁଠାରୁ ବଡ଼ କବି । କରତାଳିରେ ହଲ୍ ମୁଖରିତ । ଝିଅ ନିଜେ ମଂଚରେ ଓ ମଂଚ ଆଗଧାଡ଼ିରେ ବାଣ୍ଟୁଚି ତାର ବହି । କେଜାଣି କାହିଁକି ଦିନନାଥ ଭାବୁଛନ୍ତି ଝିଅ ବୋଧହୁଏ ଚାଲିଚାଲି ଆସି ସେ ବସିଥିବା ପଛଧାଡ଼ିରେ ପହଂଚିବ ଓ ତାଙ୍କୁ ପୁସ୍ତକଟିଏ ଅର୍ପଣ କରି ପାଦଧୂଳି ନେବ । ନା- ତା ହେଉନାହିଁ, ହେବାର ନୁହେଁ ମଧ୍ୟ । ଦିନନାଥ ଧୀରେ ହଲଛାଡ଼ି କାଉଣ୍ଟରକୁ ଚାଲି ଯାଉଛନ୍ତି । ସେଠି ଉନ୍‌ମୋଚିତ ପୁସ୍ତକ ବିକ୍ରି ପାଇଁ ଗଚ୍ଛିତ ଅଛି । ବହିଟିଏ କିଣି ନୀରବରେ ସେ ହୋଟେଲ ଛାଡ଼ି ରାଜରାସ୍ତାକୁ ଚାଲିଆସୁଛନ୍ତି । ଆତ୍ମଗୋପନ କରିବାକୁ ହେବ ଅନ୍ତରାଳରେ- ଅଜାଗା ଘା' ଦେଖି ହୁଏ ନାହିଁ, ଦେଖାଇ ହୁଏ ନାହିଁ ।

ସେଇ ଝିଅ ଆଜି ସାଜିଛି ତାଙ୍କର ପହିଲା ନମ୍ବର ପ୍ରତିବାଦୀ । "ନା-ବୋଉ ଆଉ ତୁମ ପାଖୁ ଯିବ ନାହିଁ । ସେ ତୁମ ପାଖରେ ରହିବାକୁ ଚାହେଁ ନାହିଁ । ତୁମେ ତାକୁ ମାରଧର କରିଚ- ତାରତ ପୁଣି ସମାଜରେ ଗୋଟାଏ ସ୍ଥିତି ଅଛି-ଅଛି ମାନସମ୍ମାନ ।"



Digitized by PPRACHIN, SOA

କେଉଁ ପରିବାରରେ ବା ଏପରି ଛୋଟବଡ଼ କଥା ଘଟୁନାହିଁ ? ଝିଅ ଆଖିକୁ ତା' ମାଆର ଦୋଷତ୍ରୁଟି ଦେଖାଯାଉନି । ତା' ଆଖିରେ ସେ ଗୋଟାପଣେ ସୁଧାର । ଆଉ ବାପା ଜଣେ ନରପିଶାଚ । ବାକ୍ୟବାଣରେ ବୋଉ ଯେ ତାଙ୍କ କଲିଜାଟାକୁ କାଟି ଟୁକୁରାଟୁକୁରା କରି ଦେଉଚି- ସେଠୁ ବୋହୁଚି ପ୍ରଚୁର ରକ୍ତ- ହୃତ୍‌ପିଣ୍ଡର ଅର୍ଦ୍ଧେକ ପ୍ରାୟ ଅଚଳ- ଏସବୁ ତ ବାହାରକୁ ଦେଖାଯାଉନି-ଝିଅ ଦେଖିବ କିପରି ? ଦିନନାଥ ବି କଣ ଏଇ ଝିଅ ପାଖରେ ତାଙ୍କ ପତ୍ନୀ ବିରୁଦ୍ଧରେ ଅଭିଯୋଗ କରିପାରିବେ ? ଅସମ୍ଭବ-ଆମୃତ୍ୟୁ ତାହା ସମ୍ଭବ ନୁହେଁ । ତାଙ୍କ ପୁରୁଷକାର ରୁଧିରାକ୍ତ ହୋଇପାରେ, କିନ୍ତୁ କାହାର ଦୟାପ୍ରାର୍ଥୀ ହୋଇପାରିବେନି ।

ସମ୍ବାଦ ଆସିଚି ବିଜ୍ଞ ଜ୍ୟୋତିଷଙ୍କର ହୋଇଛି ଅପମୃତ୍ୟୁ । ସେ ଆଉ ଇହ ଜଗତରେ ନାହାନ୍ତି । ସେ କଣ ତାଙ୍କ ନିଜ ଜାତକକୁ ପଢ଼ି ନଥିଲେ, ନା ସାଧିବାରେ କିଛି ତ୍ରୁଟି ରଖିଥିଲେ ? ଯିଏ ଅଭ୍ରାନ୍ତ ଭାବେ ଅନ୍ୟର ହସ୍ତରେଖା ଦେଖି ଗଣନା କରୁଥିଲେ ସେ କିପରି ନିଜ ସଂପର୍କରେ ଥିଲେ ଏତେ ଅସାବଧାନ । ରାସ୍ତାରେ ଯାଉଯାଉ କାହିଁକି ତାଙ୍କ ଉପରେ ଗାଡ଼ି ମାଡ଼ିଯିବ । ସ୍ୱାଭାବିକ ମୃତ୍ୟୁଟିଏ ହୁଏତ ସେ ମରିପାରିଥାନ୍ତେ । ଅବଶ୍ୟ ବୟସାଧିକ୍ୟ ତାଙ୍କୁ ଅଶକ୍ତ ଓ ଶିଥିଳ କରିଦେଇଥିବ । ଦିନନାଥ ଭାବୁଥିଲେ ତାଙ୍କୁ କହିବେ ତୁମର ଅଭ୍ରାନ୍ତ ଗଣନାର ସତ୍ୟତାକୁ ମୁଁ ମର୍ମେ ମର୍ମେ ଅନୁଭବ କରୁଚି ଜ୍ୟୋତିଷ ମହାଶୟ । ତୁମ ଆତ୍ମା ସ୍ୱର୍ଗରେ ଶାନ୍ତିରେ ରହୁ । ତୁମେ ସେହିପରି ଯଶସ୍ୱୀ ହୋଇରୁହ ତୁମର ଅଗଣିତ ଶ୍ରଦ୍ଧାଶୀଳ ଓ ତୁମକୁ ବିଶ୍ୱାସ କରୁଥିବା ଦୁର୍ବଳ ମଣିଷମାନଙ୍କ ମେଳରେ । ତୁମ ଜାତକ ଅନେକଙ୍କ ଟ୍ରଙ୍କ୍‌ରେ ସାଇତାଥିବାଯାଏ ତୁମେ କିପରିବା ମରି ପାରିବ ମହାଶୟ ? ଅନ୍ତତଃ ତୁମେ ବଂଚିରହିବ ସେଇ ଜାତକଧାରୀମାନଙ୍କ ମଧ୍ୟରୁ ଶେଷ ଜଣକ ବଂଚି ଥିବାଯାଏ ।





Digitized by PPRACHIN, SOA

# ଘରବିକ୍ରୀ

ସେଦିନ ରାତିରେ ନିଶିକାନ୍ତବାବୁ ଯେତେ ଚେଷ୍ଟା କଲେ ବି ଶୋଇ ପାରୁନଥିଲେ । ବାରମ୍ବାର କଡ଼ ଲେଉଟେଇ ପଦ୍ମନାଭଙ୍କୁ ସ୍ମରଣ କରୁଥିଲେ । ଆଗେ ପଦ୍ମନାଭଙ୍କୁ ସ୍ମରଣ କରିବାମାତ୍ରେ ଆଖିପତା ଲାଗି ଆସୁଥିଲା; ଖୁବ୍ କମ୍ ସମୟ ମଧ୍ୟରେ ଗଭୀର ସୁସୁପ୍ତି ମଧ୍ୟରେ ସେ ହଜି ଯାଉଥିଲେ । ଏବେ ଯେଉଁ ବୟସରେ ନିଦ ଖୁବ୍ ଦରକାରୀ ସେତେବେଳେ ଆଖିରୁ ଏ ନିଦକୁ କିଏ ଯେପରି ଛଡ଼ାଇ ନେଇଛି । ନିଦବଟିକା ଖାଇବାର ସେ ଘୋର ବିରୋଧୀ । ତଥାପି କୋଡ଼ିଏଟି ନିଦବଟିକା ପାଖରେ ରଖିଛନ୍ତି-ଖୁବ୍ ଦରକାର ହେଲେ ଏକାବେଳକେ ସେ ସବୁ ଖାଇଦେଇ ସହଜରେ ସବୁଦିନ ପାଇଁ ଶୋଇ ଯାଇପାରିବେ । ପୁଣି ମୂଳରୁ ସବୁ ଦେବତାଙ୍କୁ ସ୍ମରଣ କରି ଆସିଲେ ନିଶିକାନ୍ତ; ବିଷ୍ଣୁଙ୍କଠାରୁ ବାମନଙ୍କ ପର୍ଯ୍ୟନ୍ତ । ନା, ତଥାପି ନିଦ ଆସୁ ନାହିଁ । କଥାଟାକୁ ମୁଣ୍ଡରୁ ତଡ଼ି ଦେବାକୁ ଯେତେ ଚେଷ୍ଟାକଲେ ବି ତଡ଼ି ପାରୁନାହାନ୍ତି- ଅଥଚ ଛଟପଟ ହେବା ସାର ହେଇଚି ।

ଯେଉଁ ମୁହୂର୍ତ୍ତରୁ ନିଶିକାନ୍ତ ଶୁଣିଲେଣି ତାଙ୍କ ନିଷ୍ଠୁର ବିପଥଗାମୀ ପତ୍ନୀ ଛକ ଜାଗାରେ ସେମାନେ କିଣିଥିବା ଫ୍ଲାଟଟାକୁ ତାଙ୍କୁ ନ ଜଣାଇ ବିକି ଦେଇଛନ୍ତି ସେତିକିବେଳୁ ତାଙ୍କ ମୁଣ୍ଡ ଯେପରି ବିଗିଡ଼ି ଯାଇଛି । ପତ୍ନୀଙ୍କୁ ଅତ୍ୟଧିକ ଭଲପାଇ ରାଜଧାନୀରେ ତାଙ୍କ ନାମରେ ସେ ଦୁଇଟି କୋଠା ବିଭିନ୍ନ ସମୟରେ କିଣିଥିଲେ । ଅବଶ୍ୟ ପତ୍ନୀ ସେଇଥିପାଇଁ ଅଳ୍ପ କିଛି ଟଙ୍କା ତାଙ୍କ ନିଜସ୍ୱ ଆୟରୁ ଦେଇଥିଲେ- ତେବେ ତାର ଅନୁପାତ ଖୁବ୍ ବେଶୀ ହେଲେ ୫:୨ ମଧ୍ୟ ହେବନାହିଁ । ସେମାନେ କଟକ ସହରର ବିଭିନ୍ନ ଭଡ଼ାଘରେ ରହୁଥିବା ବେଳେ ଶସ୍ତାଯୁଗରେ ନିଶିକାନ୍ତ କଟକ ଉପକଣ୍ଠରେ ପ୍ରାୟ ପାଞ୍ଚଗୁଣ୍ଠ ଜାଗାରେ ବିଶାଳ ଦି' ମହଲା ଘରଟିଏ କରିଥିଲେ ତାଙ୍କ ନିଜ ନାମରେ । ସେଥିପାଇଁ ପତ୍ନୀ ପ୍ରତିମା ସବୁବେଳେ କହୁଥିଲେ "ମୋ ନାମରେ ନ କିଣି ତୁମ ନାମରେ କଟକ ଜାଗା କାହିଁକି କିଣିଲ ? ସବୁ ସ୍ୱାମୀମାନେ ପତ୍ନୀ ନାମରେ ଏ ସହରରେ ଘର କିଣି ଦେଇଛନ୍ତି । ତୁମେ ନିଜ ନାମରେ ସେ ଘର ଯଦି କରିଛ ତେବେ ରାଜଧାନୀରେ ମୋ ନାମରେ ଘରଟିଏ କରେଇଦେବ । ତା'ହେଲେ ତୁମେ ତୁମ ପତ୍ନୀଙ୍କୁ ଭଲପାଅ ବୋଲି କହିଲେ ସୁନ୍ଦର ଦିଶିବ" ?

ନିଶିକାନ୍ତ ବରାବର କୁହନ୍ତି- ଦେଖ ତୁମେ ତ ମୋ ଠାରୁ ଅଲଗା କେହି ନୁହଁ । ମୋର ସବୁ ସଂପତ୍ତିବାଡ଼ି ତୁମର ମଧ୍ୟ । ଆଉ ତ କେହି ଭାଗ ନେବାକୁ ନାହିଁ- କାରଣ ମୁଁ



Digitized by PPRACHIN, SOA

ବାପାଙ୍କର ଏକମାତ୍ର ଉତ୍ତରାଧିକାରୀ । ଯେଉଁମାନଙ୍କର ଭାଇଭଗାରୀ ଘର ସେମାନେ ସିନା ନିଜ ଅର୍ଜିତ ଧନରୁ ପତ୍ନୀଙ୍କ ନାମରେ ଘର ତୋଳାଉଛନ୍ତି । ମୋ ସଂପତ୍ତିରେ ତୁମର ସଂପୂର୍ଣ୍ଣ ଅଧିକାର ନାହିଁକି ? ତେବେ ଏପରି ବିଭାଜନ କଥା କହିଁକି ଉଠାଉଛ ?

ତଥାପି ନିଶିକାନ୍ତ ମନେମନେ ସବୁଦିନେ ଭାବୁଥିଲେ ରାଜଧାନୀରେ ଏମିତି ଗୋଟାଏ ଜାଗାରେ ପତ୍ନୀଙ୍କ ନାମରେ ଘରଟିଏ ତୋଳିବେ ଯାହା ତାଙ୍କ ପାଇଁ ବିବାହତିଥିର ବଡ଼ ଉପହାର ହୋଇପାରିବ । ପତ୍ନୀମଧ୍ୟଥିଲେ ରୋଜଗାରକ୍ଷମ; କିନ୍ତୁ ଗୁଡ଼ାଏ ପିଲାଝିଲାଙ୍କ ଭବିଷ୍ୟତ ଚିନ୍ତାରେ ଘରପାଇଁ ହଠାତ୍ ଏତେ ଟଙ୍କା ବ୍ୟୟ କରିବା ସମ୍ଭବ ନଥିଲା । ରାଜଧାନୀର ଭଲଭଲ ଏରିଆରେ ତାଙ୍କର ସହକର୍ମୀମାନେ ମାତ୍ର ଖଣ୍ଡେ ଦରଖାସ୍ତ ଦେଇ ବି.ଡ଼ି.ଏ. ହାଉସିଂବୋର୍ଡ, ଜି.ଏ.ଡ଼ି ମାଧ୍ୟମରେ ଖୁବ୍ ସୁନ୍ଦର ପ୍ଲଟ ହାସଲ କଲାବେଳେ ନିଶିକାନ୍ତ ସେ ଆଡ଼କୁ ଆଦୌ ଦୃଷ୍ଟି ଦେଇ ନଥିଲେ । କଟକରେ ଏଡ଼େବଡ଼ ଘର ତିଆରି ହୋଇଛି ସେଠି ତେବେ କିଏ ରହିବ ? ଉପରତଳ ବତିଶଶହ ବର୍ଗଫୁଟର ବିଶାଳ ସୌଧ । ଏବେ ତିନୋଟି ପରିବାର ସେଠି ଭଡ଼ାରେ ଅଛନ୍ତି- ତଥାପି ନିଶିକାନ୍ତଙ୍କ ବ୍ୟକ୍ତିଗତ ବିଶାଳ ପାଠାଗାର ପାଇଁ ରହିଛି ଦୁଇଟି ପ୍ରକୋଷ୍ଠ । ଆଉ ପୁଣି ଘରକିଣାରେ ଅର୍ଥବ୍ୟୟ କାହିଁକି ?

କିନ୍ତୁ ପତ୍ନୀ ଓ ଉଚ୍ଚଶିକ୍ଷିତ ଝିଅମାନେ ଚାହୁଁଥିଲେ ରାଜଧାନୀରେ ଘର ହେବ । ସେମାନେ କଟକ ପରି ଅଳିଆ ନର୍ଦ୍ଦମା ସହରକୁ ଯିବେ ନାହିଁ । ମଶାମାଛିର ସହର କଟକ । ପୁଣି ଯେଉଁ ଗଳିରେ ଘର ସେଠାକୁ ଆଉ ଟ୍ରକ୍ ଯିବା ସମ୍ଭବ ନୁହେଁ । ନୂଆ ନୂଆ କ୍ରେତାମାନେ ରାସ୍ତା ମାଡ଼ି ବସିଲେଣି । ସବୁ ହୋଇଗଲାଣି ସଂକୀର୍ଣ୍ଣ ଓ ସଂକୁଚିତ । ଗାଡ଼ି ବି ଯାଇ ଗଳିରେ ପଶି ବୁଲିପାରୁନି । ପିଲାମାନେ ହୋଇଗଲେଣି ଖୁବ୍ ବଡ଼- ସେମାନଙ୍କର ଭଲ ମନ୍ଦ ବିଚାର ଶକ୍ତି ପରିପୁଷ୍ଟ ହେଲାଣି । କେହି କେହି ପାଠପଢ଼ି ଚାକିରୀ କଲେଣି- ଖୁବ୍ ଉଚ୍ଚ ବେତନର ଅଧିକାରୀ ସେମାନେ । ପୁଣି କାହାର କାହାର ବିଭାଘର ବି ହେଲାଣି; ଖୁବ୍ ପାଠପଢ଼ା ଉଚ୍ଚବେତନଭୋଗୀ ଜୋଇଁମାନଙ୍କ ସହିତ ଆନନ୍ଦରେ ରହିଲେଣି । ବଡ଼ ବଡ଼ ସହରରେ ଚାକିରୀ କରି ସେମାନେ ବୁଝିଲେଣି ସହର ଜୀବନର ଅର୍ଥ । ବାପା ତିଆରି କରି ଥିବା ସେ କଟକଘରକୁ ଯିବାକୁ ସେମାନଙ୍କର ଆଉ ବେଳ ନାହିଁ, ଶ୍ରଦ୍ଧା ନାହିଁ, ନାହିଁ ମଧ୍ୟ ବାପାଙ୍କ ଭାବାବେଗ ପ୍ରତି ସମ୍ମାନ ଓ ସମର୍ଥନ ।

ଆଉ ଛ' ବର୍ଷ ପରେ ନିଶିକାନ୍ତ ଅବସର ନେବେ । ତା'ପରେ କ'ଣ କଟକରେ ରହି ପାରିବେ ? ପତ୍ନୀ ଦିର୍ଘଦିନଧରି ରାଜଧାନୀରେ ଚାକିରୀ କରି ରାଜଧାନୀର ପ୍ରେମରେ ପଡ଼ି ଗଲେଣି । ସ୍ୱାମୀ ଯେ ଇଟା ଉଠେଇ ମିସ୍ତ୍ରୀ ହାତକୁ ବଢ଼େଇ ଦେଇ ପାଞ୍ଚବର୍ଷ ଧରି ଧୀରେ ଧୀରେ ଦୁଇମହଲା ସୌଧଟିଏ କଟକରେ ତିଆରି କରିଥିଲେ । ସେଇଠି ଜନ୍ମ ହୋଇ ଲାଳିତ ହୋଇଥିଲେ କନ୍ୟାମାନେ, ସେଇଠି ଫୁଟପାଥ୍ରୁ କିଣା ଫ୍ରକ୍ ପିନ୍ଧି ବିନା ଜୋତାରେ ନର୍ଦ୍ଦମାକଡ଼ ରାସ୍ତାରେ ଚାଲିଚାଲି ସ୍କୁଲକୁ ଯାଉଥିଲେ, ସେଇଠି ଗଢ଼ିଥିଲେ ଶୈଶବର ସ୍ୱପ୍ନ- ସେକଥା ସେମାନେ କେବେଠୁଁ ଭୁଲି ଗଲେଣି । ସେମାନେ ପାଠ



Digitized by PPRACHIN, SOA

ପଢ଼ିଲେ ଦିଲ୍ଲୀରେ- ସବୁଠାରୁ ବଡ଼ ବିଶ୍ୱବିଦ୍ୟାଳୟରେ । ସେମାନେ ସରକାରୀ ଚାକିରୀ ପାଇଁ ପ୍ରତିଯୋଗିତାର ଭିଡ଼ରେ ନିଜକୁ ପ୍ରସ୍ତୁତ କଲେ ସେଇ ଦିଲ୍ଲୀରେ । କେହି କେହି ସର୍ବୋଚ୍ଚ ସରକାରୀ ଚାକିରୀ ପାଇଲେ- ସେମାନେ କିନ୍ତୁ ଭୁଲି ଗଲେଣି ଶୈଶବକୁ । ଇଟା ଭଡ଼ାଏ ଆସିବାମାତ୍ରେ କୂଅରୁ ପାଣି ବୋହି ଇଟାକୁ ଭିଜାଇବାର କଷ୍ଟ ସେମାନେ ତ ନିଜ ଅଙ୍ଗରେ ନିଭେଇ ନାହାନ୍ତି- ସେସବୁ ବାପାଙ୍କ କାମ, ବାପା କରିଛନ୍ତି । କିନ୍ତୁ ବାପାଙ୍କ ସେଣ୍ଟିମେଣ୍ଟ ପ୍ରତି ସେମାନେ କାହିଁକି ଧ୍ୟାନ ଦେବେ ! "କଟକ ଘର ବିକିଦିଅ, ରାଜଧାନୀରେ ଘର କର, ଆମେ କେହିବି କଟକ ଯିବୁନି । ତୁମେ ଯଦି ଏକାରହିବ ସେଇଠି ରୁହ, ଆମେ ଏଇ ଭୁବନେଶ୍ୱରରେ ରହିବୁ ।"

ନିଶିକାନ୍ତ ଘୋର ମାନସିକ ଅଶାନ୍ତିରେ ସେ ସମୟରେ ଛଟପଟ ହେଉଥିଲେ । ଶସ୍ତା ସମୟରେ ସେ କରିଥିଲେ ଘର, ଇଟା ଟ୍ରକର ଦାମ ଆଠଶହ ଟଙ୍କା, ସିମେଣ୍ଟ ଦାମ ନ'ଟଙ୍କା, ବାଲିଟ୍ରିପ୍ କୁ ଶହେ ଟଙ୍କା, ସେଇ ହାରରେ ଅନ୍ୟାନ୍ୟ ସାମଗ୍ରୀ । ସମସ୍ତ ତଳମହଲା ପାଇଁ ଖର୍ଚ୍ଚ ହୋଇଥିବ ମାତ୍ର ପଚାଶ ହଜାର ଟଙ୍କା ଓ ଉପର ମହଲା ପାଇଁ ସାମାନ୍ୟ ଅଧିକ । ପିଆଶାଳ କାଠର କବାଟ, ମୋଜାଇକ୍ ଚଟାଣ- ଦେଖିଲାପରି ଘରଟିଏ । ମୋଟର ଚଳେଇ ଦେଲେ ଭୂଇଁ ତଳୁ ପାଣିର ସ୍ରୋତ ଛୁଟିଆସେ, ଚାରିଟା ବାଥ୍ ରୁମ୍ ଓ ଟଏଲେଟ୍ । ସେ ଘର ପ୍ରତି ପତ୍ନୀ ଓ କନ୍ୟାମାନେ ଆସ୍ଥା ହରେଇ ବସିଲେଣି । କ୍ରମେ ସେ ଜାଗା ପ୍ରତି ସେମାନଙ୍କ ମନରେ ଘୃଣା ବଶା ବାନ୍ଧିଲାଣି ।

ନିଶିକାନ୍ତ ସରକାରଙ୍କ ବିଜ୍ଞାପନ ଅନୁସାରେ ଦୁଇଥର ଜି.ଏ. ବିଭାଗକୁ ଆବେଦନ କଲେ । ଲଟେରୀ ଉଠିଲା- ତାଙ୍କ ପାଇଁ ଜାଗା ନାହିଁ । ନିଶିକାନ୍ତ ଜାଣିଥିଲେ ସେ କେବେବି ଭାଗ୍ୟଶାଳୀ ନଥିଲେ; ଅରକ୍ଷ, ହତାଦାର ଜୀବନ ତାଙ୍କର ଆରମ୍ଭ ହୋଇଥିଲା ଶୂନ୍ୟତାରୁ । ପିତାଙ୍କର ପାଠପଢ଼େଇବା ପାଇଁ ବିଭବ ନଥିଲା, ତେଣୁ ଟିଉସନ୍ କରି ପାଠପଢ଼ିବା ଥିଲା ତାଙ୍କ ପନ୍ଥା । ତାରି ମଧ୍ୟରେ ପରୀକ୍ଷା ଦେଇ ଗୋଟିଏ ହାଇସ୍କୁଲରେ ପାଖାପାଖି ଆଠମାସ ପାଠ ପଢ଼େଇବା ମଧ୍ୟରେ ସେ ଯାହା ପ୍ରେମରେ ପଡ଼ିଯାଇଥିଲେ ସେଇ ତାଙ୍କର ପତ୍ନୀ ପ୍ରତିମା ଆଜି ବାରମ୍ବାର ଲଗଉଚି "ମୋ ନାମରେ ଘରଟିଏ କିଣ'' । ପିଲାମାନେ ଆଉ କଟକ ଯିବାକୁ ଚାହୁଁ ନାହାନ୍ତି, କଟକର ଜଳବାୟୁ ଭଲ ନୁହେଁ । ନାଳନର୍ଦ୍ଦମାର ସହର, ମ୍ୟାଲେରିଆ ମଶାର ସହର କଟକ ।

ନିଶିକାନ୍ତ ହାଉସିଂବୋର୍ଡକୁ ଦରଖାସ୍ତଟିଏ ଦେଲେ ପତ୍ନୀଙ୍କ ନାମରେ । ବାରମ୍ବାର ଦଉଡ଼ି ତାଙ୍କ ନିଜ ବ୍ୟକ୍ତିତ୍ୱର ପ୍ରଭାବରୁ ଘରଟିଏ ମିଳିଲା ଶୈଳଶ୍ରୀ ବିହାରରେ । ଆଚାର୍ଯ୍ୟ ବିହାର ବାଣୀବିହାର ଛକଠାରୁ ଦୂରବର୍ତ୍ତୀ, ଜଙ୍ଗଲ ଭରା, ରାସ୍ତାହୀନ, ବସତିହୀନ ଅଞ୍ଚଳ । ପତ୍ନୀ ପ୍ରତିମା ବିରକ୍ତ ହେଇ ଉଠିଲେ- "ମୁଁ କଣ ଏତିକିଦୂରରେ ଘର କିଣିବାକୁ କହିଥିଲି । ରାସ୍ତା ନାହିଁ, ଦିନବେଳା ବି ବିଲୁଆ ଦଳଦଳ ହୋଇ ବୁଲୁଛନ୍ତି, ସାତ କିଲୋମିଟର ଦୂର- ମୋର ଏ ଘର ଦରକାର ନାହିଁ । ମୁଁ ଏଥିପାଇଁ ଟଙ୍କାଟିଏ ବି ଖର୍ଚ୍ଚ କରିବି ନାହିଁ । ତୁମେ କିଣିବାକୁ ଚାହୁଁଚ, ତ ତୁମେ ଜାଣ ।"



Digitized by PPRACHIN, SOA

ନିଶିକାନ୍ତ ଆଉ ଛ' ବର୍ଷ ମଧ୍ୟରେ ଅବସର ନେବେ । କେଉଁଠି ମୁଣ୍ଡ ଗୁଂଜିବେ ? ଭଲ ଜାଗା ତ ସବୁ ବିକ୍ରି ହୋଇ ଗଲାଣି । ଏଣିକି ଯାହା ମିଳିବ ଦୂରରେ । ଭାଗ୍ୟରେ ନ ଥିଲେ ଭଲ ଜାଗାଟିଏ କିମ୍ବା ଭଲ ପତ୍ନୀଟିଏ ମିଳେ ନାହିଁ ବୋଲି ସମସ୍ତେ କହନ୍ତି - ସେଥିପାଇଁ ଯେଉଁ ଚତୁରତା ଦରକାର ତା' ମଧ୍ୟ ତାଙ୍କର ନ ଥିଲା । ତାଙ୍କର ସାଙ୍ଗମାନେ ରାଜଧାନୀର ଭଲ ଭଲ ସ୍ଥାନରେ ଜାଗା କିଣିନେଲେ, ଆଚାର୍ଯ୍ୟ ବିହାର ଓ ଶହୀଦ ନଗରରେ ଅନେକ ଦରଖାସ୍ତ ଦେଲା ମାତ୍ରେ ଜାଗା ପାଇଗଲେ । ସେତେବେଳେ ନିଶିକାନ୍ତ ଦରଖାସ୍ତଟିଏ ଦେଇଥିଲେ ବେଶ୍ କମ୍ ଦାମରେ ଭଲ ପ୍ଲଟଟିଏ ପାଇଥାଆନ୍ତେ; କିନ୍ତୁ ଏତେ କଷ୍ଟରେ ତିଆରି କରିଥିବା କଟକ ଘରକୁ ସେ ଛାଡ଼ି ପାରିଲେନି, କଟକ ତାଙ୍କୁ ଭଲ ଲାଗେ । କଟକ ଐତିହ୍ୟ ଓ ସଂସ୍କୃତିର ସହର- ଏପରି ମୋହ ଶେଷପର୍ଯ୍ୟନ୍ତ ତାଙ୍କୁ ଆଚ୍ଛନ୍ନ କରି ରଖିଥିଲା ।

ଅଥଚ ଶୈଳଶ୍ରୀ ବିହାର ହାଉସିଂବୋର୍ଡ ଘର ପାଇଁ ପତ୍ନୀଙ୍କର ଘୋର ଅନିଚ୍ଛା; ନିଶିକାନ୍ତ ବାଟ ପାଉ ନଥିଲେ । ସାଙ୍ଗ ଇଂଜିନିୟର କିନ୍ତୁ କହୁଥିଲା- ଏଇ ଜାଗା ଆଜି ନିଛାଟିଆ ଥାଇପାରେ, ଦିନେ ସହରର କେନ୍ଦ୍ରାଞ୍ଚଳ ହୋଇ ଉଠିବ । ଏଇଠି ଏକାବେଳକେ ହାଉସିଂ ବୋର୍ଡ ତରଫରୁ ଦୁଇ ହଜାରରୁ ଅଧିକ ଘର ତିଆରି ହେଉଛି । କ୍ରମେ ଇନ୍‌ଫ୍ରାଷ୍ଟ୍ରକ୍‌ଚର ଉନ୍ନତି ହେବ, ପାଣି ନାଳି ଉପରେ ପୋଲ କାମ ଆରମ୍ଭ ହେବ- ଦେଖିବୁ ଏ ଡୁପ୍ଲେକ୍ସ ଘର ହେବ ସବୁଠାରୁ ଆକର୍ଷଣୀୟ । ତୁ କିଛି ନ ଭାବି ବୁକ୍ କରିଦେ ।

ତାରି କଥାହିଁ ହୋଇଥିଲା ନିଶିକାନ୍ତଙ୍କ ପାଇଁ ବେଦରଗାର । କେତୋଟି ଇନ୍‌ଷ୍ଟାଲମେଣ୍ଟରେ ମାତ୍ର ଚାରିଲକ୍ଷ ତିରିଶ ହଜାର ଟଙ୍କାରେ ସେ ପତ୍ନୀଙ୍କ ନାମରେ ଏ ଘର କିଣି ଦେଇଥିଲେ । କିନ୍ତୁ ପ୍ରତିଦିନ ସେ ପତ୍ନୀଙ୍କ ରାଗ ଓ ରୋଷର ଶୀକାର ହେଉଥିଲେ ଏଇ ଘର ଯୋଗୁ । "ମୋ ନାମରେ ଏତିକି ଦୂରରେ ମୁଁ ଘର କିଣିବାକୁ କହିଥିଲି; ମୁଁ ସେ ଘରକୁ କେବେବି ଯିବିନି । ତୁମେ ଯାଇ ସେଇଠି ରହିବ, ସେ ଘର ସାଙ୍ଗରେ ମୋର କିଛି ସମ୍ପର୍କ ନାହିଁ ।"

ନିଶିକାନ୍ତ ବାଟ ପାଉ ନଥିଲେ । ଭଲ ଜାଗାଟିଏ ରାଜଧାନୀରେ କିଣିବା ଥିଲା ତାଙ୍କ ଆର୍ଥିକ ସ୍ଥିତି ବହିର୍ଭୁକ୍ତ, ଜାଗା ବି ମିଳୁ ନଥିଲା । ସବୁଠାରେ ଦଲାଲ, ରିଅଲ୍‌ଇଷ୍ଟେଟ କାରବାରର ଦୌରାତ୍ମ୍ୟ । ରାଜଧାନୀଜାଗାର ମୂଲ୍ୟ ପ୍ରତିବର୍ଷ ଆଶ୍ଚର୍ଯ୍ୟଜନକ ଭାବେ ବଢ଼ି ବଢ଼ି ଚାଲିଥିଲା । ଗୋଟାଏ ଗୋଟାଏ ପ୍ଲଟ ଏକାଧିକ ଥର ବିକ୍ରି ହେଉଥିବା କଥା ଶୁଣିବାକୁ ମିଳୁଥିଲା । ସେତେବେଳେ ମଳି ଧୂଳି ନଥିବା ଗୋଟିଏ ଘର ମଳିଥିବାରୁ ନିଶିକାନ୍ତ ଭଗବାନଙ୍କୁ କୃତଜ୍ଞତା ଜଣାଉଥିଲେ । ଅନ୍ତତଃ ରିଟାୟାରମେଣ୍ଟ ପରେ ସେଠି ମୁଣ୍ଡ ଗୁଂଜି ପାରିବେ । କ୍ୟାମ୍ପସ୍‌ରେ ରହିବା ହୋଇଗଲା ପ୍ରାୟ ପଚିଶ ବର୍ଷ । ତା'ପରେ ଶୈଳଶ୍ରୀ ବିହାର- ହେଉପଛେ ସହରର କେନ୍ଦ୍ରରୁ ଦୂରବର୍ତ୍ତୀ ।

ରାଜଧାନୀରେ ୧୯୯୪ ମସିହା ବେଳକୁ ଏକ ବହୁତଳ ବିଶିଷ୍ଟ ଆକାଶଚୁମ୍ବୀ



Digitized by PPRACHIN, SOA

ଆପାର୍ଟମେଣ୍ଟ ସଂସ୍କୃତି ଗଢ଼ିଉଠିଲା ଓ ପ୍ରାୟ ସମସାମୟିକ ଭାବେ ମେଟ୍ରୋଗୋଷ୍ଠୀ ଯୁବ ଇଂଜିନିୟର କେତେଜଣ ବାଣୀବିହାର କ୍ୟାମ୍ପସ୍‌ର ଅନତିଦୂରରେ ଓ ଆଚାର୍ଯ୍ୟବିହାର କ୍ରସିଙ୍ଗରେ ୪୦ଟି ଫ୍ଲାଟ ବିଶିଷ୍ଟ ସୁନ୍ଦର ଆପାର୍ଟମେଣ୍ଟଟିଏ ଗଢ଼ିବା ପୂର୍ବରୁ ଗରାଖମାନଙ୍କ ପାଇଁ ବିଜ୍ଞାପନ ପ୍ରକାଶ କଲେ । ପତ୍ନୀ ଚାହୁଁଥିବା ଜାଗା ପରି ଜାଗାଟିଏ ହୋଇଥିବାରୁ କାଳବିଳମ୍ବ ନ କରି ନିଶିକାନ୍ତ ପତ୍ନୀଙ୍କ ନାମରେ ବୁକ୍ କଲେ । ଗୋଟିଏ ତିନିବେଡରୁମ ବିଶିଷ୍ଟ ଫ୍ଲାଟ । କାମ ଖୁବ୍ ଦ୍ରୁତ ଗତିରେ ଚାଲୁଥିବାରୁ ପ୍ରାୟ ନିୟମିତ ବ୍ୟବଧାନରେ ଲକ୍ଷେ ଲେଖାଏଁ ଟଙ୍କା ଦେବାକୁ ହେଉଥିଲା । ପତ୍ନୀ ଏ ସ୍ଥାନଟି ପାଇଁ ଥିଲେ ଖୁବ୍ ତୃପ୍ତ- ତେଣୁ ଇନ୍‌ଷ୍ଟାଲମେଣ୍ଟ ଦେବାରେ ସେ ମଧ୍ୟ ଖୁସିରେ ସାମିଲ ହୋଇଯାଇଥିଲେ । ଉଭୟଙ୍କ ଆୟର ମାତ୍ରା ସରକାରଙ୍କ ଦୟାରୁ ଯଥେଷ୍ଟ ବୃଦ୍ଧି ପାଇଥିବାରୁ ଏବେ ଟଙ୍କା ଦେବାକୁ ଆଦୌ ବାଧୁ ନଥିଲା ଯଦିଓ ସ୍ୱାମୀ ସ୍ତ୍ରୀଙ୍କ ଅର୍ଥବ୍ୟୟର ହାର ଥିଲା ପ୍ରାୟ ଆନୁପାତିକ । ଘର ତିଆରି ହୋଇ କ୍ରେତାମାନଙ୍କୁ ହସ୍ତାନ୍ତର କରାଗଲା । ୧୯୯୬ ମସିହାର ବଜାର ଦର ଅନୁସାରେ ଛ' ଲକ୍ଷ୍ୟରୁ ଅଳ୍ପ କିଛି ଅଧିକ । ଘର ପ୍ରତିଷ୍ଠା ହେଲା, ଘରେ ନିୟମଅନୁସାରେ ସ୍ୱାମୀସ୍ତ୍ରୀ ରାତିରେ ଜଗି ରହିଲେ । ତଥାପି ବାଣୀବିହାର ଘରେ ସେମାନେ ରହୁଥିବାରୁ ଏଠାକୁ ସ୍ଥାନାନ୍ତରିତ ହୋଇ ନଥିଲେ । ଝିଅଟିଏ ବଦଳି ହୋଇ ଆସି କେତେବର୍ଷ ଏଇ ଘରେ ରହିଲା । ଘର ପ୍ରତି ପତ୍ନୀ ପ୍ରତିମାଙ୍କର ଗଭୀର ଶ୍ରଦ୍ଧା ଓ ହେପାଜତ ଦେଖି ନିଶିକାନ୍ତ ମନେ ମନେ ଖୁସି ହେଉଥିଲେ । ଗୋଟାଏ ନୁହେଁ, ବର୍ତ୍ତମାନ ଦୁଇଟି ଘର ପତ୍ନୀଙ୍କ ନାମରେ ଖୋଦ୍ ରାଜଧାନୀରେ । ତାଙ୍କ ମନରେ ଆଉ ପୂର୍ବର ଅଭିମାନ ବା ଅସନ୍ତୋଷ ନଥିଲା, ଅପାରଗ ସ୍ୱାମୀ ପ୍ରତି ନଥିଲା ଅଭିଯୋଗ ଓ ବିଦ୍ୱେଷ ।

କିନ୍ତୁ ଝିଅମାନେ କଟକ ଘର ବିକ୍ରିର ଦୁହା ପୁଣି ଉଠେଇଲେ ଓ ପତ୍ନୀ ମଧ୍ୟ ସେମାନଙ୍କ ପକ୍ଷ ନେଇ ଠିଆ ହେଲେ । ଚଞ୍ଚଳ ସେ ଘର ବିକ ଓ ପିଲାମାନଙ୍କୁ ଟଙ୍କା ବାଣ୍ଟିଦିଅ । ସେଠିକି ଆମେ କେହି ବି ଯିବୁ ନାହିଁ । ପିଲାଙ୍କ ବାହାଘର ବେଳେ ଖାଲି ଖାଲି ବିଦା କଲ । ଏବେ ତାଙ୍କ ପ୍ରାପ୍ୟ ତାଙ୍କୁ ଦେଇଦିଅ ।''

କଥାଟା ନିଶିକାନ୍ତ ବାବୁଙ୍କୁ ଖୁବ୍ ବାଧେ । ଖାଲି ଖାଲି ବିଦା କଲେ କିପରି ? ଉତ୍କୃଷ୍ଟ କଲେଜରେ ଓ ଭାରତର ରାଜଧାନୀ ଦିଲ୍ଲୀରେ ପାଠ ପଢ଼େଇବା କଣ ଏତେ ସହଜ କଥା ? ସେଥିପାଇଁ ତ ସେମାନେ ଭାରତୀୟ ପ୍ରଶାସନ ଓ ଓଡ଼ିଶା ଶିକ୍ଷା ବିଭାଗରେ ବଡ଼ ବଡ଼ ଚାକରୀ ପାଇଁ ଯୋଗ୍ୟ ହେଲେ । କ'ଣ ଥିଲା ତାଙ୍କର ନିଜସ୍ୱ ସମ୍ବଳ ? ସେ ତ ପୁଣି ଭଲ ପାଠ ପଢୁଥିବାରୁ ଭଲ ଚାକିରୀ ପାଇଲେ ବିଶ୍ୱବିଦ୍ୟାଳୟରେ । ତେଣୁ ଆର୍ଥିକ ସ୍ଥିତିରେ ଉନ୍ନତି ହେଲା । ଘର କିଣିବାକୁ ସମ୍ବଳ ମିଳିଲା । ଝାଳ ଓ ରକ୍ତ ଦେଇ ଗଢ଼ିଥିବା ଘରକୁ କଣ ଏତେ ସହଜରେ ବିକି ଦେଇ ହୁଏ ?

ଘରେ ସେଥିପାଇଁ ଅସନ୍ତୋଷ କୁହୁଳୁଥିଲା । ନିଶିକାନ୍ତ ହାରିଯାଉଥିଲେ । ଝିଅମାନଙ୍କ ଚାପ ଓ ପତ୍ନୀଙ୍କ ଅସନ୍ତୋଷ-ଶେଷକୁ ସେ ଘର ବିକିବାକୁ ବାଧ୍ୟ ହେଲେ । ଘର କିଣିଥିବା ବ୍ୟବସାୟୀଟି ରେଜେଷ୍ଟ୍ରି ଅଫିସ୍‌କୁ ଯିବା ପୂର୍ବରୁ ଧରେଇ ଦେଇଥିବା



Digitized by PPRACHIN, SOA

କେତେ ଲକ୍ଷ ଟଙ୍କା ଯାହା ବଡ଼ ଝିଅ ହାତରେ ଦେଇଥିଲେ ନିଶିକାନ୍ତ, ସେ ଟଙ୍କା ସମଭାବରେ ଭଉଣୀମାନଙ୍କ ମଧ୍ୟରେ ସେ ବାଣ୍ଟିଦେବ । ଅବଶିଷ୍ଟ ଲଘୁଅଂଶଟି ଧରି ସଂଧ୍ୟାବେଳକୁ କଟକରୁ ଫେରି ଥିଲେ ସେ । ବାଟଯାକ ଆଖିରୁ ଲୁହ ବୋହିଯାଉଥିଲା । ନିଜେ ଗାଡ଼ି ଚଳାଇ ରାଜଧାନୀକୁ ଫେରିବା ରାସ୍ତାରେ ସେ ସବୁଦିନ ପାଇଁ ପ୍ରିୟ କଟକ ସହରଠାରୁ ବିଦାୟ ନେଇଥିଲେ; ବିଦାୟ ନେଇଥିଲେ ସଂସ୍କୃତି ପୀଠ ଉତ୍କଳସାହିତ୍ୟସମାଜ ଓ ଶ୍ରୀରାମଚନ୍ଦ୍ର ଭବନଠାରୁ । କେତେ ଲକ୍ଷ ଟଙ୍କା ହାକିମଙ୍କ ଆଗରେ କ୍ରେତା ବିକ୍ରେତାଙ୍କୁ ଦେବାର ବିଧି ଥିବାରୁ ସେ ଟଙ୍କାକୁ ଧରି ଖୁବ୍ ସଂତ୍ରସ୍ତ ମନରେ ସେ ସଂଧ୍ୟାପୂର୍ବରୁ ବାଣୀବିହାରରେ ପହଞ୍ଚିଥିଲେ । ସେତେବେଳେ କିନ୍ତୁ ପତ୍ନୀ ଆଉ ପାଖରେ ନଥିଲେ । କେତେମାସ ପୂର୍ବରୁ ସେ ବଡ଼ଝିଅ ପାଖରେ ରହୁଥିଲେ ନାତୁଣୀର ଯତ୍ନ ନେବାକୁ । ବାସ୍- ସେଇ ବିଚ୍ଛେଦର ଅବଧି ବଢ଼ି ବଢ଼ି ଚାଲିଥିଲା । ବର୍ଷେ ନୁହେଁ, ଦୁଇ ବର୍ଷ ନୁହେଁ, ପ୍ରାୟ ବାରବର୍ଷ । ପ୍ରେମ କ୍ରମେ ପ୍ରତାରଣାରେ ପରିଣତ ହେଉଥିଲା । ସ୍ୱାମୀ ସ୍ତ୍ରୀର ସଂସାରରେ ନଥିଲା ଶାନ୍ତି ଓ ସଂହତି । କଥା କଟାକଟି କ୍ରମେ ଝଗଡ଼ାରେ ଓ ଝଗଡ଼ା କ୍ରମେ ପରିଣତ ହେଉଥିଲା ଇତର ଆଚରଣରେ । ବର୍ତ୍ତମାନ ନିଶିକାନ୍ତଙ୍କ ନାମରେ ଆଉ ଘରଟିଏ ବି ନାହିଁ । ରାଜଧାନୀ ତାଙ୍କୁ ପ୍ରତାରିତ କରିଚି । ଭଲ ପାଇବା ହୋଇଚି ବିଷାକ୍ତ । ମିଥ୍ୟା ଅଭିଯୋଗ ଓ ପ୍ରତି ଅଭିଯୋଗରେ ସେମାନେ ହୋଇଛନ୍ତି ଦୁଇଟି ଶିବିରଭୁକ୍ତ । ଏଥିପାଇଁ ବଡ଼ ଝିଅ ହିଁ ହୋଇଛି ମୁଖ୍ୟ ଆୟୁଧ । ତାରି କଥାରେ ମାଆ ପରିଚାଳିତ ଓ ନିୟନ୍ତ୍ରିତ । ନିଶିକାନ୍ତ ଯୋଗେଇ ଦେଇ ପାରୁ ନଥିବା ସବୁ ସୁବିଧା ସୁଯୋଗ ସେ ବିଛେଇ ଦେଇଚି ମାଆ ପାଇଁ । ମାଆ କୁଆଡ଼େ ବାପା ପାଖରେ ସୁରକ୍ଷିତ ନୁହେଁ; ବାପା କ୍ଷଣକୋପୀ ଓ ମାଆ ତେଣୁ ଅସହାୟ । ସେ ହିଁ ପ୍ରଚାର କରି ଚାଲିଛି ଏପରି ଅନଭିଜ୍ଞାତ ସନ୍ଦେଶ । ସତେଯେପରି ଏ ପୃଥିବୀରେ ଆଉ କେଉଁଠି ସ୍ୱାମୀସ୍ତ୍ରୀଙ୍କ ମଧ୍ୟରେ ମନୋମାଳିନ୍ୟ ଓ ଝଗଡ଼ା ହେଉନାହିଁ, ମନମନାନ୍ତର ହେଉନାହିଁ । ସବୁ ଦୋଷ ବାପାଙ୍କର- ଏଇ ଧାରଣା ସେମାନଙ୍କୁ ନିଶିକାନ୍ତଙ୍କ ବିରୁଦ୍ଧରେ ଏକ ପ୍ରତିପକ୍ଷ ଶିବିର ଗଢ଼ିବାରେ ସାହାଯ୍ୟ କରିଛି । ବାପା ଆମର କିଛି କରିନାହାନ୍ତି, ସବୁ ମାଆଙ୍କ ଅବଦାନ । ନିଶିକାନ୍ତ ନିଃସଙ୍ଗ ଓ ଅସହାୟ ହୋଇଯିବା ପୂର୍ବରୁ କେଉଁ ଭାଗ୍ୟବିଧାତାଙ୍କ ଅଦୃଶ୍ୟ ଇଚ୍ଛା ତାଙ୍କୁ ଆଉ ଗୋଟିଏ ପରିବାର ସହିତ ବଞ୍ଚିବାକୁ ଯୋଡ଼ି ଦେଇଛି । ପୋଷ୍ୟପୁତ୍ର ଓ ବୋହୂର ସଂସାର ଭିତରେ ଆପାତତଃ ସେ ଏବେ ନିଶ୍ଚିନ୍ତ । ରକ୍ତ ସଂପର୍କ ନ ହେଲେ ବି ସେମାନେ ଆଜି ଭାବ ସଂପର୍କରେ ନିଶିକାନ୍ତଙ୍କ ଜୀବନକୁ କରୁଛନ୍ତି ସରସ, ସୁନ୍ଦର ଓ କୋଳାହଳ ମୁଖର ।

ନିଶିକାନ୍ତ ତଥାପି ନିଶ୍ଚିନ୍ତ ହୋଇ ପାରୁନଥିଲେ । ମେଟ୍ରୋଟାଓ୍ୱାର ଘର ପତ୍ନୀ ବିକିଦେବାପୂର୍ବରୁ ପଦେ ପଚାରି ପାରିଥାନ୍ତେ । ରାଜଧାନୀର କେନ୍ଦ୍ରସ୍ଥଳୀ ଆଚାର୍ଯ୍ୟବିହାର ଛକରେ ଅବସ୍ଥିତ ଏ ଘରକୁ କୌଣସି ପାଗଳ ବ୍ୟକ୍ତି ମଧ ବିକିବାକୁ ଚାହିଁବନି । ତାଙ୍କୁ ପଦେ ପଚାରିଥିଲେ ଆକାଶ ଖସି ପଡ଼ି ନଥାନ୍ତା । ଯେହେତୁ ଦୁଇଟିଯାକ ଘର ଅତ୍ୟଧିକ



Digitized by PPRACHIN, SOA

ପ୍ରେମ ପ୍ରବଣତା ହେତୁ ସେ ପତ୍ନୀଙ୍କ ନାମରେ କରିଦେଇଥିଲେ ନିଶିକାନ୍ତ ରହୁଥିବା ଘରଟିକୁ କାଲି ଟଙ୍କା ଲୋଭରେ ଯଦି ସେ ବିକିଦିଅନ୍ତି କେଉଁଠି ତେବେ ନିଶିକାନ୍ତ ରହିବେ ? ସ୍ୱାମୀର ସଂପତ୍ତିରେ ସ୍ତ୍ରୀର ସଂପୂର୍ଣ୍ଣ ଅଧିକାର ଅଥଚ ସ୍ତ୍ରୀର ସଂପତ୍ତିରେ ଜୀବିତ ସ୍ୱାମୀ କଣ କିଛି ପାଇବାର ବ୍ୟବସ୍ଥା ଆଇନ୍‌ରେ ନାହିଁ ? ଘର ପାଇଁ ସମସ୍ତ ଅର୍ଥ ବ୍ୟୟ କରି ସ୍ୱାମୀ କଣ ରାସ୍ତାରେ ବାସହରା ହୋଇ ବୁଲିବ ? ପ୍ରେମର ପରିଣତି କଣ ଏତେ ନିଷ୍ଠୁରତମ ଆଘାତକୁ ଡାକିଆଣେ ? ପୁଣି ଅଭିଜାତ ଉଚ୍ଚ ଶିକ୍ଷିତ ପରିବାରରେ ? ନିଶିକାନ୍ତ ଭାବି ପାରୁ ନଥିଲେ । ଜୀବନ ଯେ ଏତେ କୁତ୍ସିତ ପ୍ରତାରଣା ହୋଇ ପାରେ ସେ ଭାବିପାରୁ ନଥିଲେ । ଜଣେ ବାପ ଜୀବନବ୍ୟାପୀ ସଂଗ୍ରାମ ସତ୍ତ୍ୱେ ସନ୍ତାନମାନଙ୍କ ଅବହେଳା ଓ ଅମର୍ଯ୍ୟାଦାର ଯନ୍ତ୍ରଣାରେ ଛଟପଟ ହେଉ ହେଉ ସେ ସେଇ ପୁରୁଣା ଦିନର କଥା ମନେ ପକଉଥିଲେ- ପତ୍ନୀ ଏବେବି ଯେପରି ପ୍ରେମ ଛଳ ଛଳ ଭାଷାରେ ତାଙ୍କୁ କହୁଛନ୍ତି- "କଟକ ଘରତ ତୁମ ନାମରେ କଲ, ରାଜଧାନୀରେ ମୋ ନାମରେ ଘରଟିଏ କିଣି ଦିଅନା ପ୍ଲିଜ" । ନିଶିକାନ୍ତ ସେଦିନ ପତ୍ନୀଙ୍କ ପାଇଁ ରାଜଧାନୀରେ ଘର କିଣିବେ ବୋଲି ମନେ ମନେ ଯେଉଁ ଶପଥ ନେଇଥିଲେ ତାରି ଫଳଶ୍ରୁତି ତ ଥିଲା ଏଇ ଘର, ଯାହା ଆଜି ପତି ପତ୍ନୀଙ୍କ ମଧ୍ୟରେ ବିଭାଜନର ମୂଳରହସ୍ୟ । ନାରୀର ଅଭିସନ୍ଧିକୁ ସେ ବୁଝିବାକୁ ସେତେବେଳେ ଚାହିଁ ନଥିଲେ । ନଚେତ ସ୍ୱାମୀର ଅଧିକ ଭାଗ ଅର୍ଥରେ କିଣାଯାଇଥିବା ଫ୍ଲାଟକୁ ସ୍ୱାମୀକୁ ନ ଜଣାଇ କୌଣସି ନାରୀ କଣ ଏକାକୀ ବିକିଦେଇ ପାରେ ? ଖାଲି ମୁହଁରେ "ଏଘର ମୋର ଆଉ ଶୈଳଶ୍ରୀ ବିହାର ଘର ତୁମର" କହିଦେଲେ ତ ଦୁଇଜଣ ବ୍ୟକ୍ତି ବର୍ଷ ବର୍ଷ ଧରି ଅଲଗା ହୋଇ ରହୁଥିଲା ପରି ସଂପତ୍ତି ଅଲଗା ହୋଇଯାଏ ନାହିଁ । ତା' ପୂର୍ବରୁ ଦୁହିଁଙ୍କ ମଧ୍ୟରେ ଆପୋଷ ଡାଇଭୋର୍ସ ଓ ସଂପତ୍ତି ବଣ୍ଟା ହୋଇଯିବା କଥା ନୁହେଁକି ? ଖଳଲୋକଙ୍କ କଥାରେ ସଂପତ୍ତି ବିକ୍ରି କରି ଦେଲାପରେ ନିଶିକାନ୍ତ କୋର୍ଟର ଆଶ୍ରୟ ନେବାକୁ ଭାବୁଥିଲେ । କିନ୍ତୁ ପ୍ରତିଷ୍ଠା ସଂପନ୍ନ କନ୍ୟାମାନେ ଅପମାନିତ ହେବା ସେ ଚାହାନ୍ତି ନାହିଁ । ନଚେତ ଦୈହିକ ଓ ମାନସିକ ଭାବେ ସ୍ୱାମୀ ସ୍ତ୍ରୀ ଏତେ ବର୍ଷ ଧରି ଅଲଗା ରହୁଥିବା 'ଡାଇଭୋର୍ସ' ନୁହେଁ ତ ଆଉ କଣ ହୋଇପାରେ ? କେବଳ ଆଇନ୍‌ର ସମର୍ଥନ ଯାହା ବାକି ରହିଥିଲା । ନିଶିକାନ୍ତଙ୍କ ମନେ ପଡୁଥିଲା କେଉଁଠି ପଢିଥିଲେ - Women are difficult to read and their ways are mysterious. ପ୍ରତିମା ତେବେ କଣ କେବଳ ସଂପତ୍ତି ଲୋଭରେ ତାଙ୍କ ସହିତ ପ୍ରେମର ଖେଳ ଏତେଦିନ ଧରି ଖେଳୁଥିଲା ? ବାସ, ଦୁଇ ଦୁଇଟି ଘର ତା' ନାମରେ ହେଲାପରେ ସେ ସହଜରେ ବିଭିନ୍ନ ଆଳ ଦେଖାଇ ସଂପର୍କ କାଟିଦେଲା, ଅଲଗା ହୋଇଗଲା । ତାକୁ ପାଠ ପଢ଼ାଇ ଚାକିରୀ ପାଇବାରେ ସାହାଯ୍ୟ କରିଥିବାରୁ ସେ ଆଜି ଅନୁତାପ କରୁଥିଲେ । କେବଳ ରୋଜଗାରକ୍ଷମ ନାରୀମାନେ ହିଁ ଆଜିକାଲି ସ୍ୱାମୀକୁ ଛାଡ଼ି ଏକାକୀ ରହିବାକୁ ସମର୍ଥ ହୋଇପାରନ୍ତି । ସେଥିପାଇଁ ସ୍ୱାମୀ ଉପରେ ଯେ କୌଣସି ମିଥ୍ୟା ଅଭିଯୋଗ ଆରୋପ କରା ଯାଇପାରେ । ତେବେ ଆପୋଷରେ 'ଛାଡ଼ପତ୍ର' ଦଉ ନାହାନ୍ତି କାହିଁକି ? ସମାଜକୁ



Digitized by PPRACHIN, SOA

ଭୟ କରିବାର ଆଉ କିଛି ଅଛିକି ? ଆଉ ଅଧିକ ଲଜ୍ଜାର କଥା କଣ ବା ହୋଇପାରେ ? ନା - ଏ ଶୈଳଶ୍ରୀବିହାର ଘର ବିକ୍ରି ପର୍ଯ୍ୟନ୍ତ ତାର ଅପେକ୍ଷା ? ତା'ପରେ ହୁଏତ ନିଶିକାନ୍ତଙ୍କ ପାଖରେ ଗୋଟିଏ ଡାଇଭୋର୍ସ ନୋଟିସ୍ ପହଞ୍ଚିଯିବ । ଆପୋଷରେ ସାମାଧାନ ହୋଇଯିବ ବାରବର୍ଷର ବିଚ୍ଛେଦର ପ୍ରତାରଣା । ହିନ୍ଦୁ ସଂସ୍କୃତିର ପରଂପରା କଥା କହୁଥିବା ଓ ବଡ଼ ବଡ଼ କଥା ଲେଖୁଥିବା ଏ ନାରୀମାନେ ସମାଜର ଯେ କଳଙ୍କ- ଏକଥା ଜାତି ଓ ଦେଶ ଜାଣିବା କଥା ।

ବଡ଼ଝିଅର ଅଭିଯୋଗ- "ତୁମେ ବୋଉକୁ ମାଇଲ । ସେ ଆଉ ତୁମ ପାଖରେ ରହିଥାନ୍ତା କାହିଁକି ?" କିନ୍ତୁ ବୋଉ ଯେ ମାରିବାଠାରୁ ଅଧିକ ଇତର ବାକ୍ୟାଳାପରେ ନିଶିକାନ୍ତଙ୍କ କଲିଜାକୁ ବାରମ୍ବାର କାଟି ଟୁକୁରା ଟୁକୁରା କରିଦିଏ- ସେ ଲହୁଲୁହାଣ ହୋଇ ଉତ୍ତେଜନାରେ ହୁଏତ ଚାପୁଡ଼ାଟାଏ ପକାନ୍ତି, ସେ କଥା ଏ ଝିଅମାନଙ୍କୁ ଦେଖା ନ ଯାଏ କିପରି ? ସେମାନେ ମାତୃ ଶିବିରଭୁକ୍ତ- ସେଠି ଆଉ କିଛି ଯୁକ୍ତି ଥାଏ କି ? ଅନ୍ଧମାତୃମମତା ପାଖରେ ପିତାର ଜୀବନବ୍ୟାପୀ ତ୍ୟାଗ ଓ ପ୍ରାଣପାତ ଶ୍ରମ ସବୁ ମୂଲ୍ୟହୀନ ହୋଇଯାଏ କେବଳ ।

ନିଶିକାନ୍ତ ରାତ୍ରିର ଶେଷ ପ୍ରହରରେ ଜୋର୍ କରି ଆଖିମୁଦି ଶୋଇବାକୁ ଚେଷ୍ଟା କରୁଥିଲେ । ବୋଧହୁଏ ଗାଢ଼ ନିଦ ଆସିଗଲା - ନଚେତ ସ୍ୱପ୍ନ ଦେଖନ୍ତେ କିପରି ? ସ୍ୱପ୍ନରେ ଦେଖିଲେ ତାଙ୍କ ଘର ଆଗରେ ଖୁବ୍ ବଡ଼ କୋଳାହଳ ଲାଗି ରହିଛି । ଚାରିଜଣ ଗୁଣ୍ଡାଙ୍କ ସାଙ୍ଗରେ ତାଙ୍କ ଝିଅ ଓ ପତ୍ନୀ ଘର ସାମ୍ନାରେ ଠିଆ ହୋଇ ଶୀଘ୍ର ଘର ଛାଡି ପ୍ରାଣଧରି ଚାଲିଯବାକୁ ହକାରି କହୁଛନ୍ତି । ନଇଲେ ଏ ଗୁଣ୍ଡାମାନେ ହୁଏତ ମାରିଦେବେ । ନିଶିକାନ୍ତ କଣ କହିବାକୁ ଚାହୁଁଛନ୍ତି ତା' କହିପାରୁନାହାନ୍ତି- ଗୋଟାପଣେ ଥରୁଚନ୍ତି । ଜଣେ ଗୁଣ୍ଡା କାଗଜଟିଏ ବଢ଼େଇ ଦେଇ କହୁଛି- ଡାଇଭୋର୍ସ କାଗଜରେ ଜଲଦି ଦସ୍ତଖତ କର, ନଇଲେ ତୋ' ମୁଣ୍ଡ ଫଟେଇ ଦେବି । କେତେଟା ଶିଆଳ ଆଗରାସ୍ତା ଦେଇ ଦଉଡ଼ି ଦଉଡ଼ି ଯାଉଚନ୍ତି- ପୂର୍ବଦିଗ କ୍ରମେ ଫର୍ଚ୍ଚା ହୋଇ ଆସୁଚି । ନିଶିକାନ୍ତ ଅସ୍ୱଷ୍ଟ ଭାଷାରେ କଣ ଗୋଟାଏ ଉଚ୍ଚାରଣ କରୁଛନ୍ତି ତାହା ଅଭିଶାପ କି ଆଶୀର୍ବାଦ ବୁଝି ହେଉନି ।





Digitized by PPRACHIN, SOA

# ଧୂସର ସୀମାନ୍ତ

ମି.ସିଂ ଚାଙ୍ ଓ ଚାନ୍ ମାଓଙ୍କ ବେଦନାକ୍ଲାନ୍ତ ଦେହରେ ଆସନ୍ନ ପ୍ରଭାତର ବେପଥୁ । ଲାଦାଖ୍‌ର ପରିଚିତ ଆକାଶ ହିମାଙ୍କର ଅଶ୍ରୁରେ ହୋଇ ଉଠିଛି ବିଷଣ୍ଣ ଓ ବିଧୁର । ଚାରିଆଡ଼େ ଘେରି ରହିଛି କୁହୁଡ଼ିର ଧୂସର ଆବରଣ । ପାହାଡ଼ର ବଂଧୁର ଶଯ୍ୟାରେ ବିଗତ କାଳରାତ୍ରିର ବରଫ ଆସ୍ତରଣ ଜମି ରହିଛି । ଦୂରରୁ ଶୁଭୁଛି ଟ୍ୟାଙ୍କର ଭୟଙ୍କର ଶବ୍ଦ । ଗିରିଗୁହାରେ ତାର ଅସ୍ପଷ୍ଟ ପ୍ରତିଧ୍ୱନି । ଭାରତ ସହିତ ଐତିହାସିକ ବଂଧୁତାକୁ ବିଚ୍ଛିନ୍ନ କରି ଚାଇନା ନଗାଧିରାଜ ହିମାଳୟର ଜନହୀନ ତୁଷାରାଚ୍ଛନ୍ନ ଅଞ୍ଚଳରେ ରକ୍ତର ହୋରି ଖେଳୁଛି । ଦୂରରୁ ଶୁଭୁଛି ସେହି ବଂଧୁଦ୍ରୋହୀ ସଂଗ୍ରାମର ଅଶୁଭ ସଂକେତ ।

ମି.ସିଂ ଚାଙ୍ ଓ ଚାନ୍ ମାଓ ଆକାଶକୁ ନରୀକ୍ଷଣ କଲେ । ବେଦନାର୍ତ୍ତ ଆହତ ସରୀସୃପ ପରି ଆକାଶ ଲମ୍ବିଯାଇଛି । ଦୂରରୁ ଅସ୍ପଷ୍ଟ ଦିଶୁଚି ହିମାଳୟର ତୁଷାରାଚ୍ଛନ୍ନ ଗିରୀଶୃଙ୍ଗ । କୈଳାସ ଶିଖରରେ ପ୍ରଭୁ ତ୍ର୍ୟମ୍ବକଙ୍କ ପବିତ୍ର ଅଧିଷ୍ଠାନ । ନିମ୍ନରେ ରକ୍ତଲୋଲୁପ ମଣିଷର ଅହଂକାରୀ ଆତ୍ମପ୍ରତାରଣା । କ୍ରମାଗତ ଭାବେ ତିନିଦିନର ପ୍ରବଳକ୍ଷୁଧା ଦୁଇ ଆହତ ସୈନିକଙ୍କ ଜଠରରେ ଅଗ୍ନି ଜାଳି ଦେଉଚି । ଶୀତର ପ୍ରକୋପରେ ଦେହ ଜଡ଼ ଓ ଅବସନ୍ନ । ବାରମ୍ବାର ଦେହର ମାଂସପେଶୀ ପ୍ରସାରିତ ଓ ସଂକୁଚିତ ହେଉଚି । ମି.ସିଂ ଚାଙ୍ ଓ ଚାନ୍ ମାଓ ଲୋଚାକୋଚା ଅବସ୍ଥାରେ ଦୁଇଖଣ୍ଡ ପଥରକୁ ଆଉଜି ବସିଛନ୍ତି । ଦେହର ମିଲିଟାରୀ ପୋଷାକ ଉପରୁ ବହଳ କୁହୁଡ଼ିର ଶୁଭ୍ର ପ୍ରଲେପ କ୍ରମେ ନିଭି ଆସୁଛି । କାହାରି ମୁହଁରେ କଥା ନାହିଁ । ପରସ୍ପର ପ୍ରତି ନାହିଁ ବାର୍ତ୍ତାର ବିନିମୟ । ଅତି ଅବସନ୍ନ ଅବସ୍ଥାରେ ଦୁଇଗୋଡ଼ର ଆଣ୍ଠୁ ମଝିରେ ମୁଣ୍ଡଗୁଞ୍ଜି ଆହତ ସୈନିକ ଦୁଇଜଣ ବୋଧହୁଏ ନୀରବରେ ଭାଗ୍ୟର ବିପର୍ଯ୍ୟୟ କଥାହିଁ ଭାବୁଛନ୍ତି ।

ଭାରତ ସୀମାନ୍ତର ଏକ ଜନମାନବଶୂନ୍ୟ ନିରାଡମ୍ବର ଘାଟୀ । ହଠାତ୍ ତାହାରି ଉପରକୁ ଆହତ ଶାର୍ଦ୍ଦୁଳ ଦଳପରି ମାଡ଼ି ଆସିଲେ ଚାଇନାର ସେନାବାହିନୀ । ନିରୀହ ମଣିଷମାନଙ୍କ ରକ୍ତରେ ହିମାଳୟର ଧବଳ ତୁଷାର ଶଯ୍ୟା ଲୋହିତ ହୋଇ ଉଠିଲା । ମରଣମୁଖୀ ମଣିଷର ଆହତ ଚିତ୍କାରରେ ଆକାଶ ହେଲା ପ୍ରତିଧ୍ୱନିତ । ମୃତ୍ୟୁର କୃଷ୍ଣଛାୟାତଳେ ମଣିଷର ବଂଚିବାର ଅଦମ୍ୟ ସ୍ପୃହା ନିଭି ନିଭି ଆସିଲା । ସାକ୍ଷୀ ରହିଲେ ଅଥର୍ବ ମୂକଶିଳା ଓ ନିର୍ବେଦ ପାଇନ ବୃକ୍ଷରାଜି । ଉଭୟପକ୍ଷରେ ସହସ୍ରାଧିକ ଜୀବନର କରୁଣ ପରିସମାପ୍ତି ପରେ ମି. ସିଂ. ଚାଙ୍ ଓ ଚାନ୍ ମାଓ ପ୍ରକାଣ୍ଡ ଶିଳାଖଣ୍ଡ ତଳୁ ଆତ୍ମରକ୍ଷା କରି ଚାରିଆଡ଼କୁ ଚାହିଁଲେ । ସଂଗ୍ରାମ ଭୂମି ପ୍ରାୟ ପରିତ୍ୟକ୍ତ ହୋଇ ପଡ଼ି ରହିଛି ।



Digitized by PPRACHIN, SOA

ଉଭୟପକ୍ଷର ଗରିଲାବାହିନୀ ନିଶ୍ଚିହ୍ନ ହୋଇଛନ୍ତି । ଚାରିଆଡ଼ ବିକ୍ଷିପ୍ତ ହୋଇ ପଡ଼ିଛି ହିଂସ୍ର ମଣିଷର ଶକ୍ତିହୀନ ଶବ- ସେମାନେ ଯେପରି ଜୀବନଥିଲା ମଣିଷର ହିଂସ୍ର କାମନାକୁ ଉପହାସ କରି ମାଟିକାମୁଡ଼ି ପଡ଼ିରହିଛନ୍ତି ।

ମି.ସିଂ ଚାଙ୍ ଓ ଚାନ୍ ମାଓଙ୍କ ଗୋଡ଼ରେ ପ୍ରତିପକ୍ଷର ଗୁଳି ବିଦ୍ଧ ହୋଇଥିଲେ ବି ସେମାନେ ବଂଚିଯାଇଛନ୍ତି । କେବଳ ପରିଧାନରେ ରକ୍ତ ଜମି ଶୁଖି ଯାଇଛି ଓ ତା ମଧ୍ୟରୁ ଏକ ଉତ୍କଟ ଆଇଁଷିଣିଆ ଗନ୍ଧ ସ୍ପଷ୍ଟ ବାରିହୋଇ ପଡୁଚି । କେଉଁଠି କେଉଁଠି ଲାଗି ରହିଛି ରକ୍ତର ବହଳିଆ କୃଷ୍ଣ ଦାଗ । ଅପରିସୀମ ଯନ୍ତ୍ରଣାରେ ଅଧୀର ହୋଇ ଚାନ୍ ମାଓ ସିଂ ଚାଙ୍‌ଙ୍କ ଆଡକୁ ପାଣି ପାଇଁ ଇସାରା ଦେଉଚନ୍ତି । ସେ କଥା କହିବାର ଶକ୍ତି ହରାଇ ବସିଛନ୍ତି । ତିନିଦିନର ଅନାହାର ଓ କ୍ରମାଗତ ରକ୍ତସ୍ରାବ ପରେ ସେ ସଂପୂର୍ଣ୍ଣ ଚଳତ୍ ଶକ୍ତିହୀନ ହୋଇପଡ଼ିଛନ୍ତି ।

ମି.ସିଂ ଚାଙ୍ ନିଜ ପରିଧାନର ପ୍ୟାକେଟ୍‌ରୁ ରୋଟିର ଟୁକୁରା କେତୋଟି କାଢ଼ି ଚାନ୍ ମାଓଙ୍କ ଆଡ଼କୁ ବଢ଼ାଇ ଧରିଲେ । ଦେହର ପରିଧାନ ଭିଜି ରୁଟି ଟୁକୁରାଗୁଡ଼ିକ ଓଦା ହୋଇଯାଇଛି । ସେଥିରୁ ବି ବାହାରୁଥିବା ଦୁର୍ଗନ୍ଧ ସ୍ପଷ୍ଟ ବାରିହୋଇ ଯାଉଚି । ଅତି ଆକୁଳ ଭାବରେ ସେଇ ରୁଟି ଟୁକୁରା ଉଦ୍ଦେଶ୍ୟରେ ଚାନ୍ ମାଓ ବିକଳ ଭାବେ ହାତ ବଢ଼େଇ ଚାହିଁ ରହିଲେ । ମି. ସିଂ. ଚାଙ୍ ଟିକିଏ ଘୁଞ୍ଚି ଆସି ରୁଟି ଟୁକୁରା ଦୁଇଟି ଚାନ୍ ମାଓଙ୍କ ହାତରେ ଧରାଇଦେଲେ ଓ ଚାହିଁ ରହିଲେ ଅପସୃୟମାନ ଦିଗ୍‌ବଳୟକୁ- ଯେଉଁଠି ପ୍ରଭାତର ବହଳ କୁହୁଡ଼ି କ୍ରମେ ନିଭିଯାଇ ଓ ସ୍ପଷ୍ଟ ହୋଇ ଉଠୁଥିଲା ସବୁଜ ଅରଣ୍ୟାନି ।

ଚାନ୍ ମାଓ ରୁଟି ଟୁକୁରାଟିକୁ ପାଟିରେ ଥୋଇଲେ; କିନ୍ତୁ ତାକୁ ଗର୍ଭସାତ୍ କରିବାକୁ ସେ ଥିଲେ ସଂପୂର୍ଣ୍ଣ ଅକ୍ଷମ । କଣ୍ଠ ତାଙ୍କର ଅସ୍ୱାଭାବିକ ଭାବେ ଶୁଷ୍କ ହୋଇ ଉଠିଥିଲା । ସେ ଜଳ ପାଇଁ ଠାରିଲେ ଓ ଅତି ଦୟନୀୟ ଭାବେ ସିଂ ଚାଓଙ୍କୁ ଚାହିଁରହିଲେ । ନିରୁପାୟ ସିଂ ଚାଓଙ୍କ ମୁହଁରେ ଆହତ ବଂଧୁଙ୍କ ପ୍ରତି ଗଭୀର କାରୁଣ୍ୟର ରେଖା ସ୍ପଷ୍ଟ ହୋଇ ଉଠିଲା । ଜୀବନର ଧୂସର ସୀମାନ୍ତରୁ ସେ ଦୁଇଜଣ କୌଣସି ମତେ ବଞ୍ଚିଯାଇଛନ୍ତି । ଆଖି ଆଗରେ ଦେଖିଛନ୍ତି ଶହ ଶହ ସୈନିକଙ୍କ ଶବ କିପରି ମାଟି କାମୁଡ଼ି ପଡ଼ିରହିଛି । ପାଣି ପାଇଁ ଚିତ୍କାର କରି କେତେ ଭାରତୀୟ ତରୁଣ ସିପାହୀ ବେକକଟା ଛେଳି ପରି ମରିପଡ଼ିଛନ୍ତି । କେହି ତାଙ୍କୁ ପାଣି ଟୋପାଏ ଦେବାକୁ ପାଖରେ ନାହିଁ । ଠିକ୍ ସେହିପରି ସମଦଶା ଭୋଗିଛନ୍ତି କେତେ ଚାଇନିଜ୍ ସୈନିକ । ସେମାନଙ୍କ ବେଦନାର୍ତ୍ତ ରୋଦନରେ ଆକାଶ ହୋଇ ଉଠିଛି ସ୍ଥିର ଓ ନିର୍ବାତ । ତା'ପରେ ମୃତ୍ୟୁର ନିଶ୍ଚଳ ନୀରବତା । ବିକ୍ଷିପ୍ତ ହୋଇ ପଡ଼ିଛି ଅସଂଖ୍ୟ ରାଇଫଲ୍ । ତାହାହିଁ ଥିଲା ସେମାନଙ୍କ ବିକ୍ରମ ଓ ଅହମିକାର ପ୍ରତୀକ ।

ମି. ସିଂ ଚାଙ୍ ଆସ୍ତେ ଉଠି ବଂଧୁ ଚାନ୍ ମାଓଙ୍କୁ ଉଠେଇବାକୁ ଚେଷ୍ଟା କଲେ । ତା'ପରେ ତାଙ୍କର ଦୁଇହାତକୁ ନିଜ ବେକରେ ଛନ୍ଦି ଜଳଉତ୍ସ ଉଦ୍ଦେଶ୍ୟରେ ଆସ୍ତେ ଆସ୍ତେ ଅଗ୍ରସର ହେଲେ । କେତେ ପରିଚିତ ଓ ଅପରିଚିତ ମଣିଷଙ୍କ ଶବ ମଧ୍ୟରେ ରାସ୍ତାକାଟି ଧୀରେ ଧୀରେ ଦକ୍ଷିଣ ଦିଗର କ୍ରମ ନିମ୍ନଭୂମିକୁ ସିଂ ଚାଙ୍ ଆସିବାକୁ ଚେଷ୍ଟାକଲେ । ଦେହ



Digitized by PPRACHIN, SOA

ସଂପୂର୍ଣ୍ଣ ଶକ୍ତିହୀନ । ପାଣ୍ଡୁର ମୁଖମଣ୍ଡଳରେ ଗଭୀର ଅବସାଦର ରେଖା ସ୍ପଷ୍ଟ ହୋଇ ଉଠୁଛି । ପେଟରେ କ୍ଷୁଧା ଆଉ କଣ୍ଠରେ ନିରୁକ୍ତ ତୃଷା ।

ଆଗରେ ଜଣେ ଭାରତୀୟ ସୈନିକଙ୍କୁ ସେ ଭେଟିଲେ । ଦେହରେ ଯୁଦ୍ଧର ପୋଷାକ- ୟୁନିଫର୍ମ । ସିଂ ଚାଙ୍ଗ୍ ପ୍ରମାଦ ଗଣିଲେ । ଭାରତୀୟ ସୈନିକଙ୍କ ଦୃଷ୍ଟିପଥରୁ ନିଜକୁ ସଂଗୋପନରେ ରଖିବା ପାଇଁ ଯଥାସାଧ୍ୟ ଚେଷ୍ଟାକଲେ । କିନ୍ତୁ ପାରିଲେ ନାହିଁ । ଅତି ବିଷଣ୍ଣ ଭାବରେ ଚାନ୍ ମାଓଙ୍କ ଅବଶ ଶରୀରକୁ କାନ୍ଧରେ ପକାଇ ସେହିପରି ଅବସ୍ଥାରେ ଠିଆ ହୋଇ ରହିଲେ ।

ଭାରତୀୟ ସୈନିକ ଜଣକ ପାଖକୁ ଲାଗି ଆସିଲେ । ସିଂ. ଚାଙ୍ଗ୍ ଦେଖି ବିସ୍ମିତ ହେଲେ; ଶତ୍ରୁର ହିଂସ୍ର ପ୍ରତିଶୋଧ ନିଶା ତାଙ୍କ ମୁଖମଣ୍ଡଳରେ ନଥିଲା । ନଥିଲା ମଧ୍ୟ ପ୍ରତିହିଂସାର ବହ୍ନିମାନ ଶିଖା । ତାଙ୍କର ସମଗ୍ର ବ୍ୟକ୍ତିତ୍ୱରେ ଫୁଟି ଉଠୁଥିଲା ଏକ ବିସ୍ମୟଜନକ କାରୁଣ୍ୟ । ଆଖିରେ ବେଦନାକ୍ଳାନ୍ତ ମଣିଷ ପାଇଁ ଆଶିଷଧାରା । ଭାରତୀୟ ସୈନିକଙ୍କ ଆଖିରେ ଚାଇନାର ଏ ଦୁଇ ଅସହାୟ ସିପାହୀଙ୍କ ଅବସ୍ଥା ଦେଖି ଲୁହ ଜମି ଆସିଲା । କାରୁଣ୍ୟ ଓ କୋମଳତାର ସହିତ ସେ ସେମାନଙ୍କୁ ଚାହିଁ ରହିଲେ । ସମ୍ଭବତଃ ଏ ବିପନ୍ନ ସୈନିକଙ୍କୁ ସାହାଯ୍ୟ କରିବା ପାଇଁ ତାଙ୍କ ମନ ବ୍ୟାକୁଳ ହୋଇ ଉଠୁଥିଲା ।

ସିଂ ଚାଙ୍ଗ୍ ଓ ଚାନ୍ ମାଓ ଅଭୟ ପାଇ ଏକାସମୟରେ ଜଳମୁନ୍ଦାଏ ପାଇଁ ସଂକେତ ଦେଲେ । ଭାରତୀୟ ସୈନିକ ଜଣକ କାଳବିଳମ୍ବ ନ କରି ନିଜ ଥଳିରେ ଥିବା ଢିଙ୍କ୍‌ପାତ୍ରରେ ନିକଟବର୍ତ୍ତୀ ଝରଣାରୁ ନିର୍ମଳ ଜଳଆଣି ଦୁଇ ଆହତ ସୈନିକଙ୍କ ମୁଖରେ ଦେଲେ । ସେ ଦୁହେଁ ସମସ୍ତ ପାନପାତ୍ରକୁ ନିଃଶେଷ କରିଦେଇ ଆଉ ଅଧିକ ଜଳପାଇଁ କରୁଣ ଭାବରେ ଏଇ ଆଗନ୍ତୁକ ସୈନିକଙ୍କୁ ଚାହିଁ ରହିଲେ । ପୁନଶ୍ଚ ସେଇ ଝରଣାରୁ ଆଉ ଏକପାତ୍ର ଜଳ ବହି ଆଣିଲେ ଭାରତୀୟ ସୈନିକ । ତା'ପରେ ନିଜ ଥଳିରୁ କେତେ ଖଣ୍ଡି ରୁଟି ଓ ବିସ୍କୁଟ କାଢ଼ି ସେମାନଙ୍କୁ ଖାଇବାକୁ ଦେଲେ ।

ସିଂ ଚାଙ୍ଗ୍ ବିସ୍ମିତ ହେଉଥିଲେ । ଆଗ୍ରହ ସହିତ ଆହତ ଉଦ୍‌ବେଗ ତାଙ୍କୁ ମ୍ରିୟମାଣ କରି ଦେଉଥିଲା । ଏଇ ଭାରତର ପବିତ୍ରମାଟିରେ ଶତ୍ରୁ ପ୍ରତି ଆଚରଣ ଦେଖି ତାଙ୍କୁ ସ୍ୱପ୍ନ ପରି ଲାଗୁଥିଲା । କେବଳ ବିନୀତ କୃତଜ୍ଞତାର ନିରୁଦ୍‌ବିଗ୍ନ ଦୃଷ୍ଟିରେ ସେ ଭାରତୀୟ ସୈନିକଙ୍କୁ ଚାହିଁ ରହିଥିଲେ ।

ଭାରତୀୟ ସୈନିକ କହିଲେ- "ଏଇ ଯେଉଁ ଜଳ ତୁମକୁ ପାନ କରିବାକୁ ଦେଲି ତାହା ବହିଯାଇ ଗଙ୍ଗୋତ୍ରୀର ଧାରାକୁ ପବିତ୍ରିତ କରେ । ଏଠାର ପବିତ୍ରଜଳ ଆମର ଇଷ୍ଟ, ଆମର ପୂଜାର ସାମଗ୍ରୀ । ତୁମର ସମସ୍ତକ୍ଷତ ଏଇ ଜଳସ୍ପର୍ଶରେ ଆରୋଗ୍ୟ ଲାଭ କରିବ । ଭାରତୀୟ ସୈନିକ ଏତେ ଉଦାର ଓ ମହାନ୍ ହୋଇ ପାରନ୍ତି ସିଂ ଚାଙ୍ଗ୍ ବିଶ୍ୱାସ କରିପାରୁ ନଥିଲେ । କେବଳ ନିଷ୍କଳଙ୍କ ଦୃଷ୍ଟିରେ ତାଙ୍କୁ ଚାହିଁ ରହିଥିଲେ । ସତେ ଯେପରି ଝରଣାର ଜଳ କଳତାନରେ ଏହି ଆହତ ସୈନିକ ଦୁହିଙ୍କୁ ସ୍ୱାଗତ ସଂଗୀତ ଗାନ କରି ଗାଙ୍ଗେୟ ଭୂମିକୁ ଆମନ୍ତ୍ରଣ କରୁଥିଲା । ଆକାଶରୁ କୁହୁଡ଼ି ସଂପୂର୍ଣ୍ଣ ନିଶ୍ଚିହ୍ନ ହୋଇଯାଇଥିଲା । ଦୂରରୁ



Digitized by PPRACHIN, SOA

ଶୁଭୁଥିଲା କୌଣସି ଅର୍ହତ ଶାନ୍ତ ସନ୍ୟାସୀଙ୍କ ପ୍ରଭାତକାଳୀନ ଆହ୍ବ ସଂଗୀତ "ମାୟା ସଂସାର ତାମ୍‌ବୋଡା" ।

ଭାରତୀୟ ସୈନିକ କହିଲେ- ଦେଖ ଭାଇ, ଅଦୂରରେ ଏଇ ଯେଉଁ ତୁଷାରାଛନ୍ନ କୈଳାସ ପର୍ବତର ଶୃଙ୍ଗ ଦେଖାଯାଉଛି ସେଠି ଅଛନ୍ତି ଆମ ହିନ୍ଦୁ ଜାତିର ଆରାଧ୍ୟ ଦେବତା ହରପାର୍ବତୀ । ସେମାନେ କେଉଁ ଅନାଦିକାଳରୁ ସମ୍ଭବତଃ ସୃଷ୍ଟି ଲଗ୍ନରୁ ଭାରତକୁ ଜଗି ରହିଛନ୍ତି । ଆଜିର ଏ ଦାରୁଣ ଦୁର୍ଦ୍ଦଶାରେ ସେ ଠାକୁରମାନେ ବିଷଣ୍ଣ ହୋଇ ଚାହିଁ ରହିଥିବେ ।

ସିଂ ଚାଙ୍ଗ୍ କଣ କହିବାକୁ ଚେଷ୍ଟା କରୁଥିଲେ- ତାଙ୍କର କଣ୍ଠ ରୁଦ୍ଧ ହୋଇଗଲା । ଭାରତୀୟ ସୈନିକ ପ୍ରଗଲ୍‌ଭ ଭାବରେ ଗପି ଚାଲିଲେ-"ଭାରତ ଏକ ଧର୍ମ ନିରପେକ୍ଷ ରାଷ୍ଟ୍ର । ସେ ପ୍ରତିବେଶୀର ଗୌରବ କାମନା କରେ, ଉନ୍ନତି ଚାହେଁ । ଚାଇନାର ଅଧିବାସୀ ସୁଖରେ ରୁହନ୍ତୁ, ଆନନ୍ଦରେ ରୁହନ୍ତୁ- ଭାରତର ତାହାହିଁ ଏକାନ୍ତ କାମନା । କିନ୍ତୁ ଆଜି ଏ ଯେଉଁ ରକ୍ତପାତ, ଅଯଥା କଳହ, କୁହ ବଂଧୁ ଏଥିରେ ତୁମ ଦେଶର କି ଲାଭ ହେଉଛି ? ଯୁଗ ଯୁଗ ଧରି ହିମାଳୟ ଆମର ପ୍ରାକୃତିକ ସୀମା ନିର୍ଦ୍ଦେଶ କରୁଛି । ଅଥଚ ତା'ରି ଜନହୀନ, ଶସ୍ୟହୀନ ବରଫାଛନ୍ନ ଅଞ୍ଚଳପାଇଁ ଚାଇନା ସରକାରଙ୍କର ଏତେ ହିଂସ୍ର ଲୋଲୁପତା କାହିଁକି ? କୁହ ଭାଇ ଏହା କଣ ଆମ ମଣିଷପଣିଆର ଉଦାର ପରିଚୟ ହେଉଚି ! ପଡୋଶୀ ଭାବରେ ଆମେ କାହିଁକି ସୁଖରେ ନ ଚଳିବା ! କେଉଁଥିପାଇଁ ଏ ଯୁଦ୍ଧ ଓ ରକ୍ତପାତ ?

ସିଂ ଚାଙ୍ଗ୍‌ଙ୍କ ଆଖିରୁ ଦୁଇଧାର ଅଶ୍ରୁ ନିଗିଡ଼ିଗଲା । ଚାନ୍ ମାଓ ଅବାକ୍ ହୋଇ କେବଳ ଶୁଣୁଥିଲେ । ତାଙ୍କର ମନେ ହେଉଥିଲା-ସତେ ଯେପରି ସେମାନେ ଏକ ନୂତନ ପୃଥିବୀରେ କରିଛନ୍ତି ପଦାର୍ପଣ- ଯେଉଁଠି ଶାନ୍ତି, ମୈତ୍ରୀ, କରୁଣା, ପ୍ରୀତି ଓ ବିଶ୍ୱାସ ହିଁ ମଣିଷକୁ ଦେଉଛି ଆତ୍ମିକ ବଳ । ଯେଉଁଠି ହିଂସା ଓ ରକ୍ତପାତର ପାଶବିକ ଅତ୍ୟାଚାର ନାହିଁ । ମହାନ୍ ମାନବିକତାର ଉଦାର ଭୂମିରେ ସେମାନେ ଦେଖିଲେ ଉଦୟ ସୂର୍ଯ୍ୟର ଲୋହିତ ରେଖା ଝରିପଡୁଛି । ସମଗ୍ର ବନଭୂମି ନାନାଜାତିର ପକ୍ଷୀଙ୍କ କାକଳିରେ ଉଦୟ ସୂର୍ଯ୍ୟକୁ ସ୍ୱାଗତ ଜଣାଉଚି ।

ଭାରତୀୟ ସୈନିକ ପୁଣି କହିଲେ- ଏଇ ଭାରତରେ ଅଢ଼େଇ ହଜାର ବର୍ଷ ତଳେ ହୋଇଥିଲା ପରମ କାରୁଣିକ ବୁଦ୍ଧଦେବଙ୍କ ଆବିର୍ଭାବ । ତାଙ୍କରି ପ୍ରଚାରିତ ବୌଦ୍ଧଧର୍ମକୁ ଚାଇନାର ଅଧିବାସୀମାନେ ଆପଣାର କରିଛନ୍ତି । ବୌଦ୍ଧଧର୍ମର ଏକମାତ୍ର ବିଶ୍ୱଜନୀନ ଆଦର୍ଶ ହେଉଛି ଅହିଂସା । କିନ୍ତୁ ଏ କଣ ! ଆଜି ସେଇ ଦୁଇ ଐତିହାସିକ ଦେଶ ଓ ଜାତି ମଧ୍ୟରେ ଚାଲିଛି ଯୁଦ୍ଧ ଓ ରକ୍ତପାତ । ଏହା କଣ ବୌଦ୍ଧଧର୍ମର ନୀତି ହୋଇପାରେ ?

ସିଂ ଚାଙ୍ଗ୍‌ଙ୍କର ଆଉ ଅଧିକ ଶୁଣିବାକୁ ଧୈର୍ଯ୍ୟ ନ ଥିଲା । ଆତ୍ମକୃତ ପାପର ଗୁରୁ ପରାଭବ ତାଙ୍କ ମୁଖମଣ୍ଡଳକୁ ବିବର୍ଣ୍ଣ କରି ଦେଉଥିଲା । ଭୟଙ୍କର ଏକ ମାନସିକ



Digitized by PPRACHIN, SOA

ଯନ୍ତ୍ରଣାରେ ସେ ଭାରତୀୟ ସୈନିକଙ୍କ ପାଦତଳେ ଲୋଟିଯାଇ ସେମାନଙ୍କ ଜୀବନର ଅନ୍ତିମ ଇତି ଭିକ୍ଷା କରି ବସିଲେ ।

"ନା ବଂଧୁ । ଚାଲ ତୁମ ଦୁହିଁଙ୍କୁ ମୁଁ ତୁମ ଦେଶର ନିରାପଦ ସୀମାରେଖାରେ ପହଞ୍ଚାଇ ଦେଇ ଆସିବି । ତୁମ ସେନାଶିବିର ଖୁବ୍ ବେଶୀ ଦୂରରେ ନୁହେଁ । ତାର ଅନତିଦୂରରେ ମୁଁ ତୁମମାନଙ୍କୁ ଛାଡ଼ି ଆସିବି । ସେଠାରୁ ତୁମେ ନିରାପଦ ଭାବେ ତୁମ ଶିବିରକୁ ଚାଲିଯାଇ ପାରିବ ।" ଏହା କହି କୌଣସି ଔଷଧୀୟ ବୃକ୍ଷର ପତ୍ରକୁ ଆଣି ତାକୁ ନିଜ କରତଳରେ ଦଳି ସେ କେତେ ଟୋପା ରସ ନିଷ୍କାସନ କଲେ ଓ ସେମାନଙ୍କ କ୍ଷତସ୍ଥାନରେ ପ୍ରଲେପ ଦେଇ ନିଜ ଗାମୁଛାକୁ ଚିରି ଜୋର୍ କରି ବାନ୍ଧିଦେଲେ ।

ସିଂ ଚାଙ୍ଗ୍ କହିଲେ- ନା ବଂଧୁ, ପାରିବେ ଯଦି ଭାରତର ପବିତ୍ର ମାଟିରେ ଆମକୁ ପହଞ୍ଚେଇ ଦିଅନ୍ତୁ । ସେଇଠି ହସି ହସି ଆମେ ଶେଷ ନିଃଶ୍ୱାସ ତ୍ୟାଗ କରିବୁ । ସେଇ ପୁଣ୍ୟଭୂମିର ବାୟୁ ଆଘ୍ରାଣ କରିବାକୁ ଆଜି ଆମ ଭିତରେ ବଳବତୀ ଇଚ୍ଛା ଜାଗ୍ରତ ହେଉଛି । ସେ ଦେଶରେ ଜନ୍ମ ନେଇ ଆପଣ ଅତି ଭାଗ୍ୟବାନ୍ । ଆମକୁ ଆପଣ ଜୀବନଦାନ କରିଛନ୍ତି ଆଉ ଏତିକି ସୁଯୋଗ କଣ ଦେଇପାରିବେ ନାହିଁ ?





Digitized by PPRACHIN, SOA

# ଭୋକଭିଜା ମାଟିର ନିଃସଙ୍ଗ କବି

ମୁଁ ହସ୍ପିଟାଲରେ ପହଂଚିଲା ବେଳକୁ କାଜୁଆଲିଟି ବିଭାଗର ଗୋଟିଏ ଖଟିଆରେ ସେ ରକ୍ତରେ ଜୁଡୁବୁଡୁ ହୋଇ ପଡ଼ିଚି । ପ୍ରାୟ ଛ ସାତ ଖଣ୍ଡ ଇଂରାଜୀ ଖବର କାଗଜ ରକ୍ତରେ ଲାଲେଲାଲ୍, ବେଡ୍ ମଧ ରକ୍ତାକ୍ତ । ତା କ୍ଷତସ୍ଥାନରୁ ରକ୍ତ ଅନବରତ ବହି ଚାଲିଛି । ଅଥଚ ଇମରଜେନସିରେ ଥିବା ଡକ୍ଟର ଓ ନର୍ସମାନେ ନିର୍ବିକାର । ଆକ୍ସିଡ଼େଣ୍ଟ ହେବାର ୫ଘଣ୍ଟା ପରେ ବି କୌଣସି ଚିକିତ୍ସା ହୋଇ ନାହିଁ - ମୁଁ ଆଶ୍ଚର୍ଯ୍ୟ ହେଲି ।

ମୋ ମନରେ ନିଶ୍ଚୟ କ୍ରୋଧ ଆସୁଥିଲା, କିନ୍ତୁ କ୍ରୋଧକୁ ସମ୍ବରଣ କରି ମୁଖ୍ୟ ଚିକିତ୍ସା ଅଧିକାରୀଙ୍କୁ ତା ଅବସ୍ଥା ଜଣାନ୍ତେ ସେ ଓଲଟି ମତେ ପ୍ରଶ୍ନ କଲେ- କ'ଣ ତାକୁ ଇଂଜେକ୍ସନ ଦିଆ ଯାଇନି ?

ଦାୟିତ୍ୱରେ ଥିବା ଜଣେ ମୁଖ୍ୟ ଚିକିତ୍ସକଙ୍କ ଏପରି ପ୍ରଶ୍ନ ମୋତେ ଅଜବ ଅଜବ ଲାଗିଲା । ମୁଁ ତାଙ୍କୁ କହିଲି- ଆପଣ ଚିକିତ୍ସକ, ଆପଣ ଜାଣନ୍ତି ନାହିଁ ଯେ ସେ ଆକ୍ସିଡ଼େଣ୍ଟରେ ଗୋଡ଼ ଭାଙ୍ଗି ଆସିଥିବା ରୋଗୀର ଏଯାଏ କୌଣସି ଚିକିତ୍ସା ଆରମ୍ଭ ମଧ ହୋଇନାହିଁ । ଅନବରତ ରକ୍ତସ୍ରାବ ଦେଖିଲେ ମନେ ହେଉଚି ହୁଏତ ସେ ବଂଚି ନପାରେ ।

ମୁଖ୍ୟ ଚିକିତ୍ସକ ବିଶ୍ୱାଳ ବାବୁ କହିଲେ- ଆମେ କ'ଣ କରିବୁ ? ଆପଣ ଆମକୁ କାହିଁକି ଡ଼ିଷ୍ଟର୍ବ କରୁଛନ୍ତି ? ଦେଖୁଛନ୍ତି ତ କେତେ ରୋଗୀ, ସମସ୍ତଙ୍କର ଆଶୁ ଚିକିତ୍ସା ଦରକାର ।

-ଓଃ ତା ହେଲେ ଆପଣ ଏଇପରି ଆଶୁ ଚିକିତ୍ସା କରୁଛନ୍ତି ? ପାଞ୍ଚଘଣ୍ଟା ହେଲା ରକ୍ତ ବୋହୁଥିବା ଜଣେ ଅସହାୟ ରୋଗୀ ପାଖକୁ ଏଯାଏ ବି କେହି ଯାଇ ନାହାନ୍ତି । ରକ୍ତ ବନ୍ଦ ପାଇଁ ଇଂଜେକ୍ସନଟିଏ ବି ଦିଆ ହୋଇନି । ଦୟାକରି ତାକୁ ଆଟେଣ୍ଡ୍ କରନ୍ତୁ । ସେ ଓଡ଼ିଶାର ଉଦୀୟମାନ କବିଟିଏ- ସାମ୍ବାଦିକଟିଏ ବି ।

-ଏଁ ସାମ୍ବାଦିକଟିଏ ! ତା'ର ରିଲେସନ୍ କେହି ଅଛନ୍ତିକି ଔଷଧ କିଣି ଆଣିବା ପାଇଁ ? ଆପଣ କ'ଣ ତାଙ୍କ ରିଲେସନ୍ ?

-ମୁଁ ତା'ର କେହି ନୁହେଁ । ଆକ୍ସିଡ଼େଣ୍ଟ ହୋଇଥିବା ଶୁଣି ଭୁବନେଶ୍ୱରରୁ ଏ ବର୍ଷାରେ ବି ଆସିଛି । ଆପଣ ଦୟାକରି ତା'ର ଏକ୍ସ-ରେ ବ୍ୟବସ୍ଥା କରନ୍ତୁ ଓ ରକ୍ତ ବନ୍ଦ ପାଇଁ କିଛି କରନ୍ତୁ ।

ମୁଖ୍ୟ ଚିକିତ୍ସକ ପୁଣି ବିରକ୍ତ ହୋଇ ଉଠିଲେ ଓ କହିଲେ, "ମୁଁ ତ ତାକୁ ଏକ୍ସ-ରେ



Digitized by PPRACHIN, SOA

ରୁମ୍‌କୁ ନେବିନାହିଁ । ଆପଣ ଷ୍ଟ୍ରେଚର ଆଟେଣ୍ଡାଣ୍ଟଙ୍କୁ କହନ୍ତୁ ।"

"ମୁଁ କହିବାକୁ କିଏ, ସେ ବି ମୋ କଥା କାହିଁକି ଶୁଣିବ ? ଆପଣଙ୍କର ଏଇଟା ଦାୟିତ୍ୱ ।" ମୁଁ ସେତେବେଳ ଯାଏ ମୋ ପରିଚୟ ଦେଇନଥାଏ । ସେ ମହାଶୟ ମୋର ପରିଚୟ ଚାହିଁ ନଥାନ୍ତି । କିନ୍ତୁ ମୋ ଠାରୁ କିଛି ଶୁଣିବାକୁ ସେ ଯେପରି ପ୍ରସ୍ତୁତ ନଥାନ୍ତି ।

ତଥାପି ଗୋଟାଏ ଚିଠାରେ ସେ କେତେଗୁଡ଼ିଏ ଔଷଧ ଆଣିବାକୁ ଲେଖି ଅତି ଅବଜ୍ଞାର ସହିତ ମୋ ହାତକୁ ବଢ଼ାଇ ଦେଲେ ଓ କହିଲେ- ଏସବୁ ଶୀଘ୍ର କିଣି ଆଣନ୍ତୁ, ତା'ର ବ୍ୟାଣ୍ଡେଜ୍ ହେବ । ଆହୁରି ଅନେକ ଆକ୍‌ସିଡ଼େଣ୍ଟ କେସ୍ ଅଛି । ସିରିଆଲ୍ ଅନୁସାରେ ହେବ । ଆପଣ ମୋ ସହିତ କଥା ହେବା ଦରକାର ନାହିଁ । ଷ୍ଟ୍ରେଚର ନାହିଁ । ଆଟେଣ୍ଡାଣ୍ଟ ଷ୍ଟ୍ରେଚର ନେଇ ଆସିଲେ ଏକ୍‌ସ-ରେ କରାଇବାକୁ ନେବ ।

ମୁଁ ଭାବିଲି ଏ ଡାକ୍ତରମାନେ କେଡ଼େ ଅମଣିଷ ହୋଇ ପଡ଼ିଛନ୍ତି । ପଦେ ମିଠା କଥା ତ ନାହିଁ, ଏତେ ହେୟଜ୍ଞାନ, ଏତେ ଅବହେଳା, ଏତେ ବିରକ୍ତି-ଏମାନେ କିପରି ରୋଗୀ ସେବା କରୁଛନ୍ତି ?

ଅସରାଏ ଖୁବ୍ ଜୋର୍‌ରେ ବର୍ଷା ହୋଇଗଲା । ମୁଁ ବର୍ଷାରେ ଭିଜିଭିଜି ଔଷଧ ଦୋକାନକୁ ଧାଇଁବା ଅବସ୍ଥାରେ ଯାଇ ଚିଠାଟି ବଢ଼ାଇଦେଲି । ଦୋକାନୀ କହିଲେ, "ରୋଗୀର କ'ଣ ହୋଇଚି ?"

ମୁଁ ତାଙ୍କ କଥାରେ କିଛିଟା ସହାନୁଭୂତିର ଉଷ୍ମତା ଅନୁଭବ କଲି । ତେଣୁ ଖୁବ୍ ସଂକ୍ଷେପରେ କହିଲି- ଆକ୍‌ସିଡେଣ୍ଟ କେସ୍, ପାଞ୍ଚଘଣ୍ଟା ହେଲା ଆଣ୍ଠୁର କ୍ଷତରୁ ରକ୍ତ ବୋହି ଚାଲିଚି । ବିଚରା ତା'ର କେହି ନାହାନ୍ତି, ଗରିବ କବିଟିଏ । ସରକାରଙ୍କ ତରଫରୁ ଏପରି ରୋଗୀଙ୍କର କ'ଣ କିଛି ଚିକିତ୍ସା ବ୍ୟବସ୍ଥା ନାହିଁ ?

ସେ କହିଲେ- ଅଛି ପୁଣି ନାହିଁ । ବର୍ତ୍ତମାନ ଏ ବଡ଼ ଡାକ୍ତରଖାନା ସବୁ ନାହିଁ ନାହିଁର ଜାଗା । ଏସବୁ ଚିଠାରେ ଯାହା ଲେଖାଅଛି ପ୍ରାୟ ଆଠ ଶହ ଟଙ୍କା ଲାଗିବ । ମୁଁ ନିହାତି ଯାହା ଦରକାର ଦେଉଚି, ଆପଣ କୁହାବୋଲା କରନ୍ତୁ, ଦେଖନ୍ତୁ ଯଦି ହସ୍‌ପିଟାଲ ଆଡୁ କିଛି ହୋଇ ପାରିବ ।

ପ୍ରାୟ ଦୁଇଶହ ଟଙ୍କାର ଇଂଜେକ୍‌ସନ ଓ ତୁଳା ପ୍ୟାକ୍‌ଟିଏ ଧରି ମୁଁ ପୁଣି ସେଇ ଚିଫ୍‌ଙ୍କୁ ଭେଟିଲି । କାରଣ ତାଙ୍କ ନିର୍ଦ୍ଦେଶରେ ହିଁ ସବୁ ସେଠି ଘଟୁଥିଲା । ଚାରି ପାଞ୍ଚ ଜଣ ନର୍ସ ବସିରହି ଧୀରେ ସୁସ୍ଥେ ସେମାନଙ୍କର କାମ କରୁଥିଲେ ।

ଚିଫ୍ ମୋ ଉପରେ ବୋଧହୁଏ ବେଶ୍ ଅସନ୍ତୁଷ୍ଟ ଥିଲେ । କାରଣ ଏଥର ମୋ ମୁହଁକୁ ନ ଚାହିଁ କହିଲେ, "ନର୍ସଙ୍କୁ ଦିଅନ୍ତୁ, ସେ ଇଂଜେକ୍‌ସନ ଦେବେ ।" ଅଥଚ ନର୍ସଙ୍କୁ ସେ କିଛି ନିର୍ଦ୍ଦେଶ ଦେଲେନି । ମୋତେ ତେଣୁ ଅଗତ୍ୟା ଖୋସାମଦ୍ କରିବାକୁ ହେଲା ନର୍ସଙ୍କୁ ।

ନର୍ସ ଦୁଇଟି ସିରିଞ୍ଜ୍‌ରେ ଲୋଡ଼୍ କରି ବେଡ୍ ପାଖକୁ ଗଲେ । ବୋଧହୁଏ ଆଡ୍‌ମିସନ୍ ଟିକେଟ୍‌ରୁ ନାମଟି ପଢ଼ି ଯାଇଥିଲେ । ରୋଗୀକୁ ପଚାରିଲେ ଆପଣ ରମେଶ



Digitized by PPRACHIN, SOA

ପତି ? ବ୍ୟସ୍ତ କାହିଁକି ହେଉଛନ୍ତି ? ଆପଣଙ୍କର ତ କେହି ରିଲେସନ୍ ଆସି ନଥିଲେ କି ଏସବୁ ଇଂଜେକ୍ସନ କିଣି ଆଣି ନଥିଲେ ।

ରମେଶ କହିଲା- ଆପଣ ଦେଖନ୍ତୁ ମୋ ଅବସ୍ଥା । ପାଞ୍ଚଘଣ୍ଟା ହେଲା ଏମିତି ରକ୍ତ ବୋହି ଚାଲିଚି । ମରିଗଲା ପରେ କ'ଣ ଇଂଜେକ୍ସନ ଦେବେ ?

ନର୍ସ କହିଲେ- ତା ବୋଲି ଆମେ କ'ଣ କରିବୁ ?

ମୁଁ ନର୍ସଙ୍କ ଉତ୍ତରରେ ବିସ୍ମିତ ହେଲି । ଭାବିଲି ଏ ସବୁ ଦୃଶ୍ୟ ଦେଖି ଦେଖି ବୋଧହୁଏ ସେମାନେ ବଧୀରା ହୋଇଗଲେଣି । ରକ୍ତ ସ୍ରାବ ଦେଖି ବି ଉଦ୍‌ବେଗ ନାହିଁ ।

ନର୍ସ ଦୁଇଟି ବିଭିନ୍ନ ଇଂଜେକ୍ସନ ଫୋଡ଼ି ଚାଲିଗଲେ ।

ଠିକ୍ ସେତିକିବେଳେ ଷ୍ଟ୍ରେଚର ଆଣି ଆଟେଣ୍ଡାଣ୍ଟେ ଆସିଥିଲା, ରୋଗୀକୁ ଏକ୍ସରେ ପ୍ରକୋଷ୍ଠକୁ ନେବାପାଇଁ । କିନ୍ତୁ ନର୍ସ ଇଂଜେକ୍ସନ ଫୋଡୁଥିବା ବେଳେ ସେ କେଉଁ କଦରରେ କୁଆଡ଼େ ଚାଲିଗଲା ଯେ ଆଉ ଅଧଘଣ୍ଟା ପର୍ଯ୍ୟନ୍ତ ତା'ର ଦେଖାଦର୍ଶନ ନାହିଁ ।

ମୁଁ ପୁଣିଥରେ ଚିଫ୍‌ଙ୍କୁ ଭେଟିଲି । ତାଙ୍କୁ କିଛି କହିବାକୁ ମୋ ମନରେ ତିଳେମାତ୍ର ବି ଆଗ୍ରହ ନଥିଲା । କିନ୍ତୁ ନିରୁପାୟ ହୋଇ କହିଲି- "ଆଜ୍ଞା, ସେ ରୋଗୀର ବ୍ୟାଣ୍ଡେଜ୍ ବ୍ୟବସ୍ଥା ଟିକିଏ ତୁରନ୍ତ କରାନ୍ତୁ । ଯଦିବା ଆଗେ ଏକ୍ସ-ରେ ହେବାକଥା ତେବେ ଆଟେଣ୍ଡାଣ୍ଟଙ୍କୁ କୁହନ୍ତୁ ସେ ରୁମ୍‌କୁ ରୋଗୀକୁ ନେବାପାଇଁ ।"

ସେ ପୁଣି ବିରକ୍ତ ହୋଇ କହିଲେ- ଆପଣ କାହିଁକି ବାରମ୍ବାର ମୋତେ ବ୍ୟସ୍ତ କରୁଛନ୍ତି । ଏକ୍ସ-ରେ ପାଇଁ ତାକୁ ନେବା ଆପଣଙ୍କ କାମ ।

ମୁଁ ଏଥର କହିଲି- ମୁଁ ବିଶ୍ୱ ବିଦ୍ୟାଳୟରେ ଜଣେ ରିଟାୟର୍ଡ ପ୍ରଫେସର । ମୁଁ ତେବେ କ'ଣ ଷ୍ଟ୍ରେଚରରେ ତାକୁ ଏକ୍ସ-ରେ ପାଇଁ ଏକା ଏକା ନେଇ ପାରିବି ? ଆପଣଙ୍କର ମାନବିକତା ବୋଲି କିଛି ନାହିଁ ? ଜାଣନ୍ତି ସେ ଜଣେ ସାମ୍ବାଦିକ । ତାକୁ ଯେଉଁପରି ଚିକିତ୍ସା ମିଳୁଚି, ସେ କ'ଣ ନୀରବ ରହିବ ଭାବୁଚନ୍ତି ?

ଏଥର ଚିଫ୍ ଟିକିଏ ବଦଳିଲା ପରି ଜଣାଗଲେ । ମୋତେ କିଛି ସେ ଆଉ କହିଲେନି, କିନ୍ତୁ ତାଙ୍କ ନିରବତା ମୋତେ ଅଧିକ ବାଧିଲା । ସେମିତି ରକ୍ତ ବୋହି ଚାଲିଚି । ଟିକିଏ ରୋଗୀ ପାଖକୁ ଯାଇ ଦେଖନ୍ତେନି ! ମୁଁ ତାଙ୍କ ସାମ୍ନାରେ ଅଧିକ ସମୟ ଠିଆ ହେବାକୁ ଆନ୍ତରିକ ଭାବେ ଚାହୁଁ ନଥିଲି । ବରଂ ନିଜେ ଯାଇ ଷ୍ଟ୍ରେଚର ଧରି ଆସୁଥିବା ଆଟେଣ୍ଡାଣ୍ଟିକୁ ଖୋସାମଦ କଲି ଓ ରମେଶ ବୁହାହୋଇ ଏକ୍ସ-ରେ ରୁମ୍‌କୁ ଆସିଲା ।

ସେଠି ମଧ୍ୟ ସେଇ ଭିଡ଼ ଓ କର୍ମଚାରୀଙ୍କ ବିରକ୍ତିର ସାମ୍ନା କରିବାକୁ ହେଲା । ମୁଁ ଜାଣି ନଥିଲି ଏହା ଭିତରେ ଏହି ବଡ଼ ଡାକ୍ତରଖାନାରେ ସବୁକିଛି ଏତେ ଦ୍ରୁତଗତିରେ ଓଲଟପାଲଟ ହେଇ ଯାଇଛି, ତା ସହିତ ମଣିଷ ପଣିଆ ବି ।

ସେତେବେଳେ ଆମ ପିଢ଼ିର ଓ ଆମ ପୂର୍ବ ପିଢ଼ିର ଯେଉଁ ଡାକ୍ତରମାନେ ଏ



Digitized by PPRACHIN, SOA

ହସ୍ପିଟାଲରେ କର୍ମରତ ଥିଲେ ତାଙ୍କୁ ରୋଗୀମାନେ ଦେବତା ପରି ମଣୁଥିଲେ । ଡାକ୍ତରଖାନା ଆଜିପରି ମରଣ ଯନ୍ତା ନଥିଲା । ଇମରଜେନ୍‌ସିକୁ ମୁଁ ମଧ୍ୟ କେତେ ରୋଗୀ ନେଇ ଆସିଥିବି, ଅନୁରୋଧମାତ୍ରେ ସେମାନେ ଆଡମିଟ୍ ହୋଇଯାନ୍ତି ଓ ଚିକିତ୍ସାରେ ଅବହେଳା ନଥାଏ । କାଲିପରି ମନେ ପଡୁଚି- ଆମ ଗାଁ ପାଖର ଗୋଟିଏ ଟିଟାନସ ରୋଗୀ, ଅସ୍ତବ୍ୟସ୍ତ ହୋଇଗଡୁଥାଏ ମେଡ଼ିସିନ୍ ୱାର୍ଡର ବାରଣ୍ଡାରେ । ଧନୁପରି ତା ଦେହ ବଙ୍କେଇ ଯାଉଥାଏ । କେହି ଡାକ୍ତର ତାକୁ ଆଟେଣ୍ଡ କରୁନଥାନ୍ତି । ମୁଁ ଖବର ପାଇଁ ମେଡ଼ିସିନ୍ ବିଭାଗ ମୁଖ୍ୟଙ୍କ ରୁମ୍‌କୁ ପଶିଗଲି । ମୁଁ ସେତେବେଳକୁ ଧୈର୍ଯ୍ୟହରାଇ ବସିଥାଏ । ମୁଖ୍ୟଙ୍କୁ ଖୁବ୍ ବିରକ୍ତିରେ କହିଲି- ଆଜ୍ଞା ରୋଗୀଟା ମରିଗଲା ପରେ କ'ଣ ଡାକ୍ତର ତାକୁ ଦେଖିବେ, ସେ ଦୁଇଘଣ୍ଟା ଧରି ଛଟପଟ ହେଉଚି । ଅତି ଗରିବ ଲୋକ । ତା'ର ଚିକିତ୍ସା ପାଇଁ ବି ସମ୍ବଳ ନାହିଁ । ମୁଁ ଖବର ପାଇ ଏଇମାତ୍ର କଲେଜ୍‌ରୁ ଧାଇଁ ଆସିଛି । ଯଦି ତା ପାଇଁ କିଛି ଫିଜ୍ ନେବା କଥା ମୁଁ ଦେଉଛି ନିଅନ୍ତୁ, ତାଙ୍କୁ ତୁରନ୍ତ ଆଟେଣ୍ଡ୍ କରନ୍ତୁ ।

ଡାକ୍ତର ମୋ ଉପରେ ରାଗି ଉଠିଲେ । ସତେ ଯେପରି କିଛି ବିସ୍ଫୋରଣ ହୋଇଗଲା । ସେ ଅତି ରୁଷ୍ଟଭାବରେ କହିଲେ- ମୁଁ ଏବେ ମଙ୍ଗଳାବାଗ ଥାନାକୁ ଡାକି ଆପଣଙ୍କୁ ଆରେଷ୍ଟ କରାଇବି, ଆପଣ ମୋତେ ଲାଞ୍ଚ ଯାଚୁଚନ୍ତି ? ଆପଣ ଜଣେ ଅଧ୍ୟାପକ, ଆପଣ ନିଶ୍ଚୟ ଜାଣିଥିବେ ଏ ମେଡ଼ିକାଲ୍ କଲେଜ୍‌ରେ ଚିକିତ୍ସା ପାଇଁ ପଇସା ଦେବାକୁ ହୁଏ ନାହିଁ ।

ମୁଁ ମଧ୍ୟ ଛାଡ଼ିବା ମୁଡ୍‌ରେ ନଥିଲି । ମୁଁ ଉତ୍ତର ଦେଲି- ତା ତ ଭଲ ଭାବେ ଜାଣେ । କିନ୍ତୁ ଚିକିତ୍ସାରେ ବିଳମ୍ବ ଓ ଅବହେଳାରେ ସାଧାରଣରେ କି ଧାରଣା ହେବ ? ମେଡ଼ିସିନ୍ ୱାର୍ଡକୁ ରୋଗୀଟିଏ ଆସିବାର ଦୁଇଘଣ୍ଟା ହୋଇଗଲା, ଛାଟିପିଟି ହେଉଚି ରୋଗୀଟା, ଡେ଼ରିହେଲେ ବଂଚି ନପାରେ । ମୋର ତେଣୁ ଏପରି ଧାରଣା ହେଲା ସାର୍, ଟଙ୍କା ନଦେଲେ ଚିକିତ୍ସା ହେବନାହିଁ ।

ଡାକ୍ତରବାବୁ ହଠାତ୍ ଚେୟାରରୁ ଉଠି ମୋ କାନ୍ଧରେ ହାତ ଥାପୁଡ଼େଇ କହିଲେ- ତୁମେ ଯୁବକ ଲୋକ । ହଠାତ୍ ରାଗି ଯାଉଚ ନା ! ମୋ ନଜରକୁ ଏଇ ମାତ୍ର କଥାଟା ଆସିଲା । ତା'ର ଚିକିତ୍ସାରେ ଅବହେଳା ହେବନି । କିନ୍ତୁ ବଂଚିବା ବିଷୟରେ ମୁଁ ଗ୍ୟାରେଣ୍ଟି ଦେଇ ପାରିବିନି । କାରଣ ବଡ଼ ଖରାପ ଅବସ୍ଥାରେ ସେ ଆସିଚି ।

ମୋ ପେଟ ପୂରି ଯାଇଥିଲା ତାଙ୍କ କଥାରେ । ସେ ରୋଗୀ ଦେହରେ ହାତ ଦେଇ ପରୀକ୍ଷା କରୁଥିଲେ । ମଝିରେ ମଝିରେ ପି.ଜି. ଛାତ୍ରମାନଙ୍କୁ କ'ଣ ସବୁ ବୁଝାଉଥିଲେ । ମୁଁ ରୋଗୀର ଲୋକମାନଙ୍କୁ ଆଶ୍ୱସ୍ତ କରି କଲେଜକୁ ଫେରି ଆସିଲି ।

ଆଉ ଗୋଟିଏ ସ୍ମରଣୀୟ ଅନୁଭୂତି । ବର୍ଷାଋତୁର କୌଣସି ଏକ ମାସରେ କିଣିଥିବା ଫିଆଟ୍ ଗାଡ଼ି ଚଳାଇ ଆସିଥାଏ ଧର୍ମଶାଳା । ବ୍ରାହ୍ମଣୀ ନଦୀକୂଳର ଏ ସ୍ଥାନ । କେବେ ପାଠ ପଢ଼ିଲାବେଳେ ସାଙ୍ଗ ସାଥୀଙ୍କ ମେଳରେ ନୂଆ ପାଣି ପଡ଼ିଥିବା ବ୍ରାହ୍ମଣୀ



Digitized by PPRACHIN, SOA

ନଈରେ ପହଁରିବାକୁ ଚେଷ୍ଟା କରି ବୁଡ଼ିଯାଇଥିଲି, ଢୋକପରେ ଢୋକ କାଦୁଅ ପାଣି ପିଇ ପେଟ ଫୁଲି ଉଠିଥିଲା । ସଂଜ୍ଞାହୀନ ଅବସ୍ଥାରେ ଭାସି ଭାସି ସ୍ରୁଅରେ ତଡ଼ି ହୋଇ ଯାଉଥିବା ବେଳେ ମୋର ସାଙ୍ଗ ବାବୁଜାନ୍‌ର ବାପା ମିଆଁଜାନ୍ ମୋତେ ବଡ଼ ବାଉଁଶଟିଏ ପକାଇ ଉଦ୍ଧାର କରିଥିଲେ । ପାଣିରୁ ଛାଣି ଆଣି ତୁରନ୍ତ ପେଟରେ ଚାପଦେଇ ଗୋଳିଆ ପାଣି ବାହାର କରେଇ ଡାକ୍ତରଖାନାକୁ ନେଇ ବଂଚାଇଥିଲେ । ତାଙ୍କୁ ଅଧ୍ୟାପକ ହେଲାପରେ ଭୁଲି ନଥିଲି, ଭୁଲିବି ପାରିବି ନାହିଁ । ସେଦିନ ନିଜେ ଗାଡ଼ି ଚଳାଇ ଆସିଥିଲି ଧର୍ମଶାଳା । ବଜାରର ଶେଷ ଭାଗରେ ବ୍ରାହ୍ମଣୀ ନଦୀ, ତା'ରି କୂଳରେ ତାଙ୍କ ଗାଁ ଓ ବଜାର । ସେତେବେଳକୁ ସେ ଥିଲେ ଶଯ୍ୟାଶାୟୀ । ଦୀପରୁ ତେଲ ସରି ସରି ଆସୁଥିଲା । ତଥାପି ମୋ ବଂଧୁ ବାବୁଜାନ୍ ଚିହ୍ନାଇ ଦେବାରୁ ସେ ଚାହିଁଲେ ଓ ମୁହଁରେ କିଛି ଇସାରା ମଧ୍ୟ ଦେଲେ । ମୁଁ ବୋଧହୁଏ ତାଙ୍କୁ ମୋର ଶେଷ ସମ୍ମାନ ଜଣାଇ କିଛି ଫଳମୂଳ ଓ ଆର୍ଥିକ ସାହାଯ୍ୟ ଦେଇ ଫେରିଲାବେଳେ ଡ଼ାକ୍ତରଖାନା ସାମ୍ନା ରାସ୍ତାକଡ଼ ବରଗଛମୂଳେ ସ୍ତ୍ରୀଲୋକଟିଏ ପଡ଼ି ଛଟପଟ ହେଉଥିବାର ଦେଖିଲି । ଗାଡ଼ି ମନକୁ ମନ ଅଟକି ଗଲା । ଡ଼ାକ୍ତରଖାନାକୁ ଯାଇ ବୁଝିଲି ରୋଗୀଟି ଗର୍ଭବତୀ, ପୁଣି ଅତିରିକ୍ତ ରକ୍ତହୀନତା । ବଂଚିବାର ଆଶା ଖୁବ୍ କମ୍ । ତା'ର କେହି ନିଜର ନାହାନ୍ତି କଟକ ବଡ଼ ଡାକ୍ତରଖାନାକୁ ନେବାପାଇଁ ।

ସେଦିନ କେଜାଣି କେଉଁ ଆବେଗରେ ମୁଁ ରୋଗିଣୀଟିକୁ ମୋ ଗାଡ଼ିର ପଛ ସିଟ୍‌ରେ ଶୁଆଇ କଟକ ମେଡ଼ିକାଲ୍‌ର ଗାଇନେକୋଲଜି ୱାର୍ଡରେ ଭର୍ତ୍ତି କରାଇ ବାଣୀବିହାର ଫେରିଥିଲି ଆଜି ଭାବିଲେ ଖୁବ୍ ବିସ୍ମୟ ଲାଗେ । ମୋର ଚିହ୍ନା ଥିଲେ ଡ଼ାକ୍ତର ମହାମାୟା ପଟ୍ଟନାୟକ । ସବୁ ବ୍ୟବସ୍ଥା ସହସା ହୋଇଗଲା । ରୋଗୀଟିକୁ ହସ୍‌ପିଟାଲ୍ ତରଫରୁ ରକ୍ତ ଦେବାର ବ୍ୟବସ୍ଥା ହେଲା, ଔଷଧ ବି, ଟ୍ରିଟ୍‌ମେଣ୍ଟ ମଧ୍ୟ । ହୁଏତ ରୋଗିଣୀଟି ବଂଚିଯାଇଥିବ ।

ସେଦିନର ଅବସ୍ଥା ଓ ଆଜିର ଅବସ୍ଥା ଭିତରେ ଏତେ ତଫାତ୍ ଥାଇପାରେ, ମୁଁ ବ୍ୟକ୍ତିଗତ ଭାବେ ଜାଣି ନଥିଲି । ଜଣେ ଡାକ୍ତରଙ୍କ ପିଛା ଦେଶର ଜନତା ଲକ୍ଷଲକ୍ଷ ଟଙ୍କା ବ୍ୟୟଭାର ଯେ ବହନ କରନ୍ତି ଏକଥା ଆଜିର ତରୁଣ ଡାକ୍ତରମାନେ ଭୁଲି ଯାଉଛନ୍ତି । ପଦେ ମିଠା କଥା କହିଲେ ରୋଗୀ ଯଦି ଆଶ୍ୱସ୍ତ ଅନୁଭବ କରେ ସେଥିପାଇଁ ତ ପଇସା ଖର୍ଚ୍ଚ ହେଉନାହିଁ, କିନ୍ତୁ ତାହା ମଧ୍ୟ ଏ ଯୁବ କି ପ୍ରୌଢ଼ ଡାକ୍ତରଙ୍କ ଠାରୁ ଆଜି ମିଳୁନାହିଁ ।

ରମେଶକୁ ପୁଣିଥରେ ଷ୍ଟ୍ରେଚରରେ ଏକ୍ସ-ରେ ରୁମ୍‌ରୁ ଫାଷ୍ଟଏଡ଼୍ ବ୍ୟାଣ୍ଡେଜ୍ ରୁମ୍‌କୁ ବୋହିନେଲା । ତା'ର ଆଣ୍ଠୁରେ ଗଭୀର କ୍ଷତ ଏକ୍ସ-ରେ ରିପୋର୍ଟରୁ ଜଣାପଡୁଥାଏ । ଆଣ୍ଠୁର ଚକ୍‌ତି ଦୁଇଗଡ଼ ହୋଇ ମେଲା ରହିଛି । ଆଣ୍ଠୁତଳକୁ ଗଭୀର କ୍ଷତ । ସେଠି ଥିବା ଜଣେ ଓଡ଼ିଆ ବୁଝୁ ନଥିବା ଡାକ୍ତର ମୋତେ ପୁଣି ଚିଠାଟାକୁ ଧରେଇଦେଲେ । ସେ ଚିଠାରେ ବ୍ୟାଣ୍ଡେଜ୍ କନା, ତୁଳା ଠାରୁ ଗ୍ଲୋଭ୍‌ସ, ସିରିଞ୍ଜ୍, ଟେପ୍ ଓ ରକ୍ତ ପରିବର୍ତ୍ତେ ଏକ ଦ୍ରବଣ, କେତେପ୍ରକାର ଔଷଧ ଏପରିକି ମରକ୍ୟୁରୋକ୍ରମ ସବୁ କିଣିବାକୁ ହେଲା, ଯାହାର



Digitized by PPRACHIN, SOA

ମୂଲ୍ୟ ପାଖାପାଖି ଏକହଜାର ଟଙ୍କା ହେବ । ମୋତେ ଔଷଧ ଦୋକାନୀ କହିଲେ- ଆପଣଙ୍କୁ ମୁଁ କ'ଣ କହୁଥିଲି, ଏ ସବୁ ଆଠଶହ ଟଙ୍କାଯାଏ ଲାଗିବ । ସେମାନେ ଯେକୌଣସି ବ୍ୟାଣ୍ଡେଜ କରିବା ପାଇଁ ମଧ୍ୟ ରୋଗୀକୁ ଯଥେଷ୍ଟ ଖର୍ଚ୍ଚାନ୍ତ କରାଉଚନ୍ତି । ସେ ସବୁ ଖର୍ଚ୍ଚ ହେବନି, ହୁଏତ ଷ୍ଟକ୍‌ରେ ରଖିବେ, କିନ୍ତୁ ଗରିବ ରୋଗୀଟିକୁ ସେଥିରୁ କାଣିଚାଏ ବି ଦେବେନି ।

ମୋର ବି ଠିକ୍ ସେଇ ଧାରଣା ହେଲା । ମୁଁ କିଣି ଆଣିଥିବା ଦ୍ରବଣ ଶିଶି ଗୁଡ଼ିକ ଅଧାରୁ ଅଧିକ ବଳକା ରହିଲା । କାଳେ ଆଗକୁ କାମରେ ଲାଗିବ ସେଥିପାଇଁ ସେସବୁ ସେମାନଙ୍କୁ ନେବାକୁ ନଦେଇ ମୁଁ ରମେଶ ବ୍ୟାଗ୍‌ରେ ଭର୍ତ୍ତିକରିଦେଲି ।

ରମେଶର ତଳିପାରୁ ଗୋଡ଼ ପର୍ଯ୍ୟନ୍ତ ବ୍ୟାଣ୍ଡେଜ୍ ଆବୃତ, ରକ୍ତସ୍ରାବ ତଥାପି ବନ୍ଦ ହୋଇନାହିଁ । କାରଣ ଧଳା ବ୍ୟାଣ୍ଡେଜ୍‌କୁ ତିନ୍ତାଇ କଳାଦାଗ କ୍ରମେ ଫିଟିବାରେ ଲାଗିଚି । ଏଣେ ତା ହାତରେ କିଛି ଗୋଟାଏ ଈଷତ୍ ହଳଦିଆ ଦ୍ରବଣର ନଳୀ ଲାଗିଚ.... ବିନ୍ଦୁ ବିନ୍ଦୁ ହୋଇ ଶିରାଦେଇ ଦେହରେ ଭେଦୁଚି । ରମେଶ ମ୍ରିୟମାଣ ଅବସ୍ଥାରୁ ଟିକେ ଚେଙ୍ଗା ହୋଇ ଉଠୁଥିବା ମୁଁ ଲକ୍ଷ୍ୟ କଲି ।

ରାତି ୧୦ଟାରେ ପୁଣି କେତେ ଖୋସାମଦ ଓ ବକ୍ସିସ୍‌ର ପ୍ରଲୋଭନ ପରେ ଦୁଇଜଣ ଆଟେଣ୍ଡାଣ୍ଟ୍ ଷ୍ଟ୍ରେଚରରେ ରମେଶକୁ ଅର୍ଥୋପେଡ଼ିକ୍ସ ଡିପାର୍ଟମେଣ୍ଟ୍ ବାରଣ୍ଡାକୁ ବୋହିନେଲେ । ମୁଁ ପଛେ ପଛେ ଚାଲିଥାଏ । ଓ୍ୱାର୍ଡ ସାରା ରୋଗୀ ଭର୍ତ୍ତି । ଖଟିଆ ଓ ଦୁଇଖଟିଆ ମଧ୍ୟବର୍ତ୍ତୀ ମେଜିଆ ରୋଗୀମୟ ହୋଇ ଉଠିଥାଏ । ଅଗତ୍ୟା ରମେଶକୁ ବାରଣ୍ଡାରେ ପକାଇଦେଇ ଆଟେଣ୍ଡାଣ୍ଟ ଦୁଇଜଣ ମୋଠାରୁ ବକ୍ସିସ୍ ପାଇଁ ଉତ୍କଣ୍ଠିତ ଦୃଷ୍ଟି ହାଣି ଠିଆହୋଇ ରହିଲେ । ସେମାନେ ମଧ୍ୟ ତାଙ୍କ ଡ୍ୟୁଟି ପାଇଁ ରୋଗୀଠାରୁ କିଛି ଆଶା କରନ୍ତି । କାଜୁଆଲଟି ଆଉଟ୍‌ଡୋର୍‌ରୁ ଦୈନିକ ଅନ୍ୟୂନ କୋଡ଼ିଏଟି ରୋଗୀକୁ ବିଭିନ୍ନ ଓ୍ୱାର୍ଡକୁ ସେମାନେ ଷ୍ଟ୍ରେଚରରେ ବୋହି ନେଉଥିବେ । ରୋଗୀର ସଂପର୍କୀୟ ବାଧହୋଇ ଯାହା ଦେଲେ ବି ସେଥିରେ ସେମାନେ ସନ୍ତୁଷ୍ଟ ନୁହନ୍ତି । ଅଧିକ ଆଶାରେ ଚାହିଁ ରହନ୍ତି । ମୁଁ ଏସବୁ ପରିସ୍ଥିତି ଦେଖି ଦେଖି ଖୁବ୍ ବିରକ୍ତ ହୋଇପଡୁଥିଲି ।

ରମେଶ ଅସହାୟ ଭାବରେ ମୋତେ ଚାହିଁ ରହିଥିଲା । ରାତି ସାଢ଼େଦଶ, ରାତିରେ ଆଜିକାଲି ଗାଡ଼ି ଚଳାଇବା ମୋ ପାଇଁ ଖୁବ୍ କଷ୍ଟସାଧ୍ୟ । ତଥାପି ସେଇ ରାତିରେ ଗାଡ଼ି ଚଳେଇ ଆସିଲି ଭୁବନେଶ୍ୱର । ରମେଶ ଚାହୁଁଥିଲା, ମୁଁ ଆଉ ଅଧିକ ସମୟ ସେଠି ତା'ରି ପାଖରେ ବସି ରହେ । ମୋ ବୋତଲର ଅବଶିଷ୍ଟ ପାଣି ଓ କିଛି ବିସ୍କୁଟ କିଣି ତାକୁ ଦେଇ ମୁଁ ଫେରି ଆସିଲି । ଫେରିବାକୁ ଖୁବ୍ ବ୍ୟଗ୍ରଥିଲି ମଧ୍ୟ । ରୋଗୀର କୌଣସି ସଂପର୍କୀୟ ନଥିଲେ ବଡ଼ ଡାକ୍ତରଖାନାରେ ତା'ର ଅବସ୍ଥା ଯାହାହେବ ତା'ର କିଛି ଅନୁଭୂତି ମୁଁ ସେତେବେଳକୁ ସଂଗ୍ରହ କରିସାରିଥିଲି ।

'ଭୋକଭିଜା ମାଟି'ର କବି କ'ଣ ଏଡ଼େ ନିଃସଙ୍ଗ ଓ ଅସହାୟ ? କାହିଁକି ତା'ର ଏପରି ଏକୁଟିଆ ଅବସ୍ଥା ? ଘର ଅଛି, ଜମିବାଡ଼ି ଅଛି. ହୁଏତ ବାପା ବୋଉ ବି ଥିବେ ।



Digitized by PPRACHIN, SOA

ଅଥଚ ସେ ରହେ ହୋଟେଲ୍‌ର କୌଣସି କୋଠରୀରେ । ସେ ତା'ର ଘର ଓ ସଂପର୍କୀୟଙ୍କ କଥା କେବେ ମୋତେ କହିନାହିଁ । ଅଥଚ ଏଭଳି ଅସହାୟ ମୁହୂର୍ତ୍ତରେ ଘରଲୋକେ ହିଁ କେବଳ ଭରସା ଦେଇପାରିବେ । ବାହା ହେବା ବୟସ ଗଡ଼ି ଗଡ଼ି ଯାଉଥିଲେ ବି ସେ ଏବେ ଅବିବାହିତ । କେହି ବାଗ୍‌ଦତ୍ତା ଥାଇପାରନ୍ତି, କିନ୍ତୁ ତା'ର ସ୍ପଷ୍ଟ ଚିତ୍ର ରମେଶ ଠାରୁ ମିଳେ ନାହିଁ । ମଟର ସାଇକେଲ୍ ପଛରେ ନିଜର କବିତା ବହି, କିଛି ପତ୍ରପତ୍ରିକା ଧରି ଏ ତରୁଣ କବି ପାରାଦ୍ୱୀପ ଠାରୁ ଭଦ୍ରଖ ପର୍ଯ୍ୟନ୍ତ କଟକଠାରୁ ଅନୁଗୁଳ ପର୍ଯ୍ୟନ୍ତ ବିଭିନ୍ନ ସ୍ଥାନରେ ବୁଲୁଥିବାର ଦୃଶ୍ୟ କେହି କେହି ଦେଖିଥିବେ । କିନ୍ତୁ ଏପରି ଏକ ଭୟଙ୍କର ଆକ୍‌ସିଡେଣ୍ଟ ଖବର କାହାକୁ ନ ଜଣାଇବାକୁ ସେ କାହିଁକି କହୁଥିଲା ? ତା'ର କ'ଣ ପରିପାର୍ଶ୍ୱ ପ୍ରତି ଅଭିମାନ ନା କ୍ରୋଧ ତାକୁ ଏପରି ନିଃସଙ୍ଗ କରି ରଖିଛି ? ମୁଁ ବୁଝି ପାରୁ ନଥିଲି..... ।





Digitized by PPRACHIN, SOA

# ଶମ୍ଭୂନାଥର କାହାଣୀ

ପ୍ରାୟ ତିନିବର୍ଷ ତଳେ ମୁଁ ଶମ୍ଭୂନାଥକୁ ପ୍ରଥମେ ମୁଁ ରହୁଥିବା ମେସ୍‌ରେ ଆବିଷ୍କାର କରିଥିଲି । ବୟସ ପାଖାପାଖି ଚାଳିଶ ହେବ । ମୁହଁରେ ଦୀର୍ଘ ଶ୍ମଶ୍ରୁ । ବାତରୋଗରେ ଗୋଟିଏ ଗୋଡ଼ ଅନ୍ୟଟିଠାରୁ ଅପେକ୍ଷାକୃତ ସ୍ଥୁଳ । ତଥାପି ତା ଦେହରୁ ସ୍ୱାସ୍ଥ୍ୟର ଚିହ୍ନ ସ୍ପଷ୍ଟ ବାରି ହେଉଥିଲା । ଶମ୍ଭୂନାଥ ମେସ୍‌ରେ ଚାକିରୀ କରୁଥିଲା ।

ଶମ୍ଭୂନାଥ ଘର ସଫାକରେ, ବାସନ ମାଜେ, ମସଲା ବାଟେ; ଆଉ ଦରମା ଯାହା ବା ପାଏ ଖାଏ କିନ୍ତୁ ପେଟପୁରା । ଅଧିକ ଦରମା ପାଇଁ ତାର କଟାଳ ନଥିଲା । ତେଣୁ ମୁଁ ଭାବୁଥିଲି ଖୁବ୍ ଶସ୍ତାରେ କାମିକା ଲୋକଟେ ମିଳିଯାଇଛି । କିନ୍ତୁ ଖାଇବାବେଳେ ତା' ସହିତ କେହି ପ୍ରତିଯୋଗିତା କରି ପାରୁ ନଥିଲେ । ଶମ୍ଭୂନାଥ କେଉଁଠୁ ଶୁଣିଥିଲା ଚାଉଳ ଭିତରେ ଉପାଦେୟ କାର୍ବୋହାଇଡ୍ରେଟ୍ ଅଛି- ତେଣୁ ଗୁଡ଼ାଏ ଭାତ ଖାଇବାହିଁ ଥିଲା ତାର ଆନନ୍ଦଦାୟକ ଓ ଆଭ୍ୟାସିକ ପ୍ରବୃତ୍ତି ।

ଶମ୍ଭୂନାଥ ବେଳେବେଳେ ଉଚ୍ଚସ୍ୱରରେ ଗୀତ ବୋଲେ । ସେ, ଗୀତରେ ତାଳଲୟ ବା ଆଧୁନିକତା ପ୍ରତି ଥାଏ ସଂପୂର୍ଣ୍ଣ ଅସଚେତନ । ତଥାପି ତା ସଂଗୀତର ଜାଙ୍ଗଳିକତା ମୋତେ ତା' ପ୍ରତି ଆକୃଷ୍ଟ କରିଥିଲା । ସେ ଆକର୍ଷଣକୁ କେହି କେହି ଅହେତୁକ ବୋଲି ଭାବିଲେ ବି ମୁଁ ଶମ୍ଭୂନାଥ ସହିତ ଅଧିକ ମିଶାମିଶି କରୁଥିଲି । ତା' ଜୀବନର ରହସ୍ୟକୁ ଭେଦ କରିବା ପାଇଁ ତା' ସହିତ ଅଧିକ ସମୟ ଧରି କଥାବାର୍ତ୍ତା କରୁଥିଲି । ସେ ଆସିଥିବା ଗ୍ରାମ୍ୟ ଅଂଚଳ ଓ ପରିବେଶ ସଂପର୍କରେ ତଥ୍ୟ ସଂଗ୍ରହ କରୁଥିଲି ।

ଶମ୍ଭୂନାଥକୁ କେହି ବୃଦ୍ଧ ବୋଲି କହିଲେ ତା' ମନ ସଂକୁଚିତ ହୋଇଯାଏ, ମୁହଁରେ ଆତଙ୍କର ରେଖା ଦେଖାଯାଏ । ଅବୋଧ ଅଣଦେଖା ଜୀବନ ପ୍ରତି ଶମ୍ଭୂନାଥର ଏ ଆଦିମ ମୋହ ଆମ ମେସ୍‌ର ବନ୍ଧୁମାନଙ୍କ ମଧ୍ୟରେ ଯୁଗପତ୍ ବିସ୍ମୟ, ଲଘୁହାସ୍ୟରୋଳ ସୃଷ୍ଟି କରୁଥିଲା । ଅନେକ ମେସ୍ ଅନ୍ତେବାସୀ ତାକୁ ଉତ୍ତ୍ୟକ୍ତ କରିବା ଲାଗି ତା' ବୟସର ଆନୁପାତିକ ବୃଦ୍ଧି କରୁଥିଲେ । ସେ ଅତି କରୁଣ ଓ ନିଷ୍ପ୍ରାଣ ଭାବରେ ସେମାନଙ୍କୁ ଚାହିଁ ରହୁଥିଲା- ସତେ ଯେପରି ତାକୁ ଜୋର୍‌କରି ମୃତ୍ୟୁ ଦରିଆ ଭିତରକୁ ଠେଲି ଦିଆଯାଉଛି । ସେ ନିସ୍ପୃହ ହେଲେ ବି ଶିଖିଥିବା ଛାନ୍ଦ, ଚୌପଦୀ, ଜଣାଣ ଆଦି ହଠାତ୍ ବୋଲି



Digitized by PPRACHIN, SOA

ବସୁଥିଲା । ଜୀବନପାଇଁ ରସିକତା ଖୋଜି ଖୋଜି ସେ ସବୁବେଳେ ଉପେନ୍ଦ୍ରଭଂଜଙ୍କ କବିତା ଆଡକୁ ହିଁ ତା ମନକୁ ମୁହେଁଇ ନେଉଥିଲା ।

ଶମ୍ଭୂନାଥ ତାର ଜାତି, କୁଳ, ଗୋତ୍ର ବିଷୟରେ କାହାକୁ ନିର୍ଦ୍ଦିଷ୍ଟ ଧାରଣା ଦେଇପାରୁନଥିଲା । କିନ୍ତୁ ନିଜବ୍ୟତୀତ ଅନ୍ୟମାନଙ୍କ କଥା କହିବାରେ ସେ ପ୍ରଗଳ୍ଭ ହୋଇ ଉଠୁଥିଲା । ମହାତ୍ମାଗାନ୍ଧି ପଦଯାତ୍ରାବେଳେ ତାଙ୍କ ଗାଁ ବାଲିଯାତ୍ରା ପଡ଼ିଆରେ କ'ଣ କହିଥିଲେ, କେଲୁ ସାହୁ ଗୁଡ଼ିଆର ଘରପୋଡ଼ି ବେଳେ ସେ କିପରି ଡାକପାରି କାନ୍ଦିଥିଲା, ଚୌଧୁରୀବଜାର ରାସ୍ତାରେ ଷଣ୍ଢ ଲଢେଇରେ କିପରି ଘଣ୍ଟାଏ ପର୍ଯ୍ୟନ୍ତ ଟ୍ରାଫିକ୍ ବନ୍ଦ ହୋଇଗଲା, ଦୁର୍ଗାମେଢ଼ ବିସର୍ଜନ ବେଳେ ଦି' ସାହି ମଧ୍ୟରେ ହଠାତ୍ କିପରି ଦଙ୍ଗାଗୋଳ ଆରମ୍ଭ ହୋଇଗଲା- ଏ ସବୁ କଥାର ପ୍ରତ୍ୟକ୍ଷଦର୍ଶୀ ଭାବେ ସେ ଚମତ୍କାର ଧାରା ବିବରଣୀ ଦେଇପାରୁଥିଲା । ଏମିତି ଗପାଗପି ଭିତରେ ସେ ଥରେ ମାତ୍ର ଗୋଟିଏ ସ୍ତ୍ରୀ ଲୋକର ନାମ ଉଚ୍ଚାରଣ କରି ପକାଇଥିଲା । ତା'ପରେ ଛେପ ଢୋକିଲା । କଥାର ମୋଡ଼ ବୁଲାଇ ତାର ଅନବଦ୍ୟ ଦଦରା କଣ୍ଠରେ ଦରଦ ରାଗିଣୀ ଶୁଣାଉ ଶୁଣାଉ ତା' ଅଲକ୍ଷ୍ୟରେ ଟୋପାଏ ଲୁହ ତା ଆଖିରୁ ଗାଲ ଦେଇ ବୋହି ଯାଇଥିଲା ।

ଶମ୍ଭୂନାଥକୁ ଦିନେ ରାତିରେ ଅଚାନକ ଜର ହେଲା, ସାଙ୍ଘାତିତ ବାତଜର । ଆଦୌ ରେମିସନ୍ ହେଉ ନଥାଏ । ପାଖ ଆୟୁର୍ବେଦିକ ଦୋକାନରୁ ଔଷଧ ଖାଇ କୌଣସି ମତେ ଭଲ ନ ହେବାରୁ ଶମ୍ଭୁନାଥକୁ ଅଗତ୍ୟା ଆମ୍ବୁଲାନ୍‌ସ ଡ଼କାଇ ହସ୍‌ପିଟାଲକୁ ଆଣିବାକୁ ହେଲା । ଶମ୍ଭୂନାଥ ଆଉ ମେସ୍‌କୁ ଫେରିଲାନି । ହସ୍ପିଟାଲରୁ ଆଉ ଗୋଟିଏ ପୃଥୁଳଗୋଡ଼ ନେଇ ସେ ଉଭାନ ହୋଇଚି ବୋଲି ଡାକ୍ତର କହିଲେ ।

ସେ ଫେରିଲାନି- ତା' ସ୍ଥାନ ମଧ ଅପୂରଣୀୟ ରହିଲାନି । ସେ କୌଣସି ପରିବେଶ ସହିତ ଦୀର୍ଘ ବଂଧୁତା ଚାହେଁନି । ପରିବେଶର ଆସ୍ୱାଦନ ସାମାନ୍ୟ ପୁରୁଣା ଆଉ ଗତାନୁଗତିକ ହେଲେ ସେ ଆତ୍ମଗୋପନ କରେ । ହଠାତ୍ ହୁଏ ଅନ୍ତର୍ଦ୍ଧାନ- ଏକଥା ପରେ ଜଣାପଡ଼ିଲା; କିନ୍ତୁ ଅସଦ୍ ପ୍ରକୃତିରେ କିଛି ଲୁଚେଇ ଚୋରେଇ ନେଇଥିବା କଥା କେହି କହି ନାହାନ୍ତି । ସମସ୍ତେ ତାକୁ ମନେ ରଖିଛନ୍ତି । ପ୍ରୌଢ଼ ଶମ୍ଭୂନାଥ ସମସ୍ତଙ୍କ ମନରେ ଲୋଟଣୀପାରାର ବିସ୍ମୟ ସୃଷ୍ଟିକରି ଆକାଶମାର୍ଗରେ ଯେପରି ଉଡ଼ି ଉଡ଼ି ପଳେଇ ଯାଉଚି । ଜୀବନପାଇଁ ଅନୁଭୂତି ସାଉଁଟି ସାଉଁଟି ଜୀବନତାର ବିଛନ୍ଦ ହୋଇ ଯାଇଛି- ଜୟ ପରାଜୟରେ ହୋଇଛି ଲହୁ ଲୁହାଣ- ତା'ପାଇଁ ଅଧିକାରର ଆଗ୍ରହ, ପ୍ରତିଷ୍ଠାର ପ୍ରଲୋଭନ, ଆଉ ପାଇବାର ପ୍ରତ୍ୟାଶା କିଛି ନାହିଁ- ଶମ୍ଭୂନାଥ ଆମ ସମସ୍ତଙ୍କ ପାଇଁ ସତେରେ ଥିଲା ଏକ ବିସ୍ମୟ ।

ଦୁଇବର୍ଷ ପରେ ହଠାତ୍ ଦିନେ ମୁଁ ଶମ୍ଭୂନାଥକୁ ସହରର ରାଜରାସ୍ତାରେ ଯାଉଥିବାର ଦେଖିଲି । ମୁଣ୍ଡତାର ଜଟାଜୁଟ । ଗୋଡ଼ଦୁଇଟି ବ୍ୟାଧିର ଯନ୍ତ୍ରଣାରେ ଜଳସ୍ରାବ



Digitized by PPRACHIN, SOA

କରୁଥାଏ । ଗୋଡ଼ଘା'ର ଅପେକ୍ଷାକୃତ ଗଭୀରତମ ଅଂଶରେ ସେ କୁଟାଟାଏ ଗୁଂଜି ଦେଇଥାଏ । ଗୋଡ଼ର ଜଳୀୟ ଜିନିଷ ସେଇବାଟେ ହେଉଥାଏ ବହିର୍ଗତ । ହାତରେ ତାର ଗୋଟିଏ ନାତିଦୀର୍ଘ ତ୍ରିଶୂଳ । ତ୍ରିଶୂଳର ଅଗ୍ରଭାଗରେ ସିନ୍ଦୂର ଆଉ ମନ୍ଦାରର ପୁଷ୍ପହାର । ତା' ମୁହଁ ଓ ଦେହ ଭସ୍ମବିଲେପିତ, କପାଳରେ ସିନ୍ଦୂରର ଗାଢ଼ ଓଁକାର ଚିହ୍ନ ଆଉ ଜିଭରେ ଗୋଟାଏ ଛୁଞ୍ଚ । ସେ ଜିଭକୁ ସମ୍ଭବତଃ ଢାଲ୍ କରି ଫୋଡ଼ିଥାଏ । ଦର୍ଶକକୁ ତା ପ୍ରତି ସହାନୁଭୂତିଶୀଳ କରିବାକୁ ତା'ର ଏ ଗୋଟାଏ ଅଭିନବ ଉପାୟ-ହାତରେ ଡମ୍ବରୁ । ଆମ ମେସ୍‌ରେ ଥିଲାବେଳେ ସେ ଯେପରି ଅଣତାଳିଆ ଗୀତ ବୋଲୁଥିଲା ସେହିପରି ଡମ୍ବରୁ ମଧ୍ୟ ତାଳହୀନ ଭାବେ ଶବ୍ଦାୟିତ । ତା ଡମ୍ବରୁନାଦରେ ଥାଏ ବାଳସୁଲଭ ତାରଲ୍ୟ, ଦୃଷ୍ଟିରେ ଅକୁତୋଭ ଆଶା, ଆଉ ଚାଲିରେ ବାର୍ଦ୍ଧକ୍ୟର ସ୍ୱଷ୍ଟତା । ଶମ୍ଭୁନାଥ ଛାନ୍ଦ, ଚୌପଦୀ ଛାଡ଼ି ଓଁ, ହ୍ଲାଂ କୀଂ, ଜଂ,ବଂ, ଶଂ, ହଂ ଉଦାତ୍ତ ସ୍ୱରରେ ଉଚ୍ଚାରଣ କରୁଥାଏ । ଜଣେ ସନ୍ନ୍ୟାସୀର ମୋହ ସୃଷ୍ଟି ପରି ଶମ୍ଭୂନାଥ ରାଜରାସ୍ତାରେ ନିରାଲମ୍ବ ଚାଲୁଥାଏ; ବେଳେବେଳେ ଅଟକି କୌଣସି କୌଣସି ପୁଣ୍ୟକାମୀ ପଦଚାରୀଙ୍କଠାରୁ ଭିକ୍ଷା ଗ୍ରହଣ କରୁଥାଏ । କାହା ସହିତ କଥା ହେଉ ନଥାଏ । ସୃଷ୍ଟିର ସବୁ ଜୀବଙ୍କ ପାଇଁ ସନ୍ନ୍ୟାସୀ ଶମ୍ଭୁନାଥର ଅସୀମ କୃପା; ସମସ୍ତଙ୍କ ପାଇଁ ଅସୀମ କାରୁଣ୍ୟ ଓ କରୁଣା । ସେ ନିଜେ ମୋହମୁକ୍ତ ଓ ଅନାସକ୍ତ- ତା ଆଖିରେ ଏହିପରି କିଛିଭାବ ଉକୁଟି ଉଠୁଥାଏ. ।

ଶମ୍ଭୂନାଥର ଏ ଅବସ୍ଥା ଦେଖି ମୋତେ ଦୁଃଖ ଓ ହସ ମାଡ଼ିଲା । ଏ ଅଭିନବ ଉପାୟ ସେ କେଉଁଠୁ ଶିଖିଲା- ମୁଁ ବିସ୍ମିତ ହେଉଥିଲି । ବୈରାଗ୍ୟ ଶମ୍ଭୂନାଥର କାମ୍ୟ ନୁହେଁ; ଜୀବନପ୍ରତି ତା'ର ଦୁରନ୍ତ ମୋହ ମୁଁ ଅନୁଭବ କରିଛି । ହୁଏତ ବ୍ୟାଧି ଶମ୍ଭୂନାଥର ଜୀବନରେ ବୈରାଗ୍ୟ ଆଣିପାରିଥାଏ- ଏହାହିଁ ମୁଁ ଭାବୁଥିଲି । ପାଖକୁ ଆସି ତାକୁ ଇସାରାଦେଲି । ପଛରେ ଛାଡ଼ିଯାଉଥିଲା ବିସ୍ମୃତିର ବିରାମ; ଆଗରେ କିନ୍ତୁ ଜୀବନଯାତ୍ରାର ଅନବଦମିତ ଅଗ୍ରଗତି । ମୋର ସ୍ମୃତିରେ ସେସବୁ ଯେପରି ରହି ରହି ହାଇ ମାରୁଛି । ତା'ର ହସ ହସ ମୁହଁ ଆଉ ନିରଙ୍କୁଶ ଜୀବନ ମୋତେ ପ୍ରହେଳିକା ପରି ଅଭିଭୂତ କରୁଥାଏ ।

++++ ପୁଣି କେତେବର୍ଷର ବ୍ୟବଧାନରେ ସହରର ଆଉ ଏକ ଚଳଚଞ୍ଚଳ ରାସ୍ତାରେ ମୁଁ ତାକୁ ଆବିଷ୍କାର କଲି । ଗୋଟିଏ ଜାତୀୟ ପତାକାକୁ ଉର୍ଦ୍ଧ୍ୱକୁ ଟେକି ସେ ଭାରତ ମୁକ୍ତିର ଯୁଦ୍ଧ ଡାକରା ଦେଇ ଆଗଉଥାଏ । ତା'ରି ଇଂଗିତରେ ଚାଲିଥାନ୍ତି ପ୍ରାୟ ଦୁଇଶହ ମୁକ୍ତିବାହିନୀର କର୍ମୀ । ତାର ସ୍ଲୋଗାନ ଥାଏ ଭାରତମାତାର ମୁକ୍ତି ପାଇଁ ଆହ୍ୱାନ- ଅସ୍ତ୍ର ଥାଏ ଅହିଂସା । ସ୍ଲୋଗାନ ପ୍ରାୟ ଦୁଇଶହ ମୁକ୍ତିକାମୀ ସୈନିକଙ୍କ ମୁହଁରେ ପ୍ରତିଧ୍ୱନିତ ହୋଇ ଉଠୁଥାଏ । ସେମାନେ ସମସ୍ତେ ସାଧାରଣ ଦରିଦ୍ର ଓ ଭିକ୍ଷାମାଗି ବଂଚୁଥିବା ଅବହେଳିତ ମଣିଷ ସଂପ୍ରଦାୟ । ଶମ୍ଭୂନାଥ ଯେ ସେମାନଙ୍କୁ ସଂଗଠିତ କରି ସହର



Digitized by PPRACHIN, SOA

ଅଭିମୁଖେ ମୁକ୍ତି ଡାକରା ଦେଇ ଆଗଉଛି, ତାହା ମୋତେ ଯେତିକି ବିସ୍ମିତ ସେତିକି ଅଭିଭୂତ କରୁଥିଲା । ଶମ୍ଭୂନାଥ ସମ୍ଭବତଃ ଏକ ଛୋଟ ଅନୁଷ୍ଠାନରେ ପରିଣତ ହୋଇଛି । ତାର ଇଶାରାକୁ ଅପେକ୍ଷା କରୁଛନ୍ତି ପ୍ରାୟ ଦୁଇଶହ ମୁକ୍ତିକାମୀ ଦରିଦ୍ର ସଂପ୍ରଦାୟ । ମତେ ପ୍ରହେଳିକା ପରି ବୋଧ ହେଲା । ସେ ଛୋଟେଇ ଛୋଟେଇ ଚାଲୁଥାଏ । ବ୍ୟାଧିର ପୀଡ଼ାକୁ ସେ ବୋଧହୁଏ ମୁକ୍ତି ଆନ୍ଦୋଳନର ଉତ୍ତେଜନାରେ ଭୁଲିଯାଇଥାଏ । ଅବିଶ୍ରାନ୍ତ ଭାବରେ ସେ ବିଦେଶୀ ଇଂରେଜ ଶାସକଙ୍କ ବିରୁଦ୍ଧରେ କରୁଥାଏ ଯୁଦ୍ଧଘୋଷଣା ।

ମୁଁ କ୍ଷଣେ ଅଟକିଲି । ଭାବିଲି ତାକୁ ଡାକିବି । ନମସ୍କାର କରି ଭଲମନ୍ଦ ପଦେ ପଚାରିବି । ତା'ପରେ ଭାବିଲି- ନା, ଠିକ୍ ହେବ ନାହିଁ । ମୁକ୍ତି ପାଗଳ ଶମ୍ଭୂନାଥ କିଛି ବୁଝୁବା ନ ବୁଝୁ ଉତ୍ତେଜନାର ପ୍ରତିଧ୍ୱନି ସେ ସହରବାସୀଙ୍କ କାନରେ ପକାଇ ଆସୁ । ତାହା କିଛି କମ୍ ସଫଳତା ନୁହେଁ । ଚିହ୍ନାଲୋକେ ଜାଣନ୍ତୁ- ଶମ୍ଭୂନାଥ ବଂଚିଛି ଏକ ଅର୍ଥପୂର୍ଣ୍ଣ ଜୀବନ । ଦେଶ ମୁକ୍ତିର ସେତୁବନ୍ଧରେ ସେ ଗୁଣ୍ଡୁଚିମୂଷାଟିଏ ହେଉପଛେ ଏକ ମହାନ୍ କର୍ତ୍ତବ୍ୟ ସାଧନରେ ଅଛି ଅନୁବ୍ରତୀ ।

୧୯୮୭ମସିହା ଅଗଷ୍ଟ ପନ୍ଦର ତାରିଖ । ମୁଁ ଶମ୍ଭୁନାଥ କଥା ଭାବୁଥିଲି । ସେ ଆଜି କେଉଁ ଅଖ୍ୟାତ ପଲ୍ଲୀରେ ହୁଏତ ଲୋକଙ୍କୁ ମେଳେଇ ତୋରଣ ସଜାଉଥିବ, ଥୋଇଥିବ ପୂର୍ଣ୍ଣ ଜଳକୁମ୍ଭ । ଆନନ୍ଦ ଉଲ୍ଲାସରେ ଫାଟି ପଡୁଥିବ । ତା ହସକୁଡା ମନ ସ୍ୱପ୍ନ ସାର୍ଥକତାର ଗୌରବରେ ସ୍ପନ୍ଦିତ ହୋଇ ଉଠୁଥିବ ।

ସମ୍ଭୁନାଥର କଥା ଖବରକାଗଜର ପୃଷ୍ଠା ମଣ୍ଡନ କରିନି । ଅପରିଚିତ ଓ ଅବଜ୍ଞାତ ଏଇ ମଣିଷଟିର ପାଗଳାମୀ ବା ଖିଆଲକୁ କୌଣସି ସାମ୍ବାଦିକ ମୂଲ୍ୟ ଦେଇନାହାନ୍ତି । ସେଥିପାଇଁ ଶମ୍ଭୁନାଥ ବ୍ୟାକୁଳ ମଧ ହୋଇନାହିଁ । ହଠାତ୍ ସେଦିନ ବସ୍‌ରେ ଯାଉଥିବାବେଳେ ତା' କଥା ଶୁଣିବାକୁ ପାଇଲି । ଶମ୍ଭୂନାଥ ତତ୍ପରତାର ସହିତ କିଛି ଗଠନମୂଳକ କାର୍ଯ୍ୟରେ ଲାଗିଛି । ତା' କଣ୍ଠରେ ସେହିପରି ପୁରୁଣା ରାଗରାଗିଣୀର ବିହ୍ୱଳ ସ୍ୱର । ତାରି କଥାରେ କର୍ମମୁଖର ହୋଇ ଉଠିଛନ୍ତି ଗ୍ରାମବାସୀ । ଦଳ ପୋଖରୀ ସଫା ହେଉଛି । ମାଟି ପଡ଼ି ରାସ୍ତାକୁ ମଜଭୁତ୍ କରା ଯାଉଛି, ଆବର୍ଜନା ସଫା କରା ଯାଉଛି, କ୍ଲବଘର ତିଆରି ହେଉଛି, ଲାଇବ୍ରେରୀ ଘର କାନ୍ଥ ଉଠୁଛି ଯୁବକମାନଙ୍କ ଉଦ୍ୟମରେ । ସବୁଠାରେ ପ୍ରମତ୍ତ ଶମ୍ଭୂନାଥ । ତା଼ର ଯୋଜନା- ସେ ଗ୍ରାମକୁ ସ୍ୱାବଲମ୍ବୀ କରିବ । ସେଥିପାଇଁ ଲୋକଙ୍କୁ ସଂଗଠିତ କରିଛି । ତାର କର୍ମଭୂମି ଆକୁମାରୀ ହିମାଳୟ ବିସ୍ତୃତ ଭାରତଭୂଖଣ୍ଡ । ବାୟୁରେ ତାର ଗତି, ତାର ଆତ୍ମାର ହିଲ୍ଲୋଳ; ଜଳରେ ତାର ରକ୍ତର ତଡ଼ିତ୍ । ଶମ୍ଭୂନାଥ କୌଣସି ଗୋଟାଏ ଗାଁରେ ବନ୍ଧାପଡ଼ିବାର ମଣିଷ ନୁହେଁ । ଇଥରରେ ତାର ବାର୍ତ୍ତା ଭାସିବୁଲୁଛି । ସାମ୍ବାଦିକ ଓ ସମ୍ବାଦପତ୍ର ତାକୁ ସ୍ୱୀକୃତି ଦେଇଛନ୍ତି । ତାକୁ ସ୍ୱାଧୀନତା ପରବର୍ତ୍ତୀ ସମୟଖଣ୍ଡର ଆଦର୍ଶ ଗଠନକାମୀ ମଣିଷଭାବେ ପ୍ରଚାର କରିଛନ୍ତି ।



Digitized by PPRACHIN, SOA

ସେ ପ୍ରତୀକରେ ପରିଣତ ହୋଇଯାଇଛି ।

ଜାନୁୟାରୀ ଛବିଶ ତାରିଖ ୧୯୮୮ ମସିହା । କଟକ କିଲ୍ଲାପଡ଼ିଆରେ ବିରାଟ ଶୋଭାଯାତ୍ରାର ଆୟୋଜନ ହୋଇଥାଏ । ରାଜ୍ୟପାଳ ଅଭିବାଦନ ଗ୍ରହଣ କରିବେ । ପ୍ରଜ୍ଞାପନ ମେଢ଼ମାନ ସୁସଜ୍ଜିତ ହୋଇ ଶୋଭାଯାତ୍ରାରେ ଯିବାପାଇଁ ଅପେକ୍ଷମାଣ । ଗଣତନ୍ତ୍ର ଦିବସର ଉତ୍ତେଜନାରେ ସମସ୍ତେ ଯେପରି ଆନନ୍ଦମୁଖର । ମୁଁ ଦେଖିଲି ଶମ୍ଭୂନାଥ ଦୁଇବାହୁରେ ଦୁଇଟି ଯଷ୍ଟିଭରା ଦେଇ ଛୋଟେଇ ଛୋଟେଇ କିଲ୍ଲା ମଇଦାନ ଆଡ଼େ ଚାଲିଛି । ପିଠିରେ ବାନ୍ଧିଛି ଗୋଟାଏ ମଇଳା ବୁଜୁଳି । ପିନ୍ଧିଛି ଛୁଣ୍ଡାଲୁଗା । ଗୋଡ଼ ଦୁଇଟାରୁ ଅବିଶ୍ରାନ୍ତ ବୋହିଚାଲିଛି ପୂଜ ଆଉ ରକ୍ତ । ଛିଡ଼ାଜାମା ଭିତରୁ ତା' ଦେହର ପଞ୍ଜରାହାଡ଼ ବାହାରକୁ ସ୍ପଷ୍ଟ ଦେଖାଯାଉଥାଏ । ଆଖିରେ ଲାଗିଥାଏ ଲେଞ୍ଜରା ଓ ମୁଣ୍ଡରେ କେଉଁଠି ପତଳା ଧଳାବାଳ । ଶମ୍ଭୂନାଥ ଅତି କଷ୍ଟରେ ବାଟ ଚାଲୁଥାଏ ।

ମୁଁ ବୁଝିଲି ସେ ଦେହର ବ୍ୟାଧି ନେଇ ସମାଜ ଓ ସଭ୍ୟତାର ସାଜଭିତରୁ ଦୂରେଇ ରହିଛି । ଔଷଧ ପାଇନି, ପଥ୍ୟ ବି ପାଇନି । କେହି ଦୟାକରି ତା' ଆଡକୁ ଶ୍ରଦ୍ଧା ଓ ଦାନର ହାତ ପ୍ରସାରଣ କରିନାହିଁ । ସେ ରାସ୍ତାର ନିରନ୍ନ ଅବାଞ୍ଛିତ ବୁଭୁକ୍ଷୁ । ଜୀବନର ଶେଷ ଭାଗରେ ସେ କେବଳ ମୃତ୍ୟୁ ପାଇଁ ଅପେକ୍ଷମାଣ । ତଥାପି ଗଣତନ୍ତ୍ର ଦିବସରେ ସେ ତାର ସ୍ୱପ୍ନର ମୁକ୍ତିକଳ୍ପନାର ସାକାର ରୂପ ଦେଖିବାକୁ ବ୍ୟାକୁଳ ଭାବେ ଧାଇଁ ଆସିଛି । ତାର ଦେଶଠାରୁ, ସରକାରଙ୍କଠାରୁ ଆଉ କିଛି ପ୍ରତ୍ୟାଶା ନାହିଁ । ସେ ଖାଲି ଦେଖିବ ଜାତିର ଜାତୀୟ ପତାକା କିପରି ପବନରେ ଫରଫର ଉଡୁଚି; ଅଗଣିତ ମଣିଷଙ୍କ ପଟୁଆର ମଧ୍ୟରେ ସେ ପଛେ ହଜିଯାଉ- ସେ ଦେଖିବ ଦେଶବାସୀଙ୍କ ମୁହଁରେ ଉଚ୍ଛୁଳା ହସର ଜୁଆର । ତଥାପି କିପରି ଭୋକ, ସନ୍ତ୍ରାସ ଓ ଶୋଷଣର ବେଳାଭୂମିରେ ଯାଉଛି ମଣିଷର ଜୀବନ । ସେଥିପାଇଁ ସେ ନିଜ ଦେହର ଯନ୍ତ୍ରଣାକୁ ଭୁଲିଚି । ରାସ୍ତା କଡ଼େ କଡ଼େ ଚାଲିଛି ଶମ୍ଭୂନାଥ । ଆଗରେ ମୃତ୍ୟୁର ଦୋଳକ, ତଥାପି ଅନ୍ତରରେ ମୁକ୍ତିର ଅନବଦମିତ ଆହ୍ୱାନ ଓ ଉଲ୍ଲାସ ।

ଶମ୍ଭୂନାଥ ଆଉ ଆଗେଇ ପାରୁନାହିଁ । ଗୋଡ଼ ଦୁଇଟା ଯନ୍ତ୍ରଣାରେ ଅବଶ ହୋଇ ଯାଉଛି; ପାଦ ଆଗେଇବାକୁ ପ୍ରସ୍ତୁତ ନୁହେଁ । କିଲ୍ଲାମଇଦାନରୁ ତୋପଧ୍ୱନିର ଆବାଜ ପବନରେ ଖେଳି ବୁଲୁଚି ।

ଶମ୍ଭୂନାଥ ଆଉ ଆଗକୁ ପାଦ ପକେଇ ପାରିଲା ନାହିଁ । ରାସ୍ତାକଡ଼ ଗଛମୂଳେ ବସି ରହିଲା । ତା ଆଖିରେ ଜଳୁଥିଲା ଯୁଗାତୀତ ଆବେଗର ବିଦ୍ୟୁଲ୍ଲେଖା । ଦୂରରୁ "ଜନଗଣମନ....." ସମବେତ ସଂଗୀତର ମୂର୍ଚ୍ଛନା ଭାସି ଆସୁଥିଲା । କିଲ୍ଲାମଇଦାନର ଆକାଶ ଜନକୁଆରରେ ଧୂଳିରେ ପ୍ୟାରେଡ଼ର ଓ ଧୂସର ହୋଇ ଉଠୁଥିଲା । ରାସ୍ତାରେ ସାମରିକ ବାହିନୀର ଶୋଭାଯାତ୍ରା, ପ୍ରଜ୍ଞାପନ ମେଢ଼ର ଆଟୋପ । ବାଦ୍ୟରୋଳରେ ସହର କଂପୁଛି । ଶମ୍ଭୂନାଥ ସେଇ ଗଛମୂଳେ ବସି ଲକ୍ଷ୍ୟ କରୁଥିଲା ଏ ଦେଶର ମୁକ୍ତିର



Digitized by PPRACHIN, SOA

ସ୍ୱରୂପ ।

ଶମ୍ଭୂନାଥର ଆଖି ବିସ୍ମୟ ଓ କ୍ଷୋଭରେ କ୍ରମେ ନିମୀଳିତ ହୋଇ ଆସିଲା । ଯଷ୍ଟିଭରା ଦେଇ ସେ ଉଠିବାକୁ ଚେଷ୍ଟାକଲା । ବହୁତ ଦୂରରେ ସହରର ଉପାନ୍ତରେ ତାର ଆଶ୍ରମ । ସେ ଜନଲୋଚନର ଅନ୍ତରାଳକୁ ଚାଲିଯିବାକୁ ବ୍ୟାକୁଳ ହୋଇ ଉଠୁଥିଲା । ଜାଗ୍ରତ ମୁକ୍ତିର ଉଦ୍‌ଗ୍ରାସ ତାକୁ ଯେପରି ଚିପିଚକଟି ଦଳିଦେବାକୁ ବ୍ୟଗ୍ର ହୋଇ ଉଠିଛି; ସେ ରୁନ୍ଧି ହୋଇ ଯାଉଛି ଏଇ କୋଳାହଳ ଭିତରେ । ସେ ଚାହେଁ ଏଇ ଅବାଞ୍ଛିତ ଘେର ଭିତରୁ ମୁକ୍ତି । ଶୂନ୍ୟ, ନିରାଭରଣ ମୁକ୍ତିପାଗଳ ଶମ୍ଭୂନାଥ ମହୋତ୍ସବର ଆଡମ୍ବରରେ ଏତେ ଅବସାଦଗ୍ରସ୍ତ ହୋଇ ଉଠୁଛି କାହିଁକି ?

କେହି ତାକୁ ଚିହ୍ନୁନାହାନ୍ତି । ତାର ଏପରି ଦୈହିକ ପୀଡ଼ା ପାଇଁ କେହି ଦୟା ପରବଶ ହୋଇ ଚିକିତ୍ସାର ବ୍ୟବସ୍ଥା କରିନାହିଁ । ଏ ଜନତା ଭିତରେ ସେ ଯେପରି ଅପାଙ୍‌କ୍ତେୟ, ପରିଚୟହୀନ ଓ ଅଦରକାରୀ ମଣିଷଟିଏ । ଶମ୍ଭୂନାଥ ମନରେ ଅବସାଦର କ୍ଷୋଭ ଭରିଗଲା । ତାର କାନ୍ଦିବାକୁ ଇଚ୍ଛା ହେଉଥିଲା । କିନ୍ତୁ ଏପରି ଦିନରେ ତାର କାନ୍ଦ ବା କାହାକୁ ଦୋହଲେଇ ଦେଇପାରିବ ? ସହର ରାସ୍ତାରେ ଚାରିଆଡେ ଛୁଟୁଥିଲା ପ୍ରାଣଉଚ୍ଛଳା ପ୍ରମତ୍ତ ଆନନ୍ଦର ଲହଡ଼ି । ଭିଡ଼ାଓଟରା, ଦବାନବା ଓ ହସଖୁସିର ସମୁଦ୍ର ଜୁଆର ଭିତରେ ସେ ଏକ ଆବର୍ଜନାକୂଢ଼ ପରି କୂଳରେ ଫିଙ୍ଗିହୋଇ ପଡୁଥିଲା । ସତେ ଅବା ଉଦ୍‌ବେଳ ଜୁଆରର ଜାନ୍ତବ ଅଭୀପ୍ସା ପାଖରେ ସେ ଥିଲା ପୋଡ଼ା କାଠଖଣ୍ଡେ, କତରା କିମ୍ବା ଶୁଖିଲା ପଇଡ଼ ପରି ଅନାବଶ୍ୟକ ଦ୍ରବ୍ୟଟିଏ- ଯାହା ଢେଉର ଧକ୍କାରେ ସ୍ୱତଃ ବେଳାଭୂମିରେ ଇତସ୍ତତଃ ବିଛାଡ଼ି ହୋଇ ପଡୁଥିଲା ।





Digitized by PPRACHIN, SOA

# ଶୀତଳ ଜ୍ୱାଳା

ସହର ଛାଡ଼ି ଗାଁକୁ ପଳେଇ ଆସି ଚକ୍ରପାଣି ବଡ ଅସ୍ୱସ୍ତି ଅନୁଭବ କଲେ । ସହରର ବିରକ୍ତିକର ଜୀବନ-ତା'ଠାରୁ ସେ ନିଷ୍କୃତି ଚାହିଁଥିଲେ, ହୁଏତ ଲୋଡ଼ୁଥିଲେ ତାଙ୍କ ସ୍ଥିତିସ୍ଥାପକ ମନପାଇଁ କିଛି ଉପାଦାନ । କିନ୍ତୁ ଏଇ ତାଙ୍କର ପରିଚିତ ଗ୍ରାମ, ବାଲ୍ୟ ଓ ଶୈଶବର ସାଥୀ । କୈଶୋରରେ ଏଇ ଗ୍ରାମରେ କେତେ ମଧୁର ସ୍ୱପ୍ନ ସେ ଦେଖିଛନ୍ତି । ଏଇ ଗ୍ରାମକୁ ପବିତ୍ର ଭୂଇଁ ଭାବି କଲେଜରେ ପଢ଼ିଲାବେଳେ କେତେ କଅଣ ଲେଖିଛନ୍ତି- ସେଇ ଗ୍ରାମ, ଜନ୍ମଭୂମି । ଆଃ ଆଜି କେତେ ନିର୍ମମ ଭାବରେ ସେ ଗାଁ ତାଙ୍କୁ ଫିଙ୍ଗି ଦେଇଛି; ସବୁ ସ୍ମୃତି, ସବୁ ଭଂଗାଗଢ଼ାର ଇତିହାସ- ବି କିଛି ସେ ଆଜି ମନେ ପକେଇ ପାରୁନାହାନ୍ତି ।

ଏଇ ଗ୍ରାମର ଅନତିଦୂରର ସର୍ପିଳ ରାସ୍ତାରେ ସେ ଯେତେବେଳେ ୟୁନିଫର୍ମ ପିନ୍ଧି ଆସୁଥିଲେ ଭାବୁଥିଲେ ଗାଁ ଲୋକେ ତାଙ୍କ ମିଲିଟାରୀ ପୋଷାକ ଦେଖି ଚମକି ପଡ଼ିବେ । ଯୁଦ୍ଧ ଫେରନ୍ତା ସୈନିକ ଚକ୍ରପାଣି । ନେଫାର ସୀମାନ୍ତରେ ଶତ୍ରୁଙ୍କୁ ନିପାତ କରି ସେ 'ବୀରଚକ୍ର' ମେଡ଼ାଲ ପାଇଛନ୍ତି । ତାଙ୍କ କଲରାପତ୍ରିଆ ନିଶ, ମିଲିଟାରୀକଟ୍ ଚୁଟି, ଖାକି ପୋଷାକ ଆଉ ବୁଟ୍‌ଜୋତା ଲୋକଙ୍କ ମଧ୍ୟରେ ନିଶ୍ଚୟ ଗୋଟାଏ ଚାଞ୍ଚଲ୍ୟ ସୃଷ୍ଟି କରିବ । ସମସ୍ତେ ହୁଏତ ତାଙ୍କ ଚାରିପାଖରେ ଘେରିଯାଇ ତାଙ୍କୁ ତଟସ୍ଥ ହୋଇ ଚାହିଁ ରହିବେ । ସେ ସୀମାନ୍ତରୁ ଫେରୁଚନ୍ତି- ଚକ୍ରପାଣି ବଳିୟାର ସିଂ ।

କିନ୍ତୁ ଏ କଣ ହେଲା ? ଲୋକେ ତାଙ୍କୁ ଭୁଲିଯାଇଛନ୍ତି ନା ତାଙ୍କୁ ଅନେକ ବର୍ଷ ହେବ ଦେଖି ନ ଥିବାରୁ ଚିହ୍ନିପାରୁ ନାହାନ୍ତି ? ଦେହର ଆକୃତି, ପୋଷାକ ଚାଲିଚଳନ- ସବୁଥିରେ ଆସିଯାଇଛି ଅଭୂତପୂର୍ବ ପରିବର୍ତ୍ତନ । ଚକ୍ରପାଣିଙ୍କ ମନର ଉତ୍ତେଜନା ଏଇ ପରିବର୍ତ୍ତିତ ପରିବେଶରେ ଜଡ଼ ପାଲଟି ଯାଉଥିଲା । ଚକ୍ରପାଣି ଯେତେବେଳେ ବହୁଦିନରୁ ପରିତ୍ୟକ୍ତ ତାଙ୍କ ଭଙ୍ଗାଘରେ ପାଦ ଦେଲେ- ପନ୍ଦର ବର୍ଷ ତଳର ଏକ ଅଶାନ୍ତ ଭୂତ ତାଙ୍କୁ ଯେପରି ପ୍ରକାଣ୍ଡ ଆଁ ମେଲି ଗିଳିଦେବାକୁ ବସିଲା । ଆଉ ପାଦରେ ଚୋଟ ଦେଲା ପନ୍ଦର ବର୍ଷର ଗୋଖର ସାପ । ସ୍ମୃତିର ମଶାଣି ତଳୁ କେତେ ବ୍ୟାଧିଗ୍ରସ୍ତ କଙ୍କାଳ ତାଙ୍କୁ ହାତଠାରି ଇଂଗିତ ଦେଲେ ।

ତୁ କିଏ ? ତୁ କିଏ ?

ଫେରି ଯା ! ଫେରି ଯା !!

ଏ ଘର ତୋର ନୁହେଁ, ଏ ଘର ପ୍ରେତର । ଏଠି ମଣିଷ ରହନ୍ତିନି ।



Digitized by PPRACHIN, SOA

ଭାରତୀୟ ସୈନ୍ୟ ବାହିନୀର ସଫଳ ସିପାହୀ ଚକ୍ରପାଣି ବଳୀୟାର ସିଂ । ତା' ବନ୍ଧୁକରେ ଏବେବି ଗୁଳି ଭରି ରହିଛି । ତା ନିଜର ନିରାପତ୍ତା ପାଇଁ ତା ଦେହରେ ଅଛି ଅମିତ ବଳ ଓ ବିକ୍ରମ । କିନ୍ତୁ ତଥାପି ସେ କାହିଁକି ଆତଙ୍କିତ- ସେ ବୁଝିପାରୁନି ।

ଚକ୍ରପାଣିର ତାତିଲାମନ କ୍ରମେ ଥଣ୍ଡା ବରଫ ପରି କୋହ୍ଲ ମାରି ଆସିଲା । ଅତି ଅସହାୟ ଭାବରେ ସେ ଦାଣ୍ଡ ପିଣ୍ଡାରେ ବସିଲା । କ୍ରମେ ଜଣେ ଜଣେ ଗ୍ରାମବାସୀ ଏଇ ଆଗନ୍ତୁକ ନୂତନ ଅତିଥିକୁ ସମ୍ଭାଷଣ ଜଣେଇ ଫେରି ଯାଉଥିଲେ । ସେମାନେ ତା ପ୍ରତି ଏତେ ବେଶୀ ଉତ୍ସୁକତା ପ୍ରକାଶ କରୁ ନଥିଲେ । ଚକ୍ରପାଣି ଭାବୁଥିଲେ ସମୟ ତାଙ୍କୁ ଯୋଦ୍ଧାର ଗୁରୁଗୌରବ ଦେଇଥିଲେ ବି ନିଜର ଜନ୍ମମାଟିରୁ ବହୁଦୂରକୁ ଫିଙ୍ଗି ଦେଇଛି । ସେ ଅତି ଦୟନୀୟ ଭାବେ ଏକୁଟିଆ ।

ପନ୍ଦରବର୍ଷ ତଳର କଥା । ସେତେବେଳେ ଭାରତ ସୀମାନ୍ତରେ ହଠାତ୍ ଚୀନ୍‌ର ଯୁଦ୍ଧ ଡାକରା । ଅତି ଆକସ୍ମିକ ଭାବେ ଭାରତର ଯୁଦ୍ଧ ପ୍ରସ୍ତୁତି । ସେତେବେଳେ ଚକ୍ରପାଣି ସେଇମାତ୍ର କଲେଜରେ ପାଦ ଦେଇଥାନ୍ତି । ଅବଶ୍ୟ ବୟସ ଟିକିଏ ଅଧିକ ହୋଇ ଯାଇଥିଲା । ଚକ୍ରପାଣି ଯୁଦ୍ଧ ବିଭାଗରେ ଯୋଗ ଦେଇ ଦେଶପାଇଁ ଲଢ଼ିବାକୁ ସିଦ୍ଧାନ୍ତ କରି ପାଠପଢ଼ା ଛାଡ଼ିଦେଲେ । ଆଗରୁ ତାଙ୍କ ମନରେ ଥରେ ଅଧେ ଏଥିପାଇଁ ଅଭିଳାଷ ଚେଇଁ ଉଠିଥିଲା । ସେ ଦଶମ ଶ୍ରେଣୀରେ ପାଠପଢ଼ିଲାବେଳେ ଯେଉଁଦିନ ବଳି ମାଷ୍ଟ୍ରେ ତାଙ୍କୁ ନିର୍ମମଭାବେ ଦି'ପହର ଖରାରେ ଘଣ୍ଟାଏ ପର୍ଯ୍ୟନ୍ତ ଆଣ୍ଠେଇ ଦେଇଥିଲେ ସେଇଦିନ ମଧ୍ୟ ଗ୍ରାମଛାଡ଼ି ଯୁଦ୍ଧ ବିଭାଗରେ ଯୋଗଦେବାକୁ ତାଙ୍କ ମନରେ ସିଦ୍ଧାନ୍ତଟିଏ ଉପ୍ତବୀଜ ହୋଇଥିଲା । କିନ୍ତୁ ଆଗକୁ ଥିଲା ମାଟ୍ରିକ ପରୀକ୍ଷା । କୌଣସି ମତେ ସେ ଉଚ୍ଚାଟନରୁ କ୍ଷାନ୍ତ ହୋଇ ସେ ପରୀକ୍ଷା ପାଇଁ ପ୍ରସ୍ତୁତ ହୋଇଥିଲେ । କିନ୍ତୁ ଦେଶର ଡାକରା ତାଙ୍କୁ କଲେଜ ପଢ଼ା ପୋଥିରେ ଡୋର ବାନ୍ଧି ନେଇଯାଇଥିଲା ଯୁଦ୍ଧ ପାଇଁ ତାଲିମ୍ କ୍ଷେତ୍ରକୁ । ଯୁଦ୍ଧ ଭୂମିରେ ଗ୍ରାମ ପ୍ରତିନିଧିଙ୍କଠାରୁ ଚିଠି ପାଇଲେ ଯେ ତାଙ୍କ ବିଧବା ବୂଢ଼ୀ ମାଆ ରୋଗରେ ପଡ଼ି ମରିଗଲେ । ଚକ୍ରପାଣି ନ କାନ୍ଦି ହୃଦୟଟାକୁ ପଥର ପରି ଟାଣ କରିଦେଲେ । ନେଫାର ଯୁଦ୍ଧ କ୍ଷେତ୍ରରେ ସିପାହୀ କାନ୍ଦିଲେ ବା ଅଧୀର ହେଲେ ଏଣେ ଦେଶମାତୃକା ବିପନ୍ନ ହେବନିକି ? ବିଭିନ୍ନ ଯୁଦ୍ଧ କ୍ଷେତ୍ରରେ ସେ ପନ୍ଦରବର୍ଷ ଧରି ଦେହକୁ କିଳି ସଂଗ୍ରାମ କରିଛନ୍ତି । ଗ୍ରାମଲୋକେ ଭାବି ନେଇଛନ୍ତି ଅସଂଖ୍ୟ ମୃତ ସୈନିକଙ୍କ ମଧ୍ୟରେ ସେ ହୁଏତ ଅନ୍ୟତମ । ସେ ନିଖୋଜ, ସେ ଅପାଙ୍‌କ୍ତେୟ ।

ପନ୍ଦରବର୍ଷର ସେ ଏକ ଧୂସର ପ୍ରହେଳିକା ରାୟଚୂଡ଼ାମଣି ଘନଶ୍ୟାମ ବଳିୟାର ସିଂହଙ୍କ ଏକମାତ୍ର ପୁତ୍ର ଚକ୍ରପାଣି । ନାମର ଅତିରିକ୍ତ ଦୀର୍ଘତାକୁ ତାଙ୍କ ବାପା ସ୍କୁଲରେ ନାମ ଲେଖେଇଲାବେଳେ ଶିକ୍ଷକଙ୍କ ପରାମର୍ଶ କ୍ରମେ ସଂକୁଚିତ କରି ଦେଇଛନ୍ତି । ଦେହର ଆପେଣ୍ଡିକ୍ସ ପରି କେଉଁ କାଳୁ କଟା ହୋଇଗଲାଣି ତାଙ୍କ ଆଭିଜାତ୍ୟର ଶୃଙ୍ଖଳା ଆଟୋପ-ରାୟ ଚୂଡ଼ାମଣି ଉପାଧି । ତଥାପି ତାଙ୍କ ମନରେ ଆକାଙ୍‌କ୍ଷାଟିଏ ସଦର୍ପରେ ବଢ଼ିଚାଲିଚି-ମୃତ ପିତାଙ୍କ ଭସ୍ମୀଭୂତ ଶ୍ମଶାନରେ ସେ ତୋଳିବେ ଗୋଟିଏ ସ୍ମୃତି ମନ୍ଦିର- ଯାହା ତାଙ୍କ



Digitized by PPRACHIN, SOA

ବାପାଙ୍କ ଆଭିଜାତ୍ୟର ପ୍ରତୀକ ହୋଇ ରହିବ । ଯୁଦ୍ଧଭୂମିରେ ତାଙ୍କ ସାହସ, ଧୈର୍ଯ୍ୟ ହୁଏତ ଦେଶପାଇଁ ଗୌରବ ଆଣିପାରିଥାଏ କିନ୍ତୁ ଏଇ ଜନ୍ମମାଟି ଏଠି ସେ ଅପରିଚିତ । ଏଠି ତାଙ୍କୁ କେହି ଚିହ୍ନନ୍ତିନି । କେବଳ ଏଇ ପୁରୁଣା ଭିଟାମାଟି- କେଉଁକାଳୁ ତାର ଶ୍ରୀ ହରେଇ ଆଁ କରି ପଡ଼ି ରହିଛି । ଗୋଟାଏ ଦିଆନିଆ । ସେ ସବୁ ସମୁଦ୍ରର ଢେଉପରି ସମୟ କୋଳରେ ମୁଣ୍ଡପିଟି ଚୂରି ହୋଇ ଯାଇଛି । ଖାଲି ବେଳାରେ ତାର ଅସ୍ପଷ୍ଟ ଦାଗ- ମେଞ୍ଚାଏ ଶୃଙ୍ଖଳା ଫେଣ ଓ କଳାଶୃଙ୍ଖଳା କେତୋଟି ଗୋଟମା ।

ଚକ୍ରପାଣି ଖୁବ୍ ଅସ୍ୱସ୍ତି ବୋଧ କରୁଥିଲେ । ଏଇ ଗ୍ରାମକୁ ନିଜର କହି ଗର୍ବ କରିବାର କଣ ବା ଅଛି ? ଏଠି ସମସ୍ତେ ନିଜନିଜ ସ୍ୱାର୍ଥସାଧନରେ ବ୍ୟସ୍ତ । କେହି ଜଣେ ହେଲେବି ତାଙ୍କ ପାଖରେ ଆତ୍ମୀୟତା ଦେଖାଇ କଥା କହୁନାହାନ୍ତି । ସମସ୍ତଙ୍କ ମୁହଁରେ କେବଳ ହେତୁହୀନ ବିସ୍ମୟ, ଅଚିହ୍ନା ଅଚିହ୍ନା ଭାବ । ମୃତ ବୋଲି ପ୍ରଚାରିତ ଚକ୍ରପାଣିର ଏଇ ଅଚାନକ ଆବିର୍ଭାବ ବହୁ ଲୋକଙ୍କ ମନରେ ଯୁଗପତ୍ ବିସ୍ମୟ ଓ ସନ୍ଦେହ ସୃଷ୍ଟି କରିଚି । କିନ୍ତୁ ଚକ୍ରପାଣି ଯାହା ଭାବିଥିଲେ ତାର ମୁଚ୍ଛ, ମିଲିଟାରୀ ପୋଷାକ, ପନ୍ଦରବର୍ଷର ଦେହଉଚ୍ଛୁଳା ରୂପ ଲୋକଙ୍କୁ ବଶୀଭୂତ କରିଦେବ ଫୁଃ, ଏ ଲୋକ ବିସ୍ମିତ ହୋଇ ବି ଜାଣନ୍ତିନି । ସେ ଯେ ପନ୍ଦରବର୍ଷ ତଳର ଏଇ ଗାଁର ଯୁବକ ଚକ୍ରପାଣି ଏକ ବିମୂର୍ତ୍ତ ବିସ୍ମୟ- ଠିକ୍ ଜୁଲୋଜିକାଲ ପାର୍କର ଧଳାବାଘ କିମ୍ବା ରାତ୍ରି ଆକାଶର ଚଳମାନ ଉଲ୍କାପିଣ୍ଡ ପରି- ଏକଥା ସହରଠାରୁ ଦୂର ଦୂରାନ୍ତର ଏଇ ଗ୍ରାମର ଲୋକେ ଜାଣନ୍ତେ ବା କିପରି ? ନିତିଦିନିଆ ଘସାମଜା ଜୀବନ ଭିତରେ ସେମାନେ ଯଥାରୀତି ବଂଚନ୍ତି- କ୍ୱଚିତ୍ ସେମାନଙ୍କ ମନରେ ବିସ୍ମୟର ଭାବ ଉଦ୍ରେକ ହୁଏ । କ୍ୱଚିତ୍ ସେମାନେ ଅନ୍ୟପାଇଁ ଭାବନ୍ତି ବା ବିକଳ ହୁଅନ୍ତି । ସେମାନେ ସବୁ ଘରେ ବା ଖଟଖୁରାରେ ବନ୍ଧା ଜଣେ ଜଣେ ଦି'ଗୋଡ଼ିଆ ପଶୁ । କିଛି ଚମକ ନଥାଏ ସେମାନଙ୍କ ଜୀବନରେ-କେବେ ଚମକ ସୃଷ୍ଟିହେଲେ ଅତିଶୀଘ୍ର ମିଳେଇଯାଏ ଠିକ୍ କରକା ପରି ।

ଗ୍ରାମକୁ ଆସି ଆତ୍ମ ପରିଚୟ ଦେବାରେ ଗତଦୁଇଦିନ ହେବ ନୟାନ୍ତ ହେଲେଣି ଚକ୍ରପାଣି । ସେଇ ଏକା କଥାକୁ ବାରମ୍ବାର ଜଣକ ପରେ ଜଣକ ଆଗରେ ଦୋହରେଇ ଚାଲିଚନ୍ତି । କିଏ ବୁଝୁଚି, କିଏ ବା ବୁଝୁନାହିଁ । ପ୍ରଥମେ ସେ ବହୁ କଷ୍ଟରେ ଚାରିଜଣ ସମର୍ଥ ଶ୍ରୋତାଙ୍କୁ ଯୋଗାଡ଼ କରି ଯୁଦ୍ଧ ଭୂମିର କାହାଣୀ ବର୍ଣ୍ଣନା କରିଚନ୍ତି । ବମ୍‌ଡ଼ିଲା, ୱାଲଂ, ଲଡ଼କୁ- ଏହିପରି କେତେ ଅପରିଚିତ ଅବୋଧ୍ୟ ନାଁ । ପାଖଲୋକେ ଆଶ୍ଚର୍ଯ୍ୟ ହୋଇ ଶୁଣିଛନ୍ତି । ଏଇ ଚକ୍ରପାଣି; ଭଲ ପାଠପଢ଼େନି ବୋଲି କେତେ କାନମୋଡ଼ା ଖାଇଚି, ଏକଗୋଡ଼ିକିଆ ଠିଆ ହୋଇଚି, ଖରାରେ କାନଧରି ଆଣ୍ଠେଇଚି- ସେ ପୁଣି ଶତ୍ରୁଙ୍କୁ ସାମ୍ନା କରି ସେମାନଙ୍କ ରକ୍ତରେ ଚିତାଘେନି ବିଜୟ ଦର୍ପରେ ଗାଁକୁ ଫେରିଚି । ଏ କଥା ଅନେକେ ବିଶ୍ୱାସ କରି ପାରନ୍ତିନି, ତଥାପି ଅବୋଧ୍ୟ କୌତୂହଳରେ ଶୁଣନ୍ତି ।

ପନ୍ଦର ବର୍ଷ ତଳେ ହଠାତ୍ ୧୯୬୨ ଅକ୍ଟୋବର ତା୨୦ ରିଖରେ ଚାଇନା କରେ ଭାରତ ଆକ୍ରମଣ । କେତେ ସଇନଙ୍କ ରକ୍ତରେ ହିମାଳୟର ଧଳାବରଫ ଲାଲ ପାଲଟି



Digitized by PPRACHIN, SOA

ଯାଏ । ଆଉ ହିମାଳୟରେ ତପସ୍ୟାରତ କେତେ ମୁନିଋଷି ନରମେଧ ଯଜ୍ଞରେ ଆହୁତି ହୁଅନ୍ତି । ବଳିଆରସିଂର ସ୍ମୃତିର କୋଷରୁ ଗୋଟିଏ ପରେ ଗୋଟିଏ କେତେ ଚିତ୍ରପଟ ଫିଟି ପଡୁଚି । ଗ୍ରାମର, ଦେଶର, ଜାତିର ଗୌରବ ଏଇ ଚକ୍ରପାଣି ପରି କେତେ ଭାରତୀୟ ସିପାହୀ ବିଳମ୍ବରେ ହେଲେବି କେଉଁଠିନା କେଉଁଠି ଯୁଦ୍ଧଭୂମିରେ ଶତ୍ରୁର ସାମ୍ନା କରିଛନ୍ତି ।

ଗାଁ ଲୋକେ କେହି ବୁଝୁଚନ୍ତି, କେହିବା ବୁଝୁନାହାନ୍ତି । ଯୁଦ୍ଧ ହେଲାଣି ପୁରୁଣା, ତାତିଲା ସ୍ମୃତି ହେଲାଣି ଶୀତଳ । କାହାଣୀ ହେଲାଣି ପୁରାତନ । ଗାଁ ଲୋକଙ୍କ ନିତିଦିନିଆ ଜୀବନରୁ ଯୁଦ୍ଧର ପ୍ରଥମ ମୋହ କଟି ଗଲାଣି । କେତେ ଅନ୍ଧବିଶ୍ୱାସୀ ବୃଦ୍ଧ ଲୋକ ତଥାପି ବିଶ୍ୱାସ କରି ପାରୁନାହାନ୍ତି ଗାଁର ପୁଅ ଯୁଦ୍ଧଭୂଇଁରେ ଲଢ଼ି ମୃତ୍ୟୁମୁଖରୁ ଫେରି ଆସିଚି । ହୁଏତ ଏ ଚକ୍ରପାଣି ନୁହେଁ; ତାର ପ୍ରେତ, ଭୂତ, ଅଥବା ଆଉ କେହି ତାର ସାଙ୍ଗସାଥୀ । କେହି କେହି ଭାବୁଚନ୍ତି ବଳିୟାରସିଂ ଯୁଦ୍ଧକ୍ଷେତ୍ରରୁ ଲୁଚି ପଳେଇ ଆସିଚି । ଅଳ୍ପଦିନେ ଗାଁକୁ ଓ୍ୱାରଣ୍ଟ ଆସିବ । ଏ ଚକ୍ରପାଣି ହୋଇଥିଲେ ତାକୁ ପୁଣି ଯୁଦ୍ଧ ବିଭାଗକୁ ସରକାର ଧରିନେବେ । ଯେହେତୁ ସେ ଯୁଦ୍ଧ ପଳାତକ ।

ଚକ୍ରପାଣି ପ୍ରଥମେ ଯେଉଁଦିନ ତା' ଗ୍ରାମର ଦଶଜଣ ଯୁବକଙ୍କୁ ଏକାଠି କରି ବନ୍ଧୁକ ଚାଳନା ଶିଖେଇଲା, ମାର୍ଚ୍ଚିଂ କରିବା ଶିଖେଇଲା ସାଧାରଣ ଲୋକେ ତାଜୁବ୍ ହୋଇଗଲେ । କାହା କାହା ମନରେ ଧାରଣା ହେଲା ଯେ ଚକ୍ରପାଣି ଗାଁ ଟୋକାଗୁଡ଼ାଙ୍କୁ ବିଗାଡ଼ି ଦେବ । ସେମାନଙ୍କୁ ଯୁଦ୍ଧ ବିଭାଗକୁ ଧରିନେବ । ଏ ହୋମ୍‌ଗାର୍ଡ଼ ହେବାକଥା ନିହାତି ମିଛ, ଚକ୍ରପାଣି ସରକାରଙ୍କ ଖାସ୍‌ଲୋକ ହୁଏତ ସି.ଆଇ.ଡ଼ି. ।

ଏଥର ଚକ୍ରପାଣି ତା ଗତିବିଧିରେ ବୟସ୍କ ଲୋକଙ୍କଠାରୁ ଆଘାତ ପାଇଲା, ପ୍ରତିକ୍ରିୟାବି ଲକ୍ଷ୍ୟ କଲା । କିନ୍ତୁ ଖାତିର କଲାନି । ତାର ଶିଷ୍ୟ ଦଶଜଣ ଯୁବକ ତା ପଛରେ ଶପଥ କରି ଦୁହାଇ ଦେଲେ- କିନ୍ତୁ ଯୁଦ୍ଧର ପନ୍ଦରବର୍ଷ ପରେ ଲୋକଙ୍କ ମନରେ ଆଉ ଉନ୍ମାଦନା ଆସୁନଥିଲା । ସେ ଦିନର ତାତି ନିତିଦିନିଆ ଜୀବନର କୋହଲା ଭିତରେ ହଜିଗଲାଣି କେଉଁ କାଳୁ ।

ଗ୍ରାମ ରହଣିର ଦୁଇମାସ ପରେ ଚକ୍ରପାଣି ହଠାତ୍ ରେଡ଼ିଓରୁ ଶୁଣିଲେ- ପୃଥିବୀର ସମସ୍ତ ରାଷ୍ଟ୍ର ଯୁଦ୍ଧ ବିରତ ଚୁକ୍ତିନାମାରେ ସ୍ୱାକ୍ଷର କରିଛନ୍ତି । ହିଂସ୍ର ଚାଇନାଠାରୁ ଆରମ୍ଭ କରି ଯୁଦ୍ଧଖୋର ପାକିସ୍ଥାନ ପର୍ଯ୍ୟନ୍ତ ସମସ୍ତେ ଚାହାନ୍ତି ଯୁଦ୍ଧହୀନ ପୃଥିବୀ । ଆନ୍ତର୍ଜାତିକ ସମ୍ମିଳନୀରେ ଭାରତର ଏ ପୁରୁଣାପ୍ରସ୍ତାବ ସ୍ୱୀକୃତି ପାଇଛି- ଚକ୍ରପାଣି ବିଶ୍ୱାସ କରି ପାରିଲେନି ।

ଚକ୍ରପାଣି ପନ୍ଦରବର୍ଷ ତଳର ଯୁଦ୍ଧଭୂମି କଥା ମନେ ପକେଇଲେ । ତୃଷାରେ ଛାତି ଫାଟିଯାଉଚି । ଜିଭ ଶୁଖି ଯାଉଚି । ଅଥଚ ଗୋଟିକ ପରେ ଗୋଟିଏ ଭାରତୀୟ ସୈନିକ ବମ୍‌ଡ଼ିଲା ଘାଟୀରୁ ମରିହଜି ଯାଉଛନ୍ତି । କେହି ବା ଶତ୍ରୁ ଶିବିରରେ ବନ୍ଦୀ । ଏକ ଗିରିରାସ୍ତା କଡ଼ରେ ପଡ଼ି ପ୍ରାଣ ବିକଳରେ ସେ ଛଟପଟ ହେଉଚି । ଓଃ ସେ କି ପ୍ରାଣାନ୍ତକ ମୁହୂର୍ତ୍ତ । ବମ୍‌ଡ଼ିଲା ଘାଟୀରୁ ଏବେବି ଶତ୍ରୁର କମାଣ ଧ୍ୱନି ନିସ୍ତବ୍ଧ ହେଉନି । ଚାରିଆଡେ ଲାଲ୍



Digitized by PPRACHIN, SOA

ମଶାଲର ଅଗ୍ନିଶିଖା ଜଳି ଉଠୁଚି । ହୁଏତ ବିଜୟ କୋଳାହଳରେ ଶତ୍ରୁ ସୈନ୍ୟମାନେ ଆନନ୍ଦ ଉତ୍ସବରେ ମାତିଛନ୍ତି । କିନ୍ତୁ ଚକ୍ରପାଣି ଦୁଇଦିନ ହେବ ଅନାହାର ସାଙ୍ଗକୁ ଅସହ୍ୟ ତୃଷାରେ ଛଟପଟ ହେଉଚି। ଚକ୍ରପାଣି ମୁହୂର୍ତ୍ତେ ନିସ୍ତେଜ ହୋଇ ପଡ଼ି ରହିଲା । ମନେହେଲା ଯେପରି ପିଣ୍ଡରୁ ଧୀରେ ଧୀରେ ପ୍ରାଣ ଛାଡ଼ିଯିବାରେ ଲାଗିଛି । ତା'ରି ଭିତରେ ଗିରି-ସଂକଟର ସର୍ପିଳ ରାସ୍ତାରେ ସେ ଲୁଚି ଲୁଚି ଚାଲିଛି ଭାରତୀୟ ଅନ୍ୟଏକ ଘାଟୀ ସନ୍ଧାନରେ । ସେ କ୍ଷୁଧା ତୃଷାକୁ ମୁକାବିଲା ପରି ନୂତନ ଉଦ୍ଦୀପନାରେ ଚଳେଇଲା ଆଉ ଏକ ସଶସ୍ତ୍ର ସୈନ୍ୟବାହିନୀ । ହଠାତ୍ ଆକ୍ରମଣରେ ଶତ୍ରୁ ସୈନ୍ୟ ନିଶ୍ଚିହ୍ନ ହେଲେ । ତାଙ୍କରି ପରି ଜଣେ ଚୀନ ସୈନିକ ତୃଷାରେ ଛଟପଟ ହେଉଥିଲାବେଳେ ଚକ୍ରପାଣି ନିଜ ବ୍ୟାଗ୍‌ରୁ ତା' ମୁହଁରେ ପାଣି ଦେଇ ତାକୁ ବଞ୍ଚେଇବାକୁ ଚେଷ୍ଟା କରୁଥିଲା । କିନ୍ତୁ ତାଙ୍କରି ଆଗରେ ନିର୍ବାଣଦୀପର ଶେଷଶିଖା ପରି ଦପ୍ କରି ଜଳି ଉଠି ସେ ସୈନିକଟିର ମୁହଁରେ ଉଠିଥିବା ଶେଷ ଝଲକ ମୁହୂର୍ତ୍ତକରେ ମିଳେଇଗଲା । ଚକ୍ରପାଣିଙ୍କ ପଥର ଛାତି ମଧ୍ୟ ଦୟା ଓ କରୁଣାରେ ତରଳିଗଲା। ଆଖିରୁ ବୋହିଗଲା କେଇଧାର ଲୁହ । ସେ ନିଜ କୋଳରୁ ମୃତ୍ୟୁମଥିତ ଶୀତଳ ଦେହଟାକୁ ତଳେ ଗଡ଼େଇ ଦେଇ ଘାଟୀକୁ ଫେରି ଆସିଲେ ।

ଚକ୍ରପାଣି ତାଙ୍କ ଜନ୍ମଗ୍ରାମର ସେଇ ଯୁଦ୍ଧ ଶିକ୍ଷାର୍ଥୀମାନଙ୍କୁ ପାଖକୁ ଡାକି ଯୁଦ୍ଧବିରତି କଥା ଅତି ବିଭୋର ଭାବେ ବଖାଣୁଥିଲେ। ସମସ୍ତେ ଭାବିଲେ ଚକ୍ରପାଣି ବୋଧହୁଏ ପାଗଳ ହୋଇଯାଇଛନ୍ତି- ପୃଥିବୀରୁ ସତରେ. କଣ ଯୁଦ୍ଧ ଦୂର ହୋଇପାରେ- ଏହା ଚକ୍ରପାଣିଙ୍କ ମନରେ କଳ୍ପନା ହୋଇପାରେ । ନିରାଶ୍ରୟ ଏକୁଟିଆ ଜୀବନ ବୋଧହୁଏ ତାଙ୍କ ପାଇଁ ଅସହ୍ୟ ହୋଇଚି । ସେ ଆଉ ବଞ୍ଚିବେନି । କିନ୍ତୁ ଚକ୍ରପାଣି ଯେତେବେଳେ ଗ୍ରାମ ସୀମାନ୍ତରେ ହଠାତ୍ ଏକ ଅଗ୍ନି ଉତ୍ସବର ଆୟୋଜନ କଲେ ସେତେବେଳେ ବୟସ୍କ ଲୋକେ ବିଚଳିତ ହୋଇ ପଡ଼ିଲେ । ଯୁବକମାନେ ଏକ ଅବୋଧ କୌତୁହଳୀରେ ତାଙ୍କୁ ଚହିଁ ରହିଲେ । ଶିଶୁମାନେ ତଟସ୍ଥ ହେଲେ ।

କିନ୍ତୁ ଚକ୍ରପାଣି ଆବାଳବୃଦ୍ଧବନିତାଙ୍କୁ ଏକାଠି ହେବାର ଦେଖି ଜ୍ୱଳନ୍ତ ଅଗ୍ନିଶିଖା ପାଖରେ ଛୋଟ ସଭାଟିଏ ଆୟୋଜନ କରିଦେଲେ । ସେତେବେଳକୁ ସମସ୍ତଙ୍କ ଆଖିରେ ଲୁହ ଓ ମନରେ ଆଲୋଡ଼ନ ଦେଖା ଦେଇଥାଏ । ତା'ପରେ ସେ ନିଜର ଓ ଶିକ୍ଷାର୍ଥୀ ଗ୍ରାମ୍ୟଯୁବକଙ୍କ ୟୁନିଫର୍ମ ଏଇ ଜ୍ୱଳନ୍ତ ଅଗ୍ନିଶିଖାରେ ନିକ୍ଷେପ କଲେ । ତା'ପରେ ମିଲିଟାରୀ କାଇଦାରେ ଅଗ୍ନିଶିଖାକୁ ତିନିଥର ସଲାମ୍ କରି ଶେଷକୁ ନିଜର ଅତିପ୍ରିୟ ବନ୍ଧୁକଟିକୁ ସେଇ ଶିଖାରେ ନିକ୍ଷେପ କଲେ । ତା'ପରେ ଅତି ଅଧୀର ଭାବରେ ସେଇ ଜଳନ୍ତା ଶିଖାକୁ ଚାହିଁ ଚାହିଁ ଚକ୍ରପାଣି ଗାନକଲେ ଜାତୀୟ ସଙ୍ଗୀତ । ଆଖିରୁ ତାଙ୍କର ଅବିରାମ ଗତିରେ ବହି ଚାଲିଥାଏ ଆନନ୍ଦର ଲୁହଧାର । ସମସ୍ତେ ଭାବିଲେ ଚକ୍ରପାଣି ପାଗଳ ହୋଇଯିବେ । ଚକ୍ରପାଣିଙ୍କୁ ପନ୍ଦରବର୍ଷ ତଳର ଯୁଦ୍ଧଭୂତ ଗ୍ରାସ କରିଛି । କିନ୍ତୁ ଚକ୍ରପାଣି ସ୍ମୃତିର ପାଉଁଶ ନିଃଶେଷ ହୋଇ ଯାଉଥିବାର ଦେଖିବା ଭିତରେ ନିଜ ଅନ୍ତରରେ ଆହତ ସୈନିକ ମାନଙ୍କ ମୃତ୍ୟୁମୁଖୀ ଆକୁଳ ଚିତ୍କାର ଶୁଣୁଥିଲେ । ଆଉ ଯୁଦ୍ଧ ହେବନି,



Digitized by PPRACHIN, SOA

ମଣିଷ ଅସହାୟ ଭାବରେ ଯୁଦ୍ଧଭୂମିରେ ମରିବେନି- ଭବିଷ୍ୟତର ଏକ ସୁଖକର ଉଷ୍ଣତା ତାଙ୍କୁ ଉଚ୍ଚାଟିତ କରୁଥିଲା । ତଥାପି ଭୟଙ୍କର ଏକ ଅବିଶ୍ୱାସର ପ୍ରେତ ତାଙ୍କ ଅନ୍ତରକୁ ମଥିତ କରି ଯେପରି ବାରମ୍ବାର କହୁଥିଲା- ନା, ଯୁଦ୍ଧ ବନ୍ଦ ହୋଇପାରେନା । ଯୁଦ୍ଧ ମଣିଷର ସହଜାତ ଜୈବିକ ପ୍ରବୃତ୍ତି । ରାଷ୍ଟ୍ରର ଅହମିକା । କୀଟପତଙ୍ଗ ସରୀସୃପ ଠାରୁ ମଣିଷ ପର୍ଯ୍ୟନ୍ତ କେହି ମଧ ଏ ସହଜାତ ପ୍ରବୃତ୍ତିରୁ ମୁକ୍ତ ନୁହନ୍ତି । କିଏ ଯେପରି କହୁଚି ଯୁଦ୍ଧ ବନ୍ଦ ହୋଇ ପାରେନା । ରାସ୍ତାରେ ଅଳିଆ ଜମିଲେ ମେହେନ୍ତର ଯେପରି ଝାଡୁରେ ସଫା କରିଦିଏ ସେହିପରି ଉଦ୍‌ବୃତ୍ତ ଜନସଂଖ୍ୟାକୁ ବାରମ୍ବାର ଯୁଦ୍ଧ ଆସି ସଫା କରିଦେବ । "War is Nature's prunning hook" Aldous Huxley- 'War and Peace'.

ଚକ୍ରପାଣି ଲକ୍ଷ୍ୟ କଲେ ନିଆଁର ସେଇ ସର୍ବଗ୍ରାସୀ ଶିଖା ତାଙ୍କ ପନ୍ଦର ବର୍ଷ ବ୍ୟାପୀ ଜୀବନ ଓ ତାର ଆଭିଜାତ୍ୟର ମୁଖା ଓ ଖୋଳପାକୁ ଜାଳି ଧ୍ୱଂସ କରି ଦେଉଚି । ପନ୍ଦର ବର୍ଷର କେତେ ଦୁର୍ବାର ଆକାଙ୍‌କ୍ଷା କେତେ ଭୟଙ୍କର ଶଙ୍କା ସବୁ ସେଇ ନିଆଁରେ ଜଳି ନିଃଶେଷ ହୋଇ ଯାଉଚି । ତା' ସହିତ ନିଃଶେଷ ହୋଇ ଯାଉଚି ତାଙ୍କର ଏ ଯାବତ୍ ସମସ୍ତ ପରିଚୟ, ପଳାୟନର ଇତିହାସ, ବାଘନିଶ ଆଉ ମିଲିଟାରୀ ଜୀବନର ଅହମିକା । ସବୁ ଯେପରି ଜଳିପୋଡ଼ି ପାଉଁଶରେ ପରିଣତ ହୋଇ ଯାଉଚି । ସେ ଏକ ଉତ୍ତପ୍ତ ଜ୍ୱଳନ ଠାରୁ କ୍ରମେ ଶୀତଳ ଜ୍ୱାଳାରେ ନିଜର ପରିଚୟ ଖୋଜିବସୁଛନ୍ତି । ଖୋଜୁଚନ୍ତି ନୂତନ ପରିଚୟ- ଯାହା ହୋଇପାରେ ଜୀବନପାଇଁ ଏକ ଭୟଙ୍କର ଅମୀମାଂସା- ଏକ ଉତ୍ତପ୍ତ ଦାହ ଓ ଶୀତଳ ଜ୍ୱାଳା । ଚକ୍ରପାଣି ତଥାପି ସେ ସମୟକୁ ସ୍ୱାଗତ କରୁଥିଲେ- ଯଦିଓ ତାର ଆଗମନପାଇଁ ସେ ସଂପୂର୍ଣ୍ଣ ନିଃସନ୍ଦେହ ନଥିଲେ ।





Digitized by PPRACHIN, SOA

# ହାତୀଚଢ଼ା

ହାତୀ ଘର ଘର ବୁଲି ଚାଉଳ, ପଇସା ମାଗୁଛି । ଥୋମଣିରେ କେତେ ପ୍ରସ୍ତ ବହଳ ସିନ୍ଦୂରର ଲେପ, ପିଠିରେ ହାଉଦା । ଟୋକା ମାହୁନ୍ତ ଡେଣ୍ଟା ଧରି କାନ୍ଧ ଉପରେ ବସିଛି । ବେକରେ ଘଣ୍ଟି ଘାଗୁଡ଼ି । ପହଣ୍ଡି ପକେଇ ହାତୀ ଚାଲିଛି, ଦନ୍ତାହାତୀ । ବିରାଟ ବିରାଟ ଦିଟା ଲମ୍ବା ଦାନ୍ତ ଆଗକୁ ଧନୁପରି ବଙ୍କେଇ ଯାଇଛି ।

ଫାଟକ ଭିତର ଦେଇ ଫ୍ଲାଟ ନିକଟକୁ ହାତୀ ଚାଲି ଆସିଲା । ତଳ ଫ୍ଲାଟର ଛୋଟ ପିଲାମାନେ ଉଲ୍ଲସିତ ହୋଇ ଉଠିଲେ । 'ହାତୀ.....ହାତୀ...' ତୁହାକୁ ତୁହା ମୁନା ଟୁନା ଡାକ ଛାଡ଼ୁଛନ୍ତି । ହାତୀ ସେତେବେଳକୁ କିଛି ଚାଉଳ ଆଉ ପଇସା ରୋଜଗାର କରି ସାରିଲାଣି । ତା ଚାରି ପାଖରେ ଛୋଟ ଗୋଟିଏ ମେଳା ବି ଲାଗିଗଲାଣି । ପାଖ ଫ୍ଲାଟରୁ ବି କେତେ ପିଲା ପରମ ଉତ୍ସାହରେ ଜମି ସାରିଲେଣି କେତେବେଳୁ । ଉପର ଫ୍ଲାଟରୁ ଅଭିନନ୍ଦନବାବୁ ଏ ଦୃଶ୍ୟକୁ ଦେଖି ଆନନ୍ଦରେ ଉପଭୋଗ କରୁଛନ୍ତି । ଆଃ ପିଲାବେଳ ଯଦି ଫେରି ଆସନ୍ତା । ଏଇ ହାତୀ ପିଠିରେ ଚଢ଼ିଯିବାକୁ ଅଭିନନ୍ଦନବାବୁଙ୍କ ବଳବତୀ ଇଚ୍ଛା ଶିଷ୍ଟାଚାର ଓ ଲୌକିକତାର ଦ୍ୱାହିରେ ରୁଦ୍ଧ ହୋଇ ଯାଉଥିଲେ ବି କିଏ ଯେପରି ଭିତରୁ ତାଙ୍କୁ ବାରମ୍ବାର ଉତ୍ସୁକଉଥିଲା । ପାରନ୍ତେ ଯଦି ସେ ପିଲା ବୟସର ଅନୁଭୂତିକୁ ଧରି ରଖି । ପ୍ରଥମେ ସାହିତ୍ୟ ବହିରେ ଅନ୍ଧଙ୍କ ହାତୀ ଦେଖା- କାନ କୁଲାପରି, ଗୋଡଗୁଡ଼ା ଖୁମ୍ବପରି, ଲାଙ୍ଗୁଳଟା ସାପଟାଏ.... ଅନ୍ଧଙ୍କ ହାତୀ ଦେଖା । ମଫସଲ ଗ୍ରାମର ପିଲା ଅଭିନନ୍ଦନବାବୁ ଅନ୍ଧ ନୁହନ୍ତିତ ଆଉ କଣ ? ହାତୀ ଦେଖାର ସୁଯୋଗ ସହରକୁ ଆସିବା ଯାଏ ସେ ପାଇ ନ ଥିବା ସ୍ୱାଭାବିକ ।

ଅଭିନନ୍ଦନବାବୁ କୁରୁଳି ଉଠିଲେ । ପିଲାଏ ହାତୀରେ ଚଢ଼ିବ.... ହେ ମାହୁନ୍ତ ପିଲାଙ୍କୁ ଟିକିଏ ହାତୀରେ ବୁଲେଇ ନେଉନୁ । ଚାଉଳ ନେଲୁ, ପଇସା ନେଲୁ.... ଟିକେ ବୁଲେଇ ଆଣ । ହାତୀ କ୍ରମେ ମାହୁନ୍ତର ଆଦେଶ ମାନି ପଛଗୋଡ ଦୁଇଟିକୁ ଯାକି ଶୋଇ ପଡ଼ିଲା । ଫ୍ଲାଟର ଛୋଟ ପିଲା କେତେଜଣ ହାତୀ ଉପରେ ମୁହୂର୍ତ୍ତକେ ବସିଗଲେ । ତଳେ ଆଉ କେତେ ଜଣ ତାଳିମାରି ମୁନା ଟୁନାଙ୍କୁ ଡାକୁଥାନ୍ତି । ମୁନା ଟୁନା ସେତେବେଳକୁ ହାତୀ ଉପରେ ଗଡ଼ ଜିତିବାର ସଦର୍ପ ଦାମ୍ଭିକତା ନେଇ ବସି ସାରିଥାନ୍ତି । ଟୋକା ମାହୁନ୍ତ ନିଜ ଗୋଡ଼ ଗୋଇଠିରେ କେଞ୍ଚି କେଞ୍ଚି ହାତୀକୁ ଉଠିବାକୁ ନିର୍ଦ୍ଦେଶ ଦେଉଥାଏ ।



Digitized by PPRACHIN, SOA

ଅଭିନନ୍ଦନବାବୁ ଛୋଟ ପିଲାପରି କୁହାଟୁଚନ୍ତି, "ଆରେ ବୁଲୁ, ନିନୁ, ସୁନୁ, ଆରେ ଚଢ଼ିଯାଅ । ଭେଡ଼ାଏ ବୁଲି ଆସିବ" । ଅଭିନନ୍ଦବାବୁଙ୍କ ବଡ଼ ଝିଅମାନେ ବାପାଙ୍କ ଏ ବାଳସୁଲଭ ଚାପଲ୍ୟ ଦେଖି ବିରକ୍ତ ହେଉଥାନ୍ତି । "ପିଲା ହେଇ ଯାଉଚନ୍ତି-ଲାଜଲାଗୁନି-ଫ୍ଲାଟ କମ୍ପଉଚନ୍ତି, ଓହୋ- ଯେଉଁ ପିଲାତ" । ପତ୍ନୀ ମାନମୟୀ ରୋଷେଇ ଘରୁ ପାଟି କରୁଚନ୍ତି । ଅଭିନନ୍ଦନବାବୁଙ୍କର କେଉଁ ଆଡକୁ ନିଘା ନାହିଁ । ହାତୀ ପାହୁଣ୍ଡ ପକେଇ ଧୀରେ ଧୀରେ ଆଗେଇ ଚାଲିଚି । ଅଭିନନ୍ଦନବାବୁ ଚରମ ତୃପ୍ତିରେ ଚାହିଁ ମନେ ପକାଉଚନ୍ତି କପ୍ତିପଦା ରାଜାଙ୍କ ପାଖରେ ଥରେ ପିଲାବେଳେ ହାତୀରେ ବସି କିଛିବାଟ ବୁଲି ଆସିଥିଲେ । ସେଇ ହାତୀ ଚଢ଼ାର ପରମ ସୌଭାଗ୍ୟ ତଥାପି ତାଙ୍କ ମନରୁ ନିଭିଯାଇ ନଥିଲା ।

ସାନ ଝିଅ ପ୍ରବଳ ଇଚ୍ଛା ସତ୍ତ୍ୱେ ଡରି ହାତୀ ପାଖଯାଏବି ଗଲା ନାହିଁ । ମଝିଆଁ ଝିଅ ଅଭିନନ୍ଦନବାବୁଙ୍କୁ ସେତେବେଳେ କେତେଥର ଗାଳିଦେଇ ସାରିଲାଣି । "ମନେମନେ ପିଲା ହେଇ ଯାଉଚନ୍ତି, ସେ ହାତୀବାଲା ବଡ଼ ବଦମାସ । ଦେଖିବ ଦଶ ଟଙ୍କା ମାଗିବ, ହଇରାଣ କରିବ । ଭାରି ପାଟିତୁଣ୍ଡ କରିବ ।"

ଅଭିନନ୍ଦନବାବୁ ଚିଡ଼ି ଉଠିଲେ । ଆଃ ପରମ ଆନନ୍ଦଦାୟକ ଦୃଶ୍ୟଟିକୁ ବି ଉପଭୋଗ କରିବାକୁ ଏମାନେ ଦେବେ ନାହିଁ । ସବୁବେଳେ ଲାଭକ୍ଷତିର ହିସାବ । ସବୁଥିରେ ଆଶଙ୍କା ଓ ଆତ୍ମସମ୍ମାନପ୍ରତି ସତର୍କ ଦୃଷ୍ଟିପାତ । ହାତୀକୁ ଚାହିଁଲେ ଅଭିନନ୍ଦନବାବୁ । ତଥାପି ସେ ଦୃଷ୍ଟିର ଆଢୁଆଳକୁ ଯାଇ ନଥାଏ ଯଦିଓ ପଡ଼ିଶାଘର ଆମ୍ବଗଛ ଦେଇ ତାକୁ ଦେଖିବାରେ କିଛିଟା କସରତ୍ କରିବାକୁ ପଡୁଥାଏ ।

ସାନ ଝିଅ ହାତୀ ଚଢ଼ି ନ ପାରିବାର ଅବସାଦରେ ଅଭିନନ୍ଦନବାବୁଙ୍କୁ କହୁଥାଏ, "ତଳ ମହଲା ଲୋକଙ୍କୁ ପ୍ଲିଜ୍ କରିବାକୁ ତାଙ୍କ ପିଲାଙ୍କୁ ହାତୀରେ ବସେଇ ଦେଲ । ମୁଁ ଜାଣେ ଯେ" । ଅଭିନନ୍ଦନବାବୁ ମନେ ମନେ ଯେତିକି ହସିଲେ ଏ କନ୍‌ଭେଣ୍ଟ ପଢ଼ା ସାନ ଝିଅର ତୀକ୍ଷ୍ଣ ବୁଦ୍ଧି ଆଉ ଅତିଗର୍ହିତ ଆଚରଣ ପାଇଁ ବିରକ୍ତ ବି ହେଲେ । ପତ୍ନୀ ମାନମୟୀ ତଥାପି ପରିବା କାଟି ସାରି ନଥାନ୍ତି । ତା'ପରେ ସେ ହୁଏତ ଠାକୁର ପୂଜାରେ ବସିବେ । ଆଖି ବନ୍ଦ କରି ପ୍ରାର୍ଥନା କରିବେ; ପୁଣି ଶୂନ୍ୟକୁ ହାତ ଟେକି ଦୀପ ନ ଥିବା ହାତରେ ଆଳତି କରିବେ ।

ହାତୀ ସାଙ୍ଗେ ସାଙ୍ଗେ ଫେରି ଆସିଲା- ମାତ୍ର ଶହେଗଜ ବି ପିଲାଙ୍କୁ ନେଇ ନାହିଁ । ପିଲାଙ୍କ ଭିତରୁ ମୁନା ନିଜ ଚେଷ୍ଟାରେ ହାତୀରୁ ଲାଙ୍ଗୁଳଧରି ଖସି ଆସୁ ଆସୁ ବୋଧହୁଏ କଚଡ଼ାଟାଏ ଖାଇଥାଏ । ତା ସ୍ନିଗ୍ଧ ସୁନ୍ଦର ଗୋରା ତକ୍ ତକ୍ ମୁହଁରେ ଉଦାସ ବିଷଣ୍ଣତାର କଳାଦାଗ ସ୍ପଷ୍ଟ ହୋଇ ଉଠିଥାଏ । ତଥାପି ସେ ହସିବାକୁ ଚେଷ୍ଟା କରୁଥାଏ । ଉପର ଫ୍ଲାଟରୁ କନ୍‌ଭେଣ୍ଟ ପଢ଼ା ସାନ ଝିଅ ତାକୁ କେତେ ପ୍ରଶ୍ନ ପଚାରୁଥାଏ । "କିରେ ପଡ଼ିଗଲୁ କି ? ଖସି ପଡ଼ିଲୁ ? କାହିଁକି ଚଢୁଥିଲୁ ?" ଅଭିନନ୍ଦନବାବୁ ହୁଏତ ମନେମନେ ବିରକ୍ତ ହେଉଥିଲେ । ସମସ୍ତ ଘଟଣାରେ ତଥାପି ସେ ଅନ୍ତରାଳରେ, ଅଥଚ ତାଙ୍କରି ତିନିଜଣ



Digitized by PPRACHIN, SOA

ପିଲା ହାତୀ ଉପରେ ବସୁ ନାହାନ୍ତି ଯଦିଓ ସେମାନଙ୍କ ସାଙ୍ଗମାନେ ହାତୀ ଉପରେ ବସିଛନ୍ତି । ମୁନା କିନ୍ତୁ ପଡ଼ିଚି ବୋଲି କହିବାକୁ ନାରାଜ । ହାତୀ ପାଇଁ ତଳେ ପଡ଼ି ରହିଥିବା ଆଠଅଣାର ରେଙ୍ଗା ପଇସାକୁ ସେ ସେତେବେଳକୁ ଗୋଟେଇ ଧରି ସାରିଲାଣି । ସେତିକ ହାତୀ ମାହୁନ୍ତକୁ ଦେଇଦେଲେ ତା ସାନଭାଇ ଟୁନାକୁ ସେ ହୁଏତ ଓହ୍ଲାଇ ଦେବ ।

କିଛି ଗୋଟାଏ ଉତ୍କୋଚ ପାଇବା ଆଶାରେ ମାହୁନ୍ତ ଅବଶିଷ୍ଟ ପିଲାଙ୍କୁ ଓହ୍ଲେଇ ନ ଦେଇ ପୁଣି ଥରେ ନିଷ୍କ୍ରାନ୍ତ ହୋଇ ଯାଉଚି । ଅଭିନନ୍ଦନବାବୁ ବାଲ୍‌କନିରୁ ଚାହିଁ 'ଚିଅର୍ ଅପ୍' କରୁଚନ୍ତି । ହାତୀ ଉପରେ ଚଢ଼ିଥିବା ପିଲାମାନଙ୍କ ମଧ୍ୟରୁ ଦି ଜଣଙ୍କ ମୁହଁ କିନ୍ତୁ ସେତେବେଳକୁ ଶୁଖି କଳାକାଠ । ସେମାନଙ୍କ ଧାରଣା ହାତୀବାଲା ତାଙ୍କୁ ଦୂରକୁ ନେଇଯିବ । ଅଭିନନ୍ଦନବାବୁ ବାଲ୍‌କନି ଉପରୁ ଦି' ତିନିଥର ବି କହିସାରିଥାନ୍ତି, "ମାହୁନ୍ତ, ସେ ପିଲାମାନଙ୍କୁ ଦଳେଇ ଘାଇ ବୁଲେଇ ଆଣିବୁ । ଆଉ ଓହ୍ଲେଇ ଦେବୁନି । କିରେ ଟୁନା, କୁନା..... ଆଉ ନ ଓହ୍ଲାଅ ।" ହାତୀ ମାହୁନ୍ତ ହାତୀକୁ ଅଡେଇ ନିଷକ୍ରାନ୍ତ ହୋଇ ଯାଉଚି- ଏଥର ଶହେ ଗଜ ଦୂରକୁ ନୁହେଁ, ଆହୁରି ଅଧିକ ପ୍ରାୟ ୩ ଗୁଣ ଦୂର- ତିନିଶହ ଗଜ ଦୂରକୁ ।

ଅଭିନନ୍ଦନବାବୁ ବାଥ୍‌ରୁମ୍ ଭିତରେ ପଶିଗଲେ । କ୍ଲାସକୁ ଯିବା ବେଳ ହୋଇଗଲାଣି ।

ବାହାରେ ସେତେବେଳକୁ କୋଳାହଳ ଏକ ବିସମ୍ବାଦର ଆକାର ଧାରଣ କରିଥାଏ । "ବାପା ଚଞ୍ଚଳ ଆସ, ଚଞ୍ଚଳ ଆସ" ମଝିଆଁ ଝିଅ ରଡ଼ି ଛାଡ଼ିଥାଏ । କନ୍‌ଭେଣ୍ଟ ପଢ଼ା ସାନ ଝିଅ ମନ୍ତବ୍ୟ ଦେଉଥାଏ- "ସେ କଣ ଏଥିଲାଗି ଆସିବେ ? ପାଲା ଲଗେଇ ଦେଇ ବାଥରୁମ୍‌ରେ ପଶିଗଲେ ।" ମାନମୟୀ ଠାକୁର ପୂଜା ସାରି ବାଲକନିରେ ଗୁଡାଏ ପାଟି କରୁଥାନ୍ତି । ପଡୋଶିନୀମାନେ ମାହୁନ୍ତ ସାଙ୍ଗରେ ସେତେବେଳକୁ ବାକ୍‌ଯୁଦ୍ଧରେ ମାତିଯାଇଥାନ୍ତି । ଟୋକା ମାହୁନ୍ତ ଖୁବ୍ ବଡ଼ ପାଟିରେ ବକି ଚାଲିଥାଏ । ତାର କାହାକୁ ବା ଡ଼ର; ହାତରେ ତେଣ୍ଟା ଆଉ ସେ ପୁଣି ହାତୀ ପିଠିରେ । ସେ ପ୍ରାୟ ନିଃଶଙ୍କ । ଟିନୁ ଡରିହରି ହାତୀରୁ ଡ଼େଇଁ ପଡ଼ିଥାଏ ଯେ ଗୋଟା ସୁଦ୍ଧା ଗୋଡ ହାତ ଛିଡ଼ି ରକ୍ତାକ୍ତ । ଡ଼େଇଁଲାବେଳେ ହାତୀ ପିଠିରେ ଥିବା ବସ୍ତାରୁ ସବୁତକ ଚାଉଳ ବିଞ୍ଚି ପଡ଼ିଥାଏ ଇତସ୍ତତଃ । ହାତୀ ମାହୁନ୍ତ ଅନ୍ୟାନ୍ୟ ଛୋଟ ପିଲାଙ୍କୁ ତେଣ୍ଟା ଦେଖେଇ ଟଙ୍କା ମାଗୁଥାଏ । ଟଙ୍କା ନଦେଲେ ଓହ୍ଲେଇ ଦେବନି ବୋଲି ତାର କଟାଳ । ସହଜେ ତଳେ ଚାଉଳତକ ବିଞ୍ଚି ହୋଇ ପଡ଼ିଚି । ତାର କ୍ରୋଧକୁ କିଏ ସମ୍ଭାଳେ ? ଟିନୁ "ମାଆଲୋ, ବାପାଲୋ" ରଡ଼ି ଛାଡୁଥାଏ । ପଡୋଶିନୀ ମାହୁନ୍ତ ସାଙ୍ଗରେ ଅଧା ହିନ୍ଦି ଅଧା ଓଡ଼ିଆରେ ପ୍ରବଳ ଯୁକ୍ତି ତର୍କ ଆରମ୍ଭ କରିଦେଇଥାନ୍ତି । ଉପର ଫ୍ଲାଟର ପଡୋଶିନୀ ମାହୁନ୍ତକୁ ସେତେବେଳକୁ ଯଥେଷ୍ଟ ବକାବକି କରି ପ୍ରାୟ ହାଲିଆ ହୋଇ ପଡ଼ିଥାନ୍ତି ।

ବାଥ୍‌ରୁମ୍‌ରୁ ଅଭିନନ୍ଦନବାବୁ କିଛି ବୁଝୁଥାନ୍ତି- କିଛି ବୁଝିବି ପାରୁ ନଥାନ୍ତି । କିନ୍ତୁ ଏ ସବୁ କୋଳାହଳ ଭିତରେ ତାଙ୍କୁ ହସ ଲାଗୁଥାଏ । ସେ ଖୁବ୍ ଦ୍ରୁତ ବେଗରେ ବାଥ୍‌ରୁମ୍‌ରୁ



Digitized by PPRACHIN, SOA

ଆସି ବାଲ୍‌କନିରେ ଠିଆ ହୋଇଥାନ୍ତି । ଟିନୁ କାନ୍ଦୁଚି, ପାପୁ କାନ୍ଦୁଚି- କଥା କଣ ? ମିସେସ୍ ସାହୁ, ମିସେସ୍ ପଟ୍ଟନାୟକ ବୁଝେଇ ଚାଲିଛନ୍ତି ମାହୁନ୍ତକୁ ।

ଅଭିନନ୍ଦନବାବୁ ବାଲ୍‌କନିରୁ କ୍ରମେ ତଳକୁ ଗଲେ । ମାହୁନ୍ତକୁ ଟାଣି ଆଣିବାକୁ ତାଙ୍କର ଇଚ୍ଛା- କିନ୍ତୁ ଟାଉଏଲ୍‌ଟା ପିନ୍ଧି ଏତେ ଲୋକଙ୍କ ଗହଣକୁ କଣ ଯାଇ ହୁଏ ? ସେଇଠୁ ସେ ଟୋକା ମାହୁନ୍ତ ସାଙ୍ଗରେ ବହୁ ଯୁକ୍ତି ତର୍କ ଆରମ୍ଭ କରିଦେଲେ । ଯୁକ୍ତି କ୍ରମେ କ୍ରୋଧ ଓ ଧମକ ଚମକ ଯାଏ ଗଲା । ଟୋକା ମାହୁନ୍ତ ଟଙ୍କା ପାଇଁ କଳି କରୁଛି । ତା' ଚାଉଳତକ ବିଞ୍ଚି ହୋଇ ପଡ଼ିଛି ତଳେ । ଗୋଡ଼ିମିଶା ଚାଉଳକୁ ହାତୀ ପାଟି ମେଲା କରି ପୋଷକୁ ପୋଷ ଫୋପାଡ଼ି ଚାଲିଚି ଟୋକା ମାହୁନ୍ତ । ତାର ସବୁ ରାଗ ସେ ଡେଇଁପଡ଼ିଥିବା ପିଲା ଓ ତା ପରିବାର ଉପରେ । ତାର ସମସ୍ତ ଆୟ ତଳେ ବିଛାଡ଼ି ହୋଇ ପଡ଼ିଛି । ରାଗ, କ୍ରୋଧ, ଲୁହ ସବୁ ଏକାକାର । ବିଡ଼ି ବିଡ଼ି ହୋଇ ଅବୋଧ ଭାଷାରେ କଣ ବକି ଚାଲିଚି । ଗୋଖର ସାପ ପରି ଫଣା ଟେକୁଚି, ସଁ ସଁ- ଗର୍ଜନ କରୁଚି । କାହାକୁ ନା କାହାକୁ ଚୋଟ ମାରିବ । ଗର୍ଜୁଚି ତ ଗର୍ଜୁଚି- ଫ୍ଲାଟ କମ୍ପୁଚି । ପାଖ ଫ୍ଲାଟ ମାନଙ୍କରୁ ସେତେବେଳକୁ ଚାଳିଶ ପଚାଶ ଜଣ ପୁରୁଷ ସ୍ତ୍ରୀ ପିଲାଛୁଆ ଜମିଗଲେଣି । ଅଭିନନ୍ଦନବାବୁ ଆଉ ବଡ଼ ପାଟିରେ କଥା କହି ନ ପାରି କେବଳ "ପୋଲିସ୍" "ପୋଲିସ୍" ହୁରି ଛାଡ଼ୁଛନ୍ତି । ମୁହୂର୍ତ୍ତକରେ ଏତେ ବିଘ୍ନାତ ହୋଇଯିବବୋଲି ତାଙ୍କ କଳ୍ପନାରେ ବି କେବେ ଉଙ୍କିମାରି ନଥିଲା । ପିଲାଙ୍କୁ ହାତୀରେ ବସେଇବାର ଆନନ୍ଦ ମାତ୍ର ଅଧଘଣ୍ଟାଏ ଭିତରେ ଯେ ଏପରି ଏକ ଗୈରିକ ଅବସାଦର ରୂପ ନେବ-ଠିକ୍ ସକାଳର ସୁନେଲି ଖରା ପରେ ପରେ ଖୁବ୍ ଅସରାଏ ବର୍ଷା ପରି, ସେ କାହିଁକି ଭାବନ୍ତେ ? ସାନଝିଅ ଓ ମଝିଆଁ ଝିଅ ବିଡ଼ି ବିଡ଼ି ହୋଇ ବାପାଙ୍କୁ ଗାଳି ଦେଇ ଚାଲିଛନ୍ତି । ପଡ଼ୋଶିନୀ ସେତେବେଳକୁ ଉପର ଫ୍ଲାଟ ବାଲକନିକୁ ଆସି କହି ଚାଲିଛନ୍ତି- "ମୋ ପିଲାର ଗାଡ଼ିଅନ୍ ତ ସେ ନୁହଁନ୍ତି । ସେ କହିଲେ ବୋଲି ତୁ କାହିଁକି ମୋ ପିଲାଙ୍କୁ ତୋ ହାତୀ ଉପରେ ବସେଇଲୁ । ତା ଗୋଡ଼ ଭାଙ୍ଗି ଯାଇଚିକି କଣ । ହାତ ଗୋଡ଼ରୁ ଧାର ଧାର ରକ୍ତ ବହୁଚି । ତୋର ଏତେ ଦିମାକ୍- ତୁ ପୁଣି ଡେଣ୍ଟା ଦେଖାଉଚୁ । ପଇସା ନଦେଲେ ଓହ୍ଲାଇ ଦେବୁନି । କିରେ..... ତୁ କଣ ଗଞ୍ଜେଇ ଖାଇଚୁ ? କିରେ ମୁଁ କହିଥିଲି ବସାଇବାକୁ ଯେ ମୁଁ ପଇସା ଦେବି । ତୋ' ଚାଉଳ ବୁଣି ଗଲା ବୋଲି ମୁଁ କଣ କରିବି.... ତୁ କାହିଁକି ଓହ୍ଲେଇ ଦେଲୁନି ପିଲାଟିକୁ । ସେ ଡ଼େଇଁ ପଡ଼ୁ ପଡ଼ୁ ଗୋଡ଼ ଭାଙ୍ଗିଲା । ଚାଉଳ ବୁଣିଲା ।

ପଡ଼ୋଶିନୀ ଅକାଟ୍ୟ ଯୁକ୍ତିଦେଇ କଥା କହି ଚାଲିଛନ୍ତି । ମିସେସ୍ ସାହୁ ତାଙ୍କୁ ବୁଝେଇବାରେ ଲାଗିଥାନ୍ତି । ମାନମୟୀଙ୍କ ମହୁ ବାକ୍‌ସରୁ ସବୁଯାକ ମହୁମାଛି ସେତେବେଳକୁ ଉଡ଼ି ତାଙ୍କ ମୁଣ୍ଡ ହାତ ଗୋଡ଼ ଆଖି ପତାରେ ଘେରି ସାରିଲେଣି । ବିନ୍ଧି ଦେଉଛନ୍ତି । ତାଙ୍କ ଦେହ ମନ ପ୍ରାଣ ଆତ୍ମା ପୁରୁଷକୁ । ଶାନ୍ତିପ୍ରିୟ ନୀରବ ମାନମୟୀ ସବୁବେଳେ କୋଳାହଳ କାତର । ସ୍ୱାମୀ ଅଭିନନ୍ଦନବାବୁ ଟେଲିଫୋନ୍ କରି ପାଖ ଥାନାକୁ ଡାକି ଚାଲିଛନ୍ତି- "ହାଲୋ, ସବ୍‌ଇନିସ୍‌ପେକ୍ଟର ବାବୁ- ଚଞ୍ଚଳ ଆସନ୍ତୁ ।



Digitized by PPRACHIN, SOA

କ୍ୟାମ୍ପସ୍‌ରେ ହାତୀଟାଏ ଆସି ପହଞ୍ଚିଛି ଯେ ତା' ମାହୁନ୍ତ ପିଲାଙ୍କୁ ମାରଧର କଲାଣି । ହଁ- ଚଞ୍ଚଳ ଆସନ୍ତୁ- ଅବସ୍ଥା ଅସମ୍ଭାଳ- ହଁ ବିହାର ପ୍ରଦେଶରୁ ଆସିଚି..... ସେ ତେଣ୍ଟା ଦେଖେଇ ଜୁଲମ୍ କରୁଛି । ପାଞ୍ଚମିନିଟ୍ ଭିତରେ ଆସନ୍ତୁ- ହଁ ମୁଁ ଡକ୍ତର ଅଭିନନ୍ଦନ ସେନାପତି କହୁଛି । ଆମରି ଫ୍ଲାଟ୍ ଆଗରେ ଲ ଆଣ୍ଡ ଅର୍ଡର ସିଚୁଏସନ୍ ।"

ସାନଝିଅ ବିସ୍ମିତ ଉଲ୍ଲାସରେ ହାତୀବାଲାକୁ ବାଲ୍‌କନିରୁ କହିଚାଲିଚି ରହ ପୋଲିସ୍ ଆସୁଚି । ପଡ଼ୋଶିନୀ ପୋଲିସ୍ ଆସୁଥିବା ଶୁଣି ନୀରବ ହେଲେଣି । 'ମିସେସ୍ ସାହୁ କେବଳ ମାହୁନ୍ତର ଆସ୍ପର୍ଦ୍ଧା ବିଷୟରେ କହି ଚାଲିଛନ୍ତି । "ଦେଖ କେଡ଼େ ସାହସ । କ୍ୟାମ୍ପସ୍‌କୁ ଆସି ପୁଣି ତେଣ୍ଟା ଦେଖେଇ ଧମକଉଚି ।" ମାନମୟୀଙ୍କର ସବୁ ରାଗ କିନ୍ତୁ ତାଙ୍କ ବୋକା ସ୍ୱାମୀଙ୍କ ଶିଶୁସୁଲଭ ଚପଳତା ଉପରେ କେନ୍ଦ୍ରୀଭୂତ । ସହଜେ ବଡ଼କଥାକୁ ଯୋଖିଯୋଖି ଉତ୍ତର ଦେଇ ପାରୁ ନଥିବା ମାନମୟୀ କେବଳ କହି ଚାଲିଛନ୍ତି "ବୁଢ଼ା ଲୋକଟାର ଏ କି ସଉକ । ପର ପିଲାଙ୍କୁ ହାତୀ ପିଠିରେ ବସେଇ ଦେଇ ଏ କି ପାଲା ।" ସେ କିନ୍ତୁ ଟଙ୍କା ଦେଇ ତାକୁ ବିଦା କରିଦେବାକୁ ପ୍ରସ୍ତୁତ ନୁହଁନ୍ତି । ଟଙ୍କାର ପରିମାଣ ଯେପରି ଅହେତୁକ ସେପରି ଅପରିକଳ୍ପିତ । କଲୋନି ସାରା ଲୋକ ପାଞ୍ଚ ମିନିଟ୍ ଭିତରେ ଜମି ସାରିଲେଣି । ସମ୍ଭବତଃ ହାତୀମାହୁନ୍ତ ପୋଲିସ୍ ନାଁ ଶୁଣି ଆଉ ଏତେ ଲୋକଙ୍କୁ ଦେଖି ନରମି ଆସୁଚି । ତଥାପି- "ହାଁ ହାଁ ବୁଲାଓ ପୋଲିସ୍.... ପୋଲିସ୍ ମେରା ବାପ୍- କ୍ୟା କରେଗା ।"

"ଆରେ ଠେିରୋ..... ହରାମ୍‌ଜାଦା ଅବି ଦେଖେଗା କୌନ ହାଏ କିସ୍‌କା ବାପ୍ । ଅଉର କୌନ୍ ହାଏ କିସିକା ଲଡ଼୍‌କା ।" ଅଭିନନ୍ଦନବାବୁ ଟାଉଏଲ୍‌ଟା ପିନ୍ଧି ବାଲ୍‌କନିରୁ ହୁଂକାର ଛାଡୁଥା'ନ୍ତି । ମାତ୍ର ଅଧଘଣ୍ଟାଏ ପୂର୍ବର ପ୍ରାଣଭରା ସଙ୍ଗୀତ, ଆତ୍ମାର ଏକ ଅବୋଧ ଅନୁରଣନ କାହିଁକି ଯେ ଏପରି ଯୁଦ୍ଧର ବାହାସ୍ଫୋଟରେ ପରିଣତ ହୁଏ, ତାଙ୍କ ଦର୍ଶନଶାସ୍ତ୍ରର ଭାଷାରେ ମଧ୍ୟ ତା' ପାଇଁ ଉତ୍ତର ନାହିଁ । ଏଇ ଅସମ୍ଭବ ପରିସ୍ଥିତି ଭିତରେ ସେ ପ୍ରାୟ ଜଡ଼ସଡ଼ ।

ଏତେ ଲୋକଙ୍କ ତିରସ୍କାର ଓ ତାଡନାରେ ଆଉ ମାହୁନ୍ତ କେତେବେଳ ବା ବାକ୍‌ଯୁଦ୍ଧ କରିପାରନ୍ତା ? କଟାଳ କରନ୍ତା ? ତଥାପି ମାଟିରେ କିଲେ ହେବ ଚାଉଳ ବିଛେଇ ପଡ଼ିଛି । ଚିଡ଼ି ଚିଡ଼ି ହେଇ ହାତୀକୁ ଅଡେଇ ନେଉଚି ମାହୁନ୍ତ- ଏଥର ହାତୀ ପିଠିରେ ତା'ର ସଦର୍ପ ଦାମ୍ଭିକ ମାହୁନ୍ତ ସେ ନୁହେଁ- ତା' ହାତରେ ହାତୀର ବେକରୁ ଲମ୍ୱିଥିବା ଦଉଡ଼ି । ସେ ଆଗରେ ଚାଲିଚି- ହାତୀ ପଛେ ପଛେ । ରାଗରେ ସେ ବାରମ୍ବାର ତେଣ୍ଟାରେ ହାତୀର କପୋଳକୁ ଆଘାତ କରୁଚି । ତା'ର ସବୁ ରାଗ ହାତୀ ଉପରେ । କ'ଣ ହାତୀ ତା' ଶୁଣ୍ଢରେ ପିଲାଙ୍କୁ ଟେକି ଶୂନ୍ୟେ ଶୂନ୍ୟେ ଫୋପାଡ଼ି ଦେଇଥାନ୍ତା ? କ'ଣ ସେ ଚାହୁଁଚି ?

କୋଳାହଳ କମିଆସୁଚି । ପଡ଼ୋଶିନୀମାନେ ନିଜ ନିଜ ଘର ଭିତରକୁ ଗଲେଣି । ଟିନୁର କାନ୍ଦ ବି କମି ଆସିଲାଣି । ତଳ ମହଲାରୁ ତଥାପି ଚାପା ଅସନ୍ତୋଷର



Digitized by PPRACHIN, SOA

ବାତାବରଣ ଛାଡ଼ି ନାହିଁ । ପାଟିତୁଣ୍ଡ-ରାଗରୋଷ-ଧମକ ଚମକର ଶବ୍ଦ ଶୁଭୁଚି । ତା' ସହିତ ଅଭିନନ୍ଦନ ବାବୁଙ୍କ ଘରେ ପ୍ରଚଣ୍ଡ ବାଣ ବିସ୍ଫୋରଣ । ତିନିଝିଅ, ପରିଚାରିକା ଓ ପତ୍ନୀ ମାନମୟୀ ସମସ୍ତେ ଘେରିଛନ୍ତି ଅଭିନନ୍ଦନଙ୍କୁ । ସପ୍ତରଥୀ ମେଳରେ ଅଭିମନ୍ୟୁ-ତାଙ୍କର ମୁକୁଳିବାର ବାଟ ନାହିଁ । ଗୋଟିକ ପରେ ଗୋଟିଏ ଉତ୍‌କ୍ଷିପ୍ତ ଶର ଅଭିନନ୍ଦନ ବାବୁଙ୍କ ଦେହ, ମନ, ପ୍ରାଣ ଓ କ୍ରମେ ଆତ୍ମାକୁ ଆଘାତ କରୁଚି । ସବୁ ଦୋଷ ତାଙ୍କର-ଅନ୍ୟ ପିଲାଙ୍କ ଆନନ୍ଦ ପାଇଁ ସେ ଏସବୁ କାଣ୍ଡ କରି ବସିଛନ୍ତି- କିଏ ତାଙ୍କୁ କହେ ଉପରେ ପଡ଼ି ଏପରି କାମ କରିବାକୁ । ସମ୍ଭାଳି ନ ପାରିବାର ଏ ଆନନ୍ଦ ସମସ୍ତଙ୍କୁ କୂଳଉଛୁଳା ବନ୍ୟାରେ ଧୋଇ ନେଉଛି । ଅସନ୍ତୋଷର ବନ୍ୟାରେ ଉବୁଟୁବୁ ହୋଇ ସମସ୍ତେ ଅଭିନନ୍ଦନଙ୍କୁ ହିଁ ଦୋଷୀ ସାବ୍ୟସ୍ତ କରିଛନ୍ତି । ତଳେ କିଏ ଚାକର ପିଲାଟିଏ କେବଳ କହିବାର ଶୁଣାଯାଉଚି- ଏ ହାତୀମାହୁନ୍ତ ବଡ଼ ବଦ୍‌ମାସ । ତାକୁ କିଏ ଡାକିଥିଲା ଫାଟକ ଡେଇଁ ଆସିବାକୁ । ସବୁ ଠେଇଁ ସେ ଏମିତି ଦୁଷ୍ଟାମୀ କରେ- ଧମକ୍ ଚମକ୍ ଦେଇ ଟଙ୍କା ନିଏ । ପାଟିରୁ ବାହାରୁ ନ ବାହାରୁଣୁ ପିଲାଙ୍କୁ ହାତୀରେ ବସେଇ ବାପାମାଆଙ୍କ ଉପରେ ଜୁଲମ୍ କରି ପାଉଣା ନିଏ ।" ଅଭିନନ୍ଦନଙ୍କୁ ଏପରି ଏକ ଯୁଦ୍ଧାହତ ଅସହାୟ ମୁହୂର୍ତ୍ତରେ ସେ ପିଲାଟିର କଥା ମଲମ ପରି ମନେହେଲା । ସେ କାନଡ଼େରିଲେ- କ୍ରମେ ଆତ୍ମା ବି ସେଇ ଆଡକୁ ମୋହିଁଗଲା ପରି ସେ ଅନୁଭବ କଲେ । ଏସବୁ କୋଳାହଳ ଭିତରେ ସେଇ ଗୋଟିଏ ସ୍ୱରରେ ଯେପରି ପ୍ରବଳ ସହାନୁଭୂତିର ପ୍ରାଣଭରା ସଙ୍ଗୀତ ସେ ଶୁଣିବାକୁ ପାଉଛନ୍ତି ।

ମାନମୟୀ କିନ୍ତୁ ରାଗିରୁଷି ତାଙ୍କ ଅଫିସ୍‌କୁ ବାହାରିଲେଣି । ସେ ଖାଇବେନି କି ଅଜବ୍ ମଣିଷଟା ସହିତ ଏତେ ଦହଗଞ୍ଜ ହୋଇ ଆଉ ଏ ଘରେ ରହିବେନି । କେଡ଼େ ନିନ୍ଦାର କଥା । ତାଙ୍କ ଦେହ ମନକୁ ଅପମାନ ଅସହ୍ୟ ବୋଧ ହେଉଛି । ବିନା ମେଘରେ ବଜ୍ରପାତ ହୋଇଚି । ଏ ମଣିଷଟା ସବୁଦିନେ ତାଙ୍କୁ ଏହିପରି ମାନସିକ ଦୁଃଖରେ ପ୍ରପୀଡ଼ିତ କରିଆସୁଛି । ଜୀବନସାରା ସେ ଦହଗଞ୍ଜ ହେଇ ହେଇ ଚଳି ଆସିଛନ୍ତି- ଗାଁ'ରେ, ସହରରେ, ପଡ଼ୋଶୀମାନଙ୍କ ପାଖରେ, ସବୁଠାରେ ଏଇ ଲୋକଟା ପାଇଁ ତାଙ୍କ ମୁଣ୍ଡ ତଳକୁ ହୋଇଯାଉଚି ବୋଲି ତାଙ୍କର ଧାରଣା ଦୃଢ଼ତର ହୋଇଛି ।

ପିଲାମାନେ ବାପାଙ୍କୁ ନାନା ଭାବରେ ଦୋଷୀ ସାବ୍ୟସ୍ତ କରି କହି ଚାଲିଛନ୍ତି । ତୁମର କ'ଣ ଥିଲା କିଏ ହାତୀରେ ବସିଲା ନ ବସିଲା । ପର ପିଲାଙ୍କୁ ହାତୀରେ ବସେଇଦେଇ ପଶିଗଲେ ବାଥ୍‌ରୁମ୍‌କୁ । ଟଙ୍କା ଦେଇ ଦେଲନି । ଅଭିନନ୍ଦନବାବୁଙ୍କର ଉତ୍ତର ନାହିଁ । ସେ କରିଥିବା ଶିଶୁସୁଲଭ ଅପରାଧକୁ କେଉଁ ଯୁକ୍ତି ଦେଇ ଅନ୍ୟକୁ ବୁଝେଇ ପାରିବେ ? ତାଙ୍କ ସପକ୍ଷରେ କେବଳ ତାଙ୍କ ନିର୍ଦ୍ଦୋଷ ନିରୀହ ଆନନ୍ଦ ବ୍ୟତୀତ ଆଉ କେଉଁ ଯୁକ୍ତି ବା ଅଛି ? ସପ୍ତରଥୀଙ୍କ ଘେର ଭିତରୁ ମୁକୁଳି ପାରିଲେ ନିର୍ଜ୍ଜନତା ଓ ନୀରବତାରେ ସେ ହୁଏତ ବୁଝେଇ ପାରନ୍ତେ ଯେ ସେ ନିର୍ଦ୍ଦୋଷ । ମଝିଆଁ ଝିଅ ତା' ବୋଉକୁ ଅନୁକରଣ କରି କହୁଚି "ଯାଅ ଶୁଣିବ ତଳେ କିପରି କହୁଚନ୍ତି- ତୁମେ ଏଡୁଟିଏ



Digitized by PPRACHIN, SOA

ହେଲଣି ତୁମର ବୁଦ୍ଧି ନାହିଁ ।" ପତ୍ନୀ ମାନମୟୀ ଉଛୁଳି ଉଠୁଛନ୍ତି ରାଗରେ- ସତେ ଯେପରି ସେ ଫୁଲିଉଠୁଥିବା ମହାନଦୀ, ବନ୍ଧବାଡ଼ ଭାଙ୍ଗି ଭସେଇ ନେବେ । ଅତଳ ଓ ବିତଳ କିଛି ମାନିବେନି ।

ଅଭିନନ୍ଦନବାବୁ ଘେରରୁ ମୁକୁଳି ଆସି ପଢ଼ାଘର କବାଟ କିଳିଦେଲେ । ଝରକା ବାଟଦେଇ ଚାହିଁଲେ ଆକାଶକୁ । ଆକାଶ ଯେପରି ମୁହୂର୍ତ୍ତକ ଆଗରୁ ପହ୍ନେଇ ଉଠିଥିଲା- ଗୁଡାଏ ଗାଳି ପକେଇବ- ଏବେ ପୁଣି ଯେଉଁ ତୋଫାକୁ ସେଇ ତୋଫା । କିଛି ଗଛପତ୍ର ଆଉ ସନ୍ତସନ୍ତିଆ ମାଟିରେ ତା'ର ଓଦା ଦାଗ ଲାଗିରହିଚି । ଅଭିନନ୍ଦନବାବୁ ଆଖିରୁ ଲୁହ ପୋଛୁ ପୋଛୁ ସୋଫାରେ ବସି ଗୋଟେ ନୂଆ ଗଳ୍ପର ପରିକଳ୍ପନା କରୁଥିଲେ । ଗପଟି ନାମ "ହାତୀଚଢ଼ା" ।





Digitized by PPRACHIN, SOA

# ଚନ୍ଦ୍ରକେତୁ ଦାସ

ପୁଣି କଡ଼ ଲେଉଟାଇଲେ ଚନ୍ଦ୍ରକେତୁ । ଏକ ଭୟଙ୍କର ଅସ୍ୱସ୍ତିରେ ତାଙ୍କର ଶ୍ୱାସ ଯେପରି ରୁଦ୍ଧ ହୋଇ ଆସୁଥିଲା । ଛାତିରେ ଏକ ଅବ୍ୟକ୍ତ ଯନ୍ତ୍ରଣାର କ୍ଷତ ।

ନିକଟରେ ଶୋଇଚନ୍ତି ପତ୍ନୀ ବିଭାମୟୀ..... ଏକଦା ଯାହାର ସ୍ମୃତିରେ ତାଙ୍କ ଯୁବତରଳ ହୃଦୟ କେତେ ଭାବରେ ଛନ୍ଦଚପଳ ହୋଇ ଉଠୁଥିଲା..... ଆଃ, କେଡ଼େ ଆରାମରେ ସେ ନିଦ୍ରାଗତ । ସଂସାରର ସମସ୍ତ ଆଶଙ୍କା ଓ ଦୁଶ୍ଚିନ୍ତାକୁ ସେ ଯେପରି ନିକଟର ଏଇ ମଣିଷଟି ଉପରେ ଲଦି ଦେଇ ପରମ ନୈଶ୍ଚିନ୍ତ୍ୟରେ ନିଦ୍ରା ଯାଇଛନ୍ତି । ତାଙ୍କର ଦେହର ସ୍ରୋତହୀନ ଝରଣାରେ ଆଉ ଆରଣ୍ୟକ କଳରୋଳ ନାହିଁ । ଏକ ଉଦ୍‌ଗତ ବନ୍ୟତାରେ ଚନ୍ଦ୍ରକେତୁ ନିରୀକ୍ଷଣ କଲେ ତାଙ୍କ ଦେହକୁ । ସେଠି ପ୍ରଚୁର ଶୀତଳତାରେ ଦେହର ସକଳ ମାଂସପେଶୀ ଅତି ଦୟନୀୟ ଭାବେ ସଂଯତ ଓ ସଂକୁଚିତ ।

ଆଃ– ଏ ଦେହରେ ଏକଦା କେତେ ଥିଲା ଅଗ୍ନିଶିଖା, କେତେଥିଲା ଉତ୍‌କୂଳ ବନ୍ୟାର ଉଦ୍‌ବେଳ ଉଲଂଘନ !

ଚନ୍ଦ୍ରକେତୁ ପୁଣି କଡ଼ ଲେଉଟେଇଲେ । ଝରକା ଦେଇ ଆଦ୍ୟ ମାର୍ଗଶୀରର ଶୀତଳ ଜ୍ୟୋତ୍ସ୍ନା ତାଙ୍କ ପ୍ରକୋଷ୍ଠର ଗୋଟିଏ କଣରେ ଜମାଟ ବାନ୍ଧିଥିଲା । ଦୂରରେ ଶୁଭୁଥିଲା ଡାକଗାଡ଼ିର ସଘୋଷ ବିକଟ ଚିତ୍କାର । କେତେ ଜୀବନର ବିପୁଳ ଆଶା ପୁଣି ନିଷ୍ଫଳ ପ୍ରୟାସରେ ରାତ୍ରିକ୍ରମେ ଅତିକ୍ରାନ୍ତ ହେଉଥିଲା ।

ଦେହର ଏ ଉତ୍ତାପ ବଡ଼ ଅସହ୍ୟ । ଛାତିକୁ ଏକ ଦୁର୍ବିସହ ପୀଡ଼ାରେ କରୁଚି ଅସ୍ଥିର । ଦେହର ମାଂସପେଶୀ ହେଉଛି ସଂକୁଚିତ ଆଉ ପ୍ରସାରିତ । ଚନ୍ଦ୍ରକେତୁ ସ୍ମୃତି ରୋମନ୍ଥନ କଲେ । ଲୀନା, ଇଳା, ଲିଲି, ଜିଲି..... ଆଦ୍ୟ ଯୌବନରେ ସେ କେତୋଟି ସ୍ମୃତି, ସମସ୍ତେ ତାଙ୍କୁ ଅକର୍ମ ଶିଳାପରି ଉପହାସ କରି ସେଦିନ ଜଣେ ପରେ ଜଣେ ଅନ୍ତର୍ହିତ ହୋଇ ଯାଇଥିଲେ ।

"ତୁମକୁ ଦୟା କରାଯାଇପାରେ ଚନ୍ଦ୍ରକେତୁ...... କିନ୍ତୁ ଦେହର ଉତ୍ତାପ ଓ ଆଶ୍ଲେଷ– ଆଃ, କୁମାରୀ ଜୀବନର ସ୍ୱପ୍ନର ସଫଳ ନୈବେଦ୍ୟ ଦିଆଯାଇ ପାରେନା । ତୁମେ ସୃଷ୍ଟିଛଡ଼ା କବି.... କବିତାସର୍ବସ୍ୱ ତୁମର ଚିନ୍ତାଧାରା । ଏତେ ଟିକେ ହେଲେ ତୁମଠାରେ ନାହିଁ ବାସ୍ତବତାର ବ୍ୟକ୍ତିତ୍ୱ– ତୁମେ ନିହାତି କିଶୋର ଚନ୍ଦ୍ରକେତୁ । ଗୁଡ଼୍‌ବାଏ....... ପୁଣି କେବେ ଦେଖାହେବ ।

"ତୁମକୁ ନେଇ ସଂସାର କରାଯାଇପାରେନା । କିଛି ସମୟ ପାଇଁ ହୁଏତ ସ୍ୱପ୍ନର



Digitized by PPRACHIN, SOA

ସ୍ମୃତିରେ ସନ୍ତରଣ କରାଯାଇପାରେ”- ୟୁ ଆର୍ କ୍ୱାଇଟ୍ ଆଣ୍ଟି ରୋମାଣ୍ଟିକ୍ । ଅତି ଦୟନୀୟ ଭାବେ ତୁମେ ଭୀରୁ ଓ ଶୀତଳ ।

ଜିଲି, ଲିଲି, ଇଲା, ଲୀଳା.......

ସେମାନେ ସମସ୍ତେ ପ୍ରସ୍ଫୁଟିତ ରକ୍ତ ଗୋଲାପର ମହକ ଖେଳେଇ କଣ୍ଟାର ଆଘାତରେ କେବଳ ଅଜସ୍ର ଯନ୍ତ୍ରଣାର କ୍ଷତ ଛାଡ଼ିଗଲେ । ଚନ୍ଦ୍ରକେତୁ ଭାବୁଥିଲେ ସେ ଯେପରି ଅରଣ୍ୟର ଅଜଗର । କର୍ମକ୍ଷଣର ଏ ଦେହରେ ସେଦିନ ଆଦ୍ୟ ବସନ୍ତର ଦୁର୍ବାର ପୀଡ଼ା ତାଙ୍କୁ ବ୍ୟତିବ୍ୟସ୍ତ କରୁଥିଲା, କେବେ ସେଠି ହେବ ଏକ ଚପଳ କୁରଙ୍ଗୀର ଉଚ୍ଛଳ ଲାସ୍ୟଲୀଳା ?

ସେମାନେ ସମସ୍ତେ କବିତାକୁ ଭଲ ପାଉଥିଲେ ଆଉ ନେପଥ୍ୟର ଶିଳ୍ପୀ ସେ କେବଳ ନିହାଣ ମୂନରେ ରଚୁଥିଲା ଶାଣିତ ଶିଳ୍ପର ଶୋଣିତ କାରୁକଳା । ବସନ୍ତର ବିହଗୀମାନେ ତା’ କଣ୍ଠରୁ ସ୍ୱର ନେଇ ଆପଣାକୁ ପ୍ରକାଶ କରୁଥିଲେ- ସେ କିନ୍ତୁ ରହୁଥିଲା ଅଲୋଡ଼ା ଓ ଅପ୍ରକାଶ୍ୟ । ସତେ ଯେପରି ସେ ଏକ ପରିତ୍ୟକ୍ତ ଜୀର୍ଣ୍ଣ ନିର୍ମୋକ ପରି ଅକାମୀ ଓ ଅଦରକାରୀ ।

ଚନ୍ଦ୍ରକେତୁ ରାତ୍ରିର ଆକାଶକୁ ନିରୀକ୍ଷଣ କଲେ । କେତେ ତାରାର ଏଇ ଅଜସ୍ର ପଶାପାଲି; କାକଜ୍ୟୋତ୍ସ୍ନା ଓ ବିହଙ୍ଗୀର କରୁଣ କାକଳି । ଏ କଣ ଦିବାଭ୍ରମ ନା ରାତ୍ରିର ତଥାପି ଅତିଚାର; ଏଥିରୁ କ’ଣ ନିଷ୍କୃତି ନାହିଁ ?

ଏଇ, ବିଭାମୟୀ କଡ଼ ଲେଉଟେଇଲେ । ଉଠାଇବାକୁ ସେ ମନା କରିଛନ୍ତି । ପିଲାଛୁଆ ତାଙ୍କୁ ଦିନସାରା ବିଶ୍ରାମ ଦେଇ ନାହାନ୍ତି । ସେ କ୍ଳାନ୍ତ, ଆଗରୁ ତାଙ୍କର ନୋଟିସ୍- ଫ୍ରିଜ୍‌ରୁ ଜଳଖିଆ ଖାଇ ସୋରାଇରୁ ପାଣି ପିଇ ଶୋଇଯିବ । ତାଙ୍କୁ ବ୍ୟସ୍ତ କରିବନି ।

ଏଇ ଫ୍ରିଜ- ତାଙ୍କ ଶ୍ୱଶୁର ଦତ୍ତ ଆଭିଜାତ୍ୟର ଏକ ଉଦ୍ଧତ ଘୋଷଣା- ତାଙ୍କ ଚିନ୍ତା ଓ ଚେତନାକୁ ସାପପରି ବାରମ୍ବାର ଏ ଦଂଶନ କରେ । ଚନ୍ଦ୍ରକେତୁ ଜର୍ଜରିତ ହୁଅନ୍ତି ତାର ବିଷ ଜ୍ୱାଳାରେ । ସେ ତାଙ୍କ ପାଇଁ ଏକ ବିଡମ୍ବିତ ଲାଞ୍ଛନା ଛଡ଼ା ଆଉ କିଛି ନୁହେଁ ।

ଚନ୍ଦ୍ରକେତୁ ପତ୍ନୀଙ୍କ ଅଯତ୍ନ କେଶରାଶିର ଗନ୍ଧ ଆଘ୍ରାଣ କରିବାକୁ ଏକ ଲୋଭନୀୟ ଆଗ୍ରହରେ ନାସା ପ୍ରସାରଣ କଲେ । ନା, ତାଙ୍କର ସୁଖନିଦ୍ରାରେ ବ୍ୟାଘାତ ଆସିପାରେ । ସେ ବରଂ ଶୋଇଯା’ନ୍ତୁ । ଜନନୀର ପ୍ରଚଣ୍ଡ ସ୍ପର୍ଦ୍ଧାରେ ତାଙ୍କ ଦେହର ସମସ୍ତ ଅବୟବ ସନ୍ତାନର ନିବିଡ଼ ଆଶ୍ଳେଷରୁ ମୁକ୍ତି ଚାହେଁନା । ସେଠି ଆଦ୍ୟ ଯୌବନର ବିବର୍ତ୍ତିତ ଝଡ଼ର ସଂଗୀତ ଆଉ ଶୁଭୁନାହିଁ । ସେଠି ଏକ ହିମଶୀତଳ ଶିଳାର ଆତ୍ମ ନିମଜ୍ଜନ- ପ୍ରଚଣ୍ଡ ରୌଦ୍ରର ପ୍ଲାବନ ତାଙ୍କୁ ବିଗଳିତ କରି ପାରିବ ନାହିଁ ।

ଜିଲି, ଲିଲି, ଇଳା, ଲୀଳା..... ସେମାନେ ଠିକ୍ କହିଥିଲେ- “ତୁମେ ସକାଳର ଶୀତଳ କାକର ବିନ୍ଦୁ ପରି ନିଷ୍ପାପ ଓ ନିରୀହ । ତୁମେ ମଧ୍ୟାହ୍ନର ଜ୍ୱାଳା ନୁହଁ ଚନ୍ଦ୍ରକେତୁ , ତୁମେ ନୁହଁ ମଧ ବ୍ୟାଘ୍ରର ହିଂସ୍ରରଡ଼ି କିମ୍ବା ମେଘର ବଜ୍ରରଡ଼ି । ତୁମକୁ ସ୍ପର୍ଶ କଲେ ଦେହରେ ତାରୁଣ୍ୟର ତରଙ୍ଗ ଉତ୍‌କୂଳ ହୁଏ ନାହିଁ । ସେଠି ବରଂ ଆସେ ଭଙ୍ଗାର



Digitized by PPRACHIN, SOA

ବିପର୍ଯ୍ୟାସ । କିନ୍ତୁ ତୁମ କବିତା ରକ୍ତରେ ଆଉ ମନରେ ଆଣେ ସ୍ପନ୍ଦନ । ବିଚିତ୍ର ତୁମେ କବି; ଅତି ନିର୍ବୋଧଭାବେ ଦୟନୀୟ ।

"ତୁମେ ମନ୍ଦିରର ଅଜସ୍ର ସ୍ଥାପତ୍ୟପରି ମନକୁ ଛୁଅଁ, କିନ୍ତୁ ଦେହଠାରୁ ଏକ ସଂସାର ବିରାଗୀ ସନ୍ନ୍ୟାସୀର ଗୈରିକତା ନେଇ ଦୂରେଇ ଯାଅ । ତୁମେ ମନରେ ବାନ୍ଧିଦିଅ ଅଜସ୍ର ଶେଫାଳୀର ବିପୁଳ ସୌରଭ- କିନ୍ତୁ ତୁମ ଦେହ ସ୍ପର୍ଶ- ଇସ୍, କେଡ଼େ ଶୀତଳ ତୁମେ ।"

ଚନ୍ଦ୍ରକେତୁ ଅତୀତର ଏଇ ଗ୍ଲାନିକର ମୁହୂର୍ତ୍ତଗୁଡ଼ିକୁ ମନେ ପକାଉଥିଲେ । ତାଙ୍କ ଦେହ ଓ ମନରେ କେତେ ଯନ୍ତ୍ରଣାର ଦାଗ କ୍ରମଶଃ ସ୍ପଷ୍ଟ ହୋଇ ଉଠୁଥିଲା । ମନେ ପଡୁଥିଲା ଜଣେ କବିଙ୍କ ରଚିତ କେତୋଟି ପୁରୁଣା କବିତାର ପଙ୍‌କ୍ତି ।

"ତୁମ ନାମ ମୁଁ ରକ୍ତ ଗୋଲାପର ପାଖୁଡ଼ାରେ ଲେଖିଥିଲି । ସେ ପାଖୁଡ଼ା ଝଡ଼ର ଏକ ଅଶାନ୍ତ ଲଗ୍ନରେ ଝରିଗଲା । ସମୁଦ୍ରର ବାଲିରେ ତୁମରି ନାମକୁ କେତେ ଯତ୍ନରେ ଲେଖିଲି । ତରଙ୍ଗ ତାକୁ ପୋଛି ଦେଲା । କିନ୍ତୁ ଏ ମନରୁ ସେ ଦାଗ କଣ ନିଭିପାରେ ?"

ରକ୍ତଗୋଲାପ- ଆଃ କି ମଧୁର ସ୍ମୃତି । ନେପଥ୍ୟର ନିର୍ଜନତାରେ, ଅପ୍ରକାଶର ଅସ୍ମିତାରେ ତୁମେ ବୃନ୍ତରେ କେତେ ସତେଜ, କେତେ ସୁନ୍ଦର ସତେ ! ତୁମେ ସେଇଠି, ସେଇଠି ପବନରେ ଦୋହଲୁଥାଅ- ନିର୍ଜନ ସେଇପଥରେ, ଏକାନ୍ତ ଭାବେ ପଥଚାରୀର ଦୃଷ୍ଟି ଅନ୍ତରାଳରେ-ଢ଼ଳଢ଼ଳ, ଛଳଛଳ । କବି ନିକଟରୁ କେବଳ ତୁମକୁ ଦେଖିବାକୁ ଚାହେଁ- ତାହାହିଁ ତା' ପାଇଁ ଖୁବ୍ ବଡ଼ ଆଶ୍ୱସ୍ତି ।

"ନ ଦେଖିଲେ ଅତୃପ୍ତି ଆଉ ଅସ୍ୱସ୍ତି- ଏଇଆତ ? ଆଉ କିଛି କବିତା ଲେଖିଚ ଚନ୍ଦ୍ରକେତୁ ? ପତ୍ରପତ୍ରିକାରେ ଏଥର ନୂଆ କିଛି କବିତା ନାହିଁ ଯେ ? ତୁମେ କଣ ତୁମ ଜୀବନପରି କବିତାର କୋମଳ କୁହୁକରୁ ଗଦ୍ୟର ଧୂସର ମରୁପଥରେ ଆତ୍ମହତ୍ୟା କରିବ ଚନ୍ଦ୍ରକେତୁ- ଅସମୟରେ ହୋଇପଡ଼ିବ ବୃଦ୍ଧ-ଗଳିତ ନଖଦନ୍ତ ?

କବି ମାତ୍ରେଇ ବୃଦ୍ଧ, କାରଣ ସେ ଦାର୍ଶନିକ । ଆଉ ତା' କବିତା- ତାରୁଣ୍ୟର ଉଚ୍ଛଳ ଝରଣା ପରି ଡେଇଁ ଡେଇଁ କୁଦି କୁଦି ସେ କେବଳ ତଳକୁ ବୋହିଯାଏ । ତୁମେ ସେଥିରେ ତୁମ ମନର ଅଜସ୍ର ପ୍ରତିଧ୍ୱନି ଶୁଣିପାର । ତୁମ ନିଜର ପ୍ରତିଫଳନ ଦେଖିପାର । ତୁମ ଇଚ୍ଛାର ପ୍ରତିଶ୍ରୁତି ଲୋଡ଼ିପାର ।

++++ ଚନ୍ଦ୍ରକେତୁ ଚାହିଁଲେ- ବିଭାମୟୀ ଉଠିବାକୁ ଉପକ୍ରମ କରୁକରୁ ପୁଣି ଶୋଇ ପଡୁଚନ୍ତି । ଦେହର ସାମାନ୍ୟ ଆଲୁଳାୟିତ ଅଙ୍ଗବାସକୁ ଅଭ୍ୟାସ ଅନୁଯାୟୀ ପୁଣି ସଜାଡ଼ି ନେଉଛନ୍ତି । ସେ ଜନନୀ । ତାଙ୍କ ମୁଖମଣ୍ଡଳରେ ପରିତୃପ୍ତିର ନିରୀହ ନିର୍ଲିପ୍ତତା, ମାତୃତ୍ୱର ସ୍ମିତି । ଶେଷ ସନ୍ତାନର କୋମଳ ହାତ ଏକଦା ଯୌବନର ଅଗ୍ନିକୋରକକୁ ଖୋଜି ଖୋଜି ନିଜର ଅଧିକାର ସାବ୍ୟସ୍ତ କରିବାରେ ଚେଷ୍ଟାରତ । ତାଙ୍କର କଣ୍ଠରେ ଆଉ ଏକ ସନ୍ତାନର ବାହୁପାଶ ଅବଲଗ୍ନ ।

ଶୋଇଯାଅ ବିଭାମୟୀ । ଜୀବନ ତୁମପାଇଁ ଜଂଜାଳର କୋଳାହଳ । ପ୍ରେମ



Digitized by PPRACHIN, SOA

ଏକ ଜୀର୍ଣ୍ଣ ତାନ୍‌ପୁରାର କେତୋଟି ବେସୁରା ରାଗିଣୀ ମାତ୍ର । ଆଉ ଅଧିକ କୋଳାହଳରେ ସେ ରିକ୍ତଜୀର୍ଣ୍ଣତା ବିଭକ୍ତ ନ ହେବା ଭଲ ।

+++କେତେ ରାତି ଏଇପରି ବିଚିତ୍ର ବ୍ୟସ୍ତତାରେ ତୁମେ କଟାଇବ ଚନ୍ଦ୍ରକେତୁ ? ପୁଣି ପ୍ରଭାତରେ ଜୀବନ ଜଂଜାଳର ଘୋଡ଼ା ଦୌଡ଼- ବଂଚିବାର ଉଦ୍‌ଗ୍ରାସରେ ତୁମେ ନୟାନ୍ତ ହେବ । ତୁମେ ଭାବପ୍ରବଣ ହୁଅନି । ଜୀବନ କେବଳ ଭାବପ୍ରବଣତାର ଉଚ୍ଛ୍ୱାସ ନୁହେଁ । ସେଥିରେ କିଛି ଯୌକ୍ତିକତା ଥିବା ଦରକାର । ସବୁ ମିଶାଣ ଓ ଫେଡ଼ାଣ ପରେ ଯେତିକି ବଳିବ- ସେହି ଅବଶେଷକୁ ହିଁ ସମ୍ବଳ କରି ତୁମକୁ ବଂଚିବାକୁ ହେବ । ସମସ୍ତେ ଯାହା ଲୋଡନ୍ତି ତା କ'ଣ ପାଇପାରନ୍ତି ? ଆଶାର ଆକାଶ କୁସୁମ ଅପେକ୍ଷା ସକାଳର ଏଇ ନିରୀହ କୋଳାହଳ ବରଂ ଭଲ । ସେଠି ଅଜସ୍ର ତାରାର ରାତି ଅସ୍ତମିତ- ମାତ୍ର ଗୋଟିଏ ସୂର୍ଯ୍ୟର ପ୍ରଚଣ୍ଡ ଦୀପ୍ତି । ତାକୁ ମାନି ନେବାକୁ ହେବ- କାରଣ ତାହାହିଁ ବାସ୍ତବତା ।

ଏକଦା ସହାଧ୍ୟାୟିନୀ ମିସେସ୍ ବାନାର୍ଜୀ । ଜୀବନ ସେତୁର ଆରୋହଣରେ ସଂକୁଚିତ ଆକାଙ୍‌କ୍ଷା ନେଇ କେତେ ସନ୍ତୁଷ୍ଟ ସତେ ! ଆଶା ଓ କଳ୍ପନାର କୁହୁକ ପଛରେ ଧାଇଁ ସେ ପରାଜୟର ଗ୍ଲାନି ଚାହାନ୍ତିନି- ବରଂ, ତାଠାରୁ ନଥିଲାର ଆନନ୍ଦ- ଆଃ, ସୀମା ଭିତରେ କି ପ୍ରାଣ ପ୍ରାଚୁର୍ଯ୍ୟର ଆସ୍ୱାଦନ ସେ କରି ଜାଣିଛନ୍ତି । ତାଙ୍କ ଉପଦେଶ, ଜୀବନର କି ରୁକ୍ଷ ବାସ୍ତବତା ଉପରେ ଆଧାରିତ ।

++++ଚନ୍ଦ୍ରକେତୁ ରାତ୍ରିଶେଷର ଶୀତଳତାରେ ଜୋର୍ କରି ଆଖିକୁ ବୁଜି ନିଦ ଯିବାକୁ ଚେଷ୍ଟା କଲେ । କିଛି ଅଧ୍ୟୟନ, ସାହିତ୍ୟରେ ବିପୁଳ ସନ୍ଦେଶ- ନା, ଏ ସବୁ କିଛି ପଢ଼ିବାକୁ ଆଉ ବାକି ନାହିଁ । ସବୁ ବୋଧ, ସବୁ ସହଜ । କେବଳ ଅବୋଧ ଏଇ ଜୀବନର ସଂଗୀତ, ଏଇ ରକ୍ତର ତାତି, ଇଚ୍ଛାର ଆକସ୍ମିକତା । ପୁଣି ଦୃଷ୍ଟିର ଯେତେ ଦର୍ଶନଭୀରୁ ଅତିଚାର- ଯାହା ପ୍ରକାଶ କରି ହୁଏ ନାହିଁ । ଚାହିଁଲେ ଚକ୍ଷୁ ହୁଏ ଅବନତ, ତଥାପି ଚାହିଁବାରେ କି ବିଲୋପ ବ୍ୟାକୁଳତା ।

ଇଲା, ଲୀନା, ଜିଲି, ଲିଲି.........

ବେଶ୍ ବେଶ୍- କେତୋଟି ମୁହୂର୍ତ୍ତର ବିଶ୍ରାମ ସେମାନେ ତାଙ୍କ ତରୁ ଛାୟାରେ ଲୋଡ଼ିଥିଲେ । ସେ ବନସ୍ପତିରେ ପୌରୁଷର ପତ୍ରଝଡ଼ା ସେମାନଙ୍କ ପାଇଁ ଏକାନ୍ତ ଭାବରେ ଅସହ୍ୟ । ବସନ୍ତର ବିଦ୍ରୁମ ଆଉ ଶ୍ରାବଣର ଉନ୍ମାଦ – ଏସବୁ ପୂର୍ଣ୍ଣ ହେବାର ସ୍ୱପ୍ନ ସେମାନେ ଅନ୍ୟତ୍ର ଖୋଜିନେଲେ । ବିଭାମୟୀ ଠିକ୍ କୁହନ୍ତି- "ଆହା, ବିଚରା ଭୁଲ୍‌ରେ ବି ସେମାନେ ଆଉ ତୁମକୁ ମନେ ପକାଉ ନାହାନ୍ତି । ତୁମ ପରି ଜଣେ ନିରୀହ ସରକାରୀ କର୍ମଚାରୀକୁ ସେମାନେ କଣ ଆପଣାର କରିପାରିଥାନ୍ତେ ? ତୁମର ମୂଲ୍ୟମାତ୍ର ତିନିଶହ ଟଙ୍କା- ନନ୍‌ଗେଜେଟେଡ୍ ସବର୍ଡିନେଟ୍ ସର୍ଭିସ ?

କିନ୍ତୁ ଏ ରାତି କଣ ମୋତେ କେବେ ବାନ୍ଧି ରଖିଛି ମୋର ସ୍ୱଳ୍ପ ବେତନର ବିଷମ ଅର୍ଥନୀତିରେ ? ଏ ରାତ୍ରି କଣ ମୋ ମନରେ ଭରି ଦିଏନାହିଁ ଅନାଦି କାଳର ସେଇ



Digitized by PPRACHIN, SOA

ଆରଣ୍ୟକ ରିରଂସା ? ମୋର କ'ଣ ଇଚ୍ଛା ହୁଏ ନାହିଁ ସେମାନଙ୍କୁ ଖୋଜି ଜଣାଇବାକୁ ମୋ ମନର ଅବରୁଦ୍ଧ ଅନେକ ଅଶାନ୍ତ ଶୂନ୍ୟତା ?

ଚନ୍ଦ୍ରକେତୁ ଏକ ପ୍ରଚଣ୍ଡ ଅସ୍ୱସ୍ତିରେ ବିଛଣା ଆଲୁଅ ଜାଳିଲେ । ତା'ପରେ ହାତ ପାଖରେ ଯେତେ ଗ୍ଲାସ, ଆଇନା, ଔଷଧ ଶିଶି ପାଇଲେ ଏକ ହେତୁହୀନ ଅବୋଧ କ୍ରୋଧରେ ସେ ସବୁକୁ ଭାଙ୍ଗି ଚୂରମାର୍ କରିଦେଲେ । ଖୁବ୍ ଚିତ୍କାର କରି କହୁଥିଲେ- ମୁଁ ଏଇ ମୁହୂର୍ତ୍ତରେ ଏ ଘର ଛାଡ଼ି ଚାଲିଯିବାକୁ ଚାହେଁ । ତୁମେ ନିଶ୍ଚିନ୍ତରେ ଶୋଇଯାଅ ବିଭାମୟି !

ବିଭାମୟୀ ବରଡ଼ା ପତ୍ର ପରି ବିଛଣାରେ ଥରୁଥିଲେ । ନିରୀହ ଶୃଗାଳ ପରି ଭୀରୁ ଆଉ ସରଳ ଏଇ ଚନ୍ଦ୍ରକେତୁ- ସେ ଆଜି ସିଂହ ରଡ଼ି ଦେଉଛି କାହିଁକି ? କ'ଣ ତା' ଭିତରର ରହସ୍ୟ ? ତାକୁ ଲାଜ ନାହିଁ, କଣ ସେ ଚାହୁଁଚି । ଆଃ ସବୁ ସହିଯିବା ଭଲ । ସକାଳ ହେଉ ରାତ୍ରିର ହିଂସ୍ରତା ସକାଳର ସହଜ ପରିବେଶରେ ଆପେ ଆପେ ଉଭେଇଯିବ । ରାଗୁ, କେତେ ରାଗିବ ରାଗୁ; ରାଗିଲେ ଭଲ ଦିଶେ ଏଇ ନିରୀହ ଚନ୍ଦ୍ରକେତୁ ।

"ଆକାଶରେ ଚନ୍ଦ୍ରକିରଣ ବିଛେଇ ହୋଇ ପଡ଼ିଛି ଅଥଚ ତୁମେ ନିଘୋଡ଼ ନିଦରେ ନିଶ୍ଚେତନ । ଚାଲ ବାହାରେ ବସିବା, ଏ ଚନ୍ଦ୍ରିକାକୁ ଆକଣ୍ଠ ପାନ କରିବା- ବୃଦ୍ଧା ତପସ୍ୱିନୀ ପରି ଏ ରାତିର ଆମନ୍ତ୍ରଣକୁ ତୁମେ କିପରି ଫାଙ୍କି ନେଇ ପାରୁଚ" ? ପଚାରିଲେ ଚନ୍ଦ୍ରକେତୁ ।

"ଆଉରି ଦରବୁଢ଼ୀ ହୁଅ, ତୁମକୁ ଲାଜ ନାହିଁ ଦେଖୁଚି ।" ବିଭାମୟୀଙ୍କର ଏ ଅନାସକ୍ତ ଉଦାସୀନତା ଚନ୍ଦ୍ରକେତୁର ପୌରୁଷକୁ ତିଳତିଳ କରି ଦଂଶନ କରୁଥିଲା । ରାତ୍ରି ଶେଷରେ ଡାକ ଗାଡ଼ି ସମସ୍ତ ଅଶାନ୍ତ ମାନସିକ କୋଳାହଳକୁ ଭାଙ୍ଗି ନିର୍ଜନ ଧାନକ୍ଷେତର ନିରୂପିତ ସର୍ପିଳ ରାସ୍ତାରେ ଆଗେଇ ଯାଉଥିଲା ବୋଧହୁଏ । ଅଣନିଃଶ୍ୱାସ ହୋଇ ଧାଉଁଥିଲା ଚନ୍ଦ୍ରକେତୁ । ଏକ ପ୍ରଚଣ୍ଡ ପ୍ରତ୍ୟୟର ଦର୍ପରେ ସେ ଦୁନିଆର ସମସ୍ତ ବିରୋଧାଭାସକୁ ଆଜି ଭାଙ୍ଗି ମକଚି ଧ୍ୱଂସ କରିବାକୁ ଚହେଁ । ବିଭାମୟୀଙ୍କ ସନ୍ଦେହ ଓ ଅକ୍ଷୋପୋକ୍ତି ଆଉ ଲିଲି, ଲିଲି, ମାନଙ୍କର ସମସ୍ତ ଅଳୀକ ମନ୍ତବ୍ୟର ସେ ସମାପ୍ତି ଚାହେଁ । ସେମାନଙ୍କ ଧାରଣା ଚନ୍ଦ୍ରକେତୁ ଅମଣିଷ, ଫୁଲଫୁଟିବାର ଆମନ୍ତ୍ରଣ ସେ ବୁଝେ ନାହିଁ- ତା' ରକ୍ତରେ ନାହିଁ ଦ୍ୟୁତି, ସେ ନିତାନ୍ତ ବୋକା ଓ ନିର୍ବୋଧ, ଅନୁଭୂତିହୀନ, ଅପାରଗ । ସେମାନେ ହୁଏତ କାଲି ବୁଝିବେ ଚନ୍ଦ୍ରକେତୁ କେଡ଼େ ଜୀବନଲୋଭୀ । ସେ ଭୀରୁ ନୁହେଁ ସେ ଉଦ୍ଧତ ଓ ଦୁଃସାହସୀ । ସେ ଯାହାକୁ ଭଲ ପାଏ ତାକୁ ଆପଣାର ମନକଥା ଜଣାଇବାକୁ ଶାଳୀନତାର କୁଣ୍ଠା ରଖେ । ତେଣୁ ପ୍ରତାରଣାର ଲାଞ୍ଛନା ସହି ସେ ଜଣାଏ ମୁବାରକ । ସେ ସନ୍ନ୍ୟାସୀ ନୁହେଁ । ସେ ମଣିଷ- ଏକାନ୍ତ ଭାବରେ ରକ୍ତ ଓ ମାଂସର, ସ୍ନେହ ଓ ସୋହାଗର, ଲୋଡ଼ା ଓ ଅଲୋଡ଼ାର ।

++++



Digitized by PPRACHIN, SOA

ଡାକଗାଡ଼ିର ଚକତଳେ ଚନ୍ଦ୍ରକେତୁର ରକ୍ତାକ୍ତ ପିଣ୍ଡଟା ପରିଚୟହୀନ ଗ୍ଳାନିରେ ଛିନ୍ନଛତ୍ର ହୋଇ ଲୋଟୁଥିଲା । ରେଳରାସ୍ତାର ସେଇ ସର୍ପିଳ ବର୍ତ୍ମରେ ଗୋଟିଏ କାଗଜଟୁକୁରା ପଡିଥିଲା- ସେଥିରେ ଲେଖାଥିଲା- "ମୁଁ ଜୀବନଲୋଭୀ, ଜୀବନକୁ ଭଲ ପାଇ ନିଜ ଉପରେ ନେଇଛି ପ୍ରତିଶୋଧ । ଆଉ ଅଧିକ ଦିନ ବଂଚିବା ମୋ ପାଇଁ ହୋଇଥା'ନ୍ତା ଦୁର୍ବିସହ । ମୋ ସ୍ମୃତିକୁ ମୋ ଦେହ ପରି ଟୁକୁରାଟୁକୁରା କରି ଫିଙ୍ଗି ଦେଇ ପାରିଲେ ମୋ କବିତା ଆଶ୍ୱସ୍ତି ପାଇବ । ମୋ କବିତା ସେଇମାନେ ଯେଉଁମାନେ ବଂଚିଚନ୍ତି ସମସ୍ତଙ୍କ ଭିତରେ- ଆଧି ଆଉ ବ୍ୟାଧିରେ; ଜୀବନ ଆଉ ଯନ୍ତ୍ରଣାରେ ।

ପୂର୍ବଆକାଶର ଦିଗ୍‌ବଳୟ ଆସନ୍ନ ଉଦୟ ବ୍ୟଥାରେ ରକ୍ତାୟିତ । ପ୍ରାତଃ ଆକାଶରେ ଜୀବନଲୋଭୀ ବିହଙ୍ଗମମାନଙ୍କର ଅଶାନ୍ତ କୂଜନ ମଣିଷର ନିରୁଦ୍ଦେଶ୍ୟ ବ୍ୟସ୍ତତାକୁ କରୁଥିଲା ବିକଟ ଉପହାସ । ରେଳରାସ୍ତାର କଙ୍କରିଳ ଶଯ୍ୟାରେ ଚନ୍ଦ୍ରକେତୁର ଦେହ ଖଣ୍ଡ ଖଣ୍ଡ ହୋଇ ଇତସ୍ତତଃ ପଡ଼ିଥିଲା ।





Digitized by PPRACHIN, SOA

# ସ୍ମୃତିରେ ସ୍ମୃତିରେ ମୀରା

ମୀରା ଥିଲା ସୁନ୍ଦରୀ, ସୁହାଗୀ ଓ ସ୍ନେହଶୀଳା । ନିଜକୁ ବିଭିନ୍ନ ପ୍ରସାଧନରେ ସଜେଇ ସେ ପାଖ ପଡ଼ୋଶୀମାନଙ୍କ ଘରକୁ ବୁଲିଯାଉଥିଲା । ଭଲ ଶାଢ଼ୀଟିଏ ଆଲମିରାରୁ ବାହାର କରି ସେ ପିନ୍ଧୁଥିଲା- ସେମିତି କହିବାକୁ ଗଲେ କେଉଁ ଝିଅ ବା ବୋହୂ ତା' କରନ୍ତି ନାଇଁ ? କିନ୍ତୁ ମୀରାର ସ୍ୱାମୀ ଏସବୁ ବୁଲାବୁଲିକୁ ଆଦୌ ପସନ୍ଦ କରୁ ନଥିଲା । ସେ ଚାହୁଁଥିଲା ସେ ବରାବର ଘର ଭିତରେ ରହିବ ଆଉ ପୁଅର ଯତ୍ନ ନେବ । ତେବେ ପୁଅର ଯତ୍ନରେ ସେ କେବେବି ଅବହେଳା କରୁଥିବା କୌଣସି କଥା ପଡ଼ୋଶୀମାନଙ୍କ ଆଖିରେ ପଡ଼ୁ ନଥିଲା । ଏପରିକି ସ୍କୁଲ ଯାଇନଥିଲେ ବୁଲିବାକୁ ଗଲାବେଳେ ପୁଅକୁ ସାଙ୍ଗରେ ନେବାକୁ ସେ ଭୁଲୁ ନଥିଲା ।

ଯଦି ପାନରୁ ଚୁନ ଖସିଗଲା ସେଥିରେ ଅନୂପ ବାବୁଙ୍କର ଥିଲା ବିରକ୍ତି ଯାହା କ୍ରମେ କ୍ରୋଧରେ ପରିଣତ ହେଉଥିଲା । ତେଣୁ ସେ ଅତ୍ୟନ୍ତ ଅସହିଷ୍ଣୁ ହୋଇ ପଡୁଥିଲେ ଓ ଅନେକ ସମୟରେ ପତ୍ନୀ ମୀରାକୁ ମରାମରି ବି କରୁଥିଲେ । ସେତେବେଳେ ଗୋଟାଏ ଚାପାକାନ୍ଦଣାର ଉଚ୍ଛ୍ୱାସ ପବନରେ ଚାରିଆଡ଼କୁ ଖେଳି ଯାଉଥିଲା । କେହି କେହି ସଂବେଦନଶୀଳ ପଡ଼ୋଶୀ ଅନାହୂତଭାବରେ ଆସି ମୀରାକୁ ତା ସ୍ୱାମୀର ପ୍ରଚଣ୍ଡ କ୍ରୋଧରୁ ରକ୍ଷା କରୁଥିଲେ । ବେଳେବେଳେ ଚାରି ପାଞ୍ଚଜଣ ମିଳିତ ଭାବେ ଅନୂପବାବୁଙ୍କୁ ଧମକ୍ ଚମକ୍ ବି ଦେଉଥିଲେ । ଅନୂପବାବୁ ଶିଷ୍ଟାଚାର ଲଂଘନ କରି ସେମାନଙ୍କୁ ଗାଳିଗୁଲଜ କରୁଥିଲେ । ବାହାରି ଯିବାକୁ ନିର୍ଦ୍ଦେଶ ଦେଉଥିଲେ । କାରଣ ସେମାନେ ତାଙ୍କ ବ୍ୟକ୍ତିଗତ ଘଟଣାରେ ହସ୍ତକ୍ଷେପ କରୁଚନ୍ତି- ତାଙ୍କ ଘରକୁ କରିଛନ୍ତି ଟ୍ରେସପାସ୍ ।

ଏକଥା ଦିନେ ଅଧେ ଘଟୁ ନଥିଲା । ପ୍ରାୟ ନିୟମିତ ବ୍ୟବଧାନରେ ମୀରା ମାଡ଼ ଖାଉଥିଲା ଓ ସେ ଘରୁ ଉଚ୍ଚ କ୍ରନ୍ଦନ ରୋଳ ପଡ଼ୋଶୀମାନଙ୍କ ଘରକୁ ଧସି ପଡୁଥିଲା । ପଡ଼ୋଶିନୀମାନେ ନ ଥିଲେ ମୀରା କେଉଁ ଦିନୁ ଏ ଜଗତରୁ ସ୍ୱାମୀର କୋପାନଳରେ ବିଦାୟ ନିଅନ୍ତାଣି । ସେ ଭୟଙ୍କର କୋପାନଳକୁ ନିଭେଇବା ପାଇଁ ପଡ଼ୋଶିନୀମାନଙ୍କ ହାତରେ କେତେ ବା ଥିଲା ବରୁଣାସ୍ତ୍ର ? ସେମାନେ କ୍ରମେ ଏପରି ଏକ ଅସାମାଜିକ ବ୍ୟକ୍ତିକୁ ସାମ୍ନା କରିବାକୁ ଅତିଷ୍ଠ ମଣୁଥିଲେ । ଯାହା କରୁଛି କରୁ, ମାରୁ ବା ହାଣୁ- ଆଉ ସେମାନେ ଯିବେ ନାହିଁ କି ମୀରାକୁ ବିପଦରୁ ରକ୍ଷା କରିବେ ନାହିଁ । ସେମାନେ ବେଳେବେଳେ ଏପରି କିଛି ପ୍ରତିଜ୍ଞାର ଭାଷା ଶୁଣାଇ ମୀରା ଘର ଦୁଆରମୁହଁରୁ ଫେରି ଆସୁଥିଲେ । କେବେ ବେବେ ପୋଲିସ୍‌କୁ ଏପରି ନାରୀନିର୍ଯ୍ୟାତନା ବିଷୟରେ ଜଣାଇବାକୁ ସଂକଳ୍ପ ମଧ୍ୟ କରୁଥିଲେ ।



Digitized by PPRACHIN, SOA

ସେମାନଙ୍କ କଥାରେ ହେଉ ବା ସେମାନଙ୍କ ସ୍ୱାମୀମାନଙ୍କ ଉଦ୍ୟମରେ ହେଉ ସତକୁ ସତ ଥରେ ପୋଲିସ୍ ଆସି ଅନୂପ ବାବୁଙ୍କୁ ଜିପ୍‌ରେ ବସାଇ ଥାନାଯାଏ ଟାଣି ନେଇଥିଲା । କିନ୍ତୁ ବିସ୍ମୟର କଥା ଅନୂପବାବୁଙ୍କ ଆଚରଣରେ କିଛି ପରିବର୍ତ୍ତନ ଆସିନଥିଲା । ସମ୍ଭବତଃ ସେ ପୋଲିସ୍‌କୁ କିଛି ହାତଗୁଂଜା ଦେଇ ଓଲମବିଲମ୍ କଥା କହି ବୀରଦର୍ପରେ ଘରକୁ ବାହୁଡ଼ି ଆସିଥିଲେ । ମୀରା ନିଜେ ଅଭିଯୋଗ ଆଣି ନଥିବାରୁ ପୋଲିସ୍‌ର କିଛି କରିବାର ନଥିଲା । ବରଂ ଜନସାଧାରଣ ତାଙ୍କ ପାରିବାରିକ ବ୍ୟାପାରରେ ହସ୍ତକ୍ଷେପ କରୁଥିବାରୁ ପୋଲିସ୍ ତାଗିଦ୍ ... ତାସଲ୍ୟ କରିଥିଲା ।

ପଡ଼ୋଶୀମାନେ ଆଉ ବ୍ୟଗ୍ରତା ଦେଖେଇବା ପରିସ୍ଥିତିରେ ନଥିଲେ । ଯାହା ହେଉଛି ହେଉ । ଯାହା ହବାର ଥିବ ନିଶ୍ଚୟ ଘଟିବ- ଏହିପରି ଗୋଟିଏ ବିଶ୍ୱାସର ଉଦ୍ଗାଳରେ ସେମାନେ କ୍ରମେ ନୀରବତାକୁ ହିଁ ଶ୍ରେୟ ମଣିଲେ । ଅଥଚ ସେହିଦିନମାନଙ୍କରେ ମୀରାର ଉଚ୍ଚକାନ୍ଦଣାର ବୁକୁଫଟା ସ୍ୱର ବାତାବରଣକୁ ବିଷଣ୍ଣ କରି ଦେଉଥିଲା । 'ସାପ ମରିବନି କି ବାଡ଼ି ବାଜିବନି' କଥାରେ ବିଶ୍ୱାସ ରଖୁଥିବା ବୁଦ୍ଧିଜୀବୀ ଓ ବୁଦ୍ଧିବାଦୀ କେତେକ ପଡ଼ୋଶୀ ସେତେବେଳେ ନୀରବତାକୁ ଶ୍ରେୟ ମଣୁଥିଲେ । ତ୍ରିପଣ୍ଡକଳା ମଳିକଘର ମୁରବୀ ଜଣକ ମାଦକସେବନର ପ୍ରକୋପରେ ମୀରା ଦୁଆର ମୁହଁପାଖୁ ଚାଲିଆସି ଅନୂପବାବୁଙ୍କୁ ସତେ ଯେପରି ସେଇ ମୁହୂର୍ତ୍ତରେ ଘୋଷାରି ଆଣି ମୀରା ପାଦତଳେ ପକାଇ କ୍ଷମା ପ୍ରାର୍ଥନା ମଗାଇବ- ସେଇପରି କିଛି ଡ଼ିମୋନଷ୍ଟ୍ରେସନ୍ ଦେଖାଇ ଆସବ ଶକ୍ତିର ନିର୍ବହଣ ପର୍ଯ୍ୟନ୍ତ ଏକକ ପ୍ରତିବାଦ କରିଚାଲିଥିଲେ । ମୀରାର କାନ୍ଦଣାର ଉଚ୍ଛ୍ୱାସ ଅବଶ୍ୟ ସେତେବେଳେ କମିଯାଉଥିଲା- ସମ୍ଭବତଃ ସାମୟିକ ଭାବରେ । ଅନୂପବାବୁ ମୀରାକୁ ବେଳେବେଳେ କ୍ଷମା ମାଗୁଥିବାର ବ୍ୟାଜସ୍ୱର ଶୁଣି ବାଉରୀବଂଧୁ ନିଜ ଘରକୁ ଫେରିଆସି ପିଣ୍ଡାରେ ଗାମୁଛା ପକାଇ ଶୋଇ ଯାଉଥିଲେ ।

ଯେତେବେଳେ ଶିକ୍ଷିତ ଓ ବୃତ୍ତିଜୀବୀ ପଡ଼ୋଶୀମାନେ ବାରମ୍ବାର ପୁନରାବୃତ୍ତି ଲଭୁଥିବା ଏ ଦୟନୀୟ ଅବସ୍ଥାରୁ ମୀରାକୁ ରକ୍ଷା କରିପାରୁନଥିଲେ ସମ୍ଭବତଃ ନିଜନିଜର ଆତ୍ମ ମର୍ଯ୍ୟଦା ଭୟରେ, ସେତେବେଳେ ବଉରୀବନ୍ଧୁ ମୀରାକୁ ଅଭୟ ଦେଉଥିଲେ, ଅନୂପବାବୁଙ୍କୁ ଉଚ୍ଚସ୍ୱରରେ ଧମକ ଦେଉଥିଲେ । ନିଜର ଭେଣ୍ଡାପୁଅମାନଙ୍କୁ ଲଗେଇ ମାଡ଼ ଦେବାର ବି ବ୍ୟାଜଭୟ ଦେଖାଉଥିଲେ । ଅସହାୟ ମୀରା ପାଇଁ ତା କମ୍ ଆଶ୍ୱାସନାର କଥା ନଥିଲା । ଅନ୍ତତଃ ପାଞ୍ଚ ସାତ ଦିନ ପାଇଁ ଆଉ ସେ ଘରୁ କ୍ରନ୍ଦନର ରୋଳ ଶୁଭୁ ନଥିଲା । ମୀରା ସେ ଦିନମାନଙ୍କରେ ବେଶ୍ ଛଳଛଳ ଲାଗୁଥିଲା । ବାଲ୍‌ଟି ଧରି ରାସ୍ତାକଡ଼ ଟ୍ୟାପରୁ ପିଇବାପାଣି ସଂଗ୍ରହ କରି ନେଉଥିଲା । ପୁଅର ହାତଧରି ପାଖ ରାସ୍ତାକଡ଼ ଦୋକାନକୁ ପରିବାପତ୍ର ଆଣିବାପାଇଁ ଯାଉଥିଲା । ବେଳେବେଳେ ପୁଅ ସହିତ ସ୍କୁଲଘର ଯାଏ ଯାଇ ତାକୁ ଛାଡ଼ି ଆସୁଥିଲା । ମୋର ଇଚ୍ଛା ହେଉଥିଲା ମୁଁ ମୀରାକୁ କେବେ ଏକାନ୍ତରେ ଭେଟିଲେ ପଚାରନ୍ତି- ଏସବୁ ବିବାଦ ପଛରେ କି କାରଣ ରହିଛି । କିଛି ଘଟଣା ଥିଲେ ସାଧାରଣତଃ ପତିପତ୍ନୀଙ୍କ ମଧ୍ୟରେ ଘୋର କଳହର ଅବକାଶ ଥାଏ ।



Digitized by PPRACHIN, SOA

ସେମାନଙ୍କ ଘରକୁ ବେଳେବେଳେ କେହି କେହି ଝିଅ ଆସୁଥିବା ପଡ଼ୋଶୀମାନେ ଲକ୍ଷ୍ୟ କରୁଥିଲେ । ମୀରାକୁ ସମ୍ଭବତଃ ମାଡ଼ ଦେଇ ଡ଼ରାଇ ରଖିଥିବାରୁ ସେ ପ୍ରତିବାଦ କରିପାରେ ନାହିଁ । ସେ ଝିଅମାନଙ୍କ ସହିତ ଅନୂପ ବାବୁଙ୍କର କିଛି ଗୋପନୀୟ ସଂପର୍କଥିବ ବୋଲି ଆମେ ଅନୁମାନ କରୁଥିଲୁ । କିନ୍ତୁ କଥାଟା ଏତେ ବ୍ୟକ୍ତିଗତ ଥିଲା ଯେ ସେମାନଙ୍କୁ ପଚାରିବାକୁ କାହାର ସାହସ ହେଉ ନଥିଲା । କୌଣସି କୌଣସି ଝିଅ ସେମାନଙ୍କ ଘରେ ରାତ୍ରିଯାପନ କରିବା ଖୁବ୍ ରହସ୍ୟାତ୍ମକ ଥିଲା । ସେଦିନ ଖୁବ ପାଟିତୁଣ୍ଡ, ଗାଳିଗୁଲଜ ଓ ମାଡ଼ମରାମରିରେ ତାଙ୍କ ଘର ରାତ୍ରିର ନୀରବତାକୁ ଅବାଧରେ ଭାଙ୍ଗି ଦେଉଥିଲା । ତା'ପରେପରେ ମୀରାର ଅସହାୟ ଶୋକୋଚ୍ଛ୍ୱାସ ରାତ୍ରିର ସେଇ ପ୍ରହରକୁ କରୁଣତର କରିଦେଉଥିଲା । ଆମେ ପଡ଼ୋଶୀମାନେ ଥିଲୁ ଏହାର ନୀରବ ଦ୍ରଷ୍ଟା ଓ ଶ୍ରୋତା । ଅତିରିକ୍ତ ମଦ୍ୟପାନ ହେତୁ ଖାସ୍ ପଡ଼ୋଶୀ ବାଉରୀବନ୍ଧୁଙ୍କର ମଧ ସେତେବେଳେ ଉଠିବାର ସମ୍ଭାବନା ନଥିଲା, ପ୍ରତିରୋଧ କରିବା ତ ଦୂରର କଥା ।

ଏହା ମଧରେ ମୀରା ଦ୍ୱିତୀୟ ସନ୍ତାନର ଜନନୀ ହେବାକୁ ଯାଉଥିବା କଥା ଆମ କଲୋନୀରେ ପ୍ରଚାରିତ ହେଉଥିଲା । ମୀରାର ରୂପ ଓ କାନ୍ତି ନବମାତୃତ୍ୱର ତେଜରେ ଚହଟୁଥିଲା । ସେହିଁ ଥିଲା ନୂଆହେଇ ଗଢ଼ିଉଠୁଥିବା ଆମ କଲୋନୀର ସବୁଠାରୁ ଆକର୍ଷଣୀୟ ନାରୀ ଚରିତ୍ର । ଏତେ ଦୈହିକ ଯନ୍ତ୍ରଣା ଓ ମାନସିକ ପ୍ରପୀଡ଼ନ ମଧରେ ମୀରା ତଥାପି ଯେ ବଂଚି ରହିଥିଲା ଓ ପୁନଶ୍ଚ ମାଆ ହେବାକୁ ଯାଉଥିଲା ଏହା ଥିଲା ସେ କଲୋନୀର ଅନ୍ତେବାସୀମାନଙ୍କ ପାଇଁ ବେଶ୍ ବିସ୍ମୟର ସଂବାଦ । ଆଶ୍ଚର୍ଯ୍ୟ କଥା ଏତେ ଶାରୀରିକ ଯନ୍ତ୍ରଣା ସତ୍ତ୍ୱେ ନିଜ ବିଷୟରେ ସେ କାହାକୁ କିଛି କହୁ ନଥିଲା । ସତେ ଯେପରି ଦେବୀପ୍ରତିମାଟିଏ ମର୍ତ୍ତ୍ୟକୁ ଅବତରଣ କରି ଆସିଥିଲା କେଉଁ ଅଭିଶାପର ଦୁର୍ଯୋଗକୁ ଭେଟିବା ପାଇଁ । ମୀରା ସହିତ ତା ବ୍ୟକ୍ତିଗତ ଜୀବନର ଦୁଃଖ ଓ ଦୁର୍ଗତି ବିଷୟରେ କଥାବାର୍ତ୍ତା ହେବାକୁ ମୁଁ ଅନେକଥର ଭାବି ଥିଲେ ବି ମୋ ପତ୍ନୀଙ୍କ ତାଡ଼ନାରେ ସେଥିରୁ ନିବୃତ୍ତ ରହୁଥିଲି । ସେ ମଧ ନିଜେ ଏଥିରେ ହସ୍ତକ୍ଷେପ କରୁ ନଥିଲେ । ମୁଁ ଜାଣିଥିଲି ଓ କଲୋନୀବାସୀ ଆଶା କରୁଥିଲେ ଆମ ଦୁଇଜଣଙ୍କ ମଧରୁ କେହି ଜଣେ ଏଥିରେ ମୁଣ୍ଡ ପୂରେଇଲେ ସେ ପରିବାରରେ ନିଶ୍ଚୟ ଶାନ୍ତି ଓ ଶୃଙ୍ଖଳା ଫେରି ଆସିବ; ପରିସ୍ଥିତି ପୁରାପୁରି ବଦଳିଯିବ । କିନ୍ତୁ ତାହା ବୋଧହୁଏ ଆମ ପାଇଁ କେବେ ବି ସମ୍ଭବ ନ ଥିଲା । ତେଣୁ ଅନ୍ୟମାନଙ୍କ ପରି ଆମେ ମଧ ଏ ଅମାନବିକତା ଓ ଅପ୍ରେମର ଥିଲୁ ନୀରବ ଦ୍ରଷ୍ଟା । ଆମର ଶିକ୍ଷା, ଦୀକ୍ଷା ଓ ସାମାଜିକ ସ୍ଥିତି ଆମଠାରୁ ଅନେକ କିଛି ହୁଏତ ଆଶା କରୁଥିଲା । କିନ୍ତୁ ସମ୍ଭାବନାର ପ୍ରତିପକ୍ଷରେ ଆମେଥିଲୁ ଆଉ ଏକ ଦଂପତି ଯେଉଁଠି ବରାବର ଦାମ୍ପତ୍ୟ କଳହ ଲାଗି ରହିଥିଲେ ବି ସୁନ୍ଦର ଏକ ଆବରଣକୁ ଢ଼ାଲ କରି ଆମେ ଜୀବନ ବଂଚୁଥିଲୁ ।

ଦିନେ ସକାଳୁ ସକାଳୁ ମୀରା ପରିବାରରେ ଏକ ଭୟଙ୍କର ଅଘଟଣ ଘଟିଗଲା; ବରଂ ତାକୁ ଦୁର୍ଘଟଣା କୁହାଯିବ । ମୀରା ଅଧାଜଳା ଅବସ୍ଥାରେ ଡାକ୍ତରଖାନାକୁ



Digitized by PPRACHIN, SOA

ଆମ୍ବୁଲାନ୍‌ସରେ ବୁହା ହୋଇଗଲା । କିରୋସିନି ଧୂଆଁ ଓ ଗନ୍ଧରେ ତା ବେଡ୍‌ରୁମ୍ ଭରି ଉଠିଥିଲା । ଏହା ଆତ୍ମହତ୍ୟା ପାଇଁ ଉଦ୍ୟମ କିମ୍ବା ତା' ସ୍ୱାମୀର କାଣ୍ଡ କେହି ସ୍ଥିର ନିଷ୍ପତ୍ତିରେ ପହଞ୍ଚି ପାରୁ ନଥିଲେ । ପାଖ ପଡ଼ୋଶୀ ଘରର ସ୍ତ୍ରୀଲୋକ କହୁଥିଲେ ଭୋରୁ ଭୋରୁ ଘଟିଛି ଏ ବିଘ୍ନାତ । ମୀରାର ଚିତ୍କାର ଓ ପରେ ପରେ କିରୋସିନି ନିଆଁରେ ଜଳିବା- ମନେହେଉଛି ଏସବୁ ତା ସ୍ୱାମୀ ଅନୂପର ବର୍ବରତା । ସେ ମୀରାକୁ ଜୀବନରେ ମାରିଦେବାକୁ ଚେଷ୍ଟା କରୁଥିଲା ବେଳେ ସେ ଅକସ୍ମାତ କୂଅମୂଳୁ ପାଣି ବାଲିଟିଏ ନିଜ ଉପରେ ଢ଼ାଳି ଅଧାପୋଡା ଅବସ୍ଥାରେ ଆତ୍ମରକ୍ଷା କରିଛି । କିନ୍ତୁ ଦେହସାରା ପୋଡ଼ା ଘା'ର ଜ୍ୱଳନ- ଡାକ୍ତର ତା ପାଇଁ ଆଦୌ ଆଶାବାଦୀ ନୁହନ୍ତି ବୋଲି କେହି ସ୍ଥାନୀୟ ଯୁବକ ହସ୍‌ପିଟାଲରୁ ଫେରି ପ୍ରଚାର କରିଛନ୍ତି ।

ସେଇ ହସ୍‌ପିଟାଲରେ ହିଁ ସେଦିନ ମୀରା ସତକୁ ସତ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲା । ସମଗ୍ର କଲୋନୀ ହୋଇଯାଇଥିଲା ସ୍ତବ୍ଧ ଓ ସ୍ତମ୍ଭୀଭୂତ । ପୋଷ୍ଟମାଟମ୍ ପରେ ତାର ଶବ କଲୋନୀକୁ ଫେରି ଆସିବାରୁ ଶ୍ମଶାନଯାତ୍ରା ପାଇଁ ପଡ଼େଶୀମାନେ ତତ୍ପର ହୋଇ ଉଠିଥିଲେ । ଅନୂପ ସମ୍ଭବତଃ ସେତେବେଳକୁ ଥିଲେ ପୋଲିସ୍ କଷ୍ଟୋଡ଼ିରେ । ସେଇପରି ହାତକଡ଼ି ପଡ଼ିଥିବା ଅବସ୍ଥାରେ ପୋଲିସ୍ କର୍ଡ଼ନ ଭିତରେ ତାଙ୍କୁ ଶ୍ମଶାନକୁ ନିଆଯାଇଥିଲା । ଛୋଟ ପାଞ୍ଚବର୍ଷର ପୁଅଟିକୁ ସମ୍ଭବତଃ କେହି ପଡ଼ୋଶିନୀ ଏ ଦୃଶ୍ୟ ଦେଖିବାରୁ ବିରତ କରି ପରଦା ଆଢୁଆଳରେ ଲୁଚାଇ ରଖିଥିଲେ । "ରାମନାମ ସତ୍ୟ ହାଏ"ର ବାରମ୍ବାର ଧ୍ୱନି ପ୍ରତିଧ୍ୱନି ମଧ୍ୟରେ ମୀରାର ଶ୍ମଶାନଯାତ୍ରା ଥିଲା ଏକାନ୍ତ ଶୋକାବହ । ସତେ ଯେପରି ସୁନ୍ଦର ତାରାଟିଏ ତାର ଆକାଶର ସ୍ଥିତିରୁ ବିଛିନ୍ନ ହୋଇ ଯାଇଛି । ଚତୁର୍ଦ୍ଦିଗରେ ବିଛାଡ଼ି ହୋଇ ପଡ଼ିଛି ତା ସ୍ମୃତିର ଶୋକାର୍ତ୍ତ ଚିହ୍ନଟିମାନ ।

ପ୍ରାୟ ଦିନ ୩ଟାବେଳକୁ ଶବଯାତ୍ରା ଆରମ୍ଭ ହୁଏ । କୋକେଇ ପ୍ରସ୍ତୁତ ହେଲାପରେ ଚାରିଜଣ ଯୁବକ ପ୍ରସ୍ତୁତ ହୋଇଗଲେ କୋକେଇ ବୋହିନେବା ପାଇଁ । ମୀରାକୁ ନୂଆଶାଢ଼ୀ ସିନ୍ଦୂର ପିନ୍ଧାଇ ଦିଆଗଲା । ଦେହସାରା ପୋଡ଼ାଘା'ର ଫୋଟକା ମୀରାର ସୁନ୍ଦର ତ୍ୱଚାକୁ ବିକୃତ କରି ଦେଇଥିଲା । ତାକୁ କୋକେଇରେ ଶୋଇଦେଲାପରେ ଏକ ଅଭାବିତ ପରିସ୍ଥିତି ସୃଷ୍ଟି ହୋଇଯାଇଥିଲା । କଲୋନୀର ନାରୀମାନେ ଉଚ୍ଚସ୍ୱରେ କାନ୍ଦିବାକୁ ଆରମ୍ଭ କରିଦେଇଥିଲେ । ସତେ ଯେପରି ସମସ୍ତଙ୍କୁ ଏକ ହାହାକାର ଗ୍ରାସ କରି ବସିଛି । ପୋଲିସ୍ ଅନୂପ ଅଣ୍ଟାରେ ବାନ୍ଧିଥିବା ଦଉଡ଼ିକୁ ଧରି ଠିଆହୋଇଥିଲେ; ତା'ହାତରେ ଥିଲା ହାତକଡ଼ି ।

ଶ୍ମଶାନର ଅବସ୍ଥିତି ଥିଲା ଏକ କିଲୋମିଟର ଦୂରରେ । ସେ ପର୍ଯ୍ୟନ୍ତ କୋକେଇକୁ ଧରି ଯୁବକ ଚାରିଜଣ ନିର୍ବିକାର ଚିତ୍ତରେ "ରାମ ନାମ ସତ୍ୟ ହାଏ"ର ଧ୍ୱନି ଦେଇ ଚାଲିଥାନ୍ତି । କଲୋନୀର ପ୍ରାୟ ଅର୍ଦ୍ଧଶତ ଅଧିବାସୀ କୋକେଇର ପଛେ ପଛେ ଅନୁସରଣ କରୁଥିଲେ ବି ବାଉରୀବନ୍ଧୁ କେବଳ ଉତ୍ତେଜିତ ସ୍ୱରରେ କଲୋନୀ ଫଟାଉଥାନ୍ତି । ପ୍ରଚୁର ମଦପିଇ ଦେଇ ଅନୂପକୁ "ମାରିଦେବେ, ହାଣିଦେବେ" ବୋଲି ଆଗକୁ ଚାଲି ଓ ପଛକୁ



Digitized by PPRACHIN, SOA

ଦୌଡ଼ି ବାରମ୍ବାର ଘୋଷଣା କରୁଥା'ନ୍ତି । ମୁଁ ନୀରବଦ୍ରଷ୍ଟା ଭାବେ କୋକେଇର ଅନୁସରଣ କରୁଥାଏ । ସେଦିନ ଆଉ ଅଫିସକୁ ଯିବାକୁ ମୋର ମାନସିକତା ନଥାଏ । ମୋତେ ଯେପରି ମୀରାର ପ୍ରାତ୍ୟହିକତା ଗ୍ରସ୍ତ କରି ରଖିଥାଏ । ମନେପଡୁଥାଏ ତାର ଛଳଛଳ କଥା, ସୁନ୍ଦର ଚାହାଣୀ ଆଉ ବୁକୁଫଟା ରୋଦନ । ନାରୀକୁ ନିରାପତ୍ତା ଦେବାକୁ ଦେଶରେ ଏତେ ଆଇନ୍ ପ୍ରଣୟନ ହୋଇଥିବା ସତ୍ତ୍ୱେ ମୀରା ଯେ ପୋଲିସ୍‌ର ଆଶ୍ରୟ ନେଇନାହିଁ-ତାଥିଲା ମୋ ପାଇଁ ପରମ ବିସ୍ମୟ । ଶ୍ମଶାନରେ ଜୁଇ ପ୍ରସ୍ତୁତ ହୋଇଗଲା ପରେ କେହି ଜଣେ ବୟସ୍କ ବ୍ୟକ୍ତି କହିଲେ- ମୀରା ଥିଲା ଅନ୍ତଃସତ୍ତ୍ୱା । ତେଣୁ ପରଂପରା ଅନୁସାରେ ଗଛକାଟୁଥିବା ଧୋବା ତା' କୁରାଢ଼ୀରେ ମୀରାପେଟକୁ ଚିରିଦେଲା ପରେ ତାକୁ ଜୁଇ ଉପରକୁ ନିଆହେବ । ମୀରାର କେହି ଆତ୍ମୀୟ ଆସି ନଥିବାରୁ ସମସ୍ତେ ତାର ଆତ୍ମୀୟ ପରି ଥା'ନ୍ତି କର୍ମରତ । ଅଦୂରରେ ପୋଲିସ ହାତକଡ଼ା ମଧ୍ୟରେ ଦୁଇହାତକୁ ଯୋଡ଼ି ଠିଆ ହୋଇଥାଏ ହୃଦୟହୀନ ନୃଶଂସ ତାର ତଥାକଥିତ ସ୍ୱାମୀ- ଅନୂପ ଛୋଟରାୟ । ମୀରାକୁ ନେଇ କେବେ କେଉଁ ଅଶୁଭ ମୁହୂର୍ତ୍ତରେ ସେ ଗାଁରୁ ପଳାୟନ କରିଥିଲା କେଜାଣି କେହି ଗ୍ରାମବାସୀ ମଧ୍ୟ ତା'ପାଖରେ ଏ ମହା ବିପତ୍ତି ବେଳେ ଠିଆ ହେବାକୁ ଆସି ନଥା'ନ୍ତି । ପରିବାର ଓ ଗ୍ରାମ ସହିତ ସଂପର୍କ ଛିନ୍ନ କରି ଦେଇଥିବା ଏଇ ଅପରିଣାମଦର୍ଶୀ ଯୁବକଟି ପାଇଁ ପୃଥିବୀର କାହାରି ମନରେ ନଥିଲା ଶ୍ରଦ୍ଧା ବା ସହାନୁଭୂତି । ବୋଧହୁଏ ମୁଖାଗ୍ନି ଦେବା ତା'ର ବିଧେୟ ବୋଲି ପୋଲିସ୍ ଦଉଡ଼ି ଧରି ପୋଷା ଗାଈଟିଏ ପରି ତାକୁ ବ୍ୟବହାର କରୁଥା'ନ୍ତି । ମନହେଲେ ଦଉଡ଼ିକୁ ଟାଣି ଦେଉଥାନ୍ତି, କେବେବା ଦଉଡ଼ିର ଅପର ଶୀର୍ଷରେ ତାକୁ ନିର୍ମମ ଭାବେ ପାହାରେ ଦି'ପାହାରେ ପକାଉଥାନ୍ତି । ତାର ଅନୁଗତ ଗୁଣ୍ଡା ଧରଣର ଯୁବକଟିଏ ଏ ଦୁର୍ଦ୍ଦିନରେ ତାକୁ ସାହାରା ଦେବା ପରିବର୍ତ୍ତେ ପୋଲିସ୍ ଭୟରେ ଆତ୍ମଗୋପନ କରିଥାଏ । ତାର କିଛି ବଟଲ ଫ୍ରେଣ୍ଡ ଅବଶ୍ୟ ତା'ଠାରୁ କିଂଚିତ ଦୂରରେ ଠିଆ ହୋଇ ତାକୁ ହାତ ଦେଖେଇ ଆଶ୍ୱାସନା ଦେଉଥା'ନ୍ତି । କିନ୍ତୁ ପୋଲିସ୍ ଆଗକୁ ଆସିବାକୁ ସେମାନଙ୍କର ମଧ୍ୟ ନୈତିକ ସାହସ ନଥାଏ ।

ଗଛର କଞ୍ଚାଡାଳଟିଏ ସେତେବେଳକୁ ମୀରାର ଦାହ କାର୍ଯ୍ୟପାଇଁ କଟା ସରିଥାଏ । ଦୁଇଜଣ ଧୋବା ଗ୍ରାମ ଶ୍ମଶାନର ଗଛରୁ କଟା ହୋଇଥିବା ଡାଳକୁ ଜାଳରେ ପରିଣତ କରିବାରେ ବ୍ୟସ୍ତଥା'ନ୍ତି । ଏଇ ସମୟରେ କଲୋନୀର କେହି ମୁଖିଆଲୋକ ଧୋବାକୁ ମୀରାର ପେଟ ଚିରିବାକୁ ଡକାଇ ପଠାଇଲେ । ଧୋବା ମଧ୍ୟ ସହସା କୁରାଢ଼ୀ ଧରି ଉପସ୍ଥିତ ହୋଇଗଲା । କଟୁରୀ ବା ଛୁରୀ ନୁହେଁ ଧୋବା ବ୍ୟବହାର କରୁଥିବା କାଠକଟା କୁରାଢ଼ୀରେ ହିଁ ପେଟ ଚିରାହେବା ଥିଲା ପ୍ରଚଳିତ ସାମାଜିକ ବିଧି ଓ ବ୍ୟବସ୍ଥା ।

ମୀରାର ପେଟରୁ ନୂତନ ଶାଢ଼ୀକୁ ଆଡ଼େଇ ଦିଆଗଲା । ଧୋବା ତା' ଧାରୁଆ କୁରାଢ଼ୀରେ ପେଟର ନାହି ଉପର ଓ ତଳଭାଗରେ ଚାରି ପାଞ୍ଚ ଇଞ୍ଚ ଲମ୍ବାର ଗାରଟିଏ ଟାଣିବା ପରି କୁରାଢ଼ୀରେ କାଟି ଦେବାରୁ ମୀରାପେଟରୁ ନବକିଶଳୟ ପ୍ରଭା ତାମ୍ରାଭ ଅପରିପୁକ୍ତ ଶୁଶୁଟିଏ ନାହି ନାଡ ସହିତ ବସୁଧା ଉପରେ ପଡ଼ିଗଲା । ସେତେବେଳକୁ ତା'



Digitized by PPRACHIN, SOA

ଦେହରେ ଜୀବନ ନଥିଲା । ବିଧି ଅନୁସାରେ ମାଆ ସହିତ ଶିଶୁକୁ ଜୁଇରେ ଶୁଆଇ ଦିଆଗଲା ଓ ତା' ଉପରେ କେତୋଟି କଂଚାକାଠର ଓଜନିଆ ଚାପ ରଖାଗଲା । ମୀରା ମୁହଁସାରା ଗୋଳାସିନ୍ଦୂରର ଆସ୍ତରଣ ଓ ବଟାହଳଦୀର ପ୍ରଲେପ- ମନେହେଉଥିଲା ସତେ ଯେପରି ସେ ଏକ ଅଭିଶପ୍ତା କିନ୍ନରୀ- ଯିଏ ସ୍ୱର୍ଗରୁ ମର୍ତ୍ତ୍ୟକୁ ଗଳିପଡ଼ିଛି- ତାର କୌଣସି ଅପରାଧର ପ୍ରାୟଶ୍ଚିତ ପାଇଁ ।

ସେତେବେଳେ ତୁହାଇ ତୁହାଇ ଦୁଇଟି କୁକୁର ଲମ୍ବିଲା ସ୍ୱରରେ କରୁଣ ମୂର୍ଚ୍ଛନା ତୋଳୁଥିଲେ । ଜୁଇ ଚାରିକଡ଼େ ଠିଆ ହୋଇଥିବା କିଶୋର, ଯୁବକ, ପ୍ରୌଢ଼ ଓ ବୃଦ୍ଧଙ୍କ ଆଖିରେ ଭରି ରହିଥିଲା ଅଶ୍ରୁଧାର । ସମସ୍ତେ ଯେପରି ଅଶ୍ରୁବିନିମୟରେ ମୀରାର ଆତ୍ମାର ସଦ୍‌ଗତି କାମନା କରି ପରଂବ୍ରହ୍ମ ସ୍ରଷ୍ଟାପୁରୁଷଙ୍କ ପାଖରେ ଅଶ୍ରୁନିବେଦନ ବାଢୁଥିଲେ । ମୁଁ ନିଷ୍ପଲକ ନୟନରେ ସେଇ ତାମ୍ରାଭ ଶିଶୁଟିକୁ ଚାହିଁ ରହିଥିଲି- ବିନା ଅପରାଧରେ ଯିଏ ଆଜି ଜନ୍ମ ପୂର୍ବରୁ ପୃଥିବୀରୁ ବିଦାୟ ନେଇ ସାରିଛି । ହୁଏତ ତା'ଠାରେ ମୀରାର ଥିଲା କେତେ ଆଶା ଓ ସ୍ୱପ୍ନର ସମର୍ପଣ । ଅଥଚ ତା' ନିଷ୍ଠୁର ସ୍ୱାମୀର ଅନାଚାରରେ ସେ ସବୁ ହରେଇ ଆଜି ନିସ୍ପନ୍ଦ ଓ ନିର୍ବାକ; ତାର ଗୌର ତନୁ ନିଆଁର ଅପେକ୍ଷାରେ କଂଚା କାଠର ଶଯ୍ୟାରେ ଅପେକ୍ଷମାଣ ।

ଦୁଇଜଣ ପୋଲିସ୍ ଅନୂପ ହାତକୁ ହାତକଡ଼ା ଫିଟେଇ ଦେଲେବି ଶକ୍ତଭାବେ ଅଣ୍ଟାରୁ ବନ୍ଧା ହୋଇ ରହିଥିବା ଦଉଡ଼ିକୁ ଧରି ତାକୁ ଜୁଇ ପାଖକୁ ଟାଣି ଟାଣି ନେଉଥିଲେ । ତା ହାତରେ ଧରେଇ ଦିଆଯାଇଥିଲା ନିଆଁର ବରିଆ । କେହି ଜଣେ ମୀରା ମୁହଁ ଉପରେ କାଠରେ କିଛି ଘିଅ ଢ଼ାଳିଦେଲେ ଓ ସଙ୍ଗେ ସଙ୍ଗେ ଅନୂପକୁ ମୁଖାଗ୍ନି ଦେବାକୁ ପୁରୋହିତ ନିର୍ଦ୍ଦେଶ ଦେଲେ । ଶୁଖିଲା ବତା ଓ ଛଣର ଧାସରେ ସଦ୍ୟକଟା ଗଛଡ଼ାଳର କାଠରେ ନିଆଁ ଧରିବା ମାତ୍ରେ ଜୁଇ ଜଳିଉଠିଲା । ମୁଁ ଜୁଇଠାରୁ ମାତ୍ର କେତେ ହାତ ଦୂରରେ ଠିଆ ହୋଇ ଦେଖୁଥିଲି କିପରି ଆମ କଲୋନୀର ସୁନ୍ଦରୀ ନାରୀଟି ନିଆଁର ଗ୍ରାସରେ ତାର ତ୍ୱଚା ଓ ମେଦ ସହ କ୍ରମେ ଜଳିଜଳି ନିଃଶେଷ ହୋଇ ଯାଉଥିଲା । ମନେ ମନେ କହୁଥିଲି- "ଅଭିଶପ୍ତ କିନ୍ନରୀ ତୁମର ସ୍ଥାନ ଏ ଅପବିତ୍ର ମର୍ତ୍ତ୍ୟରେ ନୁହେଁ । ତୁମେ ସ୍ୱର୍ଗର କନ୍ୟା- ସ୍ୱର୍ଗକୁହିଁ ଫେରିଯାଅ । ଗୁଡ଼ବାଏ ମୀରା । ଗୁଡବାଏ ଫର ଏଭର" ।





Digitized by PPRACHIN, SOA

# କୁଆବସାରେ କୋଇଲି

ପ୍ରତିବର୍ଷ ଖରାଦିନେ ମୋ ପଡ଼ୋଶୀଙ୍କ ବାଡ଼ିରେ ଥିବା ଛୋଟ ଶିମିଳିଗଛଟିରେ କୁଆ ଦୁଇଟି ବସା ବାନ୍ଧନ୍ତି । କେତେ ଖଂଢରେ ଥଣ୍ଟରେ କାଠିଟିମାନ ବୋହି ଆଣନ୍ତି । ଗଛ ଯେଉଁଟି ଗଣ୍ଡିରୁ କେନାମେଲି ଥାଏ ଠିକ୍ ସେଇ ସ୍ଥାନରେ ସେମାନେ କୁଟାକାଠିର ବସାଟିଏ ତିଆରି କରି ଦିଅନ୍ତି । ବର୍ଷେ ବର୍ଷେ ଗଛର ଅଗଡ଼ାଳର କେନାରେ ବି ବସା ବାନ୍ଧନ୍ତି- ବେଶ୍ ଉଚ୍ଚରେ । ସେମାନେ କୁଆଡ଼େ ଯଥେଷ୍ଟ ଆଗରୁ ବର୍ଷା ଓ ପବନର ଗତିବିଧି ଜାଣି ପାରନ୍ତି । ତଦନୁସାରେ କେଉଁ ବର୍ଷ ଗଛର ନିମ୍ନଭାଗରେ ତ କେଉଁବର୍ଷ ଉଚ୍ଚ ଶାଖାରେ ଏହିପରି ବସାଟି ମାନ ଗଢ଼ିଉଠେ ।

ମୁଁ ବରାବର ଲକ୍ଷ୍ୟ କରେ କୁଆଦୁଇଟି ଉଡ଼ି ଯାଆନ୍ତି ଓ ଉଡ଼ି ଆସନ୍ତି-ଥଣ୍ଟରେ କାଠିଟିଏଟିଏ ଧରି । କିଛି ଦିନ ପରେ ମାଈ କୁଆଟି ସେଠି କେତୋଟି ଅଣ୍ଡାଦେଇ ବସିରହେ । ଅଣ୍ଡିରା କୁଆଟି ପାଖଡାକରେ ତାକୁ ଚାହିଁ ଥଣ୍ଟ ମେଲି ବସିଥାଏ ।

ପାଖ ପଣସଗଛକୁ ବର୍ଷର ଠିକ୍ ଏହିପରି ସମୟରେ କୋଇଲିଟିଏ ଆସି କୁହୁଧ୍ୱନି କରେ । ଅନତି ଦୂରର ଆମ୍ବଗଛରେ ସେତେବେଳକୁ ବଉଳ ଶୁଖିଯାଇ ଆମ୍ବକସି ଧରିଥାଏ । ଆମ୍ବ ବଉଳ ଥିଲା ବେଳେ ମୁଁ ବରାବର ଲକ୍ଷ୍ୟ କରେ କୋଇଲି ଦୁଇଟି ଉଡ଼ିଆସି ସେ ଗଛରେ ବସନ୍ତି । ଖୁମ୍ପାଖୁମ୍ପି ହୁଅନ୍ତି । ଆମ ସଭ୍ୟମଣିଷଙ୍କ ଭାଷାରେ ସେମାନଙ୍କ ସ୍ନେହ ସମ୍ଭାଷଣ ଓ ଘେନାଘେନିର ଏ ପୂର୍ବରାଗ ।

ତା'ପରେ ପଣସ ଗଛକୁ ଆସେ ମାଈ କୋଇଲି । ବହୁଦୂରରେ ଗହଳିଆ ଆମ୍ବଗଛରୁ ଯେଉଁ କୋଇଲିଟି ରହିରହି କୁହୁଧ୍ୱନି ଶୁଣାଉଥାଏ- କାହାପାଇଁ ତାର ଆକୁଳ ଆହ୍ୱାନ କିମ୍ବା ଅନୁରାଗର ଏ ପ୍ରତୀକ୍ଷା-ସେଇଟି ନିଶ୍ଚୟ ଅଣ୍ଡିରା କୋଇଲି ହୋଇଥିବ ।

ପଣସ ଗଛର ଡାଳରୁ ଅତି ସନ୍ତର୍ପଣରେ ମାଇକୋଇଲିଟି ଶିମିଳିଗଛ ଆଡକୁ ଚାହେଁ । ଅଳ୍ପ ବ୍ୟବଧାନରେ ବସିଥିବା ଦୁଇଟି କୁଆଙ୍କୁ ସେ ସ୍ପଷ୍ଟ ଦେଖିପାରେ । ଚେହେରାରେ ସେମାନେ ତାଠାରୁ ସୁନ୍ଦର ନିଶ୍ଚୟ-ବେକ ଟିକେ ଦୀର୍ଘ ଓ ଚିକ୍କଣ- ଆଖି ତାପରି ଲାଲ ନୁହେଁ, କିନ୍ତୁ ସ୍ୱର ଭାରୀ କର୍କଶ । ମାଈ କୋଇଲିଟି ସକାଳୁ ସକାଳୁ ଏ ପଣସ ଡାଳରେ ବସି ବସି ଏ ସ୍ୱର ଶୁଣିବାରେ ପ୍ରାୟ ଅଭ୍ୟସ୍ତ ହୋଇଯାଇଥାଏ ।

ସେତେବେଳକୁ ମାଈକୁଆଟି ୨ଟି ଡିମ୍ବ ଦେଇ ତାକୁ ଉଷୁମେଇବାରେ ଲାଗିଯାଇଥାଏ । ଅଣ୍ଡିରା କୁଆଟି ସକାଳୁ ସକାଳୁ ଗୁଡାଏ ରାବି ରାବି ଯାଇଥାଏ ଖାଦ୍ୟ ସନ୍ଧାନରେ । ମାଈ କୁଆଟି ବସି ବସି ଧୈର୍ଯ୍ୟର ପରୀକ୍ଷା ଦିଏ । ମୁଁ ଛାତ ଉପରୁ



Digitized by PPRACHIN, SOA

ବେଳେବେଳେ ସ୍ପଷ୍ଟ ଦେଖିପାରେ ଯେ ଦୁଇଟି ଧଳାଡ଼ିମ୍ବ ଉପରେ ସେ ବସି ରହିଚି । ଅନାଗତ ସନ୍ତାନର ଆଗମନ ପାଇଁ ତା' ପେଟର ଉଷ୍ଣତା ଦେଇ ଥଣ୍ଟ ମେଲେଇ ସେ ଅପେକ୍ଷାରେ ରହେ । କିନ୍ତୁ କୋଇଲିଟି ବିନା ପ୍ରତିବାଦରେ ନୀରବରେ ତା' ଆଡକୁ ଗଛପତ୍ରର ଅନ୍ତରାଳରୁ ଏପରି ଚାହିଁଥାଏ କାହିଁକି ? ତା'ପରେ ମାଆ କୁଆଟି ଖାଦ୍ୟ ଅନ୍ୱେଷଣରେ କିଛି ସମୟ ପାଇଁ ଉଡ଼ିଯାଏ ଅନତି ଦୂରକୁ । ଠିକ୍ ଏଇ ସୁଯୋଗରେ ପଣସଗଛ ଡାଳରୁ ଶିମିଳିଗଛର ସେଇ କୁଟାକାଠିର ବସା ଉପରକୁ ଉଡ଼ିଆସେ ମାଈ କୋଇଲି । ଅଳ୍ପ ସମୟ ଭିତରେ ଅନୁରୂପ ଡିମ୍ବଟିଏ ଛାଡ଼ିଦେଇଯାଏ କୁଆବସାରେ । କାରଣ ଠିକ୍ ଏଇ ସମୟରେ ମୁଁ ଛାତ ଉପରକୁ ଯାଇ ସ୍ପଷ୍ଟ ଭାବରେ ଦେଖିପାରେ ଡ଼ିମ୍ବ ସଂଖ୍ୟାରେ ବୃଦ୍ଧି ଘଟିଛି । ଦୁଇ ସ୍ଥାନରେ ତିନୋଟି ଡ଼ିମ୍ବ ଦେଖି ମୋର ଆଉ ସନ୍ଦେହ ରହେ ନାହିଁ ଯେ ତୃତୀୟ ଡ଼ିମ୍ବଟି ନିଶ୍ଚୟ କଳାପ୍ରିୟ କୋଇଲିର । ଗୀତ ବୋଲିବା ତାର କାମ- ଡ଼ିମ୍ବ ଉଷୁମାଇ ଛୁଆ ଫୁଟେଇବା ନୁହେଁ । ସୂକ୍ଷ୍ମଦର୍ଶୀ କଳାପ୍ରିୟ କୋଇଲି ଯୁଗେ ଯୁଗେ ଏ ଦାୟିତ୍ୱ କୁଆ ଉପରେ ହିଁ ନ୍ୟସ୍ତ କରି ଆସିଛି । ଏଠି ତେଣୁ ସେଇ ସହଜ ସତ୍ୟ ଓ ଦୃଶ୍ୟର ପୁନରାବୃତ୍ତି ଘଟେ ।

ତଥାପି କୋଇଲିଟି ପଣସ ଗଛ ଡ଼ାଳରେ ବସି ରହେ ନୀରବ ନିଷ୍ପନ୍ଦ ଭାବରେ । କୁଆଟି ସେତେବେଳକୁ ଶିମିଳିଗଛର ବସା ଉପରକୁ ଉଡି ଆସିଥାଏ ଆଉ ଖୁବ୍ ନିକଟରେ ଆଉ ଗୋଟିଏ କୁଆ ବସିରହି ତା ବେକରେ ଓ ଥଣ୍ଟରେ ଥଣ୍ଟ ଘସିବାକୁ ଆରମ୍ଭ କରି ଦେଇଥାଏ । ଦୁଇଟି ଡିମ୍ବ ସଂଖ୍ୟାରେ ହଠାତ୍ ଉନ୍ନତି ଘଟି ତାହା ତିନୋଟି ହୋଇଥିଲେ ବି କୁଆ ଦୁଇଟି ଜାଣି ପାରନ୍ତି ନାହିଁ । ବୋଧହୁଏ ସେମାନେ ଅବବୋଧ ଭିତରେ ଗଣିତ ଶାସ୍ତ୍ରର କୌଣସି ପ୍ରଭାବ ନଥାଏ ।

ଠିକ୍ ଏଇପରି ଏକ ମଉକାରେ ମାଈ କୋଇଲିଟି ତା'ପରଦିନ ଦ୍ୱିତୀୟ ଡ଼ିମ୍ବଟି କୁଆବସାରେ ପାରିଦେଇ ପଣସ ଗଛରୁ ଉଭାନ୍ ହୋଇଯାଏ । ଛାତ ଉପରକୁ ଯାଇ ନିର୍ଭୁଲ ଭାବରେ ମୁଁ ଦେଖିପାରେ ଗତକାଲିର ସଂଖ୍ୟାଠାରୁ ଆଜିର ସଂଖ୍ୟାରେ ସ୍ପଷ୍ଟ ଉନ୍ନତି ଘଟିଛି ଓ ଡିମ୍ବ ସଂଖ୍ୟାରେ ଆଉ ଏକ ଯୋଗ ହୋଇଛି ।

କିଛିଦିନପରେ ସେଇ ବସାରୁ ଲୁଳୁଲୁଳୁ କରି ତିନୋଟି ଶାବକ ଚାହିଁବାର ଦେଖି ମୁଁ ବଡ଼ ଅଡୁଆରେ ପଡ଼ିଯାଏ । ଆଉ ଗୋଟାଏ ତେବେ କୁଆଡ଼େ ଗଲା । ହିସାବପତ୍ର କରି ବୁଝି ନିଏ ବୋଧହୁଏ ଫୁସୁରିଯାଇଛି ଡିମ୍ବଟିଏ । ପୁଣି କିଛି ଦିନପରେ ଦେଖେ ଏ ତିନୋଟି ଛୁଆଙ୍କ ମଧ୍ୟରେ ଦୁଇଟି କୋଇଲି ଅନ୍ୟଟି କୁଆ । କାରଣ ଦୁଇଟିର ପକ୍ଷୀ ଛିଟ ଆଖି ଲାଲ । ଗୋଟିକର ପକ୍ଷୀ କଳା ଓ ଥଣ୍ଟ ଭିତରକୁ ପାଟି ଲାଲ । କିନ୍ତୁ ମା କୁଆଟି ଏ ତିନୋଟି ନବାଗତଙ୍କୁ ସମାନ ସରାଗ ଓ ଉଲ୍ଲାସରେ ଆଧାର ଦିଏ । ସେ ଆଧାର ଧରି ଉଡ଼ି ଆସିବା ମାତ୍ରେ ନିଜ ନିଜ ସ୍ଥାନରୁ ତିନୋଟି ଜାକ ନବାଗତ ବେଣାଝାଡ଼ି ଥଣ୍ଟ ମେଲାକରି ମା କୁଆକୁ ଚାହିଁ ରହନ୍ତି । ସେ ସମସ୍ତଙ୍କ ପାଟିରେ ନିଜ ଥଣ୍ଟରୁ ଟିକିଏ ଟିକିଏ ଆହାର ବାଣ୍ଟିଦିଏ ଓ ପୁଣି ଖାଦ୍ୟ ସନ୍ଧାନରେ ଉଡ଼ି ଯାଏ ।



Digitized by PPRACHIN, SOA

କୋଇଲି ଛୁଆ ଦୁଇଟି କୁଆପରି ରାବିବା ଆରମ୍ଭ କରି ଦେଇଥାନ୍ତି । ତେଣୁ କୁଆ ଦମ୍ପତିଙ୍କ ମନରେ ଅପାର ଆନନ୍ଦର ଢ଼େଉ ଉଚ୍ଛୁଳେ । ସେମାନଙ୍କ ଆଖି ସେମାନଙ୍କୁ ବାରମ୍ବାର ପ୍ରତାରିତ କରୁଥିଲେ ବି ଚଢ଼େଇ ଛୁଆଟିର ସ୍ୱର ଖୁବ୍ ନିର୍ଭରଯୋଗ୍ୟ ମନେହୁଏ । ଠିକ୍ ନିଜ ଛୁଆପରି ଏ ସ୍ୱର । କୁ..... ନୁହେଁ । କା.... । ତେଣୁ ତା'ର ସନ୍ଦେହର କାରଣ କିଛି ନଥାଏ-ଯଦିଓ ବାରମ୍ବାର ନିଜର ଦୃଷ୍ଟି ନିଜକୁ ପ୍ରତାରିତ କରୁଥାଏ । ଛିଟ ଛିଟ ପକ୍ଷ୍ୟ ଝାଡ଼ି ଥଣ୍ଟ ମେଲାକରି ବିକଳ ବିକଳ ଆଖିରେ ଲୁଲୁଲୁ ଚାହୁଁଥିବା ଏ ଛୁଆଦୁଇଟି ତାରି ନୁହନ୍ତି ତ ଏ ଡାଳକୁ ଆସିଲେ କିପରି ? ଭଗବାନଙ୍କ ବିପୁଳ ସୃଷ୍ଟିରେ ବେଳେବେଳେ ନିପାତନ ଯେ ନାହିଁ ତା' ନୁହେଁ । ନିପାତନ ହିଁ ଜୀବନକୁ ସୁନ୍ଦର କରେ ଓ ଗତାନୁଗତିକତାକୁ ଉପହାସ କରି ତାର ଏକକ ସତ୍ତାକୁ ସାବ୍ୟସ୍ତ କରିଦିଏ ।

କିଛିଦିନ ପରେ କୋଇଲି ଦୁଇଟି ପୁଣି ଉଡ଼ିଆସି ଏ ପଣସ ଗଛ ଡାଳରେ ବସିବାର ଦେଖେ । ସେମାନେ ତାଙ୍କ ଭାଷାରେ କଥାବାର୍ତ୍ତା ହୋଇ ବୋଧହୁଏ ଛୁଆ ଦୁଇଟିକୁ ଜଣାଇଦେବାକୁ ଚାହାନ୍ତି- କାଆ....ନୁହେଁ.... କୁଉ..... ଉଚ୍ଚାରଣ କରି ଶିଖ । ତାହାହିଁ ମଣିଷ ସନ୍ତାନର ସ୍ୱଷ୍ଟ ପ୍ରଥମ ଉଚ୍ଚାରଣ ମା...ଆ... ଡାକପରି ମଧୁର ଆଉ ଶ୍ରୁତି ସୁଖକର । ନିଜେ ଅଣିରା କୋଇଲିଟି କୁହୁରାବ କରି ତା କୂଜନର ମଧୁରତା ଓ ଅନନ୍ୟତା ବିଷୟରେ ଛୁଆଦୁଇଟିକୁ ଶୁଣାଇଦିଏ । ଛୁଆଦୁଇଟି ବଡ଼ ଅଡୁଆରେ ପଡ଼ିଯାଆନ୍ତି । କାରଣ ବେଳେବେଳେ କାଆ.... ନୁହେଁ କି.... କୁଉ..... ନୁହେଁ ମଝିମଝିଆ କିଛି ଉଚ୍ଚାରଣ ହୁଏତ କୁକା.... ସେମାନଙ୍କ କଣ୍ଠରୁ ସ୍ୱତଃ ଛିଡ଼ିକି ଆସିଥାଏ । ସେଇଦିନ ମାନଙ୍କରେ କୁଆ ଦୁଇଟିର ସ୍ୱଷ୍ଟ ଅସ୍ଥା ଭାବ ମୁଁ ଲକ୍ଷ୍ୟ କରେ । ମାଆ କୁଆଟି ଥଣ୍ଟରେ ବୋହି ଆଣିଥିବା ଆହାର ପାଇଁ ଯେତେ ଡ଼େଣାଝାଡ଼ି ଥଣ୍ଟ ମେଲେଇ କଲବଲ ଭାବ ମୁହଁ ଓ ଆଖିରେ ଆଣି ପାଖ ପାଖ ହୋଇ କୋଇଲି ଛୁଆ ଦୁଇଟି ଚାହିଁ ରହିଲେ ବି କୁଆ ସ୍ୱଷ୍ଟ ଶବ୍ଦ ଉଚ୍ଚାରଣ କରୁଥିବା ତା' ନିଜଛୁଆ ପ୍ରତି ଅଧିକ ମମତା ଦେଖାଏ ଓ ତାକୁ ଆଗ ସବୁଯାକ ଆଧାର ଦେଇଦିଏ । ବୋଧହୁଏ ସେତେବେଳକୁ ଭାବି ଦେଇଥାଏ ଯେ ତା' ପେଟରେ ଆଉ ଦିଟା ଭଗାରୀ ଜନ୍ମ ନେଇଛନ୍ତି । ମାଆ ପ୍ରତି ସେମାନଙ୍କର ଆନୁଗତ୍ୟ ନାହିଁ । କାଆ ଶିଖିବାକୁ ଆଗ୍ରହ ନାହିଁ । ସହଜେ ରୂପ ସ୍ୱଷ୍ଟ ଭାବେ ନିଆରା । ଯେତିକି ବଢୁଛନ୍ତି ରୂପଟିମାନ ସେତିକି ବାରିହେଇ ଜଣାପଡୁଚି । ସେମାନେ କ'ଣ ତା'ର ନୁହନ୍ତି ? ବଡ଼ ଅଡୁଆରେ ପଡ଼ିଯାଏ କୁଆଟି । ଛୁଆଦୁଇଟି ରାବି ରାବି ନିରସ୍ତ ହୋଇ ଶେଷକୁ କାଆ.... କହି ଦିଅନ୍ତି ଓ ମାଆକୁଆ ମନରେ ଭ୍ରମ ସୃଷ୍ଟି କରନ୍ତି । ଏଥର ମାଆ କୁଆଟିର ମନ ତରଳେ । ସେ ପୁଣି ଅନତି ଦୂରକୁ ଉଡ଼ିଯାଇ ଖୋଜିଖୋଜି ଆହାର ଧରି ଆସେ ଓ ଖୁଣ୍ଟବୁଜିଆ ଛୁଆ ଦୁଇଟିକୁ ଥଣ୍ଟରେ କିଛି କିଛି ସେଥିରୁ ଗୁଂଜି ଦିଏ । ଡ଼େଣାଝାଡ଼ି କାଆ..... କାଆ ବୋବାଳି ଛାଡୁଥିବା ଲମ୍ବା ଥଣ୍ଟିଆ ଛୁଆଟିକୁ ବି ଅବହେଳା କରିପାରେ ନାହିଁ । ସଂଗୃହୀତ ଖାଦ୍ୟର ଶେଷାଂଶକୁ ଛୁଆର ନାଲି ଟୁକୁଟୁକୁ ମେଲା ମୁହଁରେ ଆକଣ୍ଠ



Digitized by PPRACHIN, SOA

ଗଳେଇ ଦିଏ ମାଂ' କୋଇଲି । କିଛି ସମୟ ପାଇଁ ଶାବକମାନେ ଆଶ୍ୱସ୍ତ ହୁଅନ୍ତି । ସେମାନେ ବେଶୀ ଆହାର ଦରକାର କରନ୍ତିନି । କିନ୍ତୁ ବାରମ୍ବାର ଏଇ ଦୃଶ୍ୟର ପୁନରାବୃତ୍ତି ଘଟେ । ସାରା ଦିନ-କେତେବେଳେ ମା କୁଆଡ କେତେବେଳେ ବାପାକୁଆଟି ଆହାର ଧରି ଶାବକମାନଙ୍କୁ ଖୁଆଇ ଦିଅନ୍ତି । ଶାବକମାନେ ଡାଳରୁ ଡାଳକୁ ଡେ଼ଇଁ ଖଣ୍ଡିଉଡ଼ା ଦେଉଥିବାର ଦୃଶ୍ୟକୁ ତନ୍ମୟତାର ସହିତ ଲକ୍ଷ୍ୟ କରନ୍ତି । ବେଳେବେଳେ ତିନୋଟିଯାକ ଶିଶୁ ବସାରେ ଚୁପ୍‌ଚାପ୍ ବସି ରହନ୍ତି-ବୋଧହୁଏ ସେମାନଙ୍କର ନିଦ ଯିବାର ସମୟ । ପୁଣି ଶାବକମାନେ କାଆ.... କୁଉ... ଡାକରେ ଗଛଟିକୁ ମୁଖରିତ କରନ୍ତି । ବେଶ୍ ଡ଼ିଆଁ ଡେ଼ଇଁ କରି ମଧ୍ୟାହ୍ନର ନୀରବତାକୁ ଚହଲେଇ ଦିଅନ୍ତି । ଅନତିଦୂରରେ ପଣସ ଗଛ ଡ଼ାଳରେ ବସି ରହି ଏମାନଙ୍କ ଗତିବିଧିକୁ ଘଣ୍ଟା ଘଣ୍ଟା ଧରି ଲକ୍ଷ୍ୟ କରନ୍ତି କୋଇଲି ଦମ୍ପତି । "ହାତୀ ବନସ୍ତରେ ଥିଲେ ବି ରଜାଙ୍କର"-ଏହିପରି ଏକପ୍ରକାର ଆଶ୍ୱସ୍ତି ଭାବନାରେ ସେମାନେ ତନ୍ମୟ । ପରିଶ୍ରମ ନାହିଁ କେବଳ ଉପଭୋଗ କରନ୍ତି, ସନ୍ତାନ ପାଳନର କଷ୍ଟ କ'ଣ ବୁଝନ୍ତିନି । କେବଳ ଡେ଼ଇଁ ବୁଲି ମଧୁର କୂଜନରେ ଭରିଦିଅନ୍ତି ନିଜର ପରିଚିତ ପରିଧିକୁ । ସୂକ୍ଷ୍ମ ଭାବପ୍ରବଣତାରେ ତନ୍ମୟ ପକ୍ଷୀଯୁଗଳ ସବୁବେଳେ ଅନ୍ୟମନସ୍କ ଜଣାଯାନ୍ତି- ଯଦିଓ ବେଳେବେଳେ କୁଆମାନଙ୍କ ଅନୁପସ୍ଥିତିର ସୁଯୋଗ ନେଇ ସେମାନେ ଶିମିଳୀଗଛରେ ଡେ଼ଇଁବୁଲୁଥିବା ସନ୍ତାନ ଦୁଇଙ୍କ ପାଖୁ ଅଳ୍ପ ସମୟ ପାଇଁ ଉଡ଼ିଆସି କିଛି ଗୋପନୀୟ ମନ୍ତ୍ର ସେମାନଙ୍କ କାନରେ କହିଯାନ୍ତି । କଣ ସେମାନେ କହନ୍ତି ? କହନ୍ତିକି ବେଳ ହୋଇଥିଲା ଏବେ ପ୍ରସ୍ତୁତ ହୋଇଯାଅ ପିଲାମାନେ । ତୁମପାଇଁ ଏ କଣ୍ଟକିତ ଶିମିଳିଗଛର ଶାଖା ଯଥାର୍ଥ ସ୍ଥାନ ନୁହେଁ । ତୁମ ପାଇଁ ଅପେକ୍ଷା କରିଚି ଚୂତ ବକୁଳ ଓ ଦେବଦାରୁ । ତୁମପାଇଁ ଅପେକ୍ଷା କରିଚି କନିଅର ଓ ବାଦ୍ଧାମର ସୁମିଷ୍ଟ ଆହାର । ସେ ଆହାର ତୁମ ଗଳାକୁ ସଫା ଓ ଚିକ୍‌ଣ କରିଦେବ । ତୁମ ଗଳାରୁ ସ୍ୱଚ୍ଛ ଓ ମଧୁର କୂଜନ ବାହାରିବ । ଏ ଉଚ୍ଛିଷ୍ଟ ଭୋଜି ବାୟସ ତୁମ କଣ୍ଠରେ କଣ ଲାଳିତ୍ୟ ଦେଇ ପାରିବ ? ଦେଇପାରିବ କୁହୁ..... କାକଳୀର ଅମୀୟ ମାଦକତା ? ଚୂତ ବଉଳର ସୁମିଷ୍ଟ ଆହାର ? ? ବସନ୍ତରେ ତୁମକୁ ଅପେକ୍ଷା କରିବ । ଏ ବିଷ୍ଠା ଭୋଜୀ କୃପଣ ବାୟସ ତୁମ କଣ୍ଠରେ ମାଦକତା ଆଣିବ କାହୁଁ ? ଯେତିକି ହେଲା ପିଲାଏ- ତାକୁ ଭୁଲିଯାଅ । ସେ ପାଳକ ପିତାମାତା ମାତ୍ର । ଆମେ ତୁମର ନିଜର ଜନ୍ମଦାତା ବାପ ମାଆ ।

ଶାବକ ଚଢ଼େଇ ଦୁଇଟି ଅଡୁଆରେ ପଡ଼ି ଯାଆନ୍ତି । ହଠାତ୍ ଏ ବିଦେଶୀ ପକ୍ଷୀଦୁଇଜଣଙ୍କ ଏତେ ଶ୍ରଦ୍ଧାର ଉଚ୍ଚାରଣକୁ ଅନ୍ତରରେ ଘେନି ପାରନ୍ତି ନାହିଁ । କିନ୍ତୁ ଶୁଣିବାକୁ ଭଲ ଲାଗେ । ଭାରୀ ଆପଣାର ଆପଣାର ଲାଗେ । ବେଳେବେଳେ ବିଦେଶୀ ଚଢ଼େଇ ଦୁଇଟି ଚଞ୍ଚୁ ଘଷି ମମତାର ପ୍ରଲେପରେ ତାଙ୍କୁ ଆର୍ଦ୍ର କରିଦିଅନ୍ତି । କିନ୍ତୁ ଏତେ ସନ୍ତର୍ପଣ ଓ ଗୋପନୀୟତା କାହିଁକି ? ଏତେ ଲୁଚାଛପାରେ ଏ ଆଦର ଅଭ୍ୟର୍ଥନା କାହିଁକି ? ସେମାନଙ୍କ ମୁଣ୍ଡ ଚକ୍‌କର ମାରିଯାଏ । ଚିନ୍ତା କରିବାର ବୟସ ତଥାପି ହୋଇନାହିଁ- ଚିନ୍ତା କରିପାରନ୍ତି ନାହିଁ । କିନ୍ତୁ କ'ଣ କେମିତି ମନ ଭିତରେ ଚହଲ



Digitized by PPRACHIN, SOA

ପକେଇଦିଏ । ମନର ଅନ୍ଧିସନ୍ଧିରେ କେତେ କଥା ପଶି ମନକୁ ଆକ୍ରାନ୍ତ କରି ବସେ । ଆହାର ଦେଇଥିବା, ଦ୍ୱିଜତ୍ୱ ଦେଇଥିବା ଏ କର୍କଶ ବାୟସ (ଯାହାକୁ କଳାପ୍ରିୟ ଚଢ଼େଇ ଦୁଇଟି ସେଇ ଭାଷାରେ ଉଚ୍ଚାରଣ କରିଗଲେ) ତେବେ କଣ ତାଙ୍କର ନିଜର ବାପାମାଆ ନୁହନ୍ତି ? ତେବେ ଏତେ ଆଦର ଢ଼ାଳିଦେଉଚନ୍ତି କାହିଁକି ? କାହିଁକି ଆହାର ଆଣି ଥଣ୍ଟରେ ଦେଇ ସେମାନଙ୍କ ଶିଥିଳ ଡ଼େଣାମାନଙ୍କୁ ଦମ୍ଭିଲା କରୁଚନ୍ତି ? ବେଳେବେଳେ ରାଗୁଚନ୍ତି, ବେଳେବେଳେ ପୁଣି ଏତେ ଗେହ୍ଲା କରୁଚନ୍ତି ? କାଆ..... କହିଲେ ଖୁସି ହେଉଚନ୍ତି ବହୁତ ଆଦର କରୁଚନ୍ତି..... ପୁଣି କେଉଁଠୁ ସେମାନଙ୍କ କଣ୍ଠରୁ ସ୍ୱାଭାବିକ ସ୍ୱରରେ କୁଉ ଶବ୍ଦଟି ଉଚ୍ଚାରିତ ହୋଇଗଲେ ଏତେ ରାଗୁଚନ୍ତି, ସନ୍ଦେହୀ ଆଖି ନେଇ ଚାହିଁ ରହୁଛନ୍ତି ।

କିନ୍ତୁ ବିଦେଶୀଚଢ଼େଇଙ୍କୁ ଭୁଲି ହେଉନି । ତାଙ୍କ ସହିତ ଉଡ଼ିଯିବାକୁ ସେମାନଙ୍କର ଏତେ ଆମନ୍ତ୍ରଣ-ସେମାନେ ପୁଣି ପ୍ରତିଶ୍ରୁତି ଦେଉଚନ୍ତି । କଣ୍ଟକିତ ଶିମିଳୀ ଶାଖାରୁ ସେମାନେ ସୁନ୍ଦର ଓ ସୁବାସିତ ଚୂତ ଶାଖାକୁ ଉଡ଼ାଇ ଦେବେ । ଭଲ ଗୀତ ଶିଖାଇ ଦେବେ । ବିଦେଶ ଭ୍ରମଣର ଆନନ୍ଦ ଦେବେ । କେତେ ନୂଆ ନୂଆ ଗଛ, ଫଳ ଓ ଫୁଲ ସହିତ ପରିଚିତ କରାଇ ଦେବେ । ପିଜୁଳି, ଲିଚୁ, ଜାମୁକୋଳି ଆଉ ବାଦାମ ପରି ସ୍ୱାଦିଷ୍ଟ ଫଳ ଖାଇବାକୁ ଦେବେ । ଏତେ ଶକ୍ତିଶାଳୀ ଆମନ୍ତ୍ରଣ ଓ ପ୍ରଲୋଭନକୁ ଛାଡ଼ି ହେଉନି; ଭାରୀ ଶକ୍ତିଶାଳୀ ଚୁମ୍ବକ ପରି ତାର ଆକର୍ଷଣ । ତା' କଣ ମିଛ ଆଉ ପ୍ରତାରଣା ? କି ଲାଭ ବା ଲୋଭରେ ବିଦେଶୀ ଚଢ଼େଇ ଦୁଇଟି ତେବେ ଘଣ୍ଟା ଘଣ୍ଟା ଏପରି ମୁହଁ ଶୁଖେଇ ଅପେକ୍ଷା କରି ରହନ୍ତି ଏ ପାଖ ପଣସ ଡାଳରେ । ସେମାନଙ୍କର କ'ଣ ବା ସ୍ୱାର୍ଥ ?

ତାପରେ ଦିନକର ଶାବକ ଚଢ଼େଇ ଦୁଇଟି ସ୍ପଷ୍ଟ କୁହୁ.... ଉଚ୍ଚାରଣ କରି ମନଇଚ୍ଛା ଏ ଶିମିଳିଗଛ ଡାଳରେ ଡ଼ିଆଁଡ଼ିଇଁ କରି ଉଡ଼ିବୁଲିଲେ । ବେଳେବେଳେ ଆମ୍ବ ଗଛ ଉପରକୁ ଉଡ଼ି ଆସି ବସନ୍ତି । କିଛି ଆହାର ଖାଇ ଶିଖନ୍ତି । କୁଆଦୁଇଟି ସେତେବେଳେ ହୁଏତ ନଥାନ୍ତି । ଆସିଲାମାତ୍ରେ ଦେଖନ୍ତି ଶିମିଳିଡାଳରୁ ଉଡ଼ିଯାଇ ଆମ୍ବ ଡାଳରେ ବସିସାରିଛନ୍ତି ଛିଟଡ଼େଣା ଶାବକ ଦୁଇଟି । କଳାଡ଼େଣା ଶାବକଟି କେବଳ ବାଧ ଶିଶୁଟିଏ ପରି ବସି ରହିଛି ଶିମିଳୀ ଡାଳରେ । କୁଆଦୁଇଟି ଯେତେ କାଆ.... କାଆ.... ରଡ଼ି କରି ଶାବକଦୁଇଟିକୁ ଡାକୁଥାଆନ୍ତି ସେତିକି ସେତିକି ସ୍ପଷ୍ଟ ପ୍ରତିବାଦର ସ୍ୱର ସେମାନଙ୍କ କଣ୍ଠରେ ଉଚ୍ଚାରିତ ହେଉଥାଏ । ରୁକ୍ଷ ଓ କର୍କଶ ପୃଥିବୀ ବିରୁଦ୍ଧରେ ସେମାନେ ଶେଷ ପ୍ରତିବାଦ ଜଣାଇ ଆଜି ଏକ ଅଦେଖା ପରୀ ରାଜ୍ୟକୁ ଉଡ଼ିଯିବାର ଆମନ୍ତ୍ରଣ ପାଇଛନ୍ତି । ଅନତି ଦୂରରେ ପଣସଗଛ ଶାଖାରେ ବସିଛନ୍ତି କୋଇଲି ଦୁଇଟି । ସେଇମାନେ ଶିଖାଇଛନ୍ତି ନୂତନ ମନ୍ତ୍ର; ନୂତନ ଆକର୍ଷଣର ଇଲାକାକୁ ସେମାନେ ଉଡ଼ାଇ ନେବେ ବୋଲି ଅପେକ୍ଷା କରି ରହିଛନ୍ତି- ପୁଣି ମଧୁର କୂଜନ ଶିଖାଇଦେବେ ବୋଲି ପ୍ରତିଶ୍ରୁତି ଦେଇଛନ୍ତି । କୁଆ ଦୁଇଟି ବ୍ୟତିବ୍ୟସ୍ତ ହୋଇ ଡାଳରୁ ଡାଳକୁ ଉଡ଼ି ଅନେକ ରାବିଲେ । ବରମ୍ବାର ପରିଚିତ ଓ ଏ ଯାବତ୍ ଶିଖାଇଥିବା ଆପଣା ସ୍ୱରରେ କେତେ ଲହର ଓ ଆବେଗ ଆଣି ଶାବକ ଦୁଇଟିକୁ



Digitized by PPRACHIN, SOA

ଶିମିଳିଗଛ ଶାଖାକୁ ଉଡ଼ି ଆସିବାକୁ ଆକୁତି କଲେ । କିନ୍ତୁ ଶାବକ ଦୁଇଟି ଜଣାଇଲେ ଅଧିକରୁ ଅଧିକ ପ୍ରତିବାଦ । ସେମାନେ ନିଷ୍ପତ୍ତି କରି ସାରିଛନ୍ତି– ଅଜଣା ରାଜ୍ୟରୁ ଆମନ୍ତ୍ରଣ ପାଇ ସାରିଛନ୍ତି । ଆଉ ସଂକୀର୍ଣ୍ଣ ପରିଧି ଭିତରେ ସେମାନେ ଛନ୍ଦି ହୋଇ ପଡ଼ି ରହିବେ କାହିଁକି ? ମାଆକୁଆର କାଆ..... ଡାକର ପ୍ରତିବାଦରେ ସେମାନେ ବରାବର କୁଉ..... କୁଉ..... ପ୍ରତିବାଦ ଶୁଣାଇ ଚାଲିଲେ ଓ କିଛି ସମୟ ପରେ କୁଆଦୁହିଙ୍କୁ ହତାଶ କରି କୋଇଲି ଦୁଇଟିଙ୍କ ସହିତ ପ୍ରକାଶ୍ୟରେ ଉଡ଼ି ଚାଲିଗଲେ । କୁଆ ଦୁଇଟି ବହୁତ ରାବିଲେ- ଶିମିଳି ଗଛର ପାଖଆଖ ଆକାଶରେ ବହୁତ ଚକ୍କର ଦେଲେ । ରାବି ରାବି ଖଣ୍ଡମଣ୍ଡଳ ଫଟେଇଲେ । ସେମାନଙ୍କ ରାବଶୁଣି ଆଉ କେତୋଟି କୁଆ ଆସି ଶିମିଳିଶାଖାରେ ରାବିବାକୁ ଲାଗିଲେ । କିନ୍ତୁ ସେତେବେଳକୁ ଚଢ଼େଇ ଦୁଇଟି ଅନେକ ଦୂରକୁ ଦରପାଚିଲା ଆମ୍ବ ଝୁଲୁଥିବା ଗଛ ଉପରକୁ ଉଡ଼ିଯାଇଥିଲେ ।





Digitized by PPRACHIN, SOA

# ବୃଷଭ-ସଂହିତା

ନିର୍ବାଚନ ମଣ୍ଡଳୀର ବିଶିଷ୍ଟ ଓ ବିପୁଳବିପୁ ଧଳାଷଣ୍ଢଟି ପେଟରେ ଏପଟ ସେପଟ ଦୁଇଟି ଚକ୍ର ଚିହ୍ନ ମାରିଦେଇ ତା' କାନରେ ପ୍ରଚାର ବାଲାଏ ଏକାନ୍ତ ଗୋପନରେ କହି ଯାଇଥିଲେ ଭି.ପି. ସିଂହ ସିଂହାସନକୁ ଆସିଲେ ତୋର କିଛି ଅଭାବ ରହିବ ନାହିଁ । ଏଇଠି ତୋରି ସ୍ମୃତିରେ ଏକ ଫୋଡର କାରଖାନା ବସାଇ ଦେବୁ ଓ ପ୍ରତିଦିନ ତୁ ପେଟେ ପେଟେ ଦାନା ଖାଇ ମନଇଛା ଭ୍ରମଣ ଓ ରମଣ କରୁଥିବୁ । ସେମାନେ ଗୋଠଟିଏ ସୃଷ୍ଟି କରିବେ । ଡାଏରିଫାର୍ମ । ଶତାଧିକ ଗାଈଙ୍କ ମେଳରେ ଅଧିପତି ଭାବେ ଷଣ୍ଢ ରହିବ । ଖାଦ୍ୟ ପେୟର ଅଭାବ ହେବ ନାହିଁ । ସରକାରୀ ଖର୍ଚ୍ଚରେ ସବୁ ଖାଦ୍ୟପେୟ ବ୍ୟବସ୍ଥା ହେବ । ଆଉ ବିଲବାଡ଼ି ଧାନ କିଆରି ବୁଲି ତାକୁ ଖାଇବାକୁ ହେବ ନାହିଁ କି କାହାର ପାହାର ସହିବାକୁ ହେବ ନାହିଁ । ଏହା ତ୍ରିବାର ସତ୍ୟ । ତେଣୁ ତୁ ପ୍ରତିଦିନ ଅନ୍ତତଃ ଜନଗହଳି ରାସ୍ତାରେ ପାଞ୍ଚ କିଲୋମିଟର ବୁଲି ଆସିବୁ । ଏ ସହରର ସଂକୀର୍ଣ୍ଣ ରାସ୍ତାରେ ମଟର ଗାଡ଼ି ହର୍ଣ୍ଣକୁ କେହି ଶୁଣନ୍ତି ନାହିଁ; ତେଣୁ ତୋ ଉପରେ କେହି ମଟର ଚଢ଼େଇ ଦେବାର ସମ୍ଭାବନା ନାହିଁ । ବରଂ ବସ୍‌ର ଯାତ୍ରୀମାନେ ଚକ୍ରଚିହ୍ନକୁ ଦେଖିବାକୁ ଉତ୍ସାହୀ ହୋଇ ଉଠିବେ । ତୋତେ କେହି କେହି ଧୀରେ ଧୀରେ ଆଉଁଷି ରାସ୍ତାରୁ ହୁଏତ ଆଡ଼େଇ ଦେବେ । ତୁ ତ ମହାଦେବଙ୍କ ବାହାନ ତୋର ଡ଼ର କାହାକୁ ?

କିନ୍ତୁ ହାତବାଲାଏ ଯେଉଁଦିନ ତା ଥୋମଣି, ପିଚା ଏପରିକି ଓଲମ୍ବ ପରି ଝୁଲୁଥିବା ଅବୟବଟିରେ ବିଭିନ୍ନ ରଙ୍ଗରେ କେତୋଟି ଚିହ୍ନ ମାରିଦେଲେ ଷଣ୍ଢ ଖୁବ୍ ଧୀରେ ମୁଣ୍ଡ ହଲେଇ ମୃଦୁ ପ୍ରତିବାଦ ମାତ୍ର କରିଥିଲା ।

ଷଣ୍ଢ ଉଭୟଦଳ ପାଇଁ ନିର୍ବାଚନରେ ନିଜ ଦେହଟିକୁ ଦେଖେଇ ଦେଇଥିଲା । ସେମାନେ ଛାଞ୍ଚରେ ରଙ୍ଗବୋଳି ତା ଦେହସାରା ବିଭିନ୍ନ ଛବି ଆଙ୍କିଦେଲେ । ଚକ ଓ ହାତ ଚିହ୍ନର ଏକାଧିକ ସଂକେତ ବହନ କରି ଷଣ୍ଢଟି ତାର ସ୍ୱାଭାବିକ ଉଦାସୀନତାରେ ଛୋଟ ସହର ସାରା ବୁଲିବାରେ ଲାଗିଲା । ରାସ୍ତାରେ ଗଲାବେଳେ ଉତ୍ସୁକଜନତା ଏଇ ଚିତ୍ରିତ ଷଣ୍ଢକୁ ଚାହିଁ ରହିଲେ । ସାଇକେଲ ଆରୋହୀମାନେ ବାଟ ଛାଡ଼ିଦେଲେ-ସତେ ଯେପରି ସରକାର ଗଢ଼ିବା ଆଶାରେ ମାତୁଆଳ କେହି ନେତା ବେପରୁଆ ଝୁଲିଦୋହଲି ଚାଲିଛନ୍ତି । ତାଙ୍କୁ ସମ୍ମାନର ସହିତ ବାଟ ଛାଡ଼ି ଦେବାକୁ ହେବ । ତାପରଦିନ ଚକଚିହ୍ନ ବାଲାଏ ଷଣ୍ଢକୁ ଅଡ଼େଇ ଅଡ଼େଇ କଦବା କେତେବେଳେ ମୃଦୁ ଆଘାତ କରି ମୁସଲମାନବସ୍ତି ଆଡକୁ ନେଉଥିବା ଦେଖାଗଲା । ସେମାନେ ସବୁ ହାତବଲାଙ୍କୁ ଭୋଟ ଦେବେ ବୋଲି ସ୍ଥିର



Digitized by PPRACHIN, SOA

କରିଥିବାରୁ ସେମାନଙ୍କ ମନ ପରିବର୍ତ୍ତନ ପାଇଁ ଷଣ୍ଢକୁ ସେମାନେ ମାଧ୍ୟମ ଭାବେ ନିୟୋଜିତ କଲେ । ଏ ମୁସଲମାନ ବସ୍ତିକୁ ଅତୀତରେ କେତେଥର ଷଣ୍ଢ ପଶି ଆସିଛି ଓ ସବୁଥର ନିର୍ଘାତ ପାହାର ଖାଇ ଯାଇଛି । ତା' ମନରେ ସ୍ୱାଭାବିକ ଭୟ ଯେ ନ ଥିଲା ତା' ନୁହେଁ । କିନ୍ତୁ ସେତେବେଳକୁ ଚକଦଳ ବାଲାଏ ଷଣ୍ଢକୁ ବରାଭୟ ଦେଇ ସାରିଥିଲେ । ଷଣ୍ଢର ଯେଉଁ ଯେଉଁ ଅଂଶରେ ହାତଚିହ୍ନ ଥିଲା ତା' ଉପରେ ରଙ୍ଗବେରଙ୍ଗର କନାଟାଣିଦେଇ ଷଣ୍ଢକୁ ସେମାନେ ବେଶ୍ ଆକର୍ଷଣୀୟ ଏକ ପ୍ରଦର୍ଶନୀର ବସ୍ତୁରେ ପରିଣତ କରି ଦେଇଥିଲେ । ଆଶ୍ଚର୍ଯ୍ୟ କଥା ଷଣ୍ଢ ଭବିଷ୍ୟତ ଆଶାରେ ଏତେବେଶୀ ପ୍ରଲୁବ୍ଧ ହୋଇ ରହିଥିଲାଯେ ତାର କେଉଁଥି ପାଇଁ ପ୍ରତିବାଦ ନଥିଲା । ସେମାନେ ଯେତେବେଳେ ଶୋଭାଯାତ୍ରାରେ ଷଣ୍ଢକୁ ନେଇ ସଂଖ୍ୟାଲଘୁ ଭିନ୍ନଗୋଷ୍ଠୀଙ୍କ ସାଇରେ ପଶିଲେ ସେ ସାଇର ଛୁଆପିଲା ବୁଢ଼ାବୁଢ଼ୀ ଓ ମାଇପିଲୋକମାନଙ୍କ ମଧ୍ୟରେ ଷଣ୍ଢକୁ ଦେଖିବାକୁ ବେଶ୍ ଜନଗହଳିଟିଏ ଖୁବ୍ କମ ସମୟ ମଧ୍ୟରେ ଲାଗିଗଲା । ଏଇ ଅବସରରେ ଚକବାଲାଏ ଷଣ୍ଢ ପିଠିର ଚକକୁ ଦେଖେଇ ହାତଯୋଡ଼ି ସମସ୍ତଙ୍କୁ ଅନୁରୋଧ କରି ବସିଲେ- ଭାଇ, ଭଉଣୀ, ମାଆ ମାଉସୀମାନେ-ଦେଖନ୍ତୁ କେନ୍ଦ୍ରରେ ଆମ ସରକାର ଭାଙ୍ଗିଗଲା ପଛେ ଦେଶ ଭାଙ୍ଗିବାକୁ ଦେଲାନାହିଁ । ଆମେ ଲଢୁଚୁ ମମତା ପାଇଁ ଓ ସମତା ପାଇଁ; କ୍ଷମତା ପାଇଁ ନୁହେଁ । ଦେଶକୁ ନୂଆରାସ୍ତାରେ ପକେଇବା ପାଇଁ ଓ ଆପଣମାନଙ୍କ ପରି ଗରିବଗୁରୁବାମାନଙ୍କୁ ନ୍ୟାଯ୍ୟ ଅଧିକାର ଦେବାପାଇଁ ଭି.ପି.ସିଂହ ଗାଦି ଛାଡ଼ିଲେ । ମଣ୍ଡଳ କମିସନ୍ ବୋଲି ଯାହା କୁହାଯାଉଛି ଓ ଯେଉଁଥିପାଇଁ ଦେଶ ହୁଲସ୍ଥୁଲ ହୋଇଗଲା ତାର ଅର୍ଥ ହେଉଛି ଗରିବଗୁରୁବାଙ୍କୁ ସାମାଜିକ ଓ ଅର୍ଥନୈତିକ ନ୍ୟାୟ ଦେବା । ରାଜନୀତିରେ ସେମାନଙ୍କୁ ଆମେ ଶତକଡ଼ା ଷାଠିଏ ଭାଗଦେବୁ ବୋଲି ଏଇ ଓଡ଼ିଶାରେ ଘୋଷଣା କଲୁ । ଓଡ଼ିଶା ଜଗନ୍ନାଥର ଦେଶ । ଜଗନ୍ନାଥଙ୍କ ଅନ୍ୟନାମ ପତିତପାବନ । ଦେଖୁନା ପାତିତମାନଙ୍କୁ ଦେଖା ଦେବାପାଇଁ କିପରି ବର୍ଷରେ ଥରେ ଘୋଷରା ହୋଇ ଛେଚାପିଟା ଖାଇ ନିଜେ ଜଗନ୍ନାଥ ବଡ଼ଦାଣ୍ଡକୁ ବାହାରି ଆସୁଛନ୍ତି । ତାଙ୍କ ଆଖିରେ ସାନବଡ଼ କିଛିନାଇ । ତେଣୁ ଆମ ନେତାଏ ସେଇ ଆଦର୍ଶରେ ଆଜି ଏ ଧର୍ମଯୁଦ୍ଧ ଚଳେଇଛନ୍ତି । ଆମ ଦେଶରେ ସବୁଠାରୁ ଗରିବ ଗୁରୁବାହେଲେ ଆଦିବାସୀ, ହରିଜନ ଓ ଆପଣଙ୍କ ସଂପ୍ରଦାୟର ଲୋକମାନେ । କୁହନ୍ତୁ ଚାକିରୀ ବାକିରୀରେ କେତେକାଳ ଉଚ୍ଚ ଜାତିର ଲୋକମାନେ ଆଧିପତ୍ୟ ବିସ୍ତାର କରୁଥିବେ ? ସେଇମାନେ ଦେଶ ଚଳେଇବେ, ଶାସନ ଚଳେଇବେ, ହାକିମ ହୁକୁମା ହେବେ । ଏଥିରେ ଆପଣମାନଙ୍କର ଉନ୍ନତି ହୋଇ ପାରିବକି ? ତେଣୁ ପଶୁହେଲେ ମଧ୍ୟ ଦେବଦେବ ମହାଦେବଙ୍କ ଏ ବୃଷଭ ମଧ୍ୟ ଆଜି ଆମ ସହିତ ଏକମତ ହୋଇ ସହଯୋଗ କରିବାକୁ ଗୋଠ ଛାଡ଼ିଛି । ଆପଣମାନେ ସେଇପରି ଗୋଠ ଛାଡ଼ନ୍ତୁ । ଦେଶ ଗଢ଼ିବା ପାଇଁ ନୂଆ ଭାବ ନୂଆ ମନ ଓ ପ୍ରତିଶ୍ରୁତି ନେଇ ଆଗେଇ ଆସନ୍ତୁ । ଭି.ପି.ସିଂହଙ୍କୁ ଗାଦିରେ ବସାନ୍ତୁ । ଦେଖିବେ ଦେଶରେ କିପରି ପରିବର୍ତ୍ତନ ହେବାକୁ ଯାଉଛି ।



Digitized by PPRACHIN, SOA

ଚକବାଲାଙ୍କ ଭାଷଣ ଟିକେ ଲମ୍ବା ହୋଇ ଆସୁଥିଲା । ତେଣୁ ସେଠାରୁ କିଛି ଲୋକ ସେତେବେଳକୁ ଜନଗହଳି ଛାଡ଼ି କ୍ରମେ ନିଜ କାମଧନ୍ଦାରେ ଯିବାକୁ ବାହାରିଗଲେ । ଛୋଟପିଲାମାନେ ଷଣ୍ଢ ଦେହରେ ହାତ ମାରିବାକୁ ଖୁଜୁବୁଜୁ ହେଉଥିଲେ । ଭାଷଣ ଦେଉଥିବା ନେତାମାନେ କ୍ରମେ ଷଣ୍ଢକୁ ଅଡ଼େଇ ଅଡ଼େଇ ଆରସାଇକୁ ଚାଲିଗଲେ । ଗହଳି ଭାଂଗି ଗଲା । କେତେକ ବିଚାରବନ୍ତ ଲୋକ କହିବାକୁ ଲାଗିଲେ- ଓଃ, ଭାଷଣ ଶୁଣିବାରୁ ତ୍ରାହି ମିଳିଲା ।

କିନ୍ତୁ ଏଇ ସାଇରେ ତା' ପରଦିନ ଏଇ ସମାନ ଦୃଶ୍ୟର ଯେତେବେଳେ ପୁନରାବୃତ୍ତି ହେଲା ଖୁବ୍ ବୟସ୍କ ପୁରୁଷଲୋକେ ଓ ତରୁଣ ଯୁବସଂପ୍ରଦାୟ ଏଥର ଗାଁ ଦାଣ୍ଡକୁ ବାହାରି ଆସିଲେ । ଗତକାଲିପରି ଛୁଆମାନେ ଆସିଲେ ସତ, ହେଲେ ବଡ଼ ମଣିଷମାନଙ୍କୁ ଦେଖି ସେମାନେ ଡ଼ରିଡାରି ଦୂରେଇ ରହିଲେ । ଏଥର କିନ୍ତୁ ଷଣ୍ଢ ଦେହର ଚକଚିହ୍ନ ଉପରେ ଧଳାକପଡ଼ା ଘୋଡ଼େଇ ଦିଆଯାଇଥିଲା ଓ ସେ କନାରେ ଅନେକ କ୍ଷୁଧିତ ହାତର ଛବି ଆଙ୍କି ଦିଆଯାଇଥିଲା । ହାତ, ହାତ, ହାତ ବୋଲି ଅକ୍ଷରରେ ଠିକ୍ ନାମାବଳୀରେ "ହରେକୃଷ୍ଣ, ହରେ ରାମ" ଲେଖା ହେଲା ଭଳି ଛାପା ମାରିଦିଆ ଯାଇଥିଲା । ସେମାନେ ଷଣ୍ଢକୁ ଗ୍ରାମର ବିପରୀତ ମୁଣ୍ଡଯାଏ ଅଡ଼େଇ ଅଡ଼େଇ ଆଣିଲେ ଓ କୁହାଳିଆ କୌଣସି ମଧ ବୟସ୍କ ନେତା ଭାଷଣ ଦେବାକୁ ଆରମ୍ଭ କରିଦେଲେ- "ଭାଇମାନେ ଏ ଚକବାଲାଙ୍କ କଥାରେ ପ୍ରତାରିତ ହୁଅ ନାହିଁ । ବିଂଶାଧିକ ତରୁଣ ତରୁଣୀ ଏଇମାନଙ୍କ ପାଇଁ ଦୁଃଖରେ ଓ କ୍ଷୋଭରେ ଆତ୍ମାହୁତି ଦେଇଛନ୍ତି । ଦେଶସାରା ନିଆଁଜଳିଲା, ତଥାପି ଏମାନଙ୍କ ନେତା ମଣ୍ଡଳ ଜିଦି ଛାଡୁନାହାନ୍ତି । ଓଡ଼ିଶାରେ ବିଜୁବାବୁ ମଣ୍ଡଳ ବିରୁଦ୍ଧରେ ମୁଣ୍ଡଟେକୁଥିଲେ ପ୍ରଥମେ ପ୍ରଥମେ । ଏବେ ସେବି ମୋଡ଼ିମାଡ଼ି ହୋଇ ରହିଲେଣି । କେନ୍ଦ୍ରନେତାଏ ଯାହା କରିବେ ସେଇଆ ହେବ । ଓଡ଼ିଶାକୁ ଓଡ଼ିଆନେତାଏ କେନ୍ଦ୍ରରୁ ଅଲଗା କରି ନେବାକୁ ଯାହା କହୁଚନ୍ତି ଦେଶପାଇଁ ବିପଜ୍ଜନକ କଥା । ଏଣେ ବ୍ୟାନରରେ ବଡ଼ ବଡ଼ ହରଫରେ ଲେଖି କାନ୍ଥବାଡ଼ ଆକାଶ ଗଛବୃଛ ଚାରିଆଡ଼େ ଟଙ୍ଗେଇ ଦେଉଚନ୍ତି- "ଗାଦି ଛାଡ଼ିଲୁ ପଛେ ଦେଶ ଭାଂଗିବୁ ନାହିଁ ।" ତେଣେ ପୁଣି ଦେଶକୁ ଖଣ୍ଡବିଖଣ୍ଡିତ କରିଦେବାକୁ ଏମାନଙ୍କ ନେତା ଲାଗିଛନ୍ତି । ଏବେ କହୁଛନ୍ତି ଓଡ଼ିଶାରେ ଏତେ ଖଣିଜ ସଂପଦ- ଓଡ଼ିଆ କାହିଁକି କେନ୍ଦ୍ର ପାଖରେ ଭିକାରୀ ହେବ । ଠିକ୍ କଥା । ଆରେ ବାବୁ ତୁମେ ତ ଥିଲ ଗାଦିରେ ୧୯୭୭ ମସିହାରୁ ୧୯୮୦ - ପ୍ରାୟ ତିନିବର୍ଷ । ସେହିପରି କିଛି ଆଇନ କରି ଗଲନି । ସେତେବେଳେ ଏ ରାଜ୍ୟରୁ ତିନି ତିନିଜଣ ମନ୍ତ୍ରୀ ହେଲ, କ୍ଷମତା ଭୋଗ କଲ, ରାଜ୍ୟ କଥା କାହିଁକି ଭାବିଲନି । ତାଳଚେର କୋଇଲା ଖଣିରୁ ଯଦି ବର୍ଷକୁ ୩୦୦ କୋଟି ଟଙ୍କା ରାଜଶୁଳ୍କ ମିଳିବା କଥା ତେବେ ତିନିଜଣ ମନ୍ତ୍ରୀ ଚାହିଁଥିଲେ କଣ ହୋଇ ପାରି ନଥା'ନ୍ତା । ଦେଖନ୍ତୁ ଏମାନେ ଠିକ୍ ସମୟରେ କାମ ନକରି ପଛେରେ ବଡ଼ ବଡ଼ କଥା କହନ୍ତି । ଏମାନେ ଅବିଶ୍ୱାସୀ, ଧୋକାବାଜ୍" । ଏତିକିବେଳେ ଷଣ୍ଢ ମୁଣ୍ଡ ହଲେଇଦେଲା । ଭାଷଣ ଦେଉଥିବା



Digitized by PPRACHIN, SOA

ନେତାଙ୍କ ଆଖିରେ ଏ ଦୃଶ୍ୟ ପଡ଼ିବାମାତ୍ରେ ବଡ଼ ପାଟିରେ କହିଲେ ଦେଖନ୍ତୁ ଷଣ୍ଢ ପଶୁ ହେଲେ ମଧ୍ୟ କିପରି ମୋ କଥାରେ ସମର୍ଥନ ଜଣେଇ ମୁଣ୍ଡ ହଲଉଚି । ଏମାନେ ଏ ନିରୀହ ଷଣ୍ଢକୁ ପ୍ରଥମେ ସେମାନଙ୍କ ଦଳୀୟ ସ୍ୱାର୍ଥ ପାଇଁ ନିୟୋଜିତ କଲେ । ଆମେ ତାଙ୍କ ଦେଖାଦେଖି ଷଣ୍ଢ ଦେହରେ ହାତଚିହ୍ନ ମାରିବାକୁ ବାଧ୍ୟ ହେଲୁ । ଆପଣ ଜାଣିଥିବେ ଆମର ଅନେକ ବର୍ଷ ଆଗେ ଯୋଡ଼ିବଳଦ ଚିହ୍ନ ଥିଲା । ଯୋଡ଼ିବଳଦ ଆଉ କିଏ କି - ଏଇ ଷଣ୍ଢର ପୁଅ ହେବ ତ । ଏବେ ଆମର ହାତ ଚିହ୍ନ । ହାତ ହେଲା ସବୁ ପ୍ରଗତିର ମୂଳ । ହାତ ନ ଉଠିଲେ ପାଟିକୁ ଭାତ ଯିବନି । ହାତକୁ ଛାଡ଼ିଲେ ଆମେ ବଂଚି ପାରିବା ନାହିଁ । ତେଣୁ ଏଇ ଚିହ୍ନକୁ ଆପଣଙ୍କ ପ୍ରିୟ ଚିହ୍ନ ଭାବେ କେବଳ ମନେ ରଖନ୍ତୁ । ଅନ୍ୟସବୁ ଚିହ୍ନକୁ ପାଶୋରି ପକାନ୍ତୁ ।

ଷଣ୍ଢକୁ ନେଇ ସାଇରୁ ସାଇକୁ ପ୍ରଚାରବାଲାଏ ଯାଉଥିବାରୁ ବେଶ୍ ଗହଳି ଓ କୋଳାହଳ ଲାଗି ରହୁଥିଲା । ପଦ୍ମଚିହ୍ନବାଲାଏ ଏଠି ଜଣେ ତରୁଣ ପ୍ରାର୍ଥୀଙ୍କୁ ଦେଇଛନ୍ତି । ତାଙ୍କ ପ୍ରଚାରକମାନେ ଭାବିଲେ ସେମାନେ ମଧ୍ୟ ଷଣ୍ଢକୁ ପ୍ରଚାରର ମାଧ୍ୟମ କରିବେ ଓ ସେଇ ସେଇ ବସ୍ତି ମାନଙ୍କୁ ଯିବେ । କିନ୍ତୁ ଏ ଷଣ୍ଢଟି ଦେହରେ ପଦ୍ମଫୁଲ ଚିହ୍ନ ମାରିବାକୁ ଆଉ ଜାଗା ନ ଥିଲା । ସେମାନେ ଚିନ୍ତାରେ ପଡ଼ିଗଲେ । ସେଇ ଷଣ୍ଢଟିକୁ ନ ନେଲେ ଜମିବନି । ପୁଣି ସେ ଷଣ୍ଢ କେଉଁ ଦଳର ଅକ୍ତିଆରରେ ଏବେ ଥିବ ନା ରାସ୍ତାରେ ବୁଲୁଥିବ ସେମାନେ ଚିନ୍ତାରେ ପଡ଼ିଲେ । ତାଙ୍କ ଦଳର ଗୁପ୍ତଚରମାନେ ଷଣ୍ଢକୁ ଖୋଜି ରାତି ଶେଷ ପହରରେ ଗୋଟିଏ ଗଛମୂଳେ ଭେଟିଲେ । ଷଣ୍ଢ ବୋଧହୁଏ କ୍ଳାନ୍ତ ହୋଇ ଶୋଇ ରହିଥିଲା ଓ ସ୍ୱାଭାବିକଭାବେ ରୋମନ୍ଥନ କରୁଥିଲା । ପ୍ରଚାରକର୍ମୀମାନଙ୍କ ହାତରେ ବେଶୀ ସମୟ ନଥିଲା । ଇଲେକ୍ସନ୍ କମିଶନ୍‌ଙ୍କ ଘୋଷଣା ଅନୁସାରେ ୪୮ ଘଣ୍ଟାପୂର୍ବରୁ ସବୁପ୍ରକାର ପ୍ରଚାର ବନ୍ଦ ହେବ । ତେଣୁ ହାତରେ ଆଉ ମାତ୍ର ବାରଚଉଦଘଣ୍ଟା ସମୟ । ତା'ପରେ ରାତି ଓ ବିଶ୍ରାମ । କର୍ମୀମାନେ ସେତେବେଳକୁ ବହୁତ କ୍ଳାନ୍ତ ହୋଇପଡ଼ିଥାନ୍ତି । ତେବେ ସେମାନେ ଷଣ୍ଢ ଦେହରେ ବର୍ତ୍ତମାନ ପଦ୍ମଫୁଲ ଚିତ୍ରର ଆବରଣଟିଏ ପକାଇଦେଲେ । ତହିଁରେ ଚକ ଓ ହାତ ଚିହ୍ନ ଲୁଚିଗଲା । ଷଣ୍ଢ ଉଠିବାକୁ ପ୍ରସ୍ତୁତ ନ ଥିଲେ ମଧ୍ୟ ତାକୁ ବାଡ଼ିଆବାଡ଼ି କରି ଉଠାଇଲେ, ରାତିର ଶେଷ ପହରରେ କିଛି ଭଲ ଖାଦ୍ୟ ମଧ୍ୟ ଦେଲେ । ଷଣ୍ଢ ଏକପ୍ରକାର ଠେଲା ଖାଇଖାଇ ଚାଲିବାକୁ ବାଧ୍ୟ ହେଲା । ତାର ଆଉ ପ୍ରତିବାଦ କରିବାର କିଛି ନଥିଲା । କେହି ଚତୁରକର୍ମୀ ତାର ଖାଦ୍ୟ ପାଇଁ କିଛି ପଦ୍ମଫୁଲମିଶା ପଦ୍ମ ପତ୍ର ବି ତୋଳି ଆଣିଥିଲେ । ମଝିରେ ମଝିରେ ଖାଇବାକୁ ଦେଉଥିଲେ । ଏ ଖାଦ୍ୟ ତା' ପାଇଁ ଦୁର୍ଲଭ ଥିଲା । ପଦ୍ମଫୁଲର ମନମତାଣିଆ ଗନ୍ଧ ଓ ପତ୍ରର କୋମଳତାରେ ଷଣ୍ଢଟି କ୍ରମେ ମଦିରାସକ୍ତ ହୋଇ ଉଠୁଥିଲା ଓ ଦୋଳବିମାନ ପରି ଢ଼ଳିଢ଼ଳି ଚାଲୁଥିଲା ।

ଦିନ ଦି'ଘଡ଼ି ନହେଉଣୁ ପ୍ରଚାର ବାଲାଏ ସେଇ ସାଇରେ ଆସି ପହଞ୍ଚିଯାଇଥିଲେ । ଏଥର ଛୁଆମାନେ ପୂର୍ବପରି ଷଣ୍ଢ ପାଖରେ ଆସିଗଦା ହେଲେବି



Digitized by PPRACHIN, SOA

ପୁରୁଷ ଓ ସ୍ତ୍ରୀ ଲୋକମାନେ କେହି ଆଗେଇ ଆସିଲେ ନାହିଁ । ତାଙ୍କର ଏ ଦଳପ୍ରତି ସ୍ୱାଭାବିକ ଭୟ ଥିଲା । ଏ ଦଳ ସରକାର ଗଢ଼ିଲେ ଏମାନଙ୍କୁ ଭାରତୀୟ କରିଦେବେ । ଭାରତୀୟ ଆଇନ ଏମାନଙ୍କ ପାଇଁ ଲାଗୁହେବ । ଏକାଧିକ ସ୍ତ୍ରୀ ବାହା ହୋଇପାରିବେ ନାହିଁ କିମ୍ବା ଅତି ସହଜରେ ତିନିଥର ତଲାକ ଶବ୍ଦ ଉଚ୍ଚାରଣ କରିଦେଇ ବିବାହିତା ପତ୍ନୀକୁ ଛାଡ଼ପତ୍ର ଦେଇ ପାରିବେ ନାହିଁ । ସ୍ତ୍ରୀଲୋକମାନେ ଅନ୍ତତଃ ଭରସା ପାଇବେ । ଜଣେ ଖୁବ୍ କୁହାଳିଆକର୍ମୀ ଏଥର ଷଣ୍ଢ ପିଠିରେ ତିନିଥର ଠୋସ୍ ଠୋସ୍ ଶବ୍ଦର ଆଘାତ କରି ଜୋରଦାର ଭାଷଣଟିଏ ଦେବାକୁ ଲାଗିଲେ । ଭାଇ ଭଉଣୀମାନେ, ଯାହା ପ୍ରଚାରିତ ହୋଇଛି ଆମେ ତୁମ ସଂପ୍ରଦାୟର ବିରୋଧୀ ତାହା ଠିକ୍ କଥା ନୁହେଁ । ଆମେ କେବଳ କହୁଚୁ ଆମେ ସମସ୍ତେ ଏଇ ଭାରତରେ ଜନ୍ମ ହୋଇ ଏହାରି ପାଣିପବନରେ ବଢ଼ିଛେ । ତେଣୁ ଏଇ ମାତୃଭୂମି ଭାରତକୁ ଭଲ ପାଇବା- ଭାରତୀୟ ହୋଇ ଯିବା । ଭାରତରେ ହିନ୍ଦୁ ଓ ମୁସଲମାନ ଗୋଷ୍ଠୀ ପାଇଁ ଦୁଇପ୍ରକାର ଆଇନ ରହିବନି । ଯେଉଁ ଆଇନରେ ଆପଣଙ୍କ ଗୋଷ୍ଠୀର ଗରିବ ଜନତା ଓ ଅସହାୟ ନାରୀ ମାନଙ୍କର କଲ୍ୟାଣ ହେବ ତାହାହିଁ ଆମେ କାର୍ଯ୍ୟକାରୀ କରିବୁ । ଦେଖନ୍ତୁ ଏ ମଣ୍ଡଳ କଥାଟି ଦେଶକୁ ଧ୍ୱଂସ କରିବାକୁ ବସିଛି । ଏଇଠୁ ଜାଣ ମେଧାମେଧ ଯଜ୍ଞ ଆରମ୍ଭ ହୋଇଛି । ଅର୍ଥାତ୍ ମେଧାବୀ ଛାତ୍ର ବା ଛାତ୍ରୀର ଆଉ ଭବିଷ୍ୟତ ନାହିଁ । ଆଗେ ରାଜାରାଜୁଡ଼ାମାନେ ନିଜକୁ ସମ୍ରାଟ ବୋଲି ଘୋଷଣା କରିବାକୁ ଅଶ୍ୱମେଧ ଯଜ୍ଞ କରୁଥିଲେ । ଘୋଡ଼ାଟିଏ ବିଭିନ୍ନ ରାଜ୍ୟ ବୁଲିବୁଲି ଫେରୁଥିଲା । ଯେ ଘୋଡ଼ାକୁ ବାନ୍ଧି ନେଉଥିଲା ତା' ସହିତ ସମ୍ରାଟଙ୍କ ସୈନ୍ୟମାନେ ଯୁଦ୍ଧ କରି ସେ ରାଜ୍ୟକୁ ନିଜ ଶାସନାଧୀନ କରୁଥିଲେ । ଏବେତ ଗଣତନ୍ତ୍ର ଶାସନ ଚାଲିଛି । ଆଉ ଅଶ୍ୱମେଧ ଯଜ୍ଞ ହୋଇପାରିବନି । ତେଣୁ ମଣ୍ଡାର ରାଜା ଏବେ ମେଧାମେଧ ଯଜ୍ଞଟିଏ ଆରମ୍ଭ କଲେ । ଏଣିକି ଏ ଦେଶର ମେଧାବୀ ପିଲାମାନେ ଚାକିରୀ ନ ପାଇ ବିଦେଶ ପଳେଇବେ କିମ୍ବା ଘାସ କାଟିବେ । ବିଜ୍ଞାନର ପ୍ରଗତି ମେଧା ଦ୍ୱାରା ହେବ ନା ମଣ୍ଡଳ ଦ୍ୱାରା ? ନୂତନ ପରୀକ୍ଷା ଓ ପ୍ରଗତି ଲାଗି ରହିଛି । ଶିକ୍ଷା କ୍ଷେତ୍ରରେ ମଧ ମେଧାବୀ ପିଲାଙ୍କୁ ଖୋଜି ଅଣାଯିବା କଥା । କିନ୍ତୁ ମେଧାର ପ୍ରତିଯୋଗିତା ନହୋଇ ଏଣିକି ଜାତିଗତ କାରଣରୁ ଚାକିରୀ ମିଳିବ । ଆମେ ଦେଶରେ ଜାତିବିଭେଦ ଭୁଲିଭୁଲି ଆସୁଥିଲେ । ଗତ କେତେବର୍ଷ ଭିତରେ ଉଚ୍ଚ ଜାତି ଓ ନୀଚ ଜାତିମଧରେ ବିବାହର ହାର ବଢ଼ି ଚାଲିଥିଲା । ଏବେ ଜାତିପ୍ରଥାକୁ ତେଜେଇ ରଖିବା ଦ୍ୱାରା ଦେଶ ପ୍ରତିଯୋଗିତାକ୍ଷେତ୍ରରେ ତଳକୁ ତଳକୁ ଯିବ । ତା'ପରେ ଏଣିକି ଲୋକେ ନିଜ କୌଳିକ ବୃତ୍ତି ଭୁଲି ନୂଆ ବୃତ୍ତି ବରଣ କରିବେ । ବୃତ୍ତି ଦୃଷ୍ଟିରୁ ସିନା ଜାତି ବିଭାଗ ହେଉଥିଲା । ବୃତ୍ତି ନାହିଁ ତ ଜାତି ନାହିଁ । ଯଦି ସରକାର ଏପରି ପଛୁଆଜାତିପାଇଁ ଏତେ ବ୍ୟାକୁଳ ତେବେ ବର୍ଷରେ ଶହେ ଦୁଇଶହ ଚାକିରୀ ଦେଇ କଣ ସେମାନଙ୍କ ଅବସ୍ଥା ସୁଧାରି ଦେବେ। ବରଂ ଆର୍ଥିକ ବ୍ୟବସ୍ଥା କରି ଦିଅନ୍ତୁ। ସେମାନଙ୍କୁ ସେମାନଙ୍କ କୌଳିକବୃତ୍ତି ବଂଚେଇ ରଖିବାକୁ ଋଣ ଦିଅନ୍ତୁ। ସହରରେ ବୁଢ଼େଇ ପିଲାମାନଙ୍କ ପାଇଁ କାଠ କାରଖାନା ଖୋଲାଇ ଦିଅନ୍ତୁ । କମାର ପିଲା ପାଇଁ ଲୁହା



Digitized by PPRACHIN, SOA

ଯନ୍ତ୍ରପାତି ଓ କାରଖାନା ପାଇଁ ଋଣ ଯୋଗାଇ ଦିଅନ୍ତୁ । ବାରିକ ପିଲାପାଇଁ ସାଲୁନ୍ ଖୋଲି ଦିଅନ୍ତୁ । ଏକବାର ଆଧୁନିକ ଧରଣର ସାଲୁନ୍ । ସେହିପରି କେଉଟ ପିଲାପାଇଁ ଅଗ୍ରାଧିକାର ଭିତ୍ତିରେ ଟ୍ରଲର, ନାଇଲନ ଜାଲ ଯୋଗାଇ ଦିଅନ୍ତୁ । ଏସବୁ କ୍ଷେତ୍ରରେ ଉଚ୍ଚଜାତିର ପିଲାମାନେ ପ୍ରତିଯୋଗିତା କରିବାକୁ ଆସିବେନି । କିନ୍ତୁ ଶିକ୍ଷା, ସ୍ୱାସ୍ଥ୍ୟ ଓ ବୈଷୟିକ କ୍ଷେତ୍ରରୁ ମେଧାବୀପିଲାଙ୍କୁ ତଡ଼ିଦେଲେ ଦେଶ କାହାକୁ ନେଇ ଗର୍ବ କରିବ ? ଯେଉଁ ଜାତିର ହୁଅନ୍ତୁ ନା କାହିଁକି ମେଧା ହିଁ ହେବ ଚାକିରୀ ପ୍ରାପ୍ତିର ମାନଦଣ୍ଡ । ଆମଦଳ ତାହାହିଁ କହୁଛି ଓ ତା ସହିତ ଅର୍ଥନୈତିକ ଦୁର୍ବଳ ଶ୍ରେଣୀ ପାଇଁ ସ୍ଥାନ ସଂରକ୍ଷଣ ଦାବୀ କରୁଛି । ଏଥିରେ ସରକାର ଅରାଜି କାହିଁକି ? ଚକବାଲାଏ ବିଚଳିତ କାହିଁକି ? ଅର୍ଥନୀତି ଦୃଷ୍ଟିରୁ ଯେଉଁ ଶ୍ରେଣୀ ଦୁର୍ବଳ ତାଙ୍କ ପାଇଁ ସ୍ଥାନ ସଂରକ୍ଷଣ କଥା ଆମେ କହୁଚୁ । ଦରିଦ୍ର ଦୁଃସ୍ଥ ବ୍ରାହ୍ମଣ, କରଣ, ଖଣ୍ଡାୟତ ଓ କ୍ଷତ୍ରିୟ ପିଲା କି ପାପ କରିଛନ୍ତି ଯେ ସେମାନେ ପ୍ରତିଯୋଗିତାରେ ଆଗରେ ଥାଇ ବି ଆଗ ଚାକିରୀ ପାଇବେନି । ଆମ ସରକାର ଆସିଲେ ମଣ୍ଡଳ ଓ ମନ୍ଦିର ସମସ୍ୟାର ଏକ ସନ୍ତୋଷଜନକ ସମାଧାନ ହୋଇଯିବ । ଆମେ ରାମ ଓ ରୋଟି କଥା କହୁଚୁ । ଏହାର ଆକ୍ଷରିକ ଅର୍ଥ ହେଲା ସୁଶାସନ ଓ ଅଭାବମୋଚନ । ଆମେ ଆପଣଙ୍କ ସମ୍ପ୍ରଦାୟର ଅଭାବ ଗ୍ରସ୍ତ ଲୋକମାନଙ୍କ ଦୁଃଖ ନିଶ୍ଚୟ ଦୂର କରିବୁ- ଆମ ବିଚାରରେ ସବୁ ଗରିବଲୋକ ଏକ ବର୍ଗର । ସେମାନେ ଯେଉଁ ସଂପ୍ରଦାୟର ହୁଅନ୍ତୁନା କାହିଁକି ? ଆମର ପୋଖତ ନେତା ଅଛନ୍ତି । ସେମାନେ ଠିକ୍ ବାଟରେ ଦେଶ ଚଳେଇବେ । ପାଗଳାମି କରି ଜିଦିରେ ଅଟଳ ରହି ଦେଶରେ ନିଆଁ ଜାଳିବାକୁ ଦେବେନି । ହାତ ବାଲାଏ କହୁଚନ୍ତି ଆମେ କୁଆଡ଼େ ମନ୍ଦିର ଘଟଣାରେ ଦେଶକୁ ଭାଂଗି ଦେଉଛୁ । ଏକଥା ପ୍ରଚାର ମାତ୍ର । ରାମମନ୍ଦିର ଗଢ଼ା ନ ହେଲେ ରାମରାଜ୍ୟ କିପରି ଆସିବ ? ରାମ ରାଜ୍ୟ କଥା ଗାନ୍ଧି କହୁ ନଥିଲେ କି ? ସେ ବୁଝିଥିଲେ ଯେ ତାଙ୍କ କଳ୍ପନାରେ ରାମରାଜ୍ୟ କଂଗ୍ରେସବାଲାଏ ଆଉ ଗଢ଼ି ପାରିବେନି । ତେଣୁ କଂଗ୍ରେସକୁ ଭାଂଗିଦେବାକୁ ଶେଷ ବେଳକୁ କହିଲେ । ତାଙ୍କ କଥା କଣ ଏମାନେ ଶୁଣିଲେ ? ଅନେକ ଅନେକ ବର୍ଷଧରି ଏମାନେ କ୍ଷମତାରେ ରହିଲେଣି । ଦେଶ କେଉଁଠୁ ଆସି କେଉଁଠି ପହଞ୍ଚିଲାଣି ବୁଝୁଥିବେ । ଆମ ଅବସ୍ଥା ଏପରି ଯେ ଆମେ ସୁନା ବଂଧା ପକେଇ ବିଦେଶପୁଞ୍ଜି ଆଣିଲେ ଆମ ଯୋଜନା ଚଳିବ । ସୁନା ବଂଧା ପକେଇଲୁ । କାଲି ଦେଶକୁ ବି ବଂଧ ପକେଇଦେବୁ । ଏ ଅବସ୍ଥାକୁ ସୁଧାରିବାକୁ ହେଲେ ନୂଆ ସରକାର ଦରକାର । ଆମ ଦଳରେ ତିନିତିନିଜଣ ଜାତୀୟ ନେତା ଅଛନ୍ତି । ଏକୁଆରେକ ବଳୀୟାର । ଆମକୁ ଥରେ ସୁଯୋଗ ଦିଅନ୍ତୁ ।

ଆଶ୍ଚର୍ଯ୍ୟକଥା ଏଥର ମଧ ଷଣ୍ଢଟି ମୁଣ୍ଡ ହଲାଇ ବକ୍ତାଙ୍କୁ ସମର୍ଥନ ଜଣାଇଲା । ବକ୍ତା ସକାଳୁ ସକାଳୁ ସଭା କରୁଥିଲେ- ଚା' ପାଣି ଖାଇ ନଥିଲେ- ତେଣୁ ହାଲିଆ ହୋଇ ପଡ଼ିଲେ । ବକ୍ତୃତା ସାରିଦେବାକୁ ଷଣ୍ଢ ଆଡକୁ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲେ- ଆମ ଚିହ୍ନ ପଦ୍ମଫୁଲ । ଆମେ ଆଜି ଷଣ୍ଢକୁ ତୁମର ପଦ୍ମପତ୍ର ଖାଇବାକୁ ଦେଇଛୁ । ବହୁତ



Digitized by PPRACHIN, SOA

ଖୋଜାଖୋଜି କରି ପଦ୍ମଫୁଲ ଆଣିଛୁ । ନିଅନ୍ତୁ ଏହାକୁ ସାଇତି ରଖିବେ ଆଉ ଆମ ପ୍ରାର୍ଥୀଙ୍କୁ ମନେ ରଖିବେ । ଏତେ କଥା କହିବାପରେ ପୁରୁଷଲୋକମାନେ ଘର ଭିତରୁ କ୍ରମେ ଆସିବାକୁ ଆରମ୍ଭ କଲେ ଓ ରସିକତା କରି ଫୁଲଟିଏ ଟିଏ ଧରି ଫେରିଗଲେ । ସ୍ତ୍ରୀ ଲୋକମାନଙ୍କୁ ସେମାନେ ଅନେକଦିନୁ ଫୁଲଟିଏ ଉପହାର ଦେଇ ନଥିଲେ । ସକାଳୁ ସକାଳୁ ଭଲ ଜିନିଷଟିଏ ମିଳିଗଲା ବୋଲି ସେମାନେ ଭାରୀ ଖୁସି ହେଉଥିଲେ ।

ତା' ପର ଦିନ ଅର୍ଥାତ୍ ଭୋଟଗ୍ରହଣ ଦିନ ଦେଖାଗଲା ଷଣ୍ଢଟି ରାସ୍ତାକଡ଼ର ସେଇ ବଡ଼ ବରଗଛ ମୂଳେ ମରିପଡ଼ିଛି ଓ ତା ମୁହଁରୁ ବୋହିଯାଇଥିବା ରକ୍ତଧାରଟିଏ ରାସ୍ତାକଡ଼ରେ ମନ୍ଦାଟିଏ ସୃଷ୍ଟି କରି ଜମାଟବାନ୍ଧି ଯାଇଛି । ଦୁଇ ସଂପ୍ରଦାୟ ମଧରେ ଦଙ୍ଗା ଲାଗିଯିବା ଭୟରେ ସେତେବେଳକୁ ଫୌଜମାନେ ସହରକୁ ପ୍ରାୟ ଜଗିରହିସାରିଥିଲେ । ଷଣ୍ଢର ଲାସ୍ ପୋଷ୍ଟମାଟମ୍ ହେଉ ବୋଲି ରାଜନୈତିକଦଳମାନେ ଦାବୀ କରୁଥିବା ବେଳେ ମ୍ୟୁନିସିପାଲଟି କର୍ମଚାରୀମାନେ ଷଣ୍ଢକୁ କୌଣସି ନିରାପଦସ୍ଥାନରେ ପୋତି ଦେବାପାଇଁ ଆୟୋଜନ କରୁଥିଲେ । ସକାଳୁ ସକାଳୁ ପୂର୍ବାକାଶ ରକ୍ତରଂଜିତ ହୋଇ ଉଠିଥିଲା । ସୂର୍ଯ୍ୟ ଉଇଁବାରେ ଆକାଶ ଓ ଦିଗ୍‌ବଳୟ ଏତେ ଲାଲ ହେବା ଆଗରୁ କେବେ ଦେଖାଯାଇନଥିଲା ।





Digitized by PPRACHIN, SOA

# ଚନ୍ଦ୍ର ଉଦିଆ : ଚନ୍ଦ୍ରା

ଦିଆନପୁରର ଚନ୍ଦ୍ର ଉଦିଆ ଚନ୍ଦ୍ରାକୁ କେବେ ଦେଖିନାହିଁ । ବନ୍ଧୁ ଲୋକଙ୍କ ମୁହଁରୁ ତା କଥା ଶୁଣିଛି । କିନ୍ତୁ ଯେଉଁଦିନ ମୋ ବନ୍ଧୁଙ୍କ ଠାରୁ ତା କରୁଣ ଜୀବନର ଇତିକଥା ଶୁଣିଲି ଆଉ ସ୍ଥିର ହୋଇ ରହିପାରିଲିନି । ବଂଧୁ ନିଜେ ତା ପ୍ରତି ଏତେଦରଦ ରଖିଥିଲେ ଯେ ତାକୁ ଭାଷାରେ ରୂପ ଦେବାକୁ ନିଜର ଅକ୍ଷମତା ତାଙ୍କ ଆଗରେ ସାକାର ହୋଇ ଠିଆ ହୋଇଯାଇଥିଲା । ଶବ୍ଦ ହାର ମାନୁଥିଲା । ଚନ୍ଦ୍ରାର ମୁହଁ ତାଙ୍କ ଗଳ୍ପ ଖାତାରେ ଫୁଟି ଉଠୁଥିଲା । ଲେଖନୀ ହୋଇଯାଉଥିଲା ସ୍ଥିର ଓ ସ୍ଥାଣୁ ।ଏତେ ଗପ ଲେଖିଥିବା ବନ୍ଧୁ ଅନୁଭବ କରୁଥିଲେ ସେ ହାରି ଯାଉଛନ୍ତି । ତାକୁ ଶବ୍ଦରେ ଧରି ରଖିହେବନାହିଁ ହୁଏତ । ଚନ୍ଦ୍ର ଉଦିଆ ପରି ତାର ସୁନ୍ଦର ଗୌରବର୍ଣ୍ଣ ମୁହଁ ଓ ଚକ୍ଷୁକୁ ପ୍ରାଚୀନ ଯୁଗର କବିଟିଏ ହୁଏତ ବର୍ଣ୍ଣିପାରେ । ଆଧୁନିକ ଯୁଗର କବି ସେଥିପାଇଁ ଅକ୍ଷମ । ବନ୍ଧୁ ଲେଖନୀ ରଖିଦେଇ ପାନ ଭାଙ୍ଗନ୍ତି । ପାନ ସରଞ୍ଜାମ ସବୁବେଳେ ପାଖେ ପାଖେ ପ୍ରସ୍ତୁତ ଥାଏ । ଏତେ ପାନ ଖାଇବା ଅଭ୍ୟାସ ଛାତ୍ର ଜୀବନରୁ । ଏବେ ଦାନ୍ତଗୁଡ଼ିକ ଅଧାଅଧି ଉପୁଡ଼ି ଗଲାଣି । କ୍ରମେ ପାକୁଆ ହୋଇ ଉଠୁଛି ପାଟି । ସାତ ଆଠଟି ଦାନ୍ତ ଇତସ୍ତତ ଲାଗିରହିଛି । ବନ୍ଧୁ ତେଣୁ ପାନଦାନି ଧରି ବୁଢ଼ାଙ୍କ ପରି ପାନଗୁଆକୁ ଛୋଟ ଛୋଟ ଗୁଣ୍ଡ କରିବାରେ ଲାଗି ପଡ଼ୁଛନ୍ତି । ହାତ ତିଆରି ଗୁଣ୍ଡିମିଶା ପାନ ଖାଇବାରେ ତାଙ୍କର ଅଦ୍ଭୁତ ସଉକ ।

ପାନ ଖାଉ ଖାଉ ବଂଧୁ ଚନ୍ଦ୍ରା କଥା କହୁଥିଲେ । ବ୍ରାହ୍ମଣ ଘରର କୁଳବଧୂ । ଗାଁର ସବୁଠାରୁ ଉଜ୍ଜଳ ବର୍ଣ୍ଣା ସୁନ୍ଦରୀ ନାରୀ । କେଉଁଠି ଜନ୍ମ ହୋଇଥିଲା ସୁନାଖଡ଼ିକା ଏ ଝିଅ ଖଣ୍ଡିକ, କେଉଁ ଦରିଦ୍ର ବାପା ମାଆର ଚାଳଘରେ ସେଦିନ ପୁନେଇଁ ଚାନ୍ଦ ଉଇଁଥିଲା କେଜାଣି । କିନ୍ତୁ ଦିଆନପୁରକୁ ବାହା ହୋଇ ଆସିଲାଦିନ ଲୋକଙ୍କ ଆଖି ଖୋସି ହୋଇଯାଇଥିଲା । ସମସ୍ତେ ତା'ରି ସୌନ୍ଦର୍ଯ୍ୟ କଥା ହିଁ ସେଦିନ ଆଲୋଚନା କରୁଥିଲେ । ଖୁନ୍ଦିଖାନ୍ଦି ହୋଇ ଦିହ, ସତେଯେପରି ସେ ମହକ ବିସ୍ତାର କରି ଚଉଦିଗକୁ ଆମୋଦିତ କରି ଦେଉଚି । ହସି ଦେଲେ ଧଳା ବଗପର ପରି ଦାନ୍ତ ଦି'ଧାଡ଼ି ଦେଖା ଯାଉଚି ସମାନ ଓ ସାବଲୀଳ । ଦେହରେ ପ୍ରାୟ କୌଣସି ସୁନାଗହଣା ନାହିଁ । ତାର ମଧ୍ୟ ଆବଶ୍ୟକତା ନାହିଁ । ତାର ନିଟୋଳ ହାତ ସେଇ ପାଣି କାଚରେ ବି ଦିଶୁଚି ଅନବଦ୍ୟ । ବେକରେ ଇମିଟେସନର ହାରଟି ସୁନାର ଭ୍ରମ ସୃଷ୍ଟି କରୁଚି । ସେମିତି ମଧ୍ୟ



Digitized by PPRACHIN, SOA

ହାତରେ ବ୍ରଞ୍ଜର ଚୁଡ଼ି ଦି' ଦି' ପଟ । ସବୁ ନୂଆବୋହୂଙ୍କୁ ଦେଖି ଆଗ ଆଗ ଖୁଣି ବସୁଥିବା ଗାଁର ସେଇ ଡ଼ବଡ଼ବୀ ସାବୀ ଅପା ବି ବୋହୂଟିର ପ୍ରଶଂସାରେ ମଜ୍ଜିଯାଇଚି । ଏ ତ ଅପୂର୍ବ କଥା । ସମସ୍ତଙ୍କ ମୁହଁରେ ସେଇ ଗୋଟିଏ କଥା ଏ ଅପଦାର୍ଥରୁଗ୍‌ଣ ଟୋକାପାଇଁ କେଉଁଠି ବହିବିଧାତା ରଖିଥିଲେ ଏପରି ଏକ ସୁନ୍ଦର ବୋହୂ- ଯାହାକୁ ଦେଖିଲେ ପେଟ ପୂରି ଯାଉଚି । କଥା ହେଲେ ତା ପାଟିରୁ ଅମୃତ ଝରୁଚି ଯେପରି । ପୁଣି ତାର ଲାଜ ଲାଜ ଚାହାଣୀ ଏ ଗାଁ ଟୋକାଙ୍କୁ ଉଚ୍ଚାଟ କରିବାକୁ ନୁହେଁ ତ !

ତା ବର ସତରେ ଥିଲା ଅପଦାର୍ଥଟିଏ । କେବଳ ଯାହା ଥିଲା କିଛି ପୈତୃକ ସଂପତ୍ତିର ଉତ୍ତରାଧିକାରୀ; ଧାନ ବିରି ମୁଗରେ ବର୍ଷେ ଚଳିଯିବାକୁ ଯଥେଷ୍ଟ । କିଛି ଉଦ୍‌ବୃତ୍ତ ବି ହୋଇପାରେ ମୌସୁମୀର ପାଗ ଯୋଗ ନେଇ । ଘରେ ହଳେ ବଳଦ ଓ ଗାଈଟିଏ । ଚାଷବାସ ପାଇଁ ବଳଦ ଆଉ ଦୁଧ ପାଇଁ ଗାଈ । ଘରେ ବୁଢ଼ୀମାଆ ଆଉ ବୋଉ । ବାଡ଼ିରେ ସଜନା, ଅମୃତଭଣ୍ଡା ଓ ବେଲଗଛ । କଦଳୀ ଗଛମାନଙ୍କରେ ପ୍ରାୟ ସବୁବେଳେ କାନ୍ଦିଟିଏ ଲାଗି ରହିଥାଏ । ହଳିଆ ପାଗଯୋଗ ଦେଖି ସାଗ, ଭେଣ୍ଡି, ବାଡ଼କଡ଼ରେ ଜହ୍ନି କାକୁଡ଼ି ଲଗାଇଦିଏ । ଚାଳରେ ଚାଳ ଭର୍ତ୍ତି ହୋଇ ମାଡ଼ିଥାଏ କଖାରୁ ଲଟା ଯେ ସେଥିରେ ଫୁଟିଥିବା ଫୁଲଗୁଡ଼ିକ ଅପୂର୍ବ ଦିଶେ । କେଉଁ ପୁରୁଷରୁ ଏ ଗାଁ ବ୍ରାହ୍ମଣମାନଙ୍କର ହାତ ଚାଷ, ହଳିଆଟିଏ ପ୍ରାୟ ସବୁ ବ୍ରାହ୍ମଣଙ୍କ ଘରେ - ସେମାନେ ହୋଇପାରନ୍ତି ଛୁଆଁ ଅଛୁଆଁ ଉଭୟ ଜାତିର । ସେମାନେ ପ୍ରାୟ ଭୂମିହୀନ । ତେଣୁ ଏଇ ବ୍ରାହ୍ମଣମାନଙ୍କ ଜମି ଭାଗବଖରା କରି ଚଳନ୍ତି । ପୁଣି କାହାଘରେ ହଳିଆ ସବୁଦିନିଆ ନ ହୋଇ ଦିନେ ଛଡ଼ା ଦିନେ କାମ କରେ । ଅନ୍ୟଦିନଟି ନିଜ ଭାଗବଖରା ଆଣିଥିବା ଜମିରେ ଚାଷ କରେ । ଅମଳରୁ ଜମିମାଲିକକୁ ଅଧେ ଦେବାକୁ ହୁଏ । ଅନାମ ତିହାଡ଼ୀଙ୍କ ଘର ହଳିଆଟି ଅଛୁଆଁ ଜାତିର ହେଲେବି କଥାବାର୍ତ୍ତାରେ ଖୁବ୍ ସଂଯତ ଓ ଶାଳୀନ । ତାର ଆଚରଣରେ ସାଧୁତା ଓ ବିଶିଷ୍ଟତା ବାରି ହୋଇପଡ଼େ । ଏ ପରିବାରକୁ ସେ ନିଜର ବୋଲି ଭାବେ । କାମରେ ହେଳାନାହିଁ । ଠିକ୍ ପାଗଯୋଗ ଦେଖି ହଳ କରିବା ଠାରୁ ବିହନ ବୁଣା, ବେଉଷଣ ଓ ବାଟିଆ ଖେଳାଯାଏ ସବୁ କାମ ତାର ଆଗୁଆ । କଥା ଅଛି ଚାଷ ତରତର ବଣିଜ ମଠ- ସେ ଏଇଥିରେ ବିଶ୍ୱାସୀ । ଦିନେ ତିହାଡ଼ୀଙ୍କ ଜମିରେ ତାଙ୍କ ବଳଦ ନେଇ ଚାଷ ତ ଆଉ ଦିନେ ସେ ଭାଗ ଧରିଥିବା ଜମିରେ ହଳବଳଦ ନେଇ ଚାଷ । ସେ ବରାବର ଲାଗିଥାଏ । ତା କଳା ବଳିଷ୍ଟ ଦେହରୁ ଚିକ୍କଣ ନିଗିଡ଼ି ପଡ଼େ ଝାଳ ସହିତ । ଖାଇବାରେ ତାର ଏତେ ବେଶୀ ବାଛବିଚାର ନ ଥାଏ । ସାଗ, ପଖାଳ, ବଡ଼ିଚୁରା ହେଲେ ଯଥେଷ୍ଟ । ଅନାମ ବୋଉ ସେସବୁ ଯୋଗାଇ ଦେବାରେ ହେଳା କରନ୍ତି ନାହିଁ ।

ଗାଁକୁ ସେ ବର୍ଷ ବର୍ଷାଦିନେ କଲେରା ଗ୍ରାସ କଲା । ମରିଗଲେ ପ୍ରାୟ ଅଧାଅଧି ଲୋକ । ସେ ସମୟରେ ଚିକିତ୍ସାର କିଛି ସୁଯୋଗ ନ ଥିଲା । ଡାକ୍ତରଖାନା ନ ଥିଲା କି



Digitized by PPRACHIN, SOA

ଡାକ୍ତର ନଥିଲେ । କବିରାଜୀ ଚିକିତ୍ସା ଉପରେ ନିର୍ଭର କରୁଥିବା ଏ ଅସହାୟ ଗାଁ ଲୋକମାନେ ସଂକ୍ରାମକ ରୋଗର ଆକ୍ରମଣରେ ଛିନ୍ନଛତ୍ର ହୋଇଗଲେ । ସ୍ୱାଧୀନତା ପରବର୍ତ୍ତୀ ସମୟର କଥା ।

ଦିଆନପୁର ଗାଁର ଅନେକଲୋକ ମରି ଶୋଇଲେ । ଶ୍ମଶାନରେ ଲାଗି ରହିଲା ଜୁଇର ନିଆଁ ଓ ଧୂଆଁ । ସେଇଥିରେ ଅନାମର ମୋଉ ଓ ବୁଢ଼ୀ ମା ମଧ୍ୟ ଚାଲିଗଲେ । ଅନାମ ନିଜେ ସେମାନଙ୍କୁ ଶ୍ମଶାନରେ ପୋଡ଼ି ଘରକୁ ଫେରି ହଇଜାରେ ଆକ୍ରାନ୍ତ ହେଲା । ତା ପରଦିନ ସେବି ଶୋଇଲା ମଶାଣିରେ । ହଳିଆ ବିଚରା ଗ୍ରାମ ବ୍ରାହ୍ମଣଙ୍କୁ ନେହୁରା ହୋଇ ଡକାଡକି କରି ଘସି ଓ କାଠ ଯୋଗାଡ଼ କରି କୌଣସି ମତେ ଦାହ କାମ ଶେଷ କଲା । ଚନ୍ଦ୍ରା ଆଖିରୁ ଲୁହ ବୋହି ବୋହି ଆଉ ବୋଧେ ଲୁହ ନଥାଏ । ଆଖି ଦିଶୁଥାଏ କାଚ ଆଖି ପରି ଧଳା, ଶେତା ଓ ସ୍ଥିର । ହାତର ଅବଶିଷ୍ଟ ପାଣିକାଚ କେତେପଟ ସେଦିନ ବାଡ଼େଇ ଭାଙ୍ଗି ଦିଆ ଯାଇଥାଏ, ସୀମନ୍ତରୁ ନିଭେଇ ଦିଆଯାଇଥାଏ ସିନ୍ଦୂର ଦାଗ । ନିଃସନ୍ତାନ ଚନ୍ଦ୍ରା ମାଟିରେ ଶେଉଳମାଛ କରି ଛଟପଟ ହେଉଥାଏ । ଗୋଡ଼ ବାଡ଼ଉଥାଏ, ହାତ ବାଡ଼ଉ ଥାଏ । ତା'ପରେ ପଡ଼ୁଥାଏ ସ୍ଥିର ହୋଇ, ସତେ ଯେପରି ପିଣ୍ଡରେ ପ୍ରାଣ ନାହିଁ ।

କିନ୍ତୁ ପ୍ରାଣ ଛାଡ଼ିଗଲାନିତ ! ତାକୁ ବଞ୍ଚିବାକୁ ହେଲା । ନିଭୃତରେ ସେ ହଳିଆ ହରିଆ ଠାରୁ ପାଇଲା ରମଣ ସୁଖ । ପେଟରେ ରହିଲା ଭ୍ରୂଣ । ନାନା ପ୍ରକାର ଟୁଣ୍ଡକା ଟୁଣ୍ଡୁକିରେ ଭ୍ରୂଣ ନଷ୍ଟ ପାଇଁ ହରିଆ ଗୋପନରେ ଉଦ୍ୟମ କଲା । ସଫଳ ବି ହେଲା । ଗାଁ ସ୍ତ୍ରୀଲୋକେ କିଛି ଗୋଟାଏ ଅନୁମାନ କରି ଫୁସ୍‌ଫାସ୍ ହେଲାବେଳକୁ ସବୁ ସଫା ଓ ସୁନ୍ଦର । ସବୁ ସ୍ୱାଭାବିକ । ଚନ୍ଦ୍ରା ମୁହଁରେ ପୁଣି ହସ ଫୁଟି ଉଠୁଥିବା କେହିକେହି ଲକ୍ଷ୍ୟ କରୁଥିଲେ । ତାକୁ କେବଳ ଥରେ ଦେଖିବା ପାଇଁ ତା ଘର ଆଗଛମା ଦେଇ ଯାତାୟତ କରୁଥିବା ଲୋକମାନେ ପୁଣି ସେମାନଙ୍କର ଆଖିକୁ ଅବିଶ୍ୱାସ କଲେ । ଏତେ ରୂପର ଶୋଭା ବିସ୍ତାର କରି ଏକାକିନୀ ନାରୀଟିଏ କିପରି ରହିପାରେ ? ନିଶ୍ଚୟ କାହା ସାଙ୍ଗରେ ଥିବ । ନିଶୁତିର ଅନ୍ଧକାରରେ କେହି କେହି ଛକି ଛକି ଆସିଲେ ଦେହସାରା କଳାଚାଦର ଘୋଡ଼ାଇ ହୋଇ । କେହି କବାଟ ଖଡ଼ ଖଡ଼ କଲେ । କିନ୍ତୁ ଭିତରୁ ଆସୁଥିଲା ଯେଉଁ ଉତ୍ତର ସେଥିରୁ ସେମାନେ ଅତର୍ଚ୍ଛା ହୋଇ ନିଜ ବାଟ ଦେଖୁଥିଲେ । ନା ଯୌବନ ନା ଅର୍ଥ କହାପ୍ରତି ଥିଲା ତାର ପ୍ରଲୋଭନ ? ତା ଘର ଦାଣ୍ଡ କବାଟ ଓ ବାଡ଼ି କବାଟ ସବୁବେଳେ ପ୍ରାୟ ବନ୍ଦ ରହୁଥିଲା ଓ ତାରି ଭିତରେ ଅଗଣାରେ, ବାରଣ୍ଡାରେ, ଘରେ ବୁଲୁଥିଲା ଧଳା ଶାଢ଼ୀ ପିନ୍ଧା ପରୀଟିଏ । ଅଭିଶପ୍ତ କିନ୍ନରୀଟିଏ -ଚନ୍ଦ୍ରା । ବଢ଼ିଲା ଦେହର ଭୋକକୁ ଦମନ କରି ନ ପାରି ଚନ୍ଦ୍ରା ପୁଣି ହେଲା ଗର୍ଭବତୀ । ଏଥର କିନ୍ତୁ ତାର ଏକା ଜିଦି, ସେ ହରିଆର କୌଣସି ଟୁଣ୍ଡକାଟୁଣ୍ଡୁକି ଖାଇବ ନାହିଁ । ପାପ ଗର୍ଭ ନଷ୍ଟ କରିବ



Digitized by PPRACHIN, SOA

ନାହିଁ । ସେ ସଂସାରକୁ ଆଣିବ ସନ୍ତାନଟିଏ, ଯାହା ପଛେ ହେଉ ତା ଭବିଷ୍ୟତ । ହରିଆ ତାକୁ ବହୁତ ବୁଝେଇଲା. ଗାଁ ଲୋକ ସର୍ବନାଶ କରି ଦେବେ- ସେମାନେ ପାଚିଲା ଉହା ପରି ତାତି ରହିଛନ୍ତି । ବାଛନ୍ଦ କରିବେ, ନିଆଁପାଣି ଅଟକେଇବେ, ତାକୁ ବି । ଚନ୍ଦ୍ରା ଚଳିବ କିପରି, ବଞ୍ଚିବ କିପରି ? ବାଡ଼ି ପୋଖରୀରେ ସିନା ଗାଧୋଇ ପଡ଼ିବ । କେହି ଦେଖିବେ ନାହିଁ । କିନ୍ତୁ ପିଇବା ପାଣିତ ଆଣିବ ଠାକୁର କୂଅରୁ । ସେମାନେ କୂଅପାଣି ବ୍ୟବହାର କରିବାକୁ ଦେବେନି । ଶେଷକୁ ହରିଆ ଉପରେ ଲଗାଇବେ ଅଙ୍କୁଶ । ତୁ ସେ ବଳାତ୍ ମାଇକିନିଆ ଜମି ଚାଷ କରିବୁନି; ମୋଟ ଉପରେ ତା ଘର ଦୁଆର ବନ୍ଧ ମାଡ଼ିବୁନି । ଅସହାୟ ହରିଜନଟି ଗାଁ ଲୋକଙ୍କ ପାଖରେ ଯେତେ ଜଡ଼ସଡ଼ ହୋଇ ହାତ ଯୋଡ଼ି ପାଟିରେ କୁଟାଜାକି ପଡ଼ିରହିଲେ ବି ସେମାନେ କ୍ଷମା ଦେବେନି । ପାପ କରିଚି- ଜନାକାରୀ, ଶିଶୁହତ୍ୟା । ନାନା କାଳ୍ପନିକ ଆରୋପରେ ତା ପରିବାରକୁ ଉଛନ୍ନ କରିଦେବେ । ହୁଏତ ଗାଁ ଛାଡ଼ି ଚାଲିଯିବାକୁ ସେ ବାଧ୍ୟ ହୋଇପାରେ । ସେତେବେଳେ କିପରି ଚଳିବ ଚନ୍ଦ୍ରା !!

"କାହିଁକି ମୁଁ ପିଲାକୁ ପେଟରେ ଧରିଚି ଯେତେବେଳେ ତୁମ ସାଙ୍ଗେସାଙ୍ଗେ ବି ଗାଁ ଛାଡ଼ି ଚାଲିଯିବି । ହରିଆ ଚନ୍ଦ୍ରାର ଏ ଅଭୂତପୂର୍ବ ଉତ୍ତରରେ ଛାନିଆ ହୋଇ ଯାଉଥିଲା । ଘଡ଼ିଏ ପଲକହୀନ ଭାବେ ସେ ଚନ୍ଦ୍ରାକୁ ଚାହିଁ ରହିଲା; ତା ମୁହଁରେ ସଂଶୟହୀନ ନିଃଶଙ୍କ ହସରେଖାଟିଏ ଫୁଟି ଉଠୁଥିବା ପରି ତାକୁ ଲାଗିଲା । ଏତେ ସାହସ ଥାଇପାରେ ମାଇପି ଲୋକଟିର ମନରେ ବୋଲି ସେ ବିଶ୍ୱାସ କରି ପାରୁ ନଥିଲା । ହରିଆ ହଡବଡ଼େଇ ଗଲା ।

ମୋର ନିଜ ପିଲାଛୁଆର ସଂସାର । ଛୁଆଗୁଡ଼ାକ ଗଡ଼ିଯିବେ । ଭୂଆଷୁଣୀ ହୁଏତ ସବୁ ସହିନେବ । କିନ୍ତୁ ତୁମେ କ'ଣ ସେ ପରିବେଶରେ ଚଳିପାରିବ ? ମୋ ଚାଳିଆଘରକୁ ବି ସେମାନେ କ୍ରୋଧରେ ପୋଡ଼ି ଦେଇପାରନ୍ତି । ତୁମ ଘର ସିନା ପୋଡ଼ି ଦେଇପାରିବେନି; କାରଣ ଚାଳକୁ ଚାଳ ଲାଗିଚି । କିନ୍ତୁ ମୋର ଘରତ ଗାଁ ମୁଣ୍ଡରେ - ଏକଣା ଘର । ମୋ ତିନିଟି ପିଲା କେଉଁଠି ମୁଣ୍ଡ ଗୁଞ୍ଜିବେ ? ମୋ କଥା ମାନ । ସେ ଔଷଧ ଖାଇଦିଅ ଆରଥର ପରି । କେହି କିଛି ଜାଣିବେନି ।

ଚନ୍ଦ୍ରା କିନ୍ତୁ ହୋଇଉଠିଲା ବଜ୍ରପରି କଠିନ ଆଉ ଆକାଶ ପରି ସ୍ୱଚ୍ଛ । ଏତେ ବଡ଼ ପୃଥିବୀରେ ତାକୁ ମୁଣ୍ଡ ଗୁଞ୍ଜିବାକୁ କ'ଣ ଜାଗା ମିଳିବନି ? ତାକୁ ଯେଉଁ ନିୟତି ଏ ପରିସ୍ଥିତିରେ ଏ ଘରେ ଛଟପଟ କରୁଛି ସେ ନିଶ୍ଚୟ ତା ସନ୍ତାନର ହେପାଜତ କରିବ । ନା ସେ କେବେବି ହରିଆ କଥାରେ ଏଥର ଔଷଧ ଖାଇବନି । ଯାଉ ଗଡ଼ି ମାସ ପରେ ମାସ । ଯାହା ଯେତେବେଳେ ଆସିବ, ଦେଖାଯିବ । ସେ ସାମ୍ନା କରିବ । ତାର ଅଦ୍ଭୁତ ସାହସ ହରିଆକୁ ବି ଚମକେଇ ଦେଇଥିଲା । ତା ମନ ଭିତରେ ବି ଦୃଢ଼ତାର ବନ୍ଧଟିଏ ଆପେ



Digitized by PPRACHIN, SOA

ଆପେ ବାନ୍ଧି ହୋଇ ଯାଉଥିଲା । ପାଣି ସୁଅର ତୋଡ଼କୁ ସେ ବାନ୍ଧି ସମାଳି ଦେବ । ନାହିଁ ତ ଯଦି ବନ୍ଧ ଭାଙ୍ଗିବ ସେମାନେ ସମସ୍ତେ ଭାସି ଯିବେ- ଯାହା ତେଣିକି ଭାଗ୍ୟରେ ଥିବ- ସହିବାକୁ ହେବ ।

ଆପାତତଃ ସେଦିନ ଦୁଇଟି ହୃଦୟ ମନ ଓ ଦେହ ଏକାକାର ହୋଇ ଯାଇଥିଲା ସେଇ ଅନ୍ଧକାରରେ । କେହି କିଛି ଦେଖୁ ନଥିଲେ । କିଛି ଶୁଣୁ ନ ଥିଲେ, କିଛି ଗୁଜବ ନଥିଲା ମଧ୍ୟ ସେମାନଙ୍କ ସଂପର୍କକୁ ନେଇ । ସହୃଦୟ ହଳିଆଟି ପାଇଁ ବିଧବା ବୋହୂଟି ଚଳି ଯାଉଛି ବୋଲି କେହି କେହି ହଳିଆର ଆୟୁଷ କାମନା କରୁଥିଲେ । ଆଉ କେହି କେହି ତା ପ୍ରତି ହୋଇ ଉଠୁଥିଲେ ପ୍ରଚଣ୍ଡ ଈର୍ଷାତୁର । କଳ୍ପନାରେ ରଚୁଥିଲେ ଅନେକ କାହାଣୀ । ବେଳେବେଳେ ତାକୁ ଟାପରା କରୁଥିଲେ, ବେଳେବେଳେ ଧମକ ଦେଉଥିଲେ, "ଚୋର ଘରେ ସବୁ ଦିନ ଅନ୍ଧାର ନଥାଏ । ଦିନେ ଆଲୁଅରେ ସବୁ ଜଣାଯିବରେ ପୁଅ ।"

ହରିଆ ବିଚଳିତ ହେଉଥିଲା, ଠାକୁରଙ୍କୁ ଡାକୁଥିଲା, କିନ୍ତୁ ସମାଧାନର ବାଟ କିଛି ପାଉ ନଥିଲା । ବ୍ରାହ୍ମଣଘର ବୋହୂ ସହିତ କେଡ଼େ ପବିତ୍ର ସଂପର୍କକୁ ସେ କଳୁଷିତକରି ଦେଇଛି ବୋଲି ନିଜକୁ ଦୋଷ ଦେଉଥିଲା । ଭାଗ୍ୟକୁ ନିନ୍ଦୁଥିଲା; ବେଳେବେଳେ ନିଜଗାଲରେ ଚାପୁଡ଼ା ମାରି ହେଉଥିଲା । କିନ୍ତୁ ଚନ୍ଦ୍ରାକୁ ନେଇ ସହର ଡାକ୍ତରଖାନାକୁ ଯିବା ସାହସ କି ସମ୍ବଳ ତାର ନଥିଲା । ଚନ୍ଦ୍ରା ଜିଦିଧରିଚି- ଏଥର କେବେ ନୁହେଁ । ଯେଉଁ ଶିଶୁଟି ମାଟିକୁ ଆସିବ ସେ ନା ହେବ ବ୍ରାହ୍ମଣ ନା ତା ପରି ଅସବର୍ଣ୍ଣ ହରିଜନ ? କଣ ହେବ ତାର ପରିଚୟ ? ଏ ସମାଜ ଜାଣିଲାମାତ୍ରେ ସେ ଦିହିଙ୍କ ଉପରେ ରକ୍ତ ଚାଉଳ ଚୋବେଇବ । କେତେ ପୁରୁଷର ଭିଟାମାଟିକୁ ଛାଡ଼ି ସେ ଚନ୍ଦ୍ରା ସାଙ୍ଗରେ କଣ ଚାଲିଯାଇ ପାରିବ ? ତାର ସର୍ବସହଣିକ ସ୍ତ୍ରୀ ଆଉ ତିନୋଟି ଛୁଆ ଗଡ଼ିଯିବେ । ସ୍ତ୍ରୀ ଯଦି ଆତ୍ମହତ୍ୟା କରିବ ତେବେ କଣ ହେବ ତାର ଛୁଆମାନଙ୍କ ଅବସ୍ଥା ?

ହରିଆ କିଛି ଥଳକୂଳ ପାଉ ନଥିଲା । ପ୍ରାୟାନ୍ଧକାର ଭିତରେ ତା'ରି ଛାତି ଉପରେ ଲୋଟି ରହିଥିଲା ଚନ୍ଦ୍ରା- କଳାଧଳାରେ ତିଳତଣ୍ଡୁଳିତ କେତୋଟି ମୁହୂର୍ତ୍ତ ଅନ୍ଧାରରେ ହୋଇ ଉଠୁଥିଲା ଦୃଶ୍ୟହୀନ । ପିଣ୍ଡାରେ ଲଣ୍ଠନଟି ମିଞ୍ଜିମିଞ୍ଜି ଜଳି ଘରର ଅସ୍ତିତ୍ୱକୁ ହୁଏତ ଘୋଷଣା କରୁଥିଲା । ହରିଆ ମନ ବି ବେଳେବେଳେ ପଥର ପରି ଟାଣ ହୋଇ ଉଠୁଥିଲା; ଜୀବନର ଏ ଅପୂର୍ବ ଅନୁଭୂତିକୁ ସେ କିପରି ଅସ୍ୱୀକାର କରି ପାରିବ ? ଏଇ ଅଭିଶପ୍ତ କିନ୍ନରୀ ମାଟିରେ କାହିଁକି ଜନ୍ମ ନିଏ ? ଏତେ ରୂପର ରୋଷଣୀ ଜାଳି କାହିଁକି ଆସେ ସେ ଏ ହିଂସା ଅସୂୟା ପୂର୍ଣ୍ଣ ପୃଥିବୀକୁ ? ଏଠି ତାକୁ କିଏ ବା ସ୍ୱାଗତ କରିବ ? କିଏ ବୁଝିବ ତା ମନକଥା ? ପେଟର ଭୋକକୁ ହୁଏତ ଦମନ କରିହେବ, କିନ୍ତୁ ଦେହର ଏ ଭୋକ ! ସର୍ବଗ୍ରାସୀ ଅନଳରେ ପତଙ୍ଗ ପରି ଝାସ ଦେବାକୁ କାହିଁକି ଏ ଦେହ ଉଚ୍ଚାଟିତ ହୁଏ ? ତା



Digitized by PPRACHIN, SOA

ନିଜ ସ୍ତ୍ରୀ ଆଉ ଏଇ ଅଭିଶପ୍ତ କିନ୍ନରୀ ଭିତରେ ଏତେ ତଫାତ୍ ସେ କାହିଁକି ଦେଖେ ? ଚନ୍ଦ୍ରାର କଥା ପଦେ ପଦେ କାହିଁକି ତାକୁ ଏତେ ମିଠା ଲାଗେ ? କାହିଁକି ତାକୁ ଦ୍ରବୀଭୂତ କରିଦିଏ ? ହରିଆ କିଛି ଥଳକୂଳ ପାଏ ନାହିଁ । ଜଡ଼ସଡ଼ ଦେହ ଓ ପେଟରେ ତିନି ମାସର ପିଣ୍ଡକୁ ଧରି ଚନ୍ଦ୍ରା ହରିଆର ଝାଳଗନ୍ଧ କଳା ମଚମଚ ଦେହରୁ ଅପସରି ଯାଇ ନିଜକୁ ପ୍ରକୃତିସ୍ଥ କରେ । ତାର ଆଜି କୌଣସି ପାଇଁ ଶୋଚନା ନାହିଁ । ଖାତିର ନାହିଁ ଏ ସମାଜକୁ । ସେ ତାର ନିଜ ମନଇଚ୍ଛାରେ ବଞ୍ଚିବ । ଏଇ ଗାଁକୁ ବଞ୍ଚିବା ପାଇଁ ସେ ଆସିଥିଲା । ତାର ବର ଅପାରଗ ଅନାମକୁ କାଳ ସହିଲା ନାହିଁ । ତା ସ୍ଥାନରେ ବଳିଷ୍ଠ ପୁରୁଷାକାରର ଦୁଇବାହୁ ଫାଶରେ ସେ ବାନ୍ଧି ହୋଇଗଲା । ଏହାହିଁ ବୋଧହୁଏ ତାର ନିୟତି । ତାକୁ ସେ କିପରି ଅସ୍ୱୀକାର କରିବ ? କିପରି ଆଗଥର ପରି ଏଥର ବି କୋମଳ ପଦ୍ମବନରେ ଜାଳିଦେବ ବିଷର ଅଗ୍ନିଶିଖା । ନା, ସେ ମାଆ ହେବ, ଶିଶୁକୁ ପୃଥିବୀକୁ ଆଣିବ, ତା ଭାଗ୍ୟରେ ଯାହା ଥାଉ ପଛେ ତେଣିକି ।

ସେଦିନ ହରିଆ ଆଉ ଔଷଧ ପ୍ରସଙ୍ଗ ଉଠେଇ ପାରୁ ନଥିଲା । ସେ ଜାଣେ ସେକଥା କହିଲେ ଚନ୍ଦ୍ରା ମନରେ କଷ୍ଟହେବ । ତାର ସଜସରାଗ ପ୍ରାଣଉଛୁଳା ମନକୁ ସେ ମାରିଦେଇପାରିବନି । ଏ ସଂପର୍କର ସ୍ରଷ୍ଟାଙ୍କ ଉଦ୍ଦେଶ୍ୟରେ ସେ ହାତ ଯୋଡ଼େ- କେତେ ନେହୁରା ହୁଏ ବରଗଛ ମୂଳ ଗ୍ରାମ ଦେବତୀଙ୍କ ପାଖରେ । "ଚନ୍ଦ୍ରା ସାଆନ୍ତାଣୀକୁ ଉଦ୍ଧାର କର ମା' ଗ୍ରାମ ଦେବତୀ । ତାଙ୍କୁ ରକ୍ଷା କର । ଘଣ୍ଟ ଘୋଡ଼େଇଥାଆ ।"

ପାଞ୍ଚ ମାସରେ ଦିଆନପୁର ଗାଆଁରେ ବସିଲା ବ୍ରାହ୍ମଣ ମାନଙ୍କ ନିଶାପ । ସେ ବଜାତ୍ ମାଇକିନିଆକୁ ଡାକ- ସେ ସଭାରେ ସବୁକଥା କହୁ । କିଏ ତା' ପେଟ ଛୁଆର ବାପା । କାହା ସହିତ ସେ ଲଗେଇଛି ଏତେ ରଙ୍ଗଲୀଳା । ବ୍ରାହ୍ମଣ ସମାଜରେ ସେ କାଳି ବୋଳିଚି । ଅନାମର ଆତ୍ମାକୁ କରିଚି ହନ୍ତସନ୍ତ । ତାକୁ ଘରୁ ଟାଣିଆଣ । ଯଦି ଡାକିଲେ ନ ଆସୁଚି ଦ୍ରୌପଦୀର କେଶ ଧରି କୁରୁ ସଭାକୁ ଦୁଃଶାସନ ଭିଡ଼ି ଆଣିଲା ପରି କିଏ ଜଣେ ଯାଇ ତାକୁ ଭିଡ଼ିଆଣ । ସେ ଅଲବତ୍ ଏଇଠି ଆସି ସମସ୍ତଙ୍କ ଆଗରେ ସଫେଇ ଦେବ । ନ ଆସିଲେ ତାକୁ ଧକ୍କାମାରି ସେ ଘରୁ ବାହାର କରି ଦିଆଯିବ । ନିଆଁ ପାଣି ଅଟକ ହେବ । ଯିଏ ତାର ଛୁଆର ବାପା ତା' ସାଙ୍ଗରେ ଯାଇ ସେ ଘର କରି ରହୁ । ଏ ଗାଁରେ ରହିପାରିବନି । ଏ ଗାଁର ଇଜତ୍‌ମହତ୍ ସେ ବୁଡ଼େଇଚି- ତାକୁ କୌଣସି ମତେ ଆମେ ଛାଡ଼ିବୁନି । ଲକ୍ଷେ ଟଙ୍କା ଜୋରିମାନା ଦେଲେବି ଛାଡ଼ିବୁନି । ସେ କଳଙ୍କିନୀ- ତା କଳଙ୍କରେ ଏ ଗାଁ କାହିଁକି ଭାଗୀଦାର ହେବ ?

ଏ ଉତ୍ତେଜନାର ଶବ୍ଦଗୁଡ଼ିକ ଶରପରି ଛୁଟୁଥିଲା ନିରୀହ ହରିଣୀଟିର ଘର ଉଦ୍ଦେଶ୍ୟରେ । ଗୋଟିଏ ଶର ଯାହାକୁ ଭୂମିସାତ୍ କରିବାକୁ ଯଥେଷ୍ଟ ହୁଅନ୍ତା ସେଠି ଏତେ ଶରରବା କି ପ୍ରୟୋଜନ ? ଗାଁ ଟୋକାମାନେ ମଜା ଦେଖିବାକୁ ବ୍ୟାକୁଳ । ପ୍ରୌଢ଼ମାନେ



Digitized by PPRACHIN, SOA

ହତାଶ, ବୃଦ୍ଧମାନେ ମୂକ । କେବଳ କହିଚାଲିଛି ଗାଁ ମାମଲତକାର । ସେ ଆଜି ପ୍ରତିଶୋଧ ନେବାକୁ ଚାହେଁ । ସେଦିନ ତାକୁ ଚନ୍ଦ୍ରାର ଦ୍ୱାର ମୁହଁରୁ ଫେରି ଆସିବାକୁ ହୋଇଥିଲା ବିଫଳ ମନୋରଥ ହୋଇ । ଆଉ ଦିନେ ପ୍ରଚଣ୍ଡ ହତାଦର ଓ ଘୃଣାର ଗାଳିରେ ସେ ଭାସି ଯାଇଥିଲା ସ୍ରୋତରେ ତାଳପତ୍ର ପରି । ସୁନ୍ଦରୀକୁ ଆଜି ସେ ପାନେ ନ ଦେଇ ଛାଡ଼ିବନି । ଆଜି ତାର ମନ୍ତବ୍ୟରେ ଫୁଟିଉଠୁଛି ଗାଁର ସାମ୍ରାଜ୍ୟର ମାନଚିତ୍ର । ତାର ଅପୂର୍ଣ୍ଣ ଆଶା ତୁହାଇ ତୁହାଇ ତାକୁ ଉଖାରି ଢାଳିବାରେ ଲାଗିଛି ।

ଗାଁ ପାଠୁଆ ଅଧ୍ୟାପକ ମୋ ବନ୍ଧୁ ବୋଧହୁଏ ମୁହଁ ଖୋଲି କହିଥିଲେ - "ସେସବୁ ତାଙ୍କର ବ୍ୟକ୍ତିଗତ ବ୍ୟାପାର । ସେଥିରେ ଗାଁ କାହିଁକି ମୁଣ୍ଡ ଖେଳଉଚି ? ନିଆଶ୍ରୀ ବିଧବାଟାଏ । କାହା ଆଶ୍ରାରେ ଯଦି ବଞ୍ଚିପାରୁଚି- ତା ପ୍ରତି ତୁମମାନଙ୍କର ଏତେ ଅକଶ କାହିଁକି'' ?

ଗ୍ରାମ ମାମଲତ୍‌କାର ଗର୍ଜି ଉଠିଥିଲେ । "ଆପଣ ସହର ବଜାର କଥା ଭାବୁଚନ୍ତି । ସେଠି ସମାଜ ନଥାଏ; ଭାଇଚାରା ନଥାଏ । ପ୍ରତ୍ୟେକ ପରିବାର ସ୍ୱତନ୍ତ୍ର ଓ ସ୍ୱାଧୀନ; କେହି କାହା ଉପରେ ନିର୍ଭରଶୀଳ ନୁହନ୍ତି । ଯେ ଯେତେ ଅପକର୍ମ କଲେ ସେଠି ଚଳିଯାଏ । କିନ୍ତୁ ଏତ ଗାଁ କଥା । ଆମ ସମାଜ, ଆମ ସଂସ୍କୃତି, ଆମ ଚଳଣି, ଆମ ବିଶ୍ୱାସ- ସେସବୁ ନେଇ ଆମେ ଏଠି ବଞ୍ଚିଥାଏଁ । ତାକୁ ଢାଳି ଦେଇ ପାରିବା କି ? ଆମ ସାତ ପୁରୁଷର ପରମ୍ପରା ଓ ଜୀବନଧାରାକୁ ଆମେ ଫୁତ୍ କରି ଉଡ଼େଇ ନେଇ ପାରିବା କି'' ? ମାମଲାତ୍‌କାରଙ୍କ ଏ ଯୁକ୍ତି ପାଖରେ ବନ୍ଧୁ ଅଧ୍ୟାପକ ନିର୍ବାକ ହୋଇଯାଉଥିଲେ । ମନେ ମନେ ଭାବୁଥିଲେ ସତେତ । ବ୍ୟକ୍ତିକୁ ଏ ସମାଜ ମୋଡ଼ିମାଡ଼ି ମାଟିପିଣ୍ଡୁଳାଟିଏ ବନେଇ ଛାଡ଼ିଦେବ । କାହାର ପାଟି ଫିଟେଇବାର ଅଧିକାର ନଥିବ । ନିଜର ପ୍ରେମକୁ ସାବ୍ୟସ୍ତ କରିବାକୁ ଅଧିକାର ନଥିବ । ଏ ଏକ ସ୍ୱତନ୍ତ୍ର ବିଚାର । ଏଠି ଆଧୁନିକ ଜୀବନଧାରର ମନସ୍ତତ୍ତ୍ୱ ବିଫଳ ହେବାକୁ ବାଧ୍ୟ । ଶହ ଶହ ଏପରି ଘଟଣା ସହରରେ ଘଟୁଥିଲେ ବି କିଏ ସେଥିପାଇଁ ମୁହଁ ଖୋଲେ ନା ସାଇ ସମାଜ ବସି ତାର ବିଚାର କରନ୍ତି ? ଗ୍ରାମର ନ୍ୟାୟ ଅଲଗା । ସେ ପାଟିଖୋଲି ଅଯଥା ନିରସ୍ତ ହୋଇ ଯାଇଥିଲେ ଓ ସଭାରୁ ଧୀରେ ଉଠି ଚାଲିଗଲେ । ତାଙ୍କୁ କେହି ପଛରୁ ଡାକି ବସିବାକୁ ବାଧ୍ୟ କଲେ ନାହିଁ । ସ୍ୱାଧୀନତା ପରେ ତଥାପି ଗ୍ରାମର ମାନଚିତ୍ର ଯେ ବଦଳି ନାହିଁ ତାହାହିଁ ତାଙ୍କୁ ବିସ୍ମିତ କରୁଥିଲା ।

ହଳିଆ ହରିଆ ଉପରେ ଗ୍ରାମବାସୀଙ୍କ କ୍ରୋଧ କେନ୍ଦ୍ରୀଭୂତ ହେଲା । ସେ ହିଁ ରଖିବ ବ୍ରାହ୍ମଣୀଚନ୍ଦ୍ରାକୁ - ସେ ସବୁ ସର୍ବନାଶର କାରଣ । ବ୍ରାହ୍ମଣୀ ବିଧବା କାଲିଠାରୁ ଘର ଛାଡ଼ିବ । ତା'ଘର ଡ଼ିହ ଠାକୁରଙ୍କ ସମ୍ପତ୍ତିରେ ସାମିଲ ହେବ । ଏ ଅନାଚାର ବାଦବକୁ ତା' ଭୂସମ୍ପତ୍ତିରୁ ଅଧେ ଗାଁ ଠାକୁରଙ୍କ ସମ୍ପତ୍ତିରେ ମିଶିବ । ସେ ହରିଆ ଘରେ ଏଣିକି



Digitized by PPRACHIN, SOA

ରହିବ । ଗାଁର ଏ କଠିନ ନିଷ୍ପତ୍ତିକୁ ଟାଳଟୁଳ କରିବାର ସାଧ୍ୟ କାହାରି ନଥିଲା । ଚନ୍ଦ୍ରାପ୍ରତି ଯେଉଁ ଜଣେ ଦି' ଜଣ ଥିଲେ ଏକାନ୍ତ ସହାନୁଭୂତି ପ୍ରବଣ ସେମାନେ ପାଟିଖୋଲିବାକୁ ସାହସ କରି ନଥିଲେ । ଅଧ୍ୟାପକଙ୍କ କଥା ଯେତେବେଳେ ପବନରେ ଉଡ଼ି ଯାଉଚି, ସେତେବେଳେ ସେମାନେ କିବା ଛାର । ମୃଦୁ ପ୍ରତିବାଦ ମଧ ସେଠି ନିଜ ପ୍ରତି ବିପଦ ଡାକି ଆଣିବ- ଏ ଆଶଙ୍କାରୁ ସେମାନେ ମୁକ୍ତ ନ ଥିଲେ ।

ହରିଆକୁ ଡକାହେଲା ବିଳମ୍ବିତ ରାତ୍ରିରେ । ତାକୁ ସାଫ୍ ସାଫ୍ ଗାଁ ମାମଲତକାର ଗାଁର ସର୍ବସମର୍ଥିତ ନିଷ୍ପତ୍ତି ଶୁଣାଇ ଦେବା ପୂର୍ବରୁ ପଦେ ପଚାରିଥିଲେ- "ଆମେ ଗ୍ରାମବାସୀମାନେ ଅନୁଭବ କରୁଚୁ ଚନ୍ଦ୍ରାର ପାପଗର୍ଭର କାରଣ ତୁ ହରି ବେହେରା ! ତୋର କିଛି କୈଫିୟତ୍ ଦେବାର ଅଛି ତ କହ ।''

ହରିଆ ବେହେରା ସେମିତି ହାତଯୋଡ଼ି ନିରୁତ୍ତର ଭାବେ ଠିଆ ହୋଇ ରହିଲା । କିଛି କହିବାର ନାହିଁ ।

"ତୁ ଏ ପାପକର୍ମ ପାଇଁ ଦାୟୀ । ତେଣୁ ଗ୍ରାମର ନିଷ୍ପତ୍ତି କାଲି ସକାଳଠାରୁ ବିଧବା ଚନ୍ଦ୍ରା ତୋ ଘରେ ରହିବ । ତାର ନିଜ ଭିଟାମାଟି ଓ ଅର୍ଦ୍ଧେକ ଭୂସମ୍ପତ୍ତି ଠାକୁରଙ୍କ ଅଧିକାରଭୁକ୍ତ ହେବ । କେବଳ ତୁ ଭାଗରେ ଚଷୁଥିବା ଜମିକୁ ଆଗପରି ଚାଷ କରିପାରିବୁ ।''

ହରିଆ ସେମିତି ହାତଯୋଡ଼ି ଠିଆ ହୋଇଥାଏ । ତା' ପାଟିରୁ ତଥାପି କଥା ପଦେ ବି ବାହାରୁ ନଥାଏ । କି ଉତ୍ତର ବା ସେ ଦେବ ? ହୁଏତ ତାର ପ୍ରତିବାଦ ବତାଶକୁ ଡାକି ଆଣିବ । ସେ ବତାଶରେ ସେ କାଠିକୁଟା ପରି ଉଡ଼ିଯିବ ।

ଗ୍ରାମ ସଭା ଭାଙ୍ଗିଲା । ହରିଆ କାନ୍ଦି କାନ୍ଦି ଘରକୁ ଫେରିଆସି ତାର ନିରୀହା ସର୍ବସହଣୀ ସ୍ତ୍ରୀ ସହିତ ପରାମର୍ଶ କଲା । ସ୍ତ୍ରୀ କହିଲା ଗାଁର ନିଷ୍ପତ୍ତିକୁ ଆମକୁ ମାନିବାକୁ ହେବ । କାଲିଠାରୁ ସାଆନ୍ତାଣୀ ଏଇଠି ରହିବେ । ତାଙ୍କ ପାଇଁ କାଲି ଆମେ ବାଉଁଶ ତାଟି କୁଡ଼ିଆଟିଏ ବନେଇଦବା । ଝାଟିମାଟି କାନ୍ଥରେ କିଛି କାଦୁଅ ଚକଟି ଛାଟିଦବା । ଏଇଠି ଆମ ବାଡ଼ିପଟେ ସାଆନ୍ତାଣୀ ସେଇ ଘରେ ନିଜ ହାତରେ ରୋଷେଇ ବାସ କରି ଖାଇବେ । ଆମେ ସବୁ କରିଧରି ଦେବା । ଅସଜ ଲୋକ, ତାଙ୍କର ଯେପରି ଅସୁବିଧା ନହୁଏ ।

ସ୍ତ୍ରୀର ଉଦାରତାରେ ହରିଆ ବିଚଳିତ ହୋଇ ପଡୁଥିଲା । ଏତେ ବଡ଼ ବିଚାରବନ୍ତ ସ୍ତ୍ରୀଟିଏ ତାର- କେତେବା ସେ ତାକୁ ବୁଝିଥିଲା ? ତାର ବିଚାରଧାରାକୁ ହରିଆ ମନେ ମନେ ତାରିଫ୍ କଲା ଓ ଉପରବାଲା ଉଦ୍ଦେଶ୍ୟରେ ହାତ ଯୋଡ଼ିଲା ।

ସକାଳୁ ସକାଳୁ ଚନ୍ଦ୍ରା ସଆନ୍ତାଣୀ ହୋଇଗଲେ ନିର୍ବାସିତା । ହରିଆ ପଛେ ପଛେ ସେ ସେଇ ଧଳା ଶାଢ଼ୀ ପିନ୍ଧି ମୁହଁକୁ ତଳକୁ ପୋତି ଚାଲୁଥିଲେ । ତାଙ୍କ ରୂପର ଜ୍ୟୋତିରେ



Digitized by PPRACHIN, SOA

ତାଙ୍କ ଚଉପାଶ ଉଜ୍ଜଳି ଉଠୁଥିଲା । ଗାଁ ସ୍ତ୍ରୀ ଲୋକମାନେ ଏ ଅଦ୍ଭୁତ ଦୃଶ୍ୟ ଦେଖି ଆଖିରୁ ଲୁହ ପୋଛୁଥିଲେ । ହରିଆ ମୁଣ୍ଡରେ ଥିଲା ଛୋଟ ଟ୍ରଙ୍କଟିଏ । ସେଥିରେ ଯାହାକିଛି ଲୁଗାପଟା, ଜମିଜମା କାଗଜପତ୍ର ଓ ଚଳିବାମାନିଆ ବାସନକୁସନ ।

ଗାଁ ମାମଲତକାର ଚନ୍ଦ୍ରା ଘରେ ତାଲାପକାଇଲେ । ଠାକୁର ପୂଜାରୀକୁ ଡାକି ଘରବାଡ଼ିର ଦାୟିତ୍ୱ ଦେଲେ । ଅମଳ ହୋଇଥିବା ଧାନରୁ ଅଧେ ଠାକୁର ନେବେ ଓ ଅଧେ ହରିଆ ନେଇ ପାରିବ ବୋଲି କହି ଦେଇଗଲେ ।

ଚନ୍ଦ୍ରାର ପୁଅଟିଏ ଜନ୍ମହେଲା ସେଇ ଚାଳଘରେ । ଶୁଳିଆଣୀ ଭାବେ କାମ କରିଥିଲା ହରିଆର ସ୍ତ୍ରୀ । ଦିବ୍ୟ ସୁନ୍ଦର ପୁଅଟିଏ । ହରିଆ ପୁଅ ହୋଇଥିଲେ କଳାଭୁସୁଙ୍ଗା ଓଠ ମୋଟା ପିଲାଟାଏ ହୋଇଥାନ୍ତା । ଯେମିତି ତାର ନିଜ ପୁଅ ଆଉ ଝିଅ । ଏ ତ ଦିବ୍ୟସୁନ୍ଦର ଗୋରା ତକତକ ବ୍ରାହ୍ମଣ ପିଲା । ତା' ମନରୁ ସନ୍ଦେହ ତୁଟି ତୁଟି ଯାଉଥିଲା । ସେ ଅନ୍ତୁଡ଼ି ଶାଳରେ ତାର ସମସ୍ତ ଅଭିଜ୍ଞତା ଖଟାଇ ଚନ୍ଦ୍ରାକୁ ବିପଦମୁକ୍ତ କରିଥିଲା । ଚନ୍ଦ୍ରାର ମୁହଁ ଉଜ୍ଜ୍ୱଳ ଦେଖାଯାଉଥିଲା । ଗାଁର ଶେଷ ପ୍ରାନ୍ତରେ ହରିଜନ ବସ୍ତୀର ଏକଣା ଘରଟିରେ ସେ ଆଜି ମାଆ ହେବାର ଗୌରବ ପାଇଚି । ସେଥିପାଇଁ ତାର ସବୁ ଭୂସମ୍ପତ୍ତି ଲୁଣ୍ଠିତ ହୋଇ ଯାଇଥିଲେ ବି ସେ ଦୁଃଖ କରିନଥାନ୍ତା । ମାଆ ହେବାରେ ପୁଣି ଥାଏ ଏତେ ଆନନ୍ଦ ଓ ଉଲ୍ଲାସ- ଚନ୍ଦ୍ରା ମନେ ମନେ ତା ବାପାବୋଉଙ୍କୁ ସ୍ମରଣ କରୁଥିଲା । ଦରିଦ୍ର ସଂସାରରେ ପଙ୍କରେ ପଦ୍ମଫୁଲଟିଏ ଫୁଟେଇ ସେମାନେ ତା ଭାଗ୍ୟକୁ ଫୋପାଡ଼ି ଦେଲେ ଏ ଦୂର ଗାଁକୁ । ସେଠି ସେ କିପରି ବଞ୍ଚିଚି କି ମଲାଣି ସେମାନେ ଦିନେ ବି ଦେଖିବାକୁ ଆସିଲେ ନାହିଁ । ଶାଶୁ ସ୍ୱାମୀ ମଲାପରେ ସେ ଅରକ୍ଷ ହୋଇ ଯାଇଥିଲା । ସେମାନେ କ'ଣ ତାରି ଦୁଃଖରେ ଆଗପଛ ହୋଇ ଆରପାରିକି ଚାଲିଗଲେ ? ତାଙ୍କୁ ଦୋଷ ଦେଇ ଲାଭ ନାହିଁ । ବରଂ ତାଙ୍କର ଆତ୍ମା ଶାନ୍ତିରେ ଥାଉ ।

ଚନ୍ଦ୍ରା କୌଣସି ମତେ ବଞ୍ଚୁଥିଲା ପୁଅଟିର ମୁହଁକୁ ଚାହିଁ । ତାର ସେବାଯତ୍ନରେ ହରିଆ ଓ ତା ସ୍ତ୍ରୀ ଅବହେଳା କରୁ ନଥିଲେ । ଯେଉଁ ଅଧାଅଧି ଜମି ଆଗରୁ ହରିଆ ଭାଗଚାଷ କରୁଥିଲା ସେ ଜମି ଗ୍ରାମ ନିଷ୍ପତ୍ତିରେ ଚନ୍ଦ୍ରା ପାଖରେ ରହିଲା । ତାକୁ ବର୍ଷକ ପାଇଁ ଚାଉଳ ଗଣ୍ଡାଏ ମିଳିବ- ଏ ଭରସା ଅନ୍ତତଃ ଥିଲା ।

ପୁଅକୁ ପାଞ୍ଚବର୍ଷବେଳେ ପୁଣି ଚନ୍ଦ୍ରା ହେଲା ଗର୍ଭବତୀ । ହରିଆର ସ୍ତ୍ରୀ ଆପତ୍ତି କଲାନାହିଁ । ସବୁ ସହିଗଲା । ତାର ଗରିବ ସଂସାର ପାଇଁ ଚନ୍ଦ୍ରାର ଅବଶିଷ୍ଟ ଧାନଜମି ହିଁ ଥିଲା ବଞ୍ଚିବାର ପାଥେୟ । ତାର ପୁଅ ଓ ଝିଅ ସ୍କୁଲ ଯାଉଥିଲେ । ଆଉ ସେ ମଧ୍ୟ ଯାଉଥିଲା ମୂଲଲାଗି । ବୋଧହୁଏ ସେଇ ସୁଯୋଗରେ ହରିଆ ସହିତ ଚନ୍ଦ୍ରାର ହେଉଥିଲା ମିଳନ । ହରିଆର ସ୍ତ୍ରୀ ହରିଆକୁ ଏତେ ଭଲ ପାଉଥିଲା ଯେ ଚନ୍ଦ୍ରାକୁ ସଉତୁଣୀ ଭାବେ ଗ୍ରହଣ କରି ନେବାରେ ତାର ଆପତ୍ତି ନଥିଲା । ଚନ୍ଦ୍ରା ସାଆନ୍ତାଣୀଙ୍କ ସେବା ପୂଜାରେ ତାର



Digitized by PPRACHIN, SOA

କୌଣସି ବ୍ୟତିକ୍ରମ ନଥିଲା । ଘର ବାହାର ଓଳାଇ ବାସନମାଜି ପାଣିଆଣି ସେ ରୋଷେଇ ପାଇଁ ସବୁ ସଜାଡ଼ି ଦେଇ ମୂଲଲାଗି ଯାଉଥିଲା । ତାର ସେବାରେ ଦିନେ ହେଲେ ବି ଚନ୍ଦ୍ରା ବ୍ୟତିକ୍ରମ ଦେଖୁ ନଥିଲା । ହରିଆର ସ୍ତ୍ରୀ ଥିଲା ଈର୍ଷା ଓ ଅସୂୟାର ଊର୍ଦ୍ଧ୍ୱରେ । ଚନ୍ଦ୍ରା ତେଣୁ ତା ପ୍ରତି ଅଭିଭୂତ ହୋଇପଡୁଥିଲା ।

ଚନ୍ଦ୍ରା କ୍ରମେ ଏ ଗାଁରେ ଲିଜେଣ୍ଡରେ ପରିଣତ ହୋଇଯାଇଥିଲା । ତା'ରି ବିଷୟ ଚର୍ଚ୍ଚାକରି ଗାଁଲୋକେ ଆନନ୍ଦ ପାଉଥିଲେ । କେହି ଘୃଣା କରୁଥିଲେ, କେହି ତାରିଫ୍ କରୁଥିଲେ ତା ବ୍ୟକ୍ତିତ୍ୱକୁ । ଅଧ୍ୟାପକ ବନ୍ଧୁ ନିର୍ବାସିତା ଚନ୍ଦ୍ରାକୁ ଦାଣ୍ଡରେ ହରିଆ ପଛେ ପଛେ ଚାଲି ଯାଉଥିବା ଦେଖି ପ୍ରଥମ ଥର ହିଁ ଅନୁଭବ କରିଥିଲେ ଗାଁ ଶ୍ରୀହୀନ ହୋଇଗଲା ? ରୂପର ଚନ୍ଦ୍ରଉଦିଆ ଚନ୍ଦ୍ରାକୁ ଖୁବ୍ ପାଖରୁ ଅବଶ୍ୟ ସେ ଆଗରୁ ଦେଖିବାର ସୁଯୋଗ ପାଇଥିଲେ; ପାଇଥିଲେ ମଧ୍ୟ ସାନ୍ନିଧ୍ୟ । ଆଜି କିନ୍ତୁ ସେ ମଉଳା ପଦ୍ମଫୁଲଟିଏ ପରି ନିସ୍ତେଜ । ସେଦିନ ରାତିରେ ତାଙ୍କ ପ୍ରତିବାଦ ଓ ସଭାବର୍ଜନ ହିଁ ଗ୍ରାମ ମୁଖିଆମାନଙ୍କୁ ବାଧ୍ୟ କରିଥିଲା- ଏତେ ରାତିରେ ବିଧବା ବ୍ରାହ୍ମଣୀକୁ ସଭା ସମକ୍ଷରେ ଠିଆ ନକରେଇ ଏକତରଫା ନିଷ୍ପତ୍ତି ନେବାକୁ । ତାର କିଛି କହିବାର ଥିଲେ ସେ ଆସିପାରେ, ଏହାହିଁ କବାଟ ପାଖରେ ବଡ଼ ପାଟିରେ କେହି ଜଣେ ଗ୍ରାମ ତରଫରୁ ଶୁଣେଇଦେଲାବେଳେ ତଥାପି ଚନ୍ଦ୍ରା କବାଟ ଫିଟାଇବାକୁ ଚାହିଁନଥିଲା । ସେ ଏସବୁ ନିଷ୍ପତ୍ତି ପ୍ରତି ଥିଲା ଏକାନ୍ତ ଉଦାସୀନ ଓ ଅବିଚଳ ।

ଅନେକ ବର୍ଷପରେ ଅଧ୍ୟାପକ ବନ୍ଧୁ ଗାଁକୁ ଆସି ଅଭ୍ୟାସ ବଶତଃ ପ୍ରାତଃ ଭ୍ରମଣରେ ଗାଁ ଶେଷମୁଣ୍ଡକୁ ଚାଲିଯାଇଥିଲେ । ଉଦ୍ଦେଶ୍ୟ ଥିଲା ଥରେ ଚନ୍ଦ୍ରା ଓ ତା' ପୁଅକୁ ଦେଖିଆସିବେ ଓ ସେ କିପରି ଚଳୁଚି ତାକ୍ଷ୍ୟସ କରିବେ । ମଗୁଶୀରମାସର ଶୀତ ଓ କୁହୁଡ଼ି ତଥାପି ଛାଡ଼ି ନଥିଲା । ସାଲଟିଏ ଘୋଡ଼ିହୋଇ ପାଟିରେ ଅଭ୍ୟାସବଶତଃ ପାନଖିଲେ ଭର୍ତ୍ତି କରି ସେ ଛୋଟ ବାଡ଼ିଟିଏ ଧରି ଚାଲି ଚାଲି ହରିଜନ ସାହିର ଶେଷ ପ୍ରାନ୍ତ ଯାଏ ଆସି ଯାଇଥିଲେ । ଏମିତି ମଝିରେ ମଝିରେ ଗାଁକୁ ଆସି ବିଲବାଡ଼ି କଥା ବୁଝାସୁଝା କରିବାକୁ ଚାହିଁଲେ ବି ପତ୍ନୀ ସେଥିପାଇଁ ବରାବର କରନ୍ତି ପ୍ରତିବାଦ । ଜମିତ ଭାଗ ଦିଆଯାଇଚି । ଭାଗୁଆ ଧାନବିକି ଟଙ୍କା ଦେଇ ଯାଉଚି । ତୁମେ କାହିଁକି ଗାଁକୁ ଯିବାକୁ ଏତେ ଧରସର ?

ଅଧ୍ୟାପକ ବିଚରା ମନମାରି ରହନ୍ତି । ତେବେ ଆଠ ବର୍ଷ ପରେ ସେ ଏଥର ଗାଁକୁ ଆସିଛନ୍ତି ପୈତୃକ ସମ୍ପତ୍ତିର ହିସାବ ନିକାଶ ପାଇଁ । ସେଇ ମଉକାରେ ଚନ୍ଦ୍ରାକୁ ଦେଖିବାକୁ ତାଙ୍କ ମନର ଅନବଦମିତ ଆଗ୍ରହ ତାଙ୍କୁ ହରିଜନ ସାହିର ଶେଷ ଭାଗକୁ ବୋଧହୁଏ ଟାଣି ଆଣିଥିଲା । ନଚେତ୍ ଏଠିକି ଆସିବା ତାଙ୍କ ପାଇଁ ଏତେ ସ୍ୱାଭାବିକ କଥା ନୁହେଁ ।

ହରିଆ ଘର ପାଖରେ ଅଟକିଲେ ଅଧ୍ୟାପକ । କେଉଁ ସକାଳୁ ହରିଆ ବିଲକୁ ବାହାରି ଗଲାଣି । ଚାଳି ଭିତରୁ ବାହାରି ଆସିଲା ନାରୀ ଜଣେ । ଗୋରା ତକତକ ସେ



Digitized by PPRACHIN, SOA

ଅପୂର୍ବ ଚେହେରା ଏବେ ବାସୀ ଫୁଲ ପରି ମଉଳି ଯାଇଛି । ମୁଣ୍ଡରେ କିଛି ବାଳ ପାଚି ଆସିଲାଣି । ଆଖି ତଳେ କଳା ଦାଗ ବହଳ ହୋଇ ଉଠିଛି; ଦେହ ଅସ୍ଥି କଙ୍କାଳସାର । ଏକଦା ଗ୍ରାମର ଶ୍ରେଷ୍ଠ ସୁନ୍ଦରୀ ସେହି ବିଧବା ବ୍ରାହ୍ମଣୀ ଚନ୍ଦ୍ରା ନିଜସ୍ୱ ଦୁଃଖର ଡ଼ଆଁର ଭିତରେ ବୁଡ଼ିଉଠି ବଞ୍ଚି ରହିଛି ସତ- ହେଲେ ଜୀବନପ୍ରତି ହୋଇ ଉଠିଛି ଅନାସକ୍ତ । ତାହାହିଁ ଫୁଟି ଉଠୁଛି ତା ମୁହଁ ଓ ଆଖିରେ ।

ଅଧ୍ୟାପକ ପଚାରିଲେ- ତୁମେ ଚନ୍ଦ୍ରା ନାଁ ?

'ଆଜ୍ଞା'- ସଂକ୍ଷେପ ଉତ୍ତରଟିଏ ଦେଲା ଚନ୍ଦ୍ରା ।

ମୁଁ ସବୁ ଜାଣିଛି । ତୁମ ପ୍ରତି ଘୋର ଅନ୍ୟାୟ ହୋଇଚି । ମୁଁ ସେଦିନ ମଧ୍ୟ କିଛି ପ୍ରତିକାର କରି ପାରିଲି ନାହିଁ । ମୋର ଅସାମର୍ଥ୍ୟ ପାଇଁ ମୁଁ ତୁମଠାରୁ କ୍ଷମା ଚାହେଁ । ତେବେ ଏ ପୁଅଝିଅଙ୍କ ପାଠପଢ଼ା କେମିତି ଚାଲିଛି ?

ଆଜ୍ଞା ପୁଅଟା ଟିକେ ଚଗଲା ହେଲେବି ଭଲ ପାଠ ପଢୁଛି । ଝିଅ ଏବେ ଏବେ ତ ସ୍କୁଲ ଯାଉଛି । ସେମାନେ କ'ଣ ସତରେ ମଣିଷ ହେବେ ? ଆପଣ ସେମାନଙ୍କୁ ଆଶୀର୍ବାଦ କରନ୍ତୁ ।

ଚନ୍ଦ୍ରା ତରତର ହୋଇ ଚା' ବସାଇବାକୁ ଯାଉଥିଲା । ଅଧ୍ୟାପକ ବାରଣ କରି କହିଲେ- ପିଲାମାନେ ନିଶ୍ଚୟ ଭଲମଣିଷ ହେବେ । ମୋ ବିଚାରରେ ତୁମେ ଜଣେ ଖୁବ୍ ଭଲ ମଣିଷ । ତୁମ ପିଲା ଦୁହେଁ କାହିଁକି ମଣିଷ ନହେବେ ? ତୁମେଇ ତାଙ୍କୁ ମଣିଷ କରି ଗଢ଼ିବ । ଏ ଖତଗଦାରେ ସେମାନେ ପଦ୍ମଫୁଲ ପରି ବିକଶି ଉଠିବେ । ମୁଁ ସେମାନଙ୍କ ପାଠ ପଢ଼ା ପାଇଁ କିଛି ସ୍ଥାୟୀ ବ୍ୟବସ୍ଥା କରିବାକୁ ଭାବିଚି । ତୁମକୁ ଠିକ୍ ସମୟରେ ଜଣାଇବି ।

ଅଧ୍ୟାପକ ଧୀର ପଦକ୍ଷେପରେ ନିଷ୍କ୍ରାନ୍ତ ହୋଇ ଯାଉଥିଲେ । ଚନ୍ଦ୍ରାର ଆଖିରୁ ଦୁଇଧାର ଲୁହ ତାର ଗାଲ ଦେଇ ବୋହି ଯାଉଥିଲା । ସେ ଗାଁର ଏଇ ସବୁଠାରୁ ଭଲ ମଣିଷଟିର ଯିବାବାଟକୁ କାତର ଭାବେ ଠିଆହୋଇ ଚାହିଁ ରହିଲା । କ୍ରମେ ଅଧ୍ୟାପକ ବନ୍ଧୁ ଅଦୃଶ୍ୟ ହୋଇଯାଉଥିଲେ ଚନ୍ଦ୍ରାର ଦୃଷ୍ଟି ସୀମାରୁ ।





Digitized by PPRACHIN, SOA

ଆତ୍ମଜୀବନୀ-ଜୀବନୀ

- ପ୍ରେମ ଓ ପ୍ରତାରଣା
- ପ୍ରେମ ଓ ପରିତାପ
- ହେ ସାଥୀ ହେ ସାରଥୀ (ପଣ୍ଡିତ ଗୋପବନ୍ଧୁ ଦାସଙ୍କ ପୂର୍ଣ୍ଣାଙ୍ଗ ଜୀବନୀ) –

ଉପନ୍ୟାସ

- ଅନିକେତ

କବିତା

- ଅଗ୍ନିଶିଖା (ଆମ କବିତା )
- ସବାସାନ ପ୍ରେମିକା ଓ ଅନ୍ୟାନ୍ୟ କବିତା

ଭ୍ରମଣ କାହାଣୀ

- ୟୁରୋପ ଭ୍ରମଣ

ଗଳ୍ପ

- କାଳ ଓ କର୍ଣ୍ଣିକା
- ଯେ ନଦୀ ମରୁପଥେ

Digitized by PPRACHIN, SOA

ପ୍ରଫେସର ନିତ୍ୟାନନ୍ଦ ଶତପଥୀ ଆଧୁନିକ ଓଡ଼ିଆ ସାହିତ୍ୟର ଜଣେ ବହୁଚର୍ଚ୍ଚିତ ସ୍ରଷ୍ଟା । ସମାଲୋଚନା-ସାହିତ୍ୟ, ସୃଜନଶୀଳ-ସାହିତ୍ୟ ଓ ସଂପାଦନା-ସାହିତ୍ୟ କର୍ମର ତ୍ରିବେଣୀ ସଙ୍ଗମରୁ ଉଦ୍ଭୁତ ତାଙ୍କ ସାରସ୍ୱତ ବ୍ୟକ୍ତିତ୍ୱ ଯୋଗୁଁ ଆମ ସାହିତ୍ୟର ବଡ଼ଦାଣ୍ଡରେ ତାଙ୍କ ପାଦଚିହ୍ନ ସୁସ୍ପଷ୍ଟ । ଗୋଟିଏ ଉଚ୍ଚକୋଟୀର ନିରୁତା ସାହିତ୍ୟ ପତ୍ରିକା ଭାବରେ ସମାଦୃତ 'ଇସ୍ତାହାର'ର ସେ ପ୍ରତିଷ୍ଠାତା ଏବଂ ସୁଯୋଗ୍ୟ ସଂପାଦକ । ସମାଲୋଚନା-ସାହିତ୍ୟରେ ତାଙ୍କ ଅବଦାନ ଚିରସ୍ମରଣୀୟ ହେଲେ ମଧ୍ୟ, ଆତ୍ମଜୀବନୀ, ଜୀବନୀ, ଭ୍ରମଣ-ସାହିତ୍ୟ, ଉପନ୍ୟାସ, କବିତା ଏବଂ କ୍ଷୁଦ୍ରଗଳ୍ପ ଇତ୍ୟାଦି ଅନ୍ୟାନ୍ୟ ବିଭାଗରେ ତାଙ୍କ ଅବଦାନ ମଧ୍ୟ କମ୍ ଉଲ୍ଲେଖଯୋଗ୍ୟ ନୁହେଁ ।

ସଦ୍ୟତମ ସାହିତ୍ୟକୃତି '**ଗଳ୍ପସମଗ୍ର**' ଗ୍ରନ୍ଥଟି ତାଙ୍କ ଜୀବନକାଳ ମଧ୍ୟରେ ଏଯାବତ୍ ଲିଖିତ ସମୁଦାୟ ଗଳ୍ପର ଗୋଟିଏ ସୁଦୃଶ୍ୟ ଏବଂ ସଂଗ୍ରହଣୀୟ ସଂସ୍କରଣ ।



ଇସ୍ତାହାର ପ୍ରକାଶନୀ

Digitized by PPRACHIN SOA